# ଜୀବନ୍ତ ସଭ୍ୟତା :
# ସଂଘର୍ଷରେ ଆଦିବାସୀ ଜନଜୀବନ

(ଜୀବନ-ସଂଗ୍ରାମ ସାରସ୍ୱତ ଟ୍ରଷ୍ଟର ପଞ୍ଚମ ପ୍ରସ୍ଥ)

ବିଜୟ ଉପାଧ୍ୟାୟ



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

# ଜୀବନ୍ତ ସଭ୍ୟତା : ସଂଘର୍ଷରେ ଆଦିବାସୀ ଜନଜୀବନ

(ପ୍ରବନ୍ଧ ସଂକଳନ)

*ଲେଖକ :* ବିଜୟ ଉପାଧ୍ୟାୟ

*ପ୍ରକାଶକ :* କାଳୀପଦ ପଣ୍ଡା, **ସୁବର୍ଣ୍ଣଶ୍ରୀ ପ୍ରକାଶିନୀ**
ନେଳିଆବାଗ୍, ଶ୍ରୀକଣ୍ଠପୁର, ବାଲେଶ୍ୱର, ମୋ: ୯୪୩୭୦୮୯୨୪୧

*ସହଯୋଗିତା :* ଜୀବନ-ସଂଗ୍ରାମ ସାରସ୍ୱତ ଟ୍ରଷ୍ଟ
ଫକୀରମୋହନ ନଗର, ଅଙ୍ଗାରଗଡ଼ିଆ, ବାଲେଶ୍ୱର
ମୋ. : ୯୪୩୮୭୦୦୯୧୧

*ପ୍ରଚ୍ଛଦ :* ଅଭୀପ୍ସା ସରକାର
*ପ୍ରଥମ ସଂସ୍କରଣ :* ୨୮ ଫେବୃଆରୀ-୨୦୧୬, *ମୂଲ୍ୟ :* ଟ.୨୨୦/-

---

# JIBANTA SABHYATA : SANGHARSARE ADIBASI JANAJIBANA

(Essays)

by: Bijay Upadhya

**Publisher :** Kalipada Panda, SUBARNASHREE PRAKASHINI
Neliabag, Shrikanthapur, Balasore, Mob : 9437089241

**Associated With :** JIBAN-SANGRAM SARASWATA TRUST
Fakirmohan Nagar, Angaragadia, Baleswar, Mob. : 9438700911

Cover Design : Abhipsa Sarkar
**First Edition** : 28th February - 2016, **Price : Rs. 220 /-**

# ନ କହିଲେ ନ ହୁଏ

ମୁଁ କୋରାପୁଟର ଆଦିବାସୀମାନଙ୍କ ଭିତରେ କାମ କରିବା ଆଜିକୁ ପ୍ରାୟ ୩୦ବର୍ଷ ହୋଇଗଲା । ଏହି ସମୟକାଳରେ ବିଭିନ୍ନ ସମୟରେ ବିଭିନ୍ନ ଆବଶ୍ୟକତା ଓ ବରାଦରେ ବେଶ୍‌କିଛି ଲେଖା ମୋତେ ଲେଖିବା ପାଇଁ ପଡ଼ିଛି । ଆମ୍ଭର ବରାଦରେ ମଧ୍ୟ କିଛି ପ୍ରବନ୍ଧ ଲେଖିଛି । ସେଥିରୁ ପ୍ରଥମ ହେଉଛି ଗୋପୀବାବୁଙ୍କ ଅଧ୍ୟୟନ ଆଧାରିତ ପ୍ରବନ୍ଧ । କୋରାପୁଟ୍ ଆଦିବାସୀ ଜନଜୀବନକୁ ବୁଝିବା ପାଇଁ ତାହା ଥିଲା ମୋର ସବୁଠାରୁ ବଡ଼ ଅସ୍ତ୍ର । ବିଭିନ୍ନ ଗୋଷ୍ଠୀ ଓ ଜନଜାତି ସହ ସୁଖଦୁଃଖରେ ଭାଗୀ ହୋଇ କାମ କରିବା ଅବସରରେ ସେମାନଙ୍କ ସଭ୍ୟତାର ଅନେକ ନୂତନ ଦିଗନ୍ତ ମୁଁ ଆବିଷ୍କାର କରିଛି । ଏଠାରେ ରହୁଥିବା ୬୧ ଜନଜାତି ମଧ୍ୟରୁ ଅନ୍ତତଃ ପକ୍ଷେ ୨୦ରୁ ଊର୍ଦ୍ଧ୍ୱ ଗୋଷ୍ଠୀ ସହ ମୁଁ ଏକାଠି ରହିଛି, ଖାଇଛି, ବୁଲିଛି, ପାଦକୁ ପାଦ ମିଳାଇ ନାଟ କରିଛି, ଅନ୍ୟାୟ ବିରୁଦ୍ଧରେ, ଶୋଷଣ ଓ ଲୁଣ୍ଠନ ବିରୁଦ୍ଧରେ ଲଢ଼େଇ ବି କରିଛି । ସାଙ୍ଗରେ ପୁଲିସ୍ ହାଜତ୍ ଓ ଜେଲ୍ ଯାଇଛି । ଶୀତଦିନ ରାତି ଅଧରେ ଉଠି ଗଣ୍ଡିଜଇରେ ନିଆଁ ପୁଇଁଛି । ସେମାନଙ୍କ ସହ ଗପିଛି । ସେମାନଙ୍କୁ ଶୁଣିଛି । ସଂଗଠିତ କରିଛି । ସଞ୍ଚାଳିତ କରିଛି । ଶହଶହ ଲିଫ୍‌ଲେଟ୍ ଲେଖିଛି । ସଭାସମିତିରେ ଉଦ୍‌ବୋଧନ ଦେଇଛି । ଛୋଟବଡ଼ ବୈଠକରେ ଆଲୋଚନା କରିଛି । ପୁଣି ଥଟ୍ଟାପରିହାସ ଗମାତ ମଧ୍ୟ କରିଛି । ଗୁଡ଼େଇ ତୁଡ଼େଇ ସେମାନଙ୍କ ପର୍ବପର୍ବାଣି, କୃଷି ପଦ୍ଧତି, ନାଟଗୀତ, ତିଥି ନକ୍ଷତ୍ର, ଔଷଧପତ୍ର ଓ ଦିଶାରୀ ଗୁରୁମାୟୀ ବିଦ୍ୟା ଓ ତନ୍ତ୍ରମନ୍ତ୍ର ଉପରେ ଗୁରେଇ ତୁରେଇ ପ୍ରଶ୍ନ

କରିଛି । ସେଇସବୁ ଅଭିଜ୍ଞତା ସମ୍ବଳିତ ଲେଖାମାନଙ୍କ ଭିତରୁ ନିର୍ବାଚିତ ୧୪ଟି ଲେଖାର ସଂକଳନ ହେଉଛି "ଜୀବନ୍ତ ସଭ୍ୟତା : ସଂଘର୍ଷରେ ଆଦିବାସୀ ଜନଜୀବନ" ।

କୋରାପୁଟ ଯିବା ପୂର୍ବରୁ ନିର୍ମାଣ ଶ୍ରମିକ ତଥା ସମତଳ ଅଞ୍ଚଳର କୃଷକମାନଙ୍କ ମଧ୍ୟରେ ସେତେବେଳର ପ୍ରାୟ ଦଶଟି ଜିଲ୍ଲାରେ ପ୍ରତ୍ୟକ୍ଷ ଆନ୍ଦୋଳନର ଅଭିଜ୍ଞତା ହାସଲ କରିସାରିଥିଲେ । ଭୁବନେଶ୍ୱର ବସ୍ତି ବାସିନ୍ଦାମାନଙ୍କ ମଧ୍ୟରେ କାମ କଲାବେଳେ, ଦଳିତ ଶ୍ରମିକମାନଙ୍କ ମେଳରେ କାମ କରି ଦଳିତର ଅପମାନ ଓ ଶ୍ରମିକର କଷ୍ଟ ଅଙ୍ଗେ ନିଭେଇ ଥିଲି । ରାଇବଣିଆ କୃଷକ ସଂଗ୍ରାମ ସଂଗଠନ ବେଳେ ଗୁଣ୍ଡା ଆକ୍ରମଣରୁ ଅଳ୍ପକେ ବର୍ତ୍ତିଥିଲା । ପୁଣି ମଧ୍ୟବିତ୍ତ କୃଷକମାନଙ୍କ ନେତୃତ୍ୱ ନେଇ ବାଲେଶ୍ୱର ଜିଲ୍ଲାରେ ଚକବନ୍ଦୀ ବିରୋଧୀ କୃଷକ ଆନ୍ଦୋଳନ ଛିଡ଼ା କରାଇ ଥିଲି ଏବଂ ସର୍ବଶେଷରେ ସର୍ବଶ୍ରେଷ୍ଠ ସଂଗ୍ରାମୀ ଅଭିଜ୍ଞତା ଅର୍ଜନ କରିଥିଲି ବାଲିଆପାଳ କ୍ଷେପଣାସ୍ତ୍ର ଘାଟୀ ବିରୋଧୀ "ଘାଟୀ ନୁହେଁ ମାଟି ଚାହୁଁ" ଆନ୍ଦୋଳନରେ ।

ତେବେ ସବୁଠାରୁ ସ୍ୱତନ୍ତ୍ର ଓ ନିଆରା ଥିଲା କୋରାପୁଟ୍ ଆଦିବାସୀମାନଙ୍କ ଭିତରେ ଭିନ୍ନ ଭିନ୍ନ ଉଚ୍ଚତାର ଓ ବିଭିନ୍ନ ପ୍ରକାରର ଆନ୍ଦୋଳନର ଅଭିଜ୍ଞତା । ଏଠି ସାଥୀମାନଙ୍କ ସହ ଇନ୍ଦ୍ରାବତୀରେ ବିସ୍ଥାପନ ବିରୋଧୀ ଆନ୍ଦୋଳନ, ରାଇଘର ଉମରକୋଟ୍‌ର କନ୍ଧମାନଙ୍କ ଭିତରେ ଜମିମୁକ୍ତି ଆନ୍ଦୋଳନ, ମାଲକାନ୍‌ଗିରି ଟାପୁ ଅଞ୍ଚଳରେ ତଥା କୋରାପୁଟ୍‌ର ବିଭିନ୍ନ ସ୍ଥାନରେ ଜଙ୍ଗଲବିଭାଗ ବିରୋଧରେ ଜମିଝିକା ବିରୋଧୀ ଆନ୍ଦୋଳନ, ଟିଣପଥର ଲୁଟେରା ହାମ୍‌କୋ କମ୍ପାନୀ ଭିତରେ "ଏ ଜମି ଆମର, ଜମିତଳ ସମ୍ପଦ ବି ଆମର" ଆନ୍ଦୋଳନ (ଯାହାକୁ ଧର୍ତ୍ତନୀ ଉପରେ ଅଧିକାର ଜାହିର ଆନ୍ଦୋଳନ ବୋଲି କୁହାଯାଇପାରେ), ପାଇପ୍ ଲାଇନ୍ ବିଛାଉ ଥିବା ଏସାର୍ କମ୍ପାନୀ ବିରୋଧୀ ସଂଗ୍ରାମ, ଟିମ୍ବର ମାଫିଆ ତଥା ବାଉଁଶ ମାଫିଆମାନଙ୍କ ବିରୋଧରେ ଦୀର୍ଘକାଳ ବ୍ୟାପୀ ଜଙ୍ଗଲ ଅଧିକାର ଆନ୍ଦୋଳନ ଓ ସର୍ବଶେଷରେ ଜମିମାଲିକ ସାହୁକାରମାନଙ୍କ ବିରୋଧରେ ବନ୍ଧକ ଜମି ଓ ଅପହୃତ ଜମି ଫେରି ପାଇବାର ଅର୍ଥାତ୍

ଜମି ମୁକ୍ତି ଓ ଗୋଟି ମୁକ୍ତି ଆନ୍ଦୋଳନରେ ଭାଗ ନେଇ ବହୁ କଟୁତିକ୍ତ ଅଭିଜ୍ଞତା ଅର୍ଜନ କରିଛି । ଜୟପରାଜୟର ସ୍ୱାଦ ବାରିଛି ଓ ସର୍ବଶ୍ରେଷ୍ଠ କଥା ହେଉଛି ସଂଗ୍ରାମୀ ଆଦିବାସୀ ସଭ୍ୟତାର ବିଭିନ୍ନ ବିଭାବ ବିଷୟରେ ଜ୍ଞାନ ହାସଲ କରି ଯୁଗପତ୍ ବିସ୍ମିତ, ଉତ୍ଫୁଲ୍ଲ ଓ ଚମକ୍ରୃତ ହୋଇଛି ।

ତେବେ ମୋତେ ଆଶ୍ଚର୍ଯ୍ୟ କରିଛି ଯେ, ଆମ ଆର୍ଯ୍ୟ ବା 'ଗଡ଼ିଆ'ସଭ୍ୟତାର ଏତେ ନିକଟରେ ଜୀବନ୍ତ ଓ ସ୍ପନ୍ଦନଶୀଳ ଏଭଳି ସୁନ୍ଦର ଏକ ସଭ୍ୟତା ସମ୍ପର୍କରେ ଆମ ମନରେ ଏତେ ନକାରାତ୍ମକ ଭାବନା କିଏ ଭରିଦେଲା, କାହିଁକି ଭରିଦେଲା ? ପ୍ରତି ପଦେ ପଦେ ଏହି ସଭ୍ୟତାକୁ ପଦାନତ ଓ ଅବଦମିତ କରି ରଖିବା ଦ୍ୱାରା ଉପନିବେଶୀ ଶୋଷଣର ଧାରାଟିକୁ ଅବାରିତ ଚଳାଇ ରଖିହେବ - ଏହି ଧାରାଣାରୁ ହିଁ କ'ଣ ଏଭଳି ଏକ ବିଚିତ୍ର ମାନସିକତା ମୁଖ୍ୟଧାରା ସଭ୍ୟତା ପୋଷଣ କରିଆସିଛି ?

ପାଖାପାଖି ୧୮୫୦ ମସିହା ପର୍ଯ୍ୟନ୍ତ ଆଦିବାସୀ ସଭ୍ୟତା ଅନ୍ତେବହୁତେ ଶୋଷଣମୁଖୀ ସାମନ୍ତବାଦୀ ଓଡ଼ିଆ ସମାଜଠାରୁ ଯଥେଷ୍ଟ ଦୂରତ୍ୱ ବଜାଇ ରଖିପାରିଥିଲା । କିନ୍ତୁ, ଏଠାକାର ବିପୁଳ ଟିମ୍ବର ସମ୍ପଦ ଓ ଖଣିପଥର ଅଞ୍ଚଳ ପ୍ରତି ବ୍ରିଟିଶ୍ ଔପନିବେଶୀମାନଙ୍କ ଶ୍ୟେନ ଦୃଷ୍ଟି ପଡ଼ିବା ପରେ ଏହି ଅଞ୍ଚଳକୁ ଉତ୍ତପ୍ତ ଛୁରା ଭଳି କେତେ ନା କେତେ ନାଲି ସଡ଼କ ଫିଟିଲା । ଟିମ୍ବର ଚାଲାଣ ସଙ୍ଗେସଙ୍ଗେ ଏଠାକାର ଜଙ୍ଗଲଜାତ ଦ୍ରବ୍ୟ, ଖଣିପଥର ଓ କୋଡ଼କିମାରୁ ଚାଷର ଉତ୍ପାଦ ବାହାରକୁ ରପ୍ତାନି ହେବାକୁ ଲାଗିଲା । ତା' ପରେ ପରେ ଏଠାକାର ମୂଲ୍ୟବାନ ଜମି ଉପରେ ଜମିସାହୁକାରମାନଙ୍କ ଦୃଷ୍ଟି ପଡ଼ିଲା । ଏତିକିବେଳେ ବ୍ରିଟିଶ୍ ପ୍ରଣୀତ ତିନୋଟି ଆଇନ୍‌ର ସାହାଯ୍ୟ ନେଇ ଏସବୁ ଜମି ଲୁଣ୍ଠିତ ହେବାକୁ ଲାଗିଲା । ପ୍ରଥମଟି ହେଉଛି **ରେଭିନିଉ ବା ଜମିଜମା** ଆଇନ୍, ଯାହା ତଥାକଥିତ ସେଟେଲ୍‌ମେଣ୍ଟ ସଙ୍ଗେ ସଙ୍ଗେ **ଆରମ୍ଭ ହୋଇଗଲା** ଓ ବିପୁଳ ଆଦିବାସୀଙ୍କୁ ଭୂମିହୀନରେ ପରିଣତ କରିଦେଲା । **ଦ୍ୱିତୀୟଟି** ହେଉଛି ଅବକାରୀ ବା ସଲ୍‌ଟୁ ଆଇନ୍, ଯାହା ବହୁସଂଖ୍ୟାର **ଆଦିବାସୀଙ୍କୁ** ଜେଲ୍‌କୁ ଘୋଷାରିଲା । ତୃତୀୟଟି ହେଉଛି ଜଙ୍ଗଲ ଆଇନ୍, ଯାହା ପୂର୍ବ ଦୁଇଟି

ଆଇନ୍ ଭଳି ଆଦିବାସୀମାନଙ୍କୁ ଦାବାରେ ପକାଇ କୋଟ୍‌କୁ ଟାଣିଲା । ଏହିସବୁ ଆଇନ୍ ଜମିହସ୍ତାନ୍ତରୀକରଣ ପ୍ରକ୍ରିୟାକୁ ଦ୍ରୁତତର କରିଦେଲା । ଏହା ବିରୁଦ୍ଧରେ ପ୍ରଚଣ୍ଡ ଆଦିବାସୀ ଅସନ୍ତୋଷ ଓ ବିକ୍ଷୋଭକୁ ଦେଖି ନିଜେ ବ୍ରିଟିଶ୍ ସରକାର ବ୍ୟସ୍ତ ହୋଇ ୧୯୧୭-୧୯୧୮ ବେଳକୁ ପ୍ରଥମ ଜମି ବିଚ୍ଛେଦୀକରଣ ନିଷେଧ ଆଇନ୍ ଆଣିଥିଲେ ।

ତେବେ ସ୍ୱାଧୀନତା ପରେ ମଧ୍ୟ ଏ ଧାରା ପୂର୍ବବତ୍ ଚାଲୁ ରହିଲା । ସେଥିସହ ମିଶିଗଲା ଆଉଏକ ପ୍ରଚଣ୍ଡ ଷଡ଼ଯନ୍ତ୍ର, ଯାହାକୁ କୁହାଯାଇପାରେ ବିକାଶର ଷଡ଼ଯନ୍ତ୍ର । ସମଗ୍ର ଭାରତରେ ଏହାଦ୍ୱାରା ପ୍ରାୟ ୬୦ଲକ୍ଷ ଆଦିବାସୀ ବିସ୍ଥାପିତ ହୋଇଥିଲା ବେଳେ ଖାଲି ଓଡ଼ିଶାରେ ସେମାନଙ୍କ ସଂଖ୍ୟା ୧୦ଲକ୍ଷରୁ ଅଧିକ ହେବ । ୧୯୫୦-୬୦ରେ ବିସ୍ଥାପନ ବିରୋଧୀ ଆଦିବାସୀ ଆନ୍ଦୋଳନ ପ୍ରଥମରୁ ହିଁ ପ୍ରଚଣ୍ଡ ଦମନର ଶିକାର ହୋଇଥିଲା । ଫଳରେ ସେମାନଙ୍କ କ୍ରୁଦ୍ଧ କଣ୍ଠସ୍ୱର ଅବଦମିତ ଓ ଅବଲୁପ୍ତ ହୋଇଯାଇଥିଲା । କିନ୍ତୁ, ସପ୍ତମଦଶକ ପରବର୍ତ୍ତୀ ବିକାଶ-ବିସ୍ଥାପନ ସମୟରେ ଆଦିବାସୀମାନଙ୍କ ସଚେତନ ଓ ଶାଣିତ ସ୍ୱରକୁ ଅର୍ଥଦାତା ବିଶ୍ୱବେଙ୍କ୍ ମଧ୍ୟ ଅସ୍ୱୀକାର କରି ନପାରି "ଜମି ବଦଳରେ ଜମି"ନୀତିର ଆଶ୍ୱାସନାମୂଳକ ପ୍ରସ୍ତାବ ପାରିତ କରିବାକୁ ବାଧ୍ୟ ହେଲା । କିନ୍ତୁ, ପ୍ରତାରକ ମୁଖ୍ୟଧାରା ସଭ୍ୟତାର ଅନ୍ୟ ସମସ୍ତ ନୀତି ଓ ଆଇନ୍ ଭଳି ଏହାଁ ମଧ୍ୟ ଥିଲା ଆଉଏକ ଚାଲ୍ । ସେଥିରେ ସକ୍ରିୟ ସହଯୋଗ ତଥା ଇନ୍ଧନ ଯୋଗାଇଥିଲେ ମୁଖ୍ୟଧାରାର କିଛି ନାମୀଦାମୀ ଏନ୍‌ଜି.ଓ. । ତା' ସହ ସରକାରୀ ଦମନଲୀଳା - ବିନା ଘୋଷଣାରେ ଗାଁଡୁବି - ଅର୍ଥାତ୍ ହୀରାକୁଦ ଓ ମାଛକୁଣ୍ଡର ରଣନୀତିକୁ ପରବର୍ତ୍ତୀ ଯୋଜନା ଚିତ୍ରକୋଣ୍ଡା, ଉପରକୋଲାବ ଓ ଇନ୍ଦ୍ରାବତୀରେ ମଧ୍ୟ ପ୍ରୟୋଗ କରାଗଲା । ଫଳରେ ଇନ୍ଦ୍ରାବତୀ ବୁଡ଼ିଅଞ୍ଚଳର ପ୍ରାୟ ୧୫୦-୬୦ଟି ଗାଁର ସମସ୍ତ ଆଦିବାସୀ ଆନ୍ଦୋଳନକୁ ଓହ୍ଲାଇ ଥିଲେ ମଧ୍ୟ ଶେଷ ପର୍ଯ୍ୟନ୍ତ ସେମାନେ ଆପଣା ଗାଁକୁ ରକ୍ଷା କରିପାରିଲେ ନାହିଁ । ସେସବୁ ଜଳମଗ୍ନ ହେଲା ।

ନବମ ଦଶକର ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ ପରବର୍ତ୍ତୀ ସମୟଟି ଆଦିବାସୀମାନଙ୍କ ପାଇଁ ଆହୁରି କଦର୍ଯ୍ୟ ଓ ନିଷ୍ଠୁର ସାବ୍ୟସ୍ତ ହୋଇଛି । କାରଣ ଏହି ସମୟ କାଳରେ ଦେଶୀବିଦେଶୀ, ବଡ଼ବଡ଼ ପୁଞ୍ଜିପତିଙ୍କ କମ୍ପାନୀମାନଙ୍କୁ ଏଠାକୁ ନିମନ୍ତ୍ରଣ କରାଯାଇଛି । ଦେଖାଇ ଦିଆଯାଇଛି ବ୍ୟାପକ ଅଞ୍ଚଳର ବିପୁଳ ପ୍ରାକୃତିକ ସମ୍ପଦ । ଆଦିବାସୀମାନଙ୍କ ସହ ବିନା ବିଚାରବିମର୍ଶ ଓ ପରାମର୍ଶରେ ସଉଦା କରାଯାଇଛି - ଗୋଟିଏ ପରେ ଗୋଟିଏ ଏମ୍.ଓ.ୟୁ. ପ୍ରସ୍ତୁତ ହୋଇଯାଇଛି । କିନ୍ତୁ ଆଦିବାସୀ ସଭ୍ୟତା ଏହାକୁ ବରଦାସ୍ତ କରିନାହିଁ । ପ୍ରତିବାଦ କରିଛି, ପ୍ରତିରୋଧ କରିଛି । ଦୁଇଟି ଧାରାରେ ଏହା ଆଜି ବି ଚାଲିଛି । କେତେକ ଜାଗାରେ ଶାନ୍ତିପୂର୍ଣ୍ଣ ଉପାୟରେ ତ ଆଉ କେତେକ ଜାଗାରେ ସଶସ୍ତ୍ର । ଆଉ ଏତିକିବେଳେ ଘୋଷଣା ହୋଇଯାଇଛି "ସବୁଜଶୀକାର" ।

ବାସ୍ତବରେ ଏହା ପରେ ପରେ ଏ କ୍ଷେତ୍ର ପାଲଟି ଯାଇଛି 'ସବୁଜ'ର ହିଁ ଶୀକାର କ୍ଷେତ୍ର । ବଣ୍ଡା, ଡିଡୋଇ ପର୍ବତକୁ ବଣ୍ଡା କରିଦିଆଯାଇଛି । ପ୍ରତିବାଦକାରୀ, ପ୍ରତିରୋଧକାରୀ ଗାଁମାନଙ୍କୁ ଶତ୍ରୁଦେଶର ଗାଁର ଲୋକଙ୍କ ଭଳି ବିବେଚନା କରି ସମଗ୍ର ଦେଶର ପୁଲିସ୍‌ବାହିନୀ, ମିଲିଟାରୀ ଓ ସଲ୍‌ୱାଜୁଡୁମ୍, ଶାନ୍ତିକମିଟି ଆଦି ଗୁଣ୍ଡାବାହିନୀକୁ ଲଗେଇ ଦିଆଯାଇଛି । ୨୦୦୪ ଜମି ବିଚ୍ଛେଦୀକରଣ ବିରୋଧୀ ଆଇନ୍‌ର ପ୍ରୟୋଗ ପାଇଁ ଲଢୁଥିବା, କାଠମାଫିଆ ବିରୋଧରେ ଯୁଝୁଥିବା, ବିସ୍ଥାପନ ବିରୋଧରେ ରାଟୁ କରୁଥିବା ସମସ୍ତ ଆଦିବାସୀଙ୍କୁ ମାଓବାଦୀ ଆଖ୍ୟା ଦେଇ ଧ୍ୱଂସକରି ମାଟିରେ ମିଶେଇ ଦେବାର ଉଦ୍ୟମ ଆଜି ବି ଚାଲିଛି । ତେବେ ଏ କଥା ମଧ୍ୟ ପ୍ରମାଣିତ ହୋଇଛି ଯେ, ଆଉ ଆଦିବାସୀ ଚେତନା ଆଉ ସ୍ତିମିତ ବା ଅବଦମିତ ହେବାକୁ ଚାହେଁନା ।

ଆଦିବାସୀ ସମାଜରେ ଥିବା ବିଭିନ୍ନ ଦ୍ୱନ୍ଦ୍ୱ, **ଶ୍ରେଣୀ** ଗଢ଼ଣ, ପ୍ରମୁଖ ଅର୍ଥନୈତିକ ବ୍ୟବସ୍ଥା, ସେଥିରେ ଦେଖାଦେଉଥିବା **ପରିବର୍ତ୍ତ**ନ ଓ ବିକାଶ ସମ୍ପର୍କରେ ଏ ଗ୍ରନ୍ଥରେ ନିର୍ଦ୍ଦିଷ୍ଟ ଭାବେ ବିଚାର କରାଯାଇନି ସତ,

ତେବେ ବିଭିନ୍ନ ସ୍ଥାନରେ ପ୍ରସଙ୍ଗକ୍ରମେ ସେସବୁ ଉଲ୍ଲିଖିତ ହୋଇଛି । ଆଉ ଗୋଟିଏ କଥା ଉଲ୍ଲେଖ କରି ଏଇ ଉପୋଦ୍‌ଘାତ ଶେଷ କରିବି । ତାହା ହେଉଛି - ଉତ୍ପାଦନ ପଦ୍ଧତିରେ ଓ ଉତ୍ପାଦନ ସମ୍ପର୍କରେ ଆଦିବାସୀ ସମାଜରେ ଦେଖା ଦେଇଥିବା ପରିବର୍ତ୍ତନ । ୧୯୫୦-୬୦ବେଳକୁ ଗୋପୀବାବୁ ଲକ୍ଷ୍ୟ କରିଥିଲେ ଯେ, ଶୀକାର, ଖାଦ୍ୟ ସଂଗ୍ରହ ଓ ଚାଷ(ଅର୍ଥାତ୍ ଚାଷ ଓ ପଶୁପାଳନ) - ଆଦିବାସୀ ଏକକାଳୀନ ଏଇ ତିନୋଟି ପଦ୍ଧତି ଭିତରେ ହିଁ ରହିଯାଇଛି । କିନ୍ତୁ, ଗତ ୫୦ବର୍ଷ ଭିତରେ ଏଥିରୁ ପ୍ରଥମ ପଦ୍ଧତିଟି ପ୍ରାୟତଃ ଲୋପ ପାଇଯାଇଛି ଏବଂ ଖାଲି ଏକ ଅନୁଷ୍ଠାନ ହୋଇ ରହିଯାଇଛି । ତା' ପଛକୁ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କମି କମି ଦଶରୁ ପାଞ୍ଚଭାଗ ଖାଦ୍ୟ ଭିତରେ ସୀମିତ ରହିଛି । ଶେଷଟି ଅର୍ଥାତ୍ ଚାଷ ଆଉ ପୂର୍ବଭଳି କୋଡ଼୍‌କିମାରୁ ଚାଷ ବା ପୋଡୁଚାଷ ହୋଇ ରହିନାହିଁ । ଦଣ୍ଡକାରଣ୍ୟ ପୁନର୍ବାସ ଯୋଜନାର ବଙ୍ଗାଳୀ ରିଫିୟୁଜିମାନେ ୧୯୮୦-୮୧ବେଳକୁ ପଶ୍ଚିମବଙ୍ଗ ସରକାରଙ୍କ ଗୁଳି-ଜଳଘେର-ଗଣହତ୍ୟା କବଳରୁ ରକ୍ଷାପାଇ ମରୀଚ ଝାମ୍ପିରୁ ତଡ଼ାଖାଇ କୋରାପୁଟ୍‌କୁ ଫେରିଆସିବା ପରେ ଏଠାରେ ସେମାନଙ୍କୁ ବଣ୍ଟା ଯାଇଥିବା ଜମିରେ ଉନ୍ନତ ପଦ୍ଧତିରେ ଚାଷ କରିବାର ଚେଷ୍ଟା ଚଳାଇଲେ । ବଙ୍ଗାଳୀ ଚାଷୀମାନଙ୍କର ଏହି ମରୀଚଝାମ୍ପି ପଳାୟନ ଓ ସେଠାରୁ ପ୍ରତ୍ୟାବର୍ତ୍ତନ ଦଣ୍ଡାକାରଣ୍ୟ ରିଫ୍ୟୁଜି ପୁନର୍ବାର ଇତିହାସର ଏକ ରୋମାଞ୍ଚକାରୀ ଅଧ୍ୟାୟ ଆଉ ମଧ୍ୟ ଆଦିବାସୀଙ୍କ ଜମି ବନ୍ଧା ଓ ଲିଜ୍‌ରେ ନେଇ ସେଥିରେ ମଧ୍ୟ ବାଦାମ, ରାଶି ଓ ପରିବାପତ୍ର ଫଳାଇବାକୁ ଲାଗିଲେ । ଫଳରେ କୃଷି ଅର୍ଥନୀତି ଧୀରେ ଧୀରେ ପ୍ରାଧାନ୍ୟ ପାଇବାକୁ ଲାଗିଲା ଓ କୃଷି ପଦ୍ଧତି ଉନ୍ନତ ହେଲା । ଏହା ମଧ୍ୟ ପାଖାପାଖି ରହୁଥିବା ଆଦିବାସୀ ସମାଜକୁ ବିପୁଳ ଭାବରେ ପ୍ରଭାବିତ କଲା । ଫଳରେ କୃଷି ଓ ପଶୁପାଳନ ଏଠାକାର ମୁଖ୍ୟ ଅର୍ଥନୀତି ପାଲଟି ଯାଇଛି । ଜଙ୍ଗଲ ସଂକୋଚନ ଓ ଏଥିରେ ପେପର୍‌ମିଲ୍‌ର ଭାଗୀଦାରୀ ସକାଶେ ଖାଦ୍ୟ ସଂଗ୍ରହ ଅର୍ଥନୀତି ମଧ୍ୟ ଶୂନ୍ୟରେ ପହଞ୍ଚ ପହଞ୍ଚ ହେଲାଣି । ପୂର୍ବରୁ ଯେଉଁମାନେ ଗୋତି ଥିଲେ ସେହି ଆଦିବାସୀମାନେ ଏବେ ପାଲଟିଛନ୍ତି

ଦାଦନ୍ । ଶୋଷକ ଜମିମାଲିକଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଏହା ଉପରେ ଆହୁରି ଅଧ୍ୟୟନ ଆବଶ୍ୟକ ।

ମୋର ଏହି ସଂକଳନଟି ଏସବୁ ସମ୍ପର୍କରେ ବିଭିନ୍ନ ସମୟରେ ମୋର ଅନୁଭବ ଓ ଅଧ୍ୟୟନକୁ ଯଥାସମ୍ଭବ ତୋଳି ଧରିଛି । ଏହାର ନାମକରଣରେ ତଥା ବିଭିନ୍ନ ପ୍ରବନ୍ଧ ପାଇଁ ବରାଦ୍ ଦେବାରେ ସାହାଯ୍ୟ କରିଥିବା ବନ୍ଧୁ ମନ୍ମଥ କୁଣ୍ଡୁ, ମନୋରଞ୍ଜନ ମହାନ୍ତି, ଦେବରଞ୍ଜନ, ପରମାନନ୍ଦ ପଟେଲ, ସୁବସ ମିଶ୍ର ଓ ରାଜେନ୍ଦ୍ର ପାଢ଼ୀ ଇତ୍ୟାଦିଙ୍କୁ ଶ୍ରଦ୍ଧାର ସହ ସ୍ମରଣ କରୁଛି । ପୁଣି ସ୍ମରଣ କରୁଛି ଏଇ କୋରାପୁଟ୍‌ରେ ମୋ ସହ କାର୍ଯ୍ୟ କରିଥିବା ଦିବଂଗତ ସାଥୀ ସମରେନ୍ଦ୍ର ନାୟକଙ୍କୁ ଓ ସୁଧାଂଶୁ ଦାଦାଙ୍କୁ । ସର୍ବୋପରି ସ୍ମରଣ କରୁଛି ହାତରେ ବାଡ଼ିଖଣ୍ଡେ ଧରି ଓ ମୁଣ୍ଡରେ ଠେକା ବାନ୍ଧି ଆଦିବାସୀମାନଙ୍କ ଭିତରେ ନିମିଷକେ ଅଦୃଶ୍ୟ ହୋଇପାରୁଥିବା ସାଥୀ ଦିବଂଗତ ପୁରୁଷୋତ୍ତମ ପାଲିଙ୍କୁ ଯିଏ ସୁଦୂର ମାଲ୍‌କାନ୍‌ଗିରିରୁ ବାଲେଶ୍ୱର ଆସି ଆଦିବାସୀମାନଙ୍କ ଭିତରେ କାମ କରିବା ପାଇଁ ମୋତେ ନିମନ୍ତ୍ରଣ ଜଣାଇଥିଲେ ଓ ସେଠାକାର କର୍ମୀମାନଙ୍କ ସହ ପରିଚିତ କରାଇଥିଲେ । ଏଥିରେ ପ୍ରକାଶିତ ଗୋଟିଏ ପ୍ରବନ୍ଧ - "ଗୋପୀବାବୁଙ୍କ ଲେଖାରେ କୋରାପୁଟ୍ ଆଦିବାସୀଙ୍କ ଅର୍ଥନୈତିକ ଜୀବନ" "ଅନ୍ଧାରି ମୂଳକ" ନାଁରେ ପୂର୍ବରୁ ରାଉରକେଲାର କଲ୍‌ଚରାଲ୍ ଏକାଡ଼େମୀ ଦ୍ୱାରା ପ୍ରକାଶିତ ହୋଇଥିଲା । ସେଥିପାଇଁ ନବପତ୍ରର ତତ୍କାଳୀନ ସମ୍ପାଦକ କୃଷ୍ଣ ମିଶ୍ରଙ୍କୁ ମଧ୍ୟ ସ୍ମରଣ କରୁଛି ।

ସର୍ବଶେଷରେ 'ଜୀବନ ସଂଗ୍ରାମ' ଟ୍ରଷ୍ଟର ସମସ୍ତ କର୍ମକର୍ତ୍ତାଙ୍କୁ ତଥା ସଭାପତି ଇଂ.ହୃଷିକେଶ୍ ସାହୁଙ୍କୁ ଓ ପ୍ରକାଶକ କାଳୀପଦ ପଣ୍ଡାଙ୍କୁ ବହିଟି ଲୋକଲୋଚନକୁ ଆଣିଥିବାରୁ ଅଶେଷ ଧନ୍ୟବାଦ ।

ମାଲ୍‌କାନ୍‌ଗିରି — **- ବିଜୟ ଉପାଧ୍ୟାୟ**

ତା.୧୨.୦୨.୨୦୧୬

"ଏଇ ଗମରା ଗନ୍ଧ, ବଳଦ ଆଉ ଗୋଟିର ଝାଳ, ସାଇତା ହୋଇଥିବା ପୁରୁଣା ଫସଲର ବାମ୍ପ, ଆଗରେ ଖତ କୁର, ଯୁଗ ଯୁଗର ଧୂଳି । କାରବାରୀ ଲୋକ ସେ, ସବୁ ମିଶି ତା'ର ଧନଦଉଲତର ସୁବାସ ।"

"ଛପର ସଡ଼ି ଯାଇଛି । କାନ୍ଥର ଉପରୁ ତଳକୁ ଚୂନପାଣି ପରି ବହି ଆସିଛି ଧାର ଧାର ସାପଘୁଅ । ଓଳି ସନ୍ଧିରେ ଲାଖିଯାଇଛି ଖଣ୍ଡ ଖଣ୍ଡ ସାପକାତି, ପବନ ହେଲେ ଚିରାକନା ପରି ଫର ଫର ହୋଇ ପଦାକୁ ଉଡ଼ି ପଳାଏ ।"

× × "ଅଗଣାରେ କୁକୁଡ଼ା, କୁକୁର ଆଉ ଅସନା ଅବର୍ଦ୍ଧା ପିଲା । ସବୁବେଳେ କାନ୍ଦଣା, ଗରିବଙ୍କ ଘରକରଣା, ଯାହାଙ୍କର ଖାଇବାକୁ ଖାଦ୍ୟ ନାହିଁ, ପିନ୍ଧିବାକୁ ଖଦି ନାହିଁ ।

*- ପରଜା, ପୃଷ୍ଠା-୧୦୩-୪*

"One day the poor will have nothing left to eat but the rich."

-- A protest placard posted by Black peoplle in U.S.

*(Newyork)*

## ଗ୍ରନ୍ଥ ଓ ଗ୍ରନ୍ଥ ରଚୟିତାଙ୍କ ସମ୍ପର୍କରେ...

'ଜୀବନ୍ତ ସଭ୍ୟତା : ସଂଘର୍ଷରେ ଆଦିବାସୀ ଜନଜୀବନ' ଗ୍ରନ୍ଥଟି ବିଜୟ ଉପାଧ୍ୟାୟଙ୍କ ବହୁ ଅନୁଧ୍ୟାନ ଓ ଅନୁଶୀଳନର ଫଳଶ୍ରୁତି । ସେ ପ୍ରାୟ ବିଗତ ୨୦ବର୍ଷରୁ ଊର୍ଦ୍ଧ୍ୱକାଳ ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀ ଅଧ୍ୟୁଷିତ ପଲ୍ଲୀଜୀବନ ସହ ଜଡ଼ିତ ରହି ସେମାନଙ୍କର ଆର୍ଥନୀତିକ, ସାଂସ୍କୃତିକ ଓ ସାମାଜିକ ଉତ୍ଥାନ କ୍ଷେତ୍ରରେ ଯେଉଁ ନିରନ୍ତର କାର୍ଯ୍ୟକରି ଆସୁଛନ୍ତି, ଫଳତଃ ସେମାନଙ୍କ ସମାଜର ଅନେକ ମହତ୍ତ୍ୱ ତଥା ସେମାନଙ୍କ ଜୀବନଯାତ୍ରାର ବିବିଧ ଦିଗକୁ ଅତି ନିକଟରୁ ଜାଣିବାର ସୁଯୋଗ ଲାଭ କରି ସେଗୁଡ଼ିକୁ ବୃହତ୍ତର ଜନସମାଜକୁ ଜଣାଇବା ଦିଗରେ ବିଭିନ୍ନ ସମୟରେ ଭିନ୍ନଭିନ୍ନ ଶୀର୍ଷକରେ ଲେଖିଥିବା ପ୍ରବନ୍ଧଗୁଡ଼ିକର ଏହା ହେଉଛି ଏକତ୍ର ସଂକଳନ । ବିଶେଷତଃ ଆଦିବାସୀମାନଙ୍କ ଜୀବନଧାରା ଉପରେ ଗବେଷଣାରତ ଲେଖକ, ଗବେଷକ ଓ ଛାତ୍ରଛାତ୍ରୀଙ୍କ ପାଇଁ ଏହା ଅନେକ ନୂତନ ଦିଗନ୍ତ ଦେଖାଇବାରେ ସହାୟକ ହେବ ।

ଆମ ସମୟର ଜଣେ ବିଶିଷ୍ଟ ପ୍ରଗତିଶୀଳ କବି ଓ ମାର୍କସ୍‌ବାଦୀ ଚିନ୍ତାଧାରାର ପ୍ରାବନ୍ଧିକ ବିଜୟ ଉପାଧ୍ୟାୟଙ୍କ ଜନ୍ମ ମାର୍ଚ୍ଚ ୩୧, ୧୯୫୦ ମସିହାରେ ଉତ୍ତରବାଲେଶ୍ୱରସ୍ଥ ବେଣାପୁରା ଗ୍ରାମରେ, ସୁବର୍ଣ୍ଣରେଖା ଯେଉଁଠି ପୂର୍ବକାଳରେ ଜଗନ୍ନାଥ ସଡ଼କ ବା

ଗ୍ରାଣ୍ଡଟ୍ରକ୍‌ରୋଡ଼ ଓ ବର୍ତ୍ତମାନର ୬୦ନଂ ଜାତୀୟ ରାଜପଥକୁ ଦୁଇଭାଗ କରିଛି । ଏହି ସୁବର୍ଣ୍ଣରେଖା ହିଁ ଶୈଶବରୁ ତାଙ୍କ ମଧ୍ୟରେ ଭରି ଦେଇଛି ଜିଜ୍ଞାସା ଓ କବିତ୍ୱ, ଅନ୍ୱେଷା ଓ ଅମଡ଼ା ମାଡ଼ିବାର ନିଶା । କବିତା ଓ ପ୍ରବନ୍ଧ କ୍ଷେତ୍ରରେ ଷଷ୍ଠଦଶକରୁ ହିଁ ସେ କଲମ ଚଳାଇ ଆସିଛନ୍ତି । ତେବେ ବେଶ୍ ବିଳମ୍ବରେ କବିଙ୍କର ପ୍ରଥମ କବିତା ସଂକଳନ 'ବସୁନ୍ଧରା ମାଟି' ୨୦୦୪ରେ ପ୍ରକାଶ ପାଇଛି । ପରେ ପରେ ପ୍ରକାଶ ପାଏ ଅନ୍ୟ ଏକ ଭିନ୍ନଧର୍ମୀ କବିତାପୁସ୍ତକ 'ଭଲପାଇବାର ପଦାବଳୀ' । ସେହିପରି ପ୍ରଥମ ପ୍ରବନ୍ଧ ପୁସ୍ତକ କୋରାପୁଟୀ ଆଦିବାସୀମାନଙ୍କ ସଂପର୍କରେ - 'ଅନ୍ଧାରି ମୂଳକ', 'ବିପ୍ଳବୀ ଟାମାଦୋରା' ଏବଂ 'ଦେଶିଆ ଜ୍ଞାନକୋଷ' ଭଳି ଏକ ଶବ୍ଦକୋଷ ।

ତାଙ୍କ ସମ୍ପାଦନାରେ ପ୍ରକାଶିତ ପୁସ୍ତକ ହେଉଛି - 'ଜୀବନ ଓ ସଂଗ୍ରାମ', 'ଓଡ଼ିଶାର ଜନଆନ୍ଦୋଳନ', 'ଓଡ଼ିଶାର ଗଣତାନ୍ତ୍ରିକ ଆନ୍ଦୋଳନ' (ଚାଷୀ, ଦଳିତ ଓ ନାରୀ), 'ଓଡ଼ିଶାର ପ୍ରଗତିଶୀଳ ସାହିତ୍ୟ ଆନ୍ଦୋଳନ ଓ ଆନ୍ଦୋଳନର ସାହିତ୍ୟ' । ଏହା ବ୍ୟତୀତ ବ୍ରଜନାଥ ରଥଙ୍କ ମିଳିତ ସମ୍ପାଦନାରେ 'ମନମୋହନ ସ୍ମୃତି ସଂଚୟନ' ତଥା କବି ରଘୁନାଥ ଦାସଙ୍କ ଉପରେ ଏକ 'ସ୍ମୃତି ସଂଚୟନ' ।

ବିଶ୍ଳେଷଣାତ୍ମକ ତଥା ଆଦିବାସୀ - ଦରଦୀ ବିଚାରବିମର୍ଶ ସମ୍ବଳିତ ପ୍ରବନ୍ଧ ଧାରାରେ ଓ ଆଦିବାସୀ ସଭ୍ୟତା ତଥା ସଂଘର୍ଷରତ ଅଣଆଦିବାସୀ ଜନଗୋଷ୍ଠୀଙ୍କ ସଂପର୍କରେ ଏହି ସଂକଳନ ଏକ ମାଇଲ୍ ଖୁଣ୍ଟ ହେବ ବୋଲି ମୁଁ ଆଶା କରେ ।

*ଶ୍ରୀ କାଳୀପଦ ପଣ୍ଡା*

*ପ୍ରକାଶକ*

# ସୂଚୀପତ୍ର

# ଆଦିବାସୀ ଗବେଷଣାର ଦୁଇ ଦିଗନ୍ତ

ଅବିଭକ୍ତ କୋରାପୁଟ୍ ଜିଲ୍ଲାର ବିଭିନ୍ନ ପ୍ରାନ୍ତରେ ଥାଇ ଆଦିବାସୀମାନଙ୍କର ଭାଷା, ସଂସ୍କୃତି ଓ ଅର୍ଥନୈତିକ ଜୀବନ ଉପରେ ଗବେଷଣାରତ ଲେଖକ, ଗବେଷକମାନଙ୍କ ଉଦ୍ଦେଶ୍ୟରେ ଏହି ପ୍ରବନ୍ଧ ପୁସ୍ତକଟି ଲେଖାଯାଇଛି ।

ସାଧାରଣତଃ ଆଦିବାସୀ ଗବେଷଣା ଦୁଇପ୍ରକାରର । ଗୋଟିଏ ହେଉଚି ଗବେଷଣା ପାଇଁ ଗବେଷଣା, ଯାହା କି ଆପାତ ନିରାପଦ ଓ ଲକ୍ଷ୍ୟହୀନ ମନେ ହେଉଥିଲେ ବି ସର୍ବଶେଷରେ ଆଦିବାସୀ ସଭ୍ୟତା ସଂସ୍କୃତି ଉପରେ ଆକ୍ରମଣ ଜାରି ରଖିଥିବା ଗୋଷ୍ଠୀଟିର ହିଁ ସେବା କରେ । ଅନ୍ୟଟି ହେଉଚି ଆଦିବାସୀମାନଙ୍କ ପ୍ରତି ଶ୍ରଦ୍ଧା ଓ ଦରଦ ନେଇ ଗବେଷଣା କରିବା, ଯାହାର ରହିଥିବ ଏକ ନିର୍ଦ୍ଦିଷ୍ଟ ଦିଶାବୋଧ । ଆଦିବାସୀମାନେ ଏଠି କେବଳ ନୃତାତ୍ତ୍ୱିକ ଅସ୍ତିତ୍ୱ ବା ଅବଲୁପ୍ତି ପଥରେ ଥିବା ଜନଗୋଷ୍ଠୀ ନୁହଁନ୍ତି । ସେମାନେ ଜୀବନସଂଗ୍ରାମରେ ବ୍ୟାପ୍ତ ଅନ୍ୟାନ୍ୟ ଶତସହସ୍ର ଶ୍ରମଜୀବୀ ଜନଗଣଙ୍କ ଭଳି ଶ୍ରମକୁ ପୁଞ୍ଜିକରି ଚଳୁଥିବା ମଣିଷ । କିନ୍ତୁ ସେମାନଙ୍କ ଆଦିମ ସରଳତା ଓ ମଣିଷ ଉପରେ ପ୍ରଚଣ୍ଡ ବିଶ୍ୱାସ ଜୀବନସଂଗ୍ରାମ ପଥରେ ବାଧକ ହୋଇ ଦେଖାଦେଇଛି, ଏହି ଦ୍ୱିତୀୟପ୍ରକାରର ଗବେଷଣା ସେମାନଙ୍କୁ ନ୍ୟାୟ ସଂଗ୍ରାମର ପଥପ୍ରଦର୍ଶନ କରିବା ସଂଗେ ସଂଗେ ସେମାନଙ୍କୁ ସଂସ୍କୃତିମନସ୍କ ଓ ସଂସ୍କୃତି ସଚେତନ କରି ସେମାନଙ୍କ ଭିତରୁ ସବୁ ପ୍ରକାରର ହୀନମନ୍ୟତାକୁ ଲୋପ କରି ଏପରି ଏକ ଆତ୍ମାଭିମାନ ଭରିଦେବା ପାଇଁ ଚେଷ୍ଟା କରିଥାଏ, ଯାହାଦ୍ୱାରା ସେମାନେ ନିଜ ସାମାଜିକ ଜୀବନକୁ ସମୃଦ୍ଧ କରି ଗଢ଼ି ପାରନ୍ତି ଏବଂ ଏକ ଦୟାଯୋଗ୍ୟ ଚିର ଦାରିଦ୍ର୍ୟ ନିପୀଡ଼ିତ ମାଗନ୍ତା ଜନଗୋଷ୍ଠୀ ରୂପେ ଉପସ୍ଥାପିତ କରାଯାଉଥିବା ଚିତ୍ରକୁ ଲିଭାଇ ଦେଇ ଏକ ଗୌରବୋଜ୍ଜ୍ୱଳ ଉନ୍ନତିମୁଖୀ ଚିତ୍ର ଆଙ୍କିଦେଇ ପାରିବାର ସମ୍ଭାବନା ରଖନ୍ତି ।

ଗବେଷଣା ପାଇଁ ଗବେଷଣା ମୁଖ୍ୟତଃ ନୃତତ୍ତ୍ୱବିଦ୍‌ମାନଙ୍କ ଆଶୀର୍ବାଦ ଲାଭ କରିଥାଏ । ଯଦି ଐତିହାସିକ ଭାବେ ଦେଖାଯାଏ, ନୃତତ୍ତ୍ୱବିଦ୍ୟା ହିଁ ଆରମ୍ଭ ହୋଇଥିଲା ତତ୍କାଳୀନ ଉପନିବେଶବାଦୀମାନଙ୍କର ସେବାପାଇଁ - ଶାସିତମାନଙ୍କ ସମ୍ପର୍କରେ ସବିଶେଷ ଜ୍ଞାନର ଆବଶ୍ୟକତା ଦୃଷ୍ଟିରୁ । ତାହା ଲାଟିନ୍ ଆମେରିକାରେ ଲୋହିତ ଭାରତୀୟମାନଙ୍କ ପ୍ରତି ପ୍ରୟୋଗ କରାଯାଇଥିଲା, କଲମ୍ବସ୍‌ବାଦୀମାନଙ୍କୁ ସାହାଯ୍ୟ କରିବା ପାଇଁ, ଆପେଚ୍(ଲୋହିତ ଭାରତୀୟ)ମାନଙ୍କ ନାୟକମାନଙ୍କୁ କିପରି ପ୍ରଲୁବ୍ଧ କରାଯିବ, ସେମାନଙ୍କ ମନରେ ନିଜର ମିଥ୍ୟା ପ୍ରତିଶ୍ରୁତି ପ୍ରତି ବିଶ୍ୱାସ ଜନ୍ମାଯାଇ ପାରିବ, ଗୋଟିଏ କଥାରେ ଏକ 'ହିଂସ୍ର' ଜନଗୋଷ୍ଠୀକୁ କିପରି ମଣ କରାଯାଇପାରିବ, ତାହା ହିଁ ଥିଲା ଲକ୍ଷ୍ୟ । ସେହିପରି ଏସିଆ ଓ ଆଫ୍ରିକାର ଆଦିବାସୀମାନଙ୍କ ପ୍ରତି ମଧ୍ୟ ସେହି ଲକ୍ଷ୍ୟ ନେଇ ଏହି ବିଦ୍ୟାର ପ୍ରୟୋଗ କରାଯାଇଛି, ସେମାନଙ୍କୁ କ୍ରୀତଦାସ କରି ବଜାରରେ ବିକ୍ରି କରାଯାଇଛି । ଖଣି ଖାଦାନ ଓ ବିଲବାଡ଼ିରେ ଗାଈଗୋରୁଙ୍କ ପରି ଖଟା ଯାଇଛି । କିନ୍ତୁ ଅପରପକ୍ଷରେ ସେହି ନୃତାତ୍ତ୍ୱିକ ଗବେଷଣା ମଧ୍ୟ ଜନ୍ମ ଦେଇଛି ବିବର୍ତ୍ତନବାଦୀ ଓ ବୈଜ୍ଞାନିକ ସମାଜବାଦୀମାନଙ୍କୁ । କାରଣ ସେମାନଙ୍କର ଲକ୍ଷ୍ୟ ହୋଇଛି ଏହି ଆଦିମ ମଣିଷ କିପରି ଆପଣଶର ସୃଜନଶୀଳ ସଭ୍ୟତା ଓ ମାନବବାଦୀ ପରମ୍ପରା ପ୍ରତି ସଚେତନ ହୋଇ ଉପନିବେଶବାଦୀମାନଙ୍କ ଆଗ୍ରାସନରୁ ରକ୍ଷା ପାଇବେ, ଶୋଷଣ, ଦମନ ଓ ପରାଧୀନତାରୁ ମୁକ୍ତି ପାଇବେ । ଶେଷରେ ମଣିଷ ରୂପେ ସମୁନ୍ନତ ହେବାଲାଗି ନିଜର ସଂସ୍କୃତିକୁ ଏକ ଅସ୍ତ୍ର ରୂପେ ବ୍ୟବହାର କରିବେ ।

ତେଣୁ ଏକ ମ୍ରିୟମାଣ ସଂସ୍କୃତିର ସ୍ୱକୀୟ ବା ବିଶେଷ ବିଭବଗୁଡ଼ିକୁ ମିଉଜିଅମ୍ କକ୍ଷର ଶୋଭା ବର୍ଦ୍ଧନ ପାଇଁ ଗୋଟାଇ ରଖିବା ଲକ୍ଷ୍ୟରେ ନୁହେଁ, କି ଦଳିତ ଶୋଷିତ ଗୋଷ୍ଠୀର ସହଜାତ କ୍ରୋଧକୁ ଟିକିଏ ପ୍ରଶମନ କରିଦେଇ ଶୋଷକ ଗୋଷ୍ଠୀ ସହ ଗୋଟିଏ ପଙ୍ଗତରେ ବସାଇବା ପାଇଁ ନୁହେଁ, ସ୍ୱାଭାବିକ ଶ୍ରଦ୍ଧା, ନିଷ୍ପାପର ଅନୁରକ୍ତି ଓ ଐତିହାସିକ କର୍ତ୍ତବ୍ୟବୋଧ ଦୃଷ୍ଟିରୁ ଆଦିବାସୀ ଭାଷା ସଂସ୍କୃତି ଉପରେ ଗବେଷଣା କରିବା ପାଇଁ ଲେଖକ ଗବେଷକଙ୍କୁ ପ୍ରୋତ୍ସାହିତ କରିବା ହେଉଚି ଏହି ଦ୍ୱିତୀୟ ପ୍ରକାର ଗବେଷଣାର ଅଭୀଷ୍ଟ ।

## ଗବେଷକର ସଂକଟ :

ଭାରତୀୟ ସମ୍ବିଧାନର ୫ମ ଓ ୬ଷ୍ଠ ସିଡ଼ିଉଲ୍‌ରେ ଆଦିବାସୀ ଜନଗୋଷ୍ଠୀ ଉପରେ ହେଉଥିବା ଶୋଷଣକୁ ପ୍ରତିହତ କରି ସେମାନଙ୍କୁ ଅର୍ଥନୈତିକ ପ୍ରଗତିପଥରେ ଆଗେଇନେବା ଲାଗି ପ୍ରଶାସକମାନଙ୍କୁ ଯେଉଁ ଅମାପ କ୍ଷମତା ଦିଆଯାଇଥିଲା ତା'ର ବ୍ୟବହାର ହୋଇଛି ଠିକ୍ ଓଲଟା ଉଦ୍ଦେଶ୍ୟରେ । ଫଳତଃ ବିକାଶ ଯୋଜନା ନାମରେ ଆଦିବାସୀ ଅଞ୍ଚଳ ସବୁରେ ଆଦିବାସୀ ବିଦେଶୀ ଚାକିରିଆ, ଠିକାଦାର ଓ ଅନୁଷ୍ଠାନମାନେ ହାଉଯାଉ ହୋଇଯାଇଛନ୍ତି । ରାଜ୍ୟ ପ୍ରଶାସନ ଏସବୁକୁ ନିୟନ୍ତ୍ରଣ ଓ ଧାରା ନିବଦ୍ଧ (Streamline) କରିବା ଦିଗରେ ସଂପୂର୍ଣ୍ଣ ବିଫଳ ହୋଇଚି । ସୁତରାଂ ଆଦିବାସୀ ହିଁ ଏ ସବୁ ବିକାଶ ଯୋଜନାର ପ୍ରଥମ ବଳି ପାଲଟି ଯାଇଛି । ଫଳରେ ଶୋଷିତଙ୍କ ସେବାରେ ନ ଲାଗି ଏଇ ଦୁଇ ଅର୍ଥାତ୍ ୫ମ ଓ ୬ଷ୍ଠ ସିଡ଼ିଉଲ୍ ଶୋଷକ ଓ ଆକ୍ରମଣକାରୀ ଗୋଷ୍ଠୀର ହିଁ ସେବା କରିଛନ୍ତି । କାରଣ ଏହି ପ୍ରଶାସକମାନେ ହେଉଛନ୍ତି ସେହି ସୁବିଧାଭୋଗୀ ଶ୍ରେଣୀର ପ୍ରତିନିଧି । ତେଣୁ ଗବେଷକମାନଙ୍କୁ ପ୍ରଥମେ ଚିନ୍ତା କରିନେବା ଦରକାର, କାହାର ବରାଦରେ ସେମାନେ ଲେଖୁଛନ୍ତି ? ନିଜ ଆତ୍ମାର ବରାଦ ନା କୌଣସି ପ୍ରଶାସକର ବରାଦ ? ଯଦି କୌଣସି ପ୍ରଶାସକର ବରାଦ, ତେବେ ସେ ପ୍ରଶାସକର ଉଦ୍ଦେଶ୍ୟ କ'ଣ ? ମୋର ଗବେଷଣା ସର୍ବଶେଷରେ ଅର୍ଥାତ୍ ବାସ୍ତବରେ କାହାର ସେବା କରିବ ? ଯେଉଁ ଆଦିବାସୀ ସହ ମିଳିମିଶି ତା'ର ବିଶ୍ୱାସ ଭାଜନ ହୋଇ ତା' ସଂସ୍କୃତିର ଗୋପନ ତଥ୍ୟ ସବୁ ମୁଁ ବାହାରକୁ ଆଣୁଚି, ତାକୁ ବଜାରରେ ବିକ୍ରି କରିବି ନା ସେଇ ଆଦିବାସୀ ସମାଜର ସେବାରେ ଲଗାଇବି ? ଅର୍ଥାତ୍ ଯେଉଁ ବିଶ୍ୱାସରେ ବିଚରା ଆଦିବାସୀଟି ମୋତେ ସାହାଯ୍ୟ କରିଛି, ସେ ବିଶ୍ୱାସରେ ମୁଁ ବିଷ ଦେବି ନା ତାକୁ ଓ ତା'ର ଗୋଷ୍ଠୀକୁ ବଞ୍ଚାଇ ରଖି ଓ ଅଭିବୃଦ୍ଧି କରି ଉପଯୁକ୍ତ ମର୍ଯ୍ୟାଦା ଦେବି, ଯେଉଁଥିରୁ ଗୋଷ୍ଠୀଗତ ଭାବେ ସେ କିଛିଟା ଉପକୃତ ହୋଇପାରିବ ?.

ପୁଣି ଆଉ ଏକ ସମସ୍ୟା ହେଉଛି, ଆମମାନଙ୍କ ଗବେଷଣାରେ ଉପଯୁକ୍ତ ବିଶ୍ଳେଷଣ ଓ ଉପସଂହାର ପଦ୍ଧତି ପ୍ରୟୋଗର ଅଭାବ । ଯାହାଫଳରେ ସେସବୁ କେବଳ ତଥ୍ୟ ସର୍ବସ୍ୱ ହୋଇ ରହିଯାଉଚି । ଅଥଚ ହେତୁବାଦୀ ଆରୋହ, ଅବରୋହ ପଦ୍ଧତି ପ୍ରୟୋଗ କରାଯାଇ ସ୍ୱାଭାବିକ ଉପସଂହାରରେ ଉପନୀତ ହୋଇପାରିଲେ ଏବଂ କାର୍ଯ୍ୟକାରଣ ସଂପର୍କର ଆଲୋକରେ ବିଶ୍ଳେଷଣ କରାଯାଇ ପାରିଲେ ପ୍ରଗତି

ତଥା ପ୍ରତିବନ୍ଧକର ଅନେକ ଅନାଲୋଚିତ ଦିଗ ଉଦ୍‌ଘାଟିତ ହୋଇପାରନ୍ତା । କୋରାପୁଟ ତଥା ଅନ୍ୟାନ୍ୟ ଅଂଚଳର ଆଦିବାସୀମାନଙ୍କ ସହ ଆମର ଘନିଷ୍ଠ ସମ୍ବନ୍ଧ, ନିଷ୍ଠାପର ବୁଝାମଣା, ଗଭୀର ଅବବୋଧ ଓ ଅତୁଟ ଶ୍ରଦ୍ଧା ଏହାଦ୍ୱାରା ଅଧିକ ବିକଶିତ ହୋଇପାରନ୍ତା ଓ ଜଣେ ଦାୟିତ୍ୱସମ୍ପନ୍ନ ଗବେଷକର କର୍ତ୍ତବ୍ୟ ପରିସରକୁ ମଧ ତାହା ଅନେକାଂଶରେ ନିର୍ଦ୍ଧାରିତ କରିପାରନ୍ତା ।

### ଆମ ଆଗରେ ଥିବା ବିଭିନ୍ନ ପ୍ରଶ୍ନ :

ସ୍ଥାନୀୟ ଜନଗଣ ବା ଆଦିବାସୀଜନଗଣଙ୍କର ଆତ୍ମ ନିୟନ୍ତ୍ରଣ ଅଧିକାର କଥା ପ୍ରଥମେ ଘୋଷଣା କରାଯାଇଥିଲା ଜାତିସଂଘ ଚିଠ । ଘୋଷଣାପତ୍ରରେ, ୧୯୪୮ ମସିହାରେ । ପରେ କିନ୍ତୁ ଏହି ଆତ୍ମନିୟନ୍ତ୍ରଣ ଅଧିକାରକୁ ସାମ୍ରାଜ୍ୟବାଦୀ ଦେଶମାନଙ୍କ ଦ୍ୱାରା ଆତ୍ମ ପରିଚାଳନା ଅଧିକାର ରୂପେ ବିଶ୍ଳେଷଣ କରାଗଲା । ସାମାଜିକ - ସାଂସ୍କୃତିକ - ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ଏହା ପ୍ରଯୁକ୍ତ ହେବା ଉଚିତ୍ ବୋଲି ଏମାନେ ଜାତିସଂଘରେ ପ୍ରସ୍ତାବ ପରେ ପ୍ରସ୍ତାବ ଆଣିଲେ । ଏ ସମ୍ପର୍କରେ ଆମ ଭାରତୀୟ ସମ୍ବିଧାନରେ ଥିବା ବିଧି ବ୍ୟବସ୍ଥା ପ୍ରଣିଧାନଯୋଗ୍ୟ ।

ସମ୍ବିଧାନର ଧାରା ୩୮ ମୁଖ୍ୟତଃ ରାଜ୍ୟମାନଙ୍କ ପାଇଁ ନିର୍ଦ୍ଦେଶମୂଳକ ରାଷ୍ଟ୍ରନୀତି ବା Directive Principles ରୂପେ ଖ୍ୟାତ । ଏହି ଧାରାରେ ବିଭିନ୍ନ ଗୋଷ୍ଠୀର ମଙ୍ଗଳବିଧାନ ପାଇଁ ଉପଯୁକ୍ତ ସାମାଜିକ ବ୍ୟବସ୍ଥା ଗଢ଼ିତୋଳିବା ସକାଶେ ଜୋର ଦିଆଯାଇଛି । ଉଦାହରଣସ୍ୱରୂପ ଧାରା ୧୯ରେ ଯେଉଁ ମୌଳିକ ଅଧିକାର ଦିଆଯାଇଚି, ସେଥିରେ ଭାରତର ଯେକୌଣସି ଜାଗାକୁ ଯାଇ ଚଳାଚଳ ଓ ବସବାସ କରିବା ପାଇଁ ସମସ୍ତଙ୍କର ଅଧିକାର ରହିଛି । କିନ୍ତୁ ସେହି ଧାରାର ଏକ ଉପଧାରାରେ ଆଦିବାସୀ ଗୋଷ୍ଠୀର ସ୍ୱାର୍ଥରକ୍ଷା ପାଇଁ ଏହା ଉପରେ କଟକଣା ଲଗେଇବା ଲାଗି ରାଜ୍ୟସରକାରମାନଙ୍କୁ ଅଧିକାର ଦିଆଯାଇଛି ।

ସମ୍ବିଧାନର ୫ମ ସିଡ୍ୟୁଲ୍ ପ୍ରତ୍ୟେକ ଆଦିବାସୀ ଅଞ୍ଚଳ ପାଇଁ ଏକ ଆଦିବାସୀ ଉପଦେଷ୍ଟାମଣ୍ଡଳୀ (council) ଗଠନ ପାଇଁ ନିର୍ଦ୍ଦେଶ ଦେଇଛି । ଏଥିରେ ୨୦ଜଣ ସଭ୍ୟ ରହିବେ । ଯାହାର ତିନି ଚତୁର୍ଥାଂଶ ହେବେ ଆଦିବାସୀ, ଏହି councilର ଉପଦେଶ କ୍ରମେ ଏଠାକାର ଆଦିବାସୀ ଜମି ହସ୍ତାନ୍ତରୀକରଣ ରୋକିବା ପାଇ, ଆଦିବାସୀ ଗୋଷ୍ଠୀ ଭିତରେ ଜମି ବଣ୍ଟନ ପାଇଁ ଏବଂ ସୁଧଖୋର ସାହୁକାରୀ ପ୍ରଥାକୁ

ରୋକିବା ପାଇଁ ଉପଯୁକ୍ତ ନିୟମ ରାଜ୍ୟପାଳଙ୍କ ଦ୍ୱାରା ପ୍ରଣୟନ କରାଯିବ । ମୋଟାମୋଟି ଭାବେ ଏହି ୫ମ ସିଡ୍ୟୁଲ୍ କେନ୍ଦ୍ରସରକାରଙ୍କ ଛତ୍ର ତଳେ ସୁରକ୍ଷା ଦେବା ସକାଶେ ଉଦ୍ଦିଷ୍ଟ ।

କିନ୍ତୁ ବାସ୍ତବ କ୍ଷେତ୍ରରେ ଏଭଳି ମଣ୍ଡଳୀ (council) ମୁଖ୍ୟତଃ କାଗଜ କଲମରେ ହିଁ ରହିଯାଇଛି । ଯଦିଓ କେବେ କେମିତି ଏମାନେ ବସନ୍ତି, ଏଠାରେ ଗୋଷ୍ଠୀସ୍ୱାର୍ଥ ଉପରେ ଉଦ୍‌ବେଗ ପ୍ରକାଶ କମ୍ ହୁଏ, କ୍ଷୁଦ୍ର ବ୍ୟକ୍ତିସ୍ୱାର୍ଥ ଉପରେ ଆଲୋଚନା କେନ୍ଦ୍ରିତ ହୁଏ । ଏପରିକି ବାସ୍ତବ କ୍ଷେତ୍ରରେ ୫ମ ସିଡ୍ୟୁଲ୍‌କୁ ଭିତ୍ତିକରି କେନ୍ଦ୍ର କୌଣସି ସମୟରେ ରାଜ୍ୟର ଆଦିବାସୀ ଗୋଷ୍ଠୀ ସମ୍ପର୍କୀୟ ଆଇନ୍‌କାନୁନ୍ ପ୍ରକଳ୍ପ ଗତ ବା କର୍ପୋରେଟୀୟ ବିସ୍ଥାପନ ଓ କ୍ରିୟାକଳାପ ଉପରେ କେବେହେଲେ ନଟକଣା ଜାରି କରେନାହିଁ । ଫଳରେ କେନ୍ଦ୍ର ଓ ଅମଲାତନ୍ତ୍ର ରାଜ୍ୟ ଅମଲାତନ୍ତ୍ର ସହ ହାତ ମିଳାଇ ଆଦିବାସୀ ଗୋଷ୍ଠୀସ୍ୱାର୍ଥକୁ ଉପେକ୍ଷା କରି ଶାସକଶ୍ରେଣୀ ଓ କମ୍ପାନୀମାନଙ୍କର ସ୍ୱାର୍ଥ ଲାଗି ଅଧିକାଂଶ ସମୟରେ କାର୍ଯ୍ୟ କରିଛନ୍ତି । କେନ୍ଦ୍ରସରକାରଙ୍କ ତରଫରୁ ଯେଉଁ ତଫସିଲ୍‌ଭୁକ୍ତ ଜାତି ଓ ଉପଜାତି କମିଶନ ଗଠନ କରାଯାଇଚି, ତା'ର ସମସ୍ତ ରିପୋର୍ଟ ଉପରେ ଧୂଳି ଜମି ଯାଇଛି । ଏହାର ୨୯ତମ ଓ ୩୦ତମ ରିପୋର୍ଟରେ କମିଶନର ବି.ଡ଼ି.ଶର୍ମା ବଡ଼ କଟୁ ମନ୍ତବ୍ୟ ଦେଇ ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ର ସଂହିତା ପ୍ରଣୟନ ପାଇଁ ଉପଦେଶ ଦେଇଥିଲେ । ତା' ଉପରେ ମଧ୍ୟ ଧୂଳି ଜମିଯାଇଚି ।

ସୁତରାଂ ସ୍ପଷ୍ଟଭାବେ ଏ କଥା ଉଲ୍ଲେଖ କରାଯାଇପାରେ ଯେ, ଆଦିବାସୀ ଗୋଷ୍ଠୀମାନଙ୍କ କ୍ଷେତ୍ରରେ ଆତ୍ମ ପରିଚାଳନା ଓ ଆତ୍ମ ନିର୍ଭରଶୀଳତା ପର୍ବର ଶୁଭାରମ୍ଭ ମଧ୍ୟ ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପରେ ହୋଇପାରି ନାହିଁ ।

ଉଦାହରଣ ସ୍ୱରୂପ - ନବଗଠିତ ଝାଡ଼ଖଣ୍ଡ ରାଜ୍ୟ ଏବଂ ଏହା ପଛରେ ଥିବା ଆଦିବାସୀ ଆନ୍ଦୋଳନର ଇତିହାସ ପ୍ରଣିଧାନଯୋଗ୍ୟ । ଏହି ରାଜ୍ୟ ପାଇଁ ଦାବି ହେଉଛି ପ୍ରାୟ ୬୦ବର୍ଷର ପୁରୁଣା । କିନ୍ତୁ ଆନ୍ଦୋଳନର ଚାପରେ ପ୍ରାୟ ୨୫ବର୍ଷ ଚୁପ୍ ରହିବା ପରେ କେନ୍ଦ୍ରସରକାର ୧୯୭୧ ମସିହାରେ ଛୋଟନାଗପୁର ଓ ସାନ୍ତାଳପ୍ରଗଣା ବିକାଶ Authority ଗଠନ କଲେ । କିନ୍ତୁ ୮ବର୍ଷ ଧରି ଏହି Authority କିଛି ହେଲେ କାର୍ଯ୍ୟ କଲାନାହିଁ । ୧୯୭୮ରେ ଏହାକୁ ୩ଟି divisionରେ ବିଭକ୍ତ କରାଗଲା । ଆଦିବାସୀ ପ୍ରତିନିଧିମାନଙ୍କୁ ନେଇ ଗଠିତ ଏହିସବୁ କମିଟି ବିଭିନ୍ନ

କାରଣ ଦର୍ଶାଇ କୋଟି କୋଟି ଟଙ୍କା ଖର୍ଚ୍ଚକରି ସାରିଲା ପରେ ଏହି ରାଜ୍ୟ ଗଠନ ଅବାସ୍ତବ ବୋଲି ରିପୋର୍ଟ ଦେଲେ । ପ୍ରତିବଦଳରେ ସେମାନେ ଯେଉଁ ସୀମିତ ଆତ୍ମନିୟନ୍ତ୍ରଣର ପ୍ରସ୍ତାବ ଦେଲେ, ତାହାକୁ ଆନ୍ଦୋଳନକାରୀମାନେ ପ୍ରତ୍ୟାଖ୍ୟାନ କଲେ । ପରେ ଆନ୍ଦୋଳନ ଚାପରେ ବାଧହୋଇ ହିଁ ଝାଡ଼ଖଣ୍ଡ ରାଜ୍ୟ ଗଠିତ ହୋଇଛି । ସେହିପରି ଛତିଶଗଡ଼ । କିନ୍ତୁ ସମସ୍ୟା ଯେପରିକୁ ସେପରି ରହିଯାଇଛି । ଆଦିବାସୀ ଗୋଷ୍ଠୀ ଭିତରେ କେବଳ କିଛି ସୁବିଧାଭୋଗୀ ଶାସକଶ୍ରେଣୀ ତିଆରି ହୋଇଛି । ସେହିପରି ଉତ୍ତରପୂର୍ବ ଭାରତରେ ବୋଡୋଲ୍ୟାଣ୍ଡ, ନାଗାଲ୍ୟାଣ୍ଡ, ମିଜୋରାମ, ଅରୁଣାଚଳ ପ୍ରଦେଶ ଏବଂ ଉତ୍ତରଭାରତରେ ଉତ୍ତରାଞ୍ଚଳ ପ୍ରଦେଶ ଏବଂ ମଧ୍ୟଭାରତର ଛତିଶଗଡ଼ ପ୍ରଦେଶ ଗଠନ କରି ସେଠାକାର ଆଦିବାସୀ ଶାସକଶ୍ରେଣୀକୁ କେବଳ ସନ୍ତୁଷ୍ଟ କରାଯାଇ ପାରିଛି । କିନ୍ତୁ ଆଦିବାସୀର ମୌଳିକ ସମସ୍ୟା ଯେଉଁଠି ଥିଲା ସେଇଠି ରହିଛି । ବରଂ ଜଗତୀକରଣ ପରବର୍ତ୍ତୀ ନବ୍ୟ ଔପନିବେଶିକ ଆକ୍ରମଣର ସ୍ଥାନୀୟ ଦଲାଲ ରୂପେ ଏହି ନବ୍ୟ ଆଦିବାସୀ ଶାସକଗୋଷ୍ଠୀ ବଡ଼ ନିଷ୍ଠାପର ଭାବେ କାମ କରିବା ଆରମ୍ଭ କରିଛନ୍ତି । ଏହାଦ୍ୱାରା ଲୋକ ଆନ୍ଦୋଳନ ମଧ୍ୟ ସାମୟିକ ଭାବେ ଶାନ୍ତ ପଡ଼ିଯାଇଛି ।

ରାଷ୍ଟ୍ରନୀତି (Directive Principles)ଧାରା ୪୬ ଅନୁସାରେ ରାଜ୍ୟମାନେ ତଫସିଲ୍‌ଭୁକ୍ତ ଜାତି ଓ ଉପଜାତିର ଜନଗଣଙ୍କ ଦୁର୍ବଳ ଅଂଶର - ଆର୍ଥନୀତିକ ଓ ଶିକ୍ଷାଗତ ସ୍ୱାର୍ଥ ହାସଲ ସକାଶେ ଯତ୍ନ ନେବେ । ବିଶେଷକରି ସେମାନଙ୍କୁ ସବୁ ପ୍ରକାରର ଅନ୍ୟାୟ ଅବିଚାର ଓ ଶୋଷଣ କବଳରୁ ସୁରକ୍ଷା ଯୋଗାଇ ଦେବେ । ୩୮ ଧାରାରେ ମଧ୍ୟ ସାମାଜିକ ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ ଯୋଗାଇ ଦେବାକଥା ବ୍ୟକ୍ତ କରାଯାଇଛି, ଯାହାଦ୍ୱାରା କି ବ୍ୟାପକ ଅସମତା ଦୂର ହୋଇପାରିବ । କିନ୍ତୁ ମାନ୍ୟବର ସୁପ୍ରିମ୍‌କୋର୍ଟ ମଧ୍ୟ ଆପଣାର ଅନେକ ରାୟରେ ଏହି ବିଷୟଟି ପ୍ରତି ଗୁରୁତ୍ୱ ନ ଦେଇ ଶାସକଶ୍ରେଣୀର ସ୍ୱାର୍ଥ ସପକ୍ଷରେ ହିଁ ରାୟ ଦେଇ ଆସିଛନ୍ତି । ସୁତରାଂ ଅମଲାତନ୍ତ୍ର ପାଖରୁ କାହିଁକି ବା କିଛି ଆଶା କରାଯିବ ? ଶାସକପାର୍ଟିମାନେ ନିର୍ବାଚନୀ ରାଜନୀତିକୁ ଆଖି ଆଗରେ ରଖି ବହୁ ତଥାକଥିତ ଜନପ୍ରିୟ ଓ ଖାଦ୍ୟ ସୁରକ୍ଷା ଯୋଜନା ଘୋଷଣା କରୁଛନ୍ତି ଏବଂ ତହିଁରେ ହଜାର ହଜାର କୋଟି ଟଙ୍କା ବରବାଦ୍ ହେଉଛି । ଉତ୍ପାଦନଶୀଳତାଠାରୁ ବିଚ୍ଛିନ୍ନ ରହିଥିବାରୁ ଏହା କେବଳ ତେଲିଆ ମୁଣ୍ଡରେ ତେଲ ବୋଳୁଛି ।

ଏହି ପରିପ୍ରେକ୍ଷୀରେ ଆଦିବାସୀର ଜମି ସମସ୍ୟା ପ୍ରସଙ୍ଗକୁ ପରୀକ୍ଷା କରାଯାଇପାରେ । ଭାରତବର୍ଷରେ ଥିବା ବହୁ ଆଇନ୍‌କାନୁନ୍ ଏବଂ ସୁପ୍ରିମ୍‌କୋର୍ଟର ରାୟ ମଧ୍ୟ ଆଦିବାସୀଗୋଷ୍ଠୀକୁ ଏକ ବ୍ୟକ୍ତି ରୂପେ ଦେଖି ଆସିଛି । ସଦ୍ୟପାରିତ ଜଙ୍ଗଲ ଅଧିକାର ଆଇନ୍ ଆଦିବାସୀମାନଙ୍କ ପ୍ରତି କରାଯାଇଥିବା ଐତିହାସିକ ତ୍ରୁଟି ପାଇଁ କ୍ଷମା ପ୍ରାର୍ଥନା ମଧ୍ୟ କରିଛି । କିନ୍ତୁ ଯେତେବେଳେ କମ୍ପାନୀ ଓ କର୍ପୋରେଟ୍ ପ୍ରସଙ୍ଗ ଆସୁଛି ସେତେବେଳେ ଆଦିବାସୀ ଗୋଷ୍ଠୀର ବ୍ୟକ୍ତିଗତ ବା ଗୋଷ୍ଠୀଗତ ଜମି ଅଧିକାର ତଥା ସମସ୍ତ ଆଇନ୍‌କାନୁନ୍‌କୁ ଜଳାଞ୍ଜଳି ଦିଆଯାଉଛି । ଏପରିକି ସାହୁକାର ମହାଜନ ଓ ବଡ଼ ଜମିମାଲିକମାନେ ସମ୍ବିଧାନର ମୌଳିକ ଅଧିକାରର ଛତ୍ରତଳେ ହଜାର ହଜାର ଏକର ଆଦିବାସୀ ଜମି ହଡ଼ପ୍ କରିପାରୁଛନ୍ତି । ଏହିସବୁ ପରସ୍ପର ବିରୋଧୀ ଆଇନ୍‌ଗତ ଓ ସାମ୍ବିଧାନିକ ବ୍ୟବସ୍ଥା ହିଁ ଆଦିବାସୀ ଜମି ହସ୍ତାନ୍ତରୀକରଣର ମୁଖ୍ୟ କାରଣ । ଏହି ବହୁ ଚର୍ଚ୍ଚିତ ସମସ୍ୟାର ନିରାକରଣ ପାଇଁ ଉପଯୁକ୍ତ ସାମ୍ବିଧାନିକ ସଂଶୋଧନ ଓ ଆଇନ୍‌ଗତ ତଥା ଆର୍ଥିକ ବ୍ୟବସ୍ଥା ନ କରି ସରକାର ନିଜର କୁଜି ଅଧିକାରୀମାନଙ୍କ ଉପରେ ଏହାର ବିଚାର ବିଶ୍ଳେଷଣ ଓ ଫଇସଲା ଭାର ଛାଡ଼ି ଦେଇଛି । ଏହାହିଁ ଜମି ହସ୍ତାନ୍ତରୀକରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରି ଆଦିବାସୀ ଓ ଅଣଆଦିବାସୀ ମଧ୍ୟରେ ସଂଘର୍ଷ ଓ ଦୂରତ୍ୱ ବଢ଼ାଇ ଚାଲିଛି ।

ଜମିଜମା ପ୍ରଶାସନ ଓ ବଣ୍ଟନ କ୍ଷେତ୍ରରେ ବିଭିନ୍ନ ପ୍ରକାରର ବିଷମ ପରିସ୍ଥିତି ଦେଖାଦେଇଛି । ପ୍ରଥମରୁ ଜମିଜମା ସର୍ଭେ କ୍ଷେତ୍ରରେ ଥିବା ବ୍ୟାପକ ଅବ୍ୟବସ୍ଥାକୁ ଛାଡ଼ି ସେଟେଲ୍‌ମେଣ୍ଟ କ୍ଷେତ୍ରରେ ଅର୍ଥର(ଲାଞ୍ଚ) ଭୂମିକା ଅଧିକାଂଶ ଆଦିବାସୀଙ୍କୁ ଚାଷ କରୁଥିବା ଜମିର ସ୍ୱତ୍ୱ ବା ପଟ୍ଟା ପ୍ରଦାନ କରିପାରିବ ନାହିଁ । ଫଳରେ ଯେ କୌଣସି ବିକାଶ ଯୋଜନାରେ ଜମି ହରଉଥିବା ଆଦିବାସୀ କିଛି ହେଲେ କ୍ଷତିପୂରଣ ପାଇ ପାରୁନାହିଁ ବା ଯାହା ପାଉଛନ୍ତି ତା' କେବଳ ଜଙ୍ଗଲବାସୀର ଭତ୍ତା ।

ବ୍ରିଟିଶ୍ ଉପନିବେଶ ସମୟରୁ ରାଜସ୍ୱ ବା ଖଜଣା କ୍ଷେତ୍ରରେ ବିଭିନ୍ନ ପ୍ରକାରର ଗଣ୍ଡଗୋଳିଆ ପ୍ରଥା ପ୍ରଚଳିତ ଥିଲା । ଯେପରିକି ଜୁହାରି (tribute), ଭାଗଜମିର ଖଜଣା (Rent), ଧାର୍ଯ୍ୟ ଖଜଣା(Revenue) ଓ ବିଭିନ୍ନ ପ୍ରକାର ଟିକସ । ଅଥଚ ସ୍ୱାଧୀନତା ପରେ ମଧ୍ୟ ଏ ସବୁକୁ ପରିବର୍ତ୍ତନ କରା ନଯାଇ ସମସ୍ତ ତଥାକଥିତ ଭୂସଂସ୍କାର ସତ୍ତ୍ୱେ ଏହି ଔପନିବେଶିକ ପ୍ରଥାକୁ ମୋଟାମୋଟି ଭାବେ କାୟମ

ରଖାଯାଇଛି । ବ୍ରିଟିଶ୍ ଅମଳରୁ ଏହିସବୁ ପ୍ରଥା ବିରୁଦ୍ଧରେ ବହୁ ଆଦିବାସୀ ସଂଘର୍ଷ ହୋଇଛି ଓ ସ୍ୱାଧୀନତା ପରେ ମଧ୍ୟ ଏହା ଆହୁରି ଉତ୍କଟ ଆନ୍ଦୋଳନର ରୂପ ନେଇଛି । ଫଳରେ କିଛି କିଛି ରାଜ୍ୟରେ ଆଇନ୍‌ଗତ ଭାବେ କିଛି କିଛି ପରିବର୍ତ୍ତନ ଅଣାଯାଇଛି । କିନ୍ତୁ ରାଜ୍ୟସରକାର ରେଭେନ୍ୟୁ ବିଭାଗ ହିଁ ନୂଆ ଜମିଦାର ସାଜି ସମସ୍ତ ଆଦିବାସୀଙ୍କୁ ତା'ର ପ୍ରଜା ବା ଭାଗଚାଷୀ ରୂପେ ବିଚାର କରିଚାଲିଛି । (ଯେକୌଣସି ପଟ୍ଟାରେ ମରାଯାଇଥିବା ଷ୍ଟାମ୍ପ ଦ୍ରଷ୍ଟବ୍ୟ) । ଏହା କେବଳ ଏକ ଜମିଜମାଗତ ସମସ୍ୟା ନୁହେଁ, ବରଂ ଏଥିସହ ଗଭୀର ରାଜନୈତିକ ଷଡ଼ଯନ୍ତ୍ର ଜଡ଼ିତ ଥିବାର ମନେହୁଏ । ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ, ୧୮୯୪ ମସିହାରେ ପ୍ରବର୍ତ୍ତିତ ବ୍ରିଟିଶ୍ ଜମି ଅଧିଗ୍ରହଣ ଆଇନ୍‌ରେ ଥିବା 'ସାଧାରଣ ଉଦ୍ଦେଶ୍ୟ' ଶବ୍ଦର ବ୍ୟାଖ୍ୟା ଏପରି କରାଯାଉଛି ଯେ, ଏହାଦ୍ୱାରା କେବଳ ସରକାର ନୁହଁନ୍ତି ଯେକୌଣସି ଶିଳ୍ପପତି କର୍ପୋରେଟ୍ ହାଉସ୍ ବା ପ୍ରଭାବଶାଳୀ ଧନାଢ଼୍ୟ ବ୍ୟକ୍ତିର ସ୍ୱାର୍ଥକୁ ସାଧାରଣ ଉଦ୍ଦେଶ୍ୟ ରୂପେ ବ୍ୟାଖ୍ୟା କରାଯାଇପାରିବ । ଫଳରେ ପୁରୁଷ ପୁରୁଷ ଧରି ଆଦିବାସୀର ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଦଖଲରେ ଥିବା ପଟ୍ଟଜମି ଅନାବାଦି ଜମି ଓ ସବୁପ୍ରକାରର ଜଙ୍ଗଲ "ଆଇନ୍‌ଗତ" ଭାବେ ତା'ଠାରୁ ବିଚ୍ଛିନ୍ନ ହୋଇପାରିବ । ଏହି ପ୍ରକ୍ରିୟା ନୂଆ ଜମି ଅଧିଗ୍ରହଣ ଆଇନ୍, ୨୦୧୩ ପାରିତ ହେବା ସତ୍ତ୍ୱେ ଏବେ ମଧ୍ୟ ଜାରି ରହିଛି । ନିୟମଗିରି ଠାରେ ଗୋଟିଏ ଥର ଗ୍ରାମସଭା ବସି ବେଦାନ୍ତ କମ୍ପାନୀକୁ ଜମି ଦେବାପାଇଁ ମନା କରିଦେବା ସତ୍ତ୍ୱେ ପୁଣିଥରେ ସରକାରୀ ସ୍ତରରେ ଗ୍ରାମସଭା ବସାଇ ଜନସେବାର ଷଡ଼ଯନ୍ତ୍ର ଚାଲିଛି ।

ଆଦିବାସୀ ଜମି ହସ୍ତାନ୍ତରୀକରଣକୁ ରୋକିବା ପାଇଁ ଅଧିକାଂଶ ରାଜ୍ୟ ଆଇନ୍ ତିଆରି କରିଛନ୍ତି । କିନ୍ତୁ ଶତକଡ଼ା ୯୯ କ୍ଷେତ୍ରରେ ଏହାକୁ ଫାଙ୍କି ଦେଇ ଅଣଆଦିବାସୀମାନେ ବିଭିନ୍ନ ଉପାୟରେ ଜମିର ମାଲିକ ହୋଇଯାଉଛନ୍ତି । ଏଭଳି ହସ୍ତାନ୍ତରୀକରଣକୁ ନିରାକରଣ କରିବା କେବଳ ଏକ ଆଇନ୍‌ଗତ ପ୍ରଶ୍ନ ନୁହେଁ । ଏଥି ସକାଶେ ବିଭିନ୍ନ କ୍ଷେତ୍ରରେ ଚାଲିଥିବା ସରକାରୀ ବେସରକାରୀ କ୍ରିୟାକଳାପର ସମୀକରଣ କରାଯିବା ଦରକାର । ଯେପରିକି ବିଭିନ୍ନ ଅଞ୍ଚଳରେ ଉତ୍ପାଦିକା ଶକ୍ତିର ସ୍ଥିତି, ମୂଲ୍ୟବୋଧରେ ଓ ରୁଚିରେ ଆସିଥିବା ପରିବର୍ତ୍ତନ, ଆଦିବାସୀ ଜନଜୀବନକୁ ପ୍ରଭାବିତ କରୁଥିବା ରେଭିନ୍ୟୁ, ଏକସାଇଜ୍ ଓ ଜଙ୍ଗଲ ଆଇନ୍‌ର ଲୋକ ବିରୋଧୀ ବିଭାବ, ଯାହାକି ଆଦିବାସୀକୁ ସାହୁକାରୀ କରଜ ଜାଲରେ ଛନ୍ଦି ଦିଏ, ପୁଞ୍ଜି ଆହରଣ ପ୍ରକ୍ରିୟା

ଅର୍ଥାତ୍ ଆଦିବାସୀ ଶୋଷଣ ପ୍ରକ୍ରିୟା ଇତ୍ୟାଦି । ବାସ୍ତବରେ ଜନଗଣଙ୍କ ସହ ଭାବର ଉପଯୁକ୍ତ ଆଦାନପ୍ରଦାନ ଓ ବିବେକୀ ବିଚାରବିମର୍ଷ ସହ ଏହି ଆଇନ୍‌ର ପ୍ରଯୁକ୍ତି ପ୍ରତି ଧ୍ୟାନ ଦେଇପାରିଲେ ଯାଇ ଏହି ବ୍ୟାପକ ଜମି ହସ୍ତାନ୍ତରୀକରଣ ପ୍ରକ୍ରିୟାକୁ ରୋକାଯାଇ ପାରନ୍ତା । କିନ୍ତୁ ବର୍ତ୍ତମାନର ଦୁର୍ନୀତିଗ୍ରସ୍ତ ପ୍ରଶାସନିକ ଓ ଆଇନ୍ ପ୍ରୟୋଗକାରୀ କର୍ତ୍ତାମାନଙ୍କର ଅବିବେକୀପଣିଆ ଏପରି ଚରମସୀମା ଛୁଇଁ ଯାଇଛି ଯେ ସେମାନଙ୍କଠାରୁ ଏହା ଆଶା କରିବା ହିଁ ବୃଥା । ଏ ଦିଗରେ ସବୁଠାରୁ ବଡ଼ ପ୍ରମାଣ ହେଉଛି ନାରାୟଣପାଟଣା ଜନଆନ୍ଦୋଳନ ।

**ଜଙ୍ଗଲ ଅଧିକାର :**

ଶହଶହ ବର୍ଷ ଧରି ଜଙ୍ଗଲ ମଧ୍ୟରେ ରହି ଆସୁଥିବା ଆଦିବାସୀମାନେ ମୁଖ୍ୟତଃ ନିରକ୍ଷର । ଅଥଚ ସେମାନଙ୍କୁ କିଛିହେଲେ ନ ଜଣେଇ ସ୍ୱାଧୀନୋତ୍ତର ଭାରତ ବା ଓଡ଼ିଶାସରକାରଙ୍କ ଗୋଟିଏ ଗେଜେଟ୍ ନୋଟିଫିକେସନ୍ ବଳରେ ବିରାଟ ବିରାଟ ଅଞ୍ଚଳକୁ ସଂରକ୍ଷିତ ବୋଲି ଘୋଷଣା କରାଗଲା । ସେସବୁ ଜଙ୍ଗଲରେ କେତୋଟି ଗାଁ ବା ବସତି ଅଛି ସେସବୁକୁ ଧ୍ୟାନ ଦିଆଗଲା ନାହିଁ । ଆଦିବାସୀଙ୍କ ବିରୋଧରେ ଏହା ହେଉଚି ପ୍ରଥମ ହିମାଳୟୀ ଅନ୍ୟାୟ । ଏ କଥା ନିକଟରେ ପ୍ରବର୍ତ୍ତିତ ଆଦିବାସୀ ଓ ଜଙ୍ଗଲବାସୀଙ୍କ ଜଙ୍ଗଲ ଅଧିକାର ଆଇନ୍‌ରେ ସରକାର ନିଜେ ମାନି ନେଇଛନ୍ତି ।

ଦ୍ୱିତୀୟରେ ବୈଜ୍ଞାନିକ ଜଙ୍ଗଲୀକରଣ ଓ ବ୍ୟବସାୟିକ ଜଙ୍ଗଲୀକରଣ ମଧ୍ୟରୁ କମ୍ପାନୀର ପ୍ରଭାବ ଓ ରେଭିନ୍ୟୁ ଦୃଷ୍ଟିରୁ ଦ୍ୱିତୀୟଟିକୁ ହିଁ ସରକାର ସବୁବେଳେ ପ୍ରାଧାନ୍ୟ ଦେଇ ଆସୁଛି । ତାହାର ପ୍ରତିଫଳ ହୋଇଛି ଅବିଭକ୍ତ କୋରାପୁଟ୍‌ର ବ୍ୟାପକ ଜମି ସେବା ଓ ଜେକେ ପେପର୍ ମିଲ୍‌ର ଜମିଦାରୀ ଓ ଆକାଶିଆ ବୃକ୍ଷଚାଷର ଅଞ୍ଚଳରେ ପରିଣତ ହୋଇଚି ।

ତୃତୀୟରେ ୧୯୮୮ର ଜାତୀୟ ଜଙ୍ଗଲ ନୀତି ଆଦିବାସୀ ମଙ୍ଗଳକୁ ନିଜର ଏକଲକ୍ଷ୍ୟ ଓ ଉଦ୍ଦେଶ୍ୟରୂପେ ମଧ୍ୟ ରଖିନାହିଁ । ଅଥଚ ୧୯୮୫ ମସିହାରେ ଜାତିସଂଘ ସ୍ପଷ୍ଟ ଭାବେ ଉଲ୍ଲେଖ କରିଛି ଯେ ଆଦିବାସୀମାନଙ୍କୁ ଜଙ୍ଗଲର ଅଂଶ ରୂପେ ଗ୍ରହଣକଲେ ଯାଇ ଜୀବମଣ୍ଡଳର ପ୍ରକୃତ ସୁରକ୍ଷା ହୋଇପାରିବ । ପରବର୍ତ୍ତୀ ସମୟ କାଳରେ ଯୁକ୍ତ ଜଙ୍ଗଲ ପରିଚାଳନା କଥା ଉଠାଇ ଆଦିବାସୀମାନଙ୍କୁ ଜଙ୍ଗଲ ଉପରେ ଅଧିକାର ଦେବା କଥା କୁହାଗଲା । କିନ୍ତୁ ବାସ୍ତବ କ୍ଷେତ୍ରରେ ଏହା ବହିରାଗତ

ଆଦିବାସୀ ଓ ସ୍ଥାନୀୟ ଆଦିବାସୀମାନଙ୍କ ଭିତରେ ଅଭୂତପୂର୍ବ ଦ୍ୱନ୍ଦ୍ୱର ବାତାବରଣ ସୃଷ୍ଟିକଲା । ଯାହାର କରୁଣ ପରିଣତି ହେଉଚି ଉମରକୋଟ ଅଂଚଳର ଆଦିବାସୀ (କନ୍ଧ ଓ ଭୋତରା ଗୋଷ୍ଠୀର) ସଂଘର୍ଷ । ଲଘୁ ବନଜାତ ଦ୍ରବ୍ୟ ଉପରେ ଆଦିବାସୀର ଅଧିକାର କଥା ଘୋଷଣା କରାଗଲା । କିନ୍ତୁ ବାସ୍ତବ କ୍ଷେତ୍ରରେ ବିକ୍ରି ସମୟରେ ବେପାରୀମାନଙ୍କ ସ୍ୱାର୍ଥକୁ ପ୍ରାଥମିକ ରୂପେ ଦେଖାଗଲା । ଫଳରେ ଆଦିବାସୀ ତା'ର ଲଘୁ ବନଜାତ ଦ୍ରବ୍ୟ(ଶାଳମଂଜି, କେନ୍ଦୁପତ୍ର, ମହୁଲ, ଟୋଲ୍, ବାଉଁଶ ଇତ୍ୟାଦି)ର ସଂଗ୍ରହ ମଜୁରି ମଧ୍ୟ ପାଇପାରିଲା ନାହିଁ । ଭାରତସରକାରଙ୍କର ବିକାଶ ନୀତିର ମୂଳଭିତ୍ତି ହେଉଚି "ଲେସେ ଫେଆର୍" ଅର୍ଥନୀତି । ଅର୍ଥାତ୍ ଯେଉଁମାନେ ପୁଞ୍ଜି ବିନିଯୋଗ କରିପାରିବେ ସେହିମାନେ ହିଁ ସକଳ ସମ୍ବଳର ମାଲିକ ପାଲଟି ପାରିବେ । ଏଣେ ଜାତିସଂଘର ମାନବିକ ଅଧିକାର ସନନ୍ଦ ଘୋଷଣା କରିଛି ଯେ, ପ୍ରତ୍ୟେକ ବ୍ୟକ୍ତିର କାର୍ଯ୍ୟ କରିବାର ଅଧିକାର ରହିଛି, ଯେକୌଣସି ନିଯୁକ୍ତି ପାଇଁ ପସନ୍ଦ କରିବାର ଅଧିକାର ରହିଛି । କାର୍ଯ୍ୟ କରିବାର ଅନୁକୂଳ ପରିବେଶ ଓ ବେକାରୀ ବିରୁଦ୍ଧରେ ସୁରକ୍ଷାର ଅଧିକାର ରହିଛି । (ଧାରା - ୨୩) ଭାରତୀୟ ସମ୍ବିଧାନର ଧାରା ୪୧ ମଧ୍ୟ ଏଇ କଥାକୁ ହୋହରାଇଚି । କିନ୍ତୁ ବାସ୍ତବ କ୍ଷେତ୍ରରେ ଅଧିକାଧିକ ପୁଂଜିବହୁଳ ଉଦ୍ୟୋଗ ବଢ଼ିଛି ଓ ସେହି ଅନୁପାତରେ ନିଯୁକ୍ତି ସୁଯୋଗ କମି କମି ଚାଲିଚି, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳମାନଙ୍କରେ ମୁଖ୍ୟତଃ କଞ୍ଚାମାଲ୍ ଲୁଟ୍‌ର ଉଦ୍ୟୋଗମାନ ସ୍ଥାପିତ ହୋଇଛି । ଫଳତଃ ଆଦିବାସୀ ତା'ର ଜୀବିକାର୍ଜନର ସାଧନ ଉପରେ ଅଧିକାର ହରାଇ ଦରିଦ୍ରରୁ ଅଧିକ ଦରିଦ୍ର ହୋଇଚି ଓ ଭୋକଉପାସରେ ମରୁଚି ବା ଲଜ୍ଜ୍ୟାଜନକ ସର୍ତ୍ତରେ ନିଜକୁ ବିକୁଚି । "ଲେସେ ଫେଆର୍" ଅର୍ଥନୀତିର ଘୋର ବିରୋଧୀ ଗାନ୍ଧିଜୀଙ୍କର ପ୍ରତ୍ୟେକ ଗ୍ରାମକୁ ଗୋଟିଏ ଗୋଟିଏ ଅର୍ଥନୈତିକ ଉଦ୍ୟୋଗ କେନ୍ଦ୍ରରେ ପରିଣତ କରିବା ସଙ୍ଗେସଙ୍ଗେ ପ୍ରଶାସନିକ ଓ ରାଜନୈତିକ କ୍ଷମତାର ବିକେନ୍ଦ୍ରୀକରଣ ପ୍ରସ୍ତାବ ଏକ ପରାହତ ସ୍ୱପ୍ନରେ ପରିଣତ ହୋଇଚି ।

ଆଦିବାସୀର ଭାଷା ଓ ସଂସ୍କୃତିର ମୂଳ ଭିତ୍ତି ହେଉଛି ଏହି ଜଙ୍ଗଲ ଓ ଜମି ଅର୍ଥନୀତି । ପ୍ରଚଣ୍ଡ ଅର୍ଥନୈତିକ ଶୋଷଣ ଓ ଅବହେଳାର ଶୀକାର ହେବା ସଙ୍ଗେସଙ୍ଗେ ଗତ ଦଶକରେ ଜଗତୀକରଣର ନୂଆ ନୂଆ ଆକ୍ରମଣର ସାମ୍ନା କରି ନପାରି ଜଣେ ଆଦିବାସୀ, ଶୋଷକ ଶ୍ରେଣୀର ଭାଷା ଓ ସଂସ୍କୃତିକୁ ଅଧିକ ଉପଯୋଗୀ ମନେକରୁଛି । ଆଉ ମଧ୍ୟ ନିଜ ଭାଷାରେ ଦକ୍ଷ ଓ ସଂସ୍କୃତିରେ ବିଜ୍ଞ ଜଣେ ଛାତ୍ର ଆଜିର ଶୋଷିତ -

ବିରୋଧୀ ଶିକ୍ଷାବ୍ୟବସ୍ଥାରେ ସଫଳତାର ସିଡ଼ି ଚଢ଼ିବା ପ୍ରାୟ ଅସମ୍ଭବ ହୋଇପଡ଼ିଛି । ସୁତରାଂ ଆଦିବାସୀ ଅଞ୍ଚଳର ଶୋଷଣ ସର୍ବସ୍ୱ ଅର୍ଥନୀତିରେ ଶିକ୍ଷିତ ଆଦିବାସୀ ଯୁବକ ଶୋଷକର ଆସନ ଲାଭ ପାଇଁ ଲାଳାୟିତ ହୋଇଉଠି ଆପଣା ଭାଷା ସଂସ୍କୃତିକୁ ଘୃଣା ଓ ଅବହେଳା କରିବା ଆରମ୍ଭ କରିଛି ।

ସେଇଥିପାଇଁ ଜଣେ ଆଦିବାସୀ ଦରଦୀ ଗବେଷକ ଆଗରେ ଅନେକ ଅନେକ ପ୍ରଶ୍ନ । କିପରି ଆଦିବାସୀ ଓ ଅଣଆଦିବାସୀମାନଙ୍କ ଭିତରେ ଥିବା ଅର୍ଥନୈତିକ ବୈଷମ୍ୟକୁ ଦୂର କରାଯାଇ ପାରିବ, କିପରି ସରଳ ଆଦିବାସୀ ସରକାରୀ ବେସରକାରୀ ଶୋଷଣ ଜାଲର ଗଣ୍ଠିଗୁଡ଼ିକୁ ଦେଖିପାରିବ ଓ ପଞ୍ଚତନ୍ତ୍ରର ମୂଷିକ ପରି ଆପଣାର ସଂସ୍କୃତିକୁ ଉପଯୋଗ କରି ସେସବୁକୁ କାଟି ବାହାରି ଆସି ପାରିବ, କିପରି ଆପଣାର ସଭ୍ୟତା, ଭାଷା ଓ ସଂସ୍କୃତିକୁ ଭଲପାଇ ଶିଖିବ ଏବଂ ସେସବୁର ପଛରେ ଥିବା ଦର୍ଶନକୁ ଠିକ୍‌ଭାବେ ହୃଦୟଙ୍ଗମ କରି ଆପଣା ସମାଜର ସମୁନ୍ନତି ପାଇଁ ଚେଷ୍ଟା କରିବ, ବିଶ୍ୱ ଦରବାରରେ ଏହାକୁ କିପରି ଉପସ୍ଥାପିତ କରାଯାଇ ପାରିବ ଇତ୍ୟାଦି ।

କଲମ୍ବସ୍‌ବାଦୀ ଓ ଉପନିବେଶବାଦୀମାନେ ବିଶ୍ୱାସ କରନ୍ତି ଯେ, ଶାସନ ମୁଖ୍ୟ ବା ମହାମାନ୍ୟ ସାର୍ବଭୌମ ଯେଉଁ ଅଧିକାର ଦେଇ ନାହାନ୍ତି, ତାହା ଅଚଳ ଓ ମୂଲ୍ୟହୀନ । ଆଇନ-ଶାସ୍ତ୍ରରେ ଏହାକୁ କୁହାଯାଏ Res nulles ! ଏହା ଏକ ଔପନିବେଶିକ ତତ୍ତ୍ୱ । କୌଣସି ଜନ ଗଣତନ୍ତ୍ର ଏଥିରେ ବିଶ୍ୱାସ କରେନି । ଗଣତନ୍ତ୍ରର ନୀତି ହେଉଚି 'Lex Loci Sitae' ଅର୍ଥାତ୍ ବିଭିନ୍ନ ସମ୍ବଳ ଉପରେ ଦୀର୍ଘକାଳ ଧରି ଜନଗଣ ଯେପରି ଭାବେ ଗୋଷ୍ଠୀର ଅଧିକାର ଜାହିର କରିଆସିଛନ୍ତି, ତାହା ହିଁ ଆଇନ୍‌ର ପ୍ରକୃତ ଉତ୍ସ । ଜାତିସଂଘର ଆଦିବାସୀ ବା 'Indigenous people' ସଂକ୍ରାନ୍ତୀୟ ଘୋଷଣାପତ୍ର ଏହି 'ଲେକ୍‌ସ୍ ଲସି ସିଟେ' ତତ୍ତ୍ୱ ଉପରେ ଗୁରୁତ୍ୱ ଦେବାକୁ କହିଛି । କିନ୍ତୁ ଭାରତବର୍ଷ ଆଜି ମଧ୍ୟ ରେସ୍ ନଲ୍‌ସ୍ ନୀତିକୁ ପ୍ରୟୋଗ କରି ସମସ୍ତ ସଂହିତା ପ୍ରଣୟନ କରୁଛି । ଏଇଥିରୁ ହିଁ ଜନ୍ମ ନେଉଚି ରାଷ୍ଟ୍ର ଓ ଆଦିବାସୀମାନଙ୍କ ମଧ୍ୟରେ ଥିବା ସକଳ ଦ୍ୱନ୍ଦ୍ୱ । ଦେଖା ଦେଉଛି ବିଦ୍ରୋହ । ରୂପ ନେଉଛି ଜନଗଣତାନ୍ତ୍ରିକ ବିପ୍ଲବର ଭ୍ରୂଣ ।

ଜଣେ ଆଦିବାସୀ ଦରଦୀ (ସେ ମାର୍କ୍ସବାଦୀ ହୋଇପାରେ କି ବି.ଡ଼ି.ଶର୍ମାଙ୍କ ଭଳି ମାନବବାଦୀ) ଗବେଷକ ଜାତିସଂଘ ଦ୍ୱାରା ଘୋଷିତ ଏହି Lex Loci Sitae

ତତ୍ତ୍ୱରେ ହିଁ ବିଶ୍ୱାସ କରେ । ସୁତରାଂ ଏହାକୁ ଭିତ୍ତିକରି ଆଦିବାସୀ ସଂକ୍ରାନ୍ତୀୟ ଆଇନ୍‌ମାନ ପ୍ରଣୟନ ଉପରେ ଏମାନେ ଗୁରୁତ୍ୱ ଦିଅନ୍ତି । ସରକାରୀ ପ୍ରୋତ୍ସାହନରେ କେବଳ ମଣ୍ଡେଇ, ପରବ, ଚଇତି ଓ ମହୋତ୍ସବ ପାଳନ କରିଦେଲେ ତାହା ଖାଲି ଧର୍ମକୁ ଆଖିଠାର ନୁହେଁ, ଅପମାନଜନକ ମଧ୍ୟ ହେବ । ଦେଖିବାକୁ ପଡ଼ିବ କିପରି ଦାଦନ ନାଁରେ ମଣିଷ ବିକ୍ରି ଓ ନାରୀ ବ୍ୟବସାୟ ବନ୍ଦ ହୋଇପାରିବ, ଶିଶୁ ମୃତ୍ୟୁ ଓ ଅନାହାର ମୃତ୍ୟୁକୁ ବନ୍ଦ କରାଯାଇ ପାରିବ । ଶିଳ୍ପ କାରଖାନା, ଖଣି ତଥା ଅନ୍ୟାନ୍ୟ ପ୍ରକଳ୍ପ ଓ ଜଳସେଚନ ନାଁରେ ଚାଲିଥିବା ଆଦିବାସୀ ଉଦ୍‌ବାସ୍ତୁକରଣ ପ୍ରକ୍ରିୟାକୁ ବନ୍ଦ କରାଯାଇ ପାରିବ - ଇତ୍ୟାଦି ।

ଏସବୁ ନିଶ୍ଚିତଭାବେ ଆଦିବାସୀ ଦରଦୀ ଗବେଷକର ଆନୁସଙ୍ଗିକ କାର୍ଯ୍ୟ । ଏହା ନ କରିପାରିଲେ ଆମେ ଠିକ୍‌ଭାବେ ଗୋଷ୍ଠୀଜୀବନ ସହ ସଂହତି ସ୍ଥାପନ କରିପାରିବୁ ନାହିଁ । ସୁତରାଂ ଗୋଷ୍ଠୀମାନସ ଓ ଆତ୍ମାକୁ ଛୁଇଁ ପାରିବୁ ନାହିଁ । ଫଳରେ ଗବେଷଣା ହୋଇଯିବ ନିଷ୍ପ୍ରାଣ । ନିଷ୍ଠୁର ଭାବେ ନୃତାତ୍ତ୍ୱିକ ।



# ଆଦିବାସୀ ଲୋକସଂସ୍କୃତିରେ ସଂକଟ

ପ୍ରତ୍ୟେକ ଅନୁସନ୍ଧାନ ପଛରେ ଏକ ଦିଶାବୋଧ ଥାଏ । ଏହି ଦିଶାବୋଧ ନିର୍ଦ୍ଧାରିତ ହୋଇଥାଏ ଜଣକର ଆଭିମୁଖ୍ୟକୁ ଭିତ୍ତିକରି । ତୁମେ ଓ ମୁଁ, ଆମେ ଦୁହେଁ ଆଦିବାସୀଙ୍କ ଭିତରେ କାମ କରୁଛୁ । ମାଲକାନ୍‌ଗିରିର ଜିଲ୍ଲାପାଳ ବି କରୁଛନ୍ତି । ବିରଳ ଜୀବଜନ୍ତୁମାନଙ୍କୁ ଜାତୀୟ ଉଦ୍ୟାନରେ ସହି ସମ୍ଭାଳି ସଂରକ୍ଷିତ କରି ରଖିବା ଭଳି ବିରଳ ଆଦିବାସୀ ଜନଗୋଷ୍ଠୀଙ୍କୁ ସହି ସମ୍ଭାଳି ସଂରକ୍ଷିତ କରି ରଖିବାର ପ୍ରସ୍ତାବ ଦେଇଥିବା ଭେରିଏର୍ ଏଲ୍‌ଉଇନ୍ ମଧ୍ୟ ଆଦିବାସୀଙ୍କ ଭିତରେ କାମ କରୁଥିଲେ । ଏ ସମସ୍ତଙ୍କ ଦିଶାବୋଧ ଅଲଗା ଅଲଗା ହେବାକୁ ବାଧ୍ୟ । କାରଣ ଏ ସମସ୍ତଙ୍କର ଆଭିମୁଖ୍ୟ ହିଁ ଅଲଗା ।

ପ୍ରଥମରୁ ଏ ସବୁ କହି ରଖିବାର କାରଣ ହେଉଛି ଔପନିବେଶିକ ଓ ସାମ୍ରାଜ୍ୟବାଦୀ ଆଭିମୁଖ୍ୟ ତଥା ଦିଶାବୋଧଠାରୁ ସମ୍ପୂର୍ଣ୍ଣ ଅଲଗା ଏବଂ ବିରୋଧାତ୍ମକ ଏକ ଦିଶାବୋଧ ନେଇ ମୁଁ ଏଇ ଅନୁସନ୍ଧାନ କାର୍ଯ୍ୟ କରିଛି । କାରଣ ଆଦିବାସୀମାନେ ସମସ୍ତ ପ୍ରକାର ଶୋଷଣ, ଦମନ ଓ ନିର୍ଯାତନାରୁ ମୁକ୍ତହେବା ଦରକାର, ଏହି ଆଭିମୁଖ୍ୟ ହିଁ ହେଉଛି ମୋର ଦିଶାବୋଧର ନିର୍ଣ୍ଣାୟକ - ସେମାନଙ୍କୁ ପ୍ରାଣୀ ଉଦ୍ୟାନରେ ଭିତରକନିକାର କୁମ୍ଭୀର ବା ସୁନ୍ଦରବନର ମହାବଳବାଘ ଭଳିଆ ସଂରକ୍ଷିତ କରି ରଖିବାର ନୃତାତ୍ତ୍ୱିକ ଉଦ୍ଦେଶ୍ୟ ନେଇ ସେମାନଙ୍କ "ଲୋକ ସଂସ୍କୃତି"ର ସ୍ତବଗାନ କରିବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଭାବେ ଆଦିବାସୀମାନେ ନିର୍ମାଣ କରିପାରିଛନ୍ତି ନିଜସ୍ୱ ଏକ ସଭ୍ୟତା, ଯାହା ବହୁଗୁଣରେ ଆମ ସଭ୍ୟତାଠାରୁ ସମୃଦ୍ଧ ଓ ମହୀୟାନ୍ । ତେଣୁ ଆଦିବାସୀ ଭାଷା ଓ ସଂସ୍କୃତି କ୍ଷେତ୍ରରେ ସମାଜତାତ୍ତ୍ୱିକ ବା ନୃତାତ୍ତ୍ୱିକ ଗବେଷଣା କରୁଥିବା ବନ୍ଧୁମାନଙ୍କୁ ହୁଏତ ମୋର ଏ ଉପସ୍ଥାପନା ନିରାଶ କରିବ । ସେଥିପାଇଁ କ୍ଷମା ଦେବେ ।

୧. ଆଦିବାସୀର ସଂସ୍କୃତି ଥିଲା ଏକ ସ୍ୱୟଂ ସମ୍ପୂର୍ଣ୍ଣ ଅର୍ଥନୀତି ଉପରେ ଆଶ୍ରିତ ଏବଂ ଏହି ଅର୍ଥନୀତି ଥିଲା ମୂଳତଃ ଶୀକାର ଓ ଖାଦ୍ୟ ସଂଗ୍ରହ ଜଙ୍ଗଲ ଅର୍ଥନୀତି । ପରେ ହେଲା ଜଙ୍ଗଲ ଓ ଜମି ଅର୍ଥନୀତି । କିନ୍ତୁ ଗତ ପ୍ରାୟ ୧୫୦ବର୍ଷ ଧରି ବ୍ରିଟିଶ୍ ଭାରତରୁ ଏଯାବତ୍ - ୧୮୬୫ର ପ୍ରଥମ ଜମିଜମା ସଂକ୍ରାନ୍ତୀୟ ଆଇନ୍, ଜଙ୍ଗଲ ଆଇନ୍ ଓ ଏଜେନ୍ସୀ ଆଇନ୍‌ଠାରୁ ଆରମ୍ଭକରି ଆଦିବାସୀ ଜମି ହସ୍ତାନ୍ତରୀକରଣ ନିରୋଧ ଆଇନ୍ ପର୍ଯ୍ୟନ୍ତ - ଧୀରେ ଧୀରେ ଭାରତୀୟ ରାଷ୍ଟ୍ର ଆଦିବାସୀର ସ୍ୱୟଂ ସମ୍ପୂର୍ଣ୍ଣ ଅର୍ଥନୀତି ଜଗତରେ ଦଖଲ ଦେଇଛି ଓ ପ୍ରବେଶ କରିଛି - ଛଡ଼ାଇ ନେବାକୁ ଚେଷ୍ଟା କରିଛି ଜମି ଓ ଜଙ୍ଗଲ ଉପରେ ଥିବା ତା'ର ପ୍ରକୃତି ଓ ପରମ୍ପରା ସ୍ୱୀକୃତ ଅଧିକାର ।

୨. ଅଗମ୍ୟ ଆଦିବାସୀ ଅଞ୍ଚଳମାନଙ୍କୁ ବ୍ରିଟିଶ୍ ଯେତେବେଳେ ପ୍ରବେଶ କରିଛି, ତା'ର ଦୃଷ୍ଟିଭଙ୍ଗୀରେ ରହିଛି କେବଳ ଔପନିବେଶିକ ଶୋଷଣକାରୀ ଓ ଲୁଟ୍‌କାରୀର ଉଦ୍ଦେଶ୍ୟ । ଆଦିବାସୀ ଜନଗୋଷ୍ଠୀ, ଜନଜୀବନ ଓ ସଂସ୍କୃତି ପ୍ରତି ତା'ର ସମ୍ମାନ ନ ଥିଲା କି ସମ୍ଭ୍ରମବୋଧ ନଥିଲା । ଥିଲା ଉପନିବେଶୀୟ ଘୃଣା ଓ ଉପେକ୍ଷା । ଯାହାକିଛି ସାଂସ୍କୃତିକ ଅଧ୍ୟୟନ ସେମାନେ କରୁଥିଲେ ତା' କେବଳ ପ୍ରାଶାସନିକ କୁଶଳତା ହାସଲ ପାଇଁ, କାରଣ ମିଥ୍ୟା ଓ ଛଳନା କରିବା ପାଇଁ ମଧ୍ୟ କିଛିଟା ସର୍ବନିମ୍ନ ସାଂସ୍କୃତିକ ଜ୍ଞାନ ଦରକାର, ଯାହା ବଳରେ ଶୋଷିତ ଲୋକଙ୍କ ସହ ଶୋଷଣକାରୀ ଗୋଷ୍ଠୀର ଭାବ ବିନିମୟ ହୋଇପାରିବ ।

୧୯୪୭ ସ୍ୱାଧୀନତା ପରେ ବା ଅଧିକ ଭାବେ କହିଲେ ନିଜର ଚିହ୍ନା ଦଲାଲମାନଙ୍କ ହାତକୁ କ୍ଷମତା ହସ୍ତାନ୍ତର ପରେ ଯେଉଁ ନୂଆ ଶାସକଗୋଷ୍ଠୀ "ଗଣତନ୍ତ୍ର"ର ବାନା ଧରି ମାଟିକୁ ଆସିଲେ, ସେମାନେ ମଧ୍ୟ ସେହି ପୁରୁଣା ଶାସନ ପଦ୍ଧତି ଓ ଔପନିବେଶିକ ଶୋଷଣଧାରାକୁ ବଜାୟ ରଖିଲେ । ଆଇନ୍‌କାନୁନ୍, ଦୃଷ୍ଟିଭଙ୍ଗୀ, ଛୋଟଛୋଟ ସଂସ୍କୃତି ଗୋଷ୍ଠୀକୁ ଗ୍ରାସ୍ କରିବାର ଔପନିବେଶିକ ପ୍ରବଣତା - ସବୁ ସେମିତି ରହିଲା ।

୩. ବ୍ରିଟିଶ୍ ଅମଳରେ ବି ଆଦିବାସୀମାନେ ଯେତେ ଜମି ଆବାଦ କରୁଥିଲେ, ସେ ସମସ୍ତ ଅଣଆଦିବାସୀ ଦିକୁ ବା ସାହୁକାରମାନେ ଗ୍ରାସ କରି ନେଉଥିଲେ । ଏଥିପାଇଁ ବିଭିନ୍ନ ରୂପର ଶୋଷଣ ପ୍ରଥା ସରକାରୀ ଓ ଆଇନ୍‌ଗତ ସ୍ୱୀକୃତି ପାଇଥିଲା । ଫଳରେ ୧୯୧୮ ବେଳକୁ ତତ୍କାଳୀନ ମାଡ୍ରାସ୍ ପ୍ରଦେଶ ଅଧୀନରେ ଥିବା କୋରାପୁଟ -

ଗଞ୍ଜାମ ଏଜେନ୍‌ସି ଅଞ୍ଚଳର ପ୍ରାୟ ୮୦ଭାଗ ଜମି ଦିକୁମାନଙ୍କ ହାତକୁ ଚାଲିଯାଇଥିଲା । ଆଦିବାସୀ ଅଞ୍ଚଳମାନଙ୍କରେ ଏଥିପାଇଁ କ୍ରମାଗତ ଅସନ୍ତୋଷର ବହ୍ନି ଜଳି ଉଠୁଥିଲା - ପ୍ରାୟ ପ୍ରତି ଦଶବର୍ଷରେ ଗୋଟିଏ ବଡ଼ ଧରଣର ଫିତୁରି ବା ସଶସ୍ତ୍ର ଆନ୍ଦୋଳନ ଦେଖା ଦେଉଥିଲା । ଛୋଟବଡ଼ ଆଦିବାସୀ ବିଦ୍ରୋହ ପ୍ରାୟ ସବୁବେଳେ ଲାଗି ରହିଥିଲା (ଯଦିଓ ଏହା ଥିଲା ଖଣ୍ଡିତ) । ଏହାକୁ ଶାନ୍ତ କରିବା ପାଇଁ ଓ ଆଦିବାସୀମାନଙ୍କ ପ୍ରତି ନିଜର ଆଇନ୍‌ଗତ ଓ ପ୍ରଶାସନିକ ଦରଦ ଦେଖାଇବା ପାଇଁ ଔପନିବେଶିକ ବ୍ରିଟିଶ୍ ଶାସକମାନେ ପ୍ରଥମ ଆଦିବାସୀ ଜମି ହସ୍ତାନ୍ତର ନିଷେଧ ଆଇନ୍ ସେହି ୧୯୧୮ରେ ଆଣିଥିଲେ । କିନ୍ତୁ ଆଦିବାସୀ ହାତକୁ ପୁରୁଣା ଜମି ଫେରି ନଥିଲା । ନୂଆ ଜମି ଖୋଜି ଖୋଜି ସେ ଅଧିକରୁ ଅଧିକ ପୋଡୁଚାଷ କଲା । ଶାସକଶ୍ରେଣୀ ମଧ୍ୟ ଏଥିପାଇଁ ତାକୁ ପ୍ରୋତ୍ସାହିତ କଲେ - କାରଣ ଜଙ୍ଗଲ ମାରି ପୋଡୁ ନ କଲେ ଏମାନେ ଯେ ଦିକୁମାନ୍‌ଙ୍କର ଜମି ଛଡ଼େଇ ନେବେ । ପ୍ରଶାସନ ମଧ୍ୟ ଏହି କାର୍ଯ୍ୟ ପ୍ରତି ଆଖି ବୁଜିଦେଇ ସେମାନଙ୍କୁ ଦୁଇବାଟେ ଶୋଷଣ କରିବାର ପ୍ରଥା ଆରମ୍ଭକଲେ । ଦିକୁ ବା ସାହୁକାରମାନଙ୍କର ଶୋଷଣ ଏବଂ ପୋଡୁଚାଷ କରିବା ଅଭିଯୋଗ ଫଳରେ ଏକ୍‌ସାଇଜ - ରେଭେନ୍ୟୁ - ଫରେଷ୍ଟ - ପୁଲିସ୍ କର୍ମଚାରୀମାନଙ୍କ ଜୁଲମ୍ ଓ ମାମଲା ଜନିତ ଶୋଷଣ ।

୪. ପରେ ପରେ ଶୋଷକଶ୍ରେଣୀର ସଂଖ୍ୟା ବଢ଼ିବାକୁ ଲାଗିଲା । ପ୍ରାଶାସନିକ ଗୋଷ୍ଠୀ ଓ ଅମଲାତାନ୍ତ୍ରିକ ସାହୁକାର ଶ୍ରେଣୀ ସାଙ୍ଗକୁ ଦେଖାଦେଲେ ବଡ଼ବଡ଼ କମର୍ସିଆଲ୍ ହାଉସ୍ (Commercial House) ଶିଳ୍ପପତି ଓ ପୁଞ୍ଜିପତି ଶ୍ରେଣୀ । ଏପରିକି ରାଷ୍ଟ୍ରୀୟ ପୁଞ୍ଜି ମଧ୍ୟ ଏ କ୍ଷେତ୍ରରେ ପଛରେ ପଡ଼ିଲାନି । ସିଂଘାଣିଆ, ବିରଳା, ଥାପାର, ବଂଶୀ ପଣ୍ଡାଙ୍କ ପଛକୁ ଦେଖାଦେଲେ ମିଗ୍(MIG), ନାଲ୍‌କୋ(NALCO) ବେଦାନ୍ତ, ଉତ୍କଳ ଆଲୁମିନା ଓ ବିଭିନ୍ନ ବୃହତ୍ ନଦୀବନ୍ଧ ବିଦ୍ୟୁତ୍ ପ୍ରକଳ୍ପ । ଏମାନଙ୍କୁ ବହୁ ପରିମାଣର ଜମି ଦରକାର ପଡ଼ିଲା - ନିଜର ବେପାର ପାଇଁ, କଞ୍ଚାମାଲ ପାଇଁ ଶିଳ୍ପର ପ୍ରସାର ପାଇଁ ।" ବୁଡ଼ି ଅଞ୍ଚଳ ପାଇଁ ବିଦ୍ୟୁତ୍ ଉତ୍ପାଦନ ପାଇଁ । ଏଥିପାଇଁ ଲକ୍ଷଲକ୍ଷ ହେକ୍ଟର ଜଙ୍ଗଲ, ଜମି ଓ ଗାଁଗଣ୍ଡା ଉଜେଇଁ ଦିଆଗଲା । ଅଳ୍ପ କେଇଜଣଙ୍କ ମୁନାଫାର ବିକାଶ ପାଇଁ ହଜାର ହଜାର ଆଦିବାସୀ ପରିବାର ବଳି ପଡ଼ିଲେ । ଗୋଟିଏ ଗୋଟିଏ ଗୋଷ୍ଠୀ, ସଂସ୍କୃତି ଓ ଜନପଦ ବଳି ପଡ଼ିଗଲା । ଦିକୁମାନଙ୍କ ପଛରେ ରାଷ୍ଟ୍ର ଓ ରାଷ୍ଟ୍ରର କାନୁନ୍ ଛିଡ଼ାହେଲା - ସମ୍ବିଧାନ ଛିଡ଼ା ହେଲା । ଏଇଠି ଗୋଟିଏ କଥା କେବଳ ସୂଚାଇ ଦେଲେ ଚଳିବ ଯେ ଅବିଭକ୍ତ କୋରାପୁଟ୍‌ରେ ବୃହତ୍ ନଦୀଜଳ ପ୍ରକଳ୍ପ

୪ଟି । ମାଛକୁଣ୍ଡ - ଜୋଲାପୁଟ, ବାଲିମେଳା-ଚିତ୍ରକୋଣ୍ଡା, ଉପରକୋଲାବ ଓ ଉପର ଇନ୍ଦ୍ରାବତୀ । ଏଥିରୁ ପ୍ରତ୍ୟେକଟିରେ ପ୍ରାୟ ହାରାହାରି ୨୦୦ ଗାଁ ଓ ଏକଲକ୍ଷ ହେକ୍ଟର ଜଙ୍ଗଲ ଓ ଜମି ପାଣିରେ ବୁଡ଼ିଛି । ବୁଡ଼ି ଅଞ୍ଚଳର ବିସ୍ଥାପିତ ଲୋକେ(ପ୍ରାୟ ୪ଲକ୍ଷ) ଏଠି ସେଠି ନମ୍ବରଯୁକ୍ତ କଲୋନୀର ଘର ବାନ୍ଧି ରହିଛନ୍ତି । କେବଳ ମାଛକୁଣ୍ଡ - କୋରାପୁଟ ପ୍ରକଳ୍ପରେ ମାଛକୁଣ୍ଡ ଓ ପାତାଳ ନଦୀବନ୍ଧରେ ଛୋଟବଡ଼ ୪୫୦ଗାଁ ଉଚ୍ଛେଦ ହୋଇଛି ବୋଲି ଲୋକମୁଖରୁ ଶୁଣାଯାଏ । ପରିଚିତିହୀନତାର ଦୁଃଖ, କ୍ଷୋଭ ଓ ଅପମାନରେ ସେମାନେ ଏବେବି ମୁହ୍ୟମାଣ ।

୫. ଆଦିବାସୀମାନେ ପୁଣି ପଛେଇ ଗଲେ ଗଭୀର ବଣକୁ । ଷଷ୍ଠ ଓ ସପ୍ତମ ଦଶକ ବେଳକୁ ଉତ୍ତର ସ୍ୱାଧୀନତା କାଳର ନବ୍ୟ ଧନୀକଶ୍ରେଣୀ ଉଦ୍ଭବ ହୋଇସାରିଲେଣି । ସେମାନେ ସରକାରୀ ସଂରକ୍ଷଣ ବ୍ୟବସ୍ଥାର ମୁନାଫା ଉଠାଇଥିବା କିଛି ସୁବିଧାବାଦୀ ଆଦିବାସୀ(ନିର୍ବାଚନୀ ରାଜନୀତି ଜରିଆରେ ସାଂସଦ ହେବାର ଫାଇଦା ଉଠାଇ ହେଉ ବା ରାଷ୍ଟ୍ର ବଜେଟ୍ ଲୁଟ୍‌କରି ହେଉ ବା ଠିକାଦାରୀ କାଠ ବ୍ୟବସାୟ ଜରିଆରେ ହେଉ) ତଥା ଅଣଆଦିବାସୀ ବ୍ୟବସାୟୀ । ଏମାନଙ୍କ ଭିତରେ ଅନେକ ଅଛନ୍ତି ଭାଗ୍ୟ ଅନ୍ୱେଷଣରେ ସମତଳ ଅଞ୍ଚଳରୁ ଆସିଥିବା ବେଶ୍ କିଛି ତଥାକଥିତ ଅଭାଗା - ଯେଉଁମାନଙ୍କୁ ସେଠାକାର ସମାଜ ଅଚଳ ଦୋଅଣି କହି ଫୋପାଡ଼ି ଦେଇଥିଲା । ସେମାନେ କିନ୍ତୁ ଏଠାକାର ଆଦିବାସୀମାନଙ୍କର ନିଷ୍କପଟତା, ଧର୍ମବିଶ୍ୱାସ ଓ ପ୍ରଚଣ୍ଡ ଭଲପଣିଆର ସୁଯୋଗ ନେଇ ଶହଶହ ଏକର ଜମିର ମାଲିକ ବନି ଯାଇଛନ୍ତି । ଦେଶିଆ ଭାଷାକୁ ନିଜର ଭାଷା କରିନେଇ ସାହୁକାର ବା ମହାଜନ ବନିଯାଇ ଆଦିବାସୀ ଝିଅବୋହୂଙ୍କୁ ରକ୍ଷିତା କରିଦେଇ ନିଜର ଅପ୍ରତିଦ୍ୱନ୍ଦ୍ୱୀ ଶାସନ ଓ ଶୋଷଣ ଚଳାଇଛନ୍ତି । ଅବିଭକ୍ତ କୋରାପୁଟ ଜିଲ୍ଲାର ଉମରକୋଟଠାରୁ ମୋଟୁ, ରାମଗିରିଠାରୁ ପାପଡ଼ାହାଣ୍ଡି, ଗୁଣୁପୁରଠାରୁ କୋରକଣ୍ଡା ସବୁଆଡ଼େ ଏଇ ଦୃଶ୍ୟ - ଏଇ କାହାଣୀର ନାୟକମାନେ ହାଉଯାଉ ।

୬. ୭ମ-୮ମ ଦଶକର ସର୍ବଶେଷ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ଘଟଣା ହେଉଚି ବାଙ୍ଗଲାଦେଶୀ ରିଫ୍ୟୁଜିମାନଙ୍କର କଲୋନୀ ସ୍ଥାପନ ପାଇଁ କେନ୍ଦ୍ରସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ଦଣ୍ଡକାରଣ୍ୟ ଯୋଜନା । ଏହି ଯୋଜନା ଅବିଭକ୍ତ କୋରାପୁଟ୍‌ର ମାଲ୍‌କାନଗିରି ଓ ନବରଙ୍ଗପୁର ଜିଲ୍ଲାରେ ପ୍ରାୟ ୨୦୦ଟି ଗାଁ ବସାଇଛି - ଗୋଟିଏ ଗାଁର ପ୍ରତି ପରିବାରକୁ ହାରାହାରି ୫ଏକର ଜମି ଦିଆଯାଇଚି - (ସାଢ଼େଛଅରୁ ତିନିଏକର

ମଧ୍ୟରେ) ତା' ସହ ଦିଆଯାଇଛି ବର୍ଷକର ଚଳିବା ଖର୍ଚ୍ଚ ଓ କୃଷି ସରଞ୍ଜାମ । ତା' ସାଙ୍ଗକୁ ବିହନ, ସାର ଓ ଔଷଧ । ଏହିଭଳି ଆଦିବାସୀଙ୍କ ଦଖଲରେ ଥିବା ବିଭିନ୍ନ କିସମର ଜମି ତଥା ଜଙ୍ଗଲ ଜମି ଆବାଦ କରି ପ୍ରାୟ ୫୦,୦୦୦ଏକର ଜମି ରିଫ୍ୟୁଜିମାନଙ୍କୁ ଦିଆଯାଇଛି । ଆଗୁଆ ସାମନ୍ତବାଦୀ ଅର୍ଥନୀତି ଭିତରୁ ଆସି ହଠାତ୍ ଶିକାର, ପଶୁପାଳନ ଓ ଖାଦ୍ୟ ସଂଗ୍ରହ ଅର୍ଥନୀତି ଉପରେ ମୁଖ୍ୟତଃ ନିର୍ଭର କରୁଥିବା ଓ କୋଡ଼୍କି ମାରୁ କୃଷି ପଦ୍ଧତିରେ ଅଟକି ରହିଥିବା ଏକ ଆଦିବାସୀ ଗୋଷ୍ଠୀ ମଧ୍ୟରେ ଅବସ୍ଥାପିତ ହେବା ଫଳରେ ଏମାନେ ମଧ୍ୟବିତ୍ତ ଚାଷୀଶ୍ରେଣୀର ପର୍ଯ୍ୟାୟକୁ ଖୁବ୍ ଶୀଘ୍ର ଉଠିଯାଇ ପାରିଲେ ଓ ଏମାନଙ୍କର ଗୋଟିଏ ଅଂଶ ଦିକ୍କୁ, ମହାଜନ ସାହୁକାର ଶ୍ରେଣୀରେ ସାମିଲ୍ ହୋଇ ଶହଶହ ଏକର ଜମିର ମାଲିକ ବନିଗଲେ*। କିଛିକିଛି ଛୋଟ ଶିଳ୍ପପତି ଶ୍ରେଣୀ ମଧ୍ୟ ଏମାନଙ୍କ ମଧ୍ୟରେ ଦେଖାଦେଲେ ! ସେମାନେ ସ୍ଥାନୀୟ କଞ୍ଚାମାଲ ଉପରେ ନିର୍ଭରକରି ବିଡ଼ି କାର୍ଖାନା, ଧାନମିଲ୍, ଗ୍ୟାରେଜ୍, ଟିଣ ସରଞ୍ଜାମ ତିଆରି କାରଖାନା ଇତ୍ୟାଦି ନିର୍ମାଣ କଲେ । ବେପାର ଓ ମାଛଧରା ମଧ୍ୟ ଏମାନଙ୍କର ମୁଖ୍ୟ ବ୍ୟବସାୟ ପାଲଟିଗଲା । କାରଣ ବଡ଼ବଡ଼ ଜଳଭଣ୍ଡାର ଥିଲେ ମଧ୍ୟ ନଦୀ, ପହଁରା, ନୌକାଚାଳନା ଓ ମାଛଧରା କୁଶଳତା ସ୍ଥାନୀୟ ଆଦିବାସୀମାନେ ହାସଲ କରି ନଥିଲେ । ଉନ୍ନତକିସମର କୃଷି ଓ ପରିବା ଚାଷ ମଧ୍ୟ ଏମାନେ ଆରମ୍ଭକରି କୃଷି ଅର୍ଥନୀତିରେ ବେଶ୍ ଉନ୍ନତି ଆଣିଲେ । ଏମାନଙ୍କ ମଧ୍ୟରେ ମେକାନିକ୍, ଡ୍ରାଇଭର୍, ପକ୍କା ମିସ୍ତ୍ରୀ, କାଠମିସ୍ତ୍ରୀ ଆଦିଙ୍କର ସଂଖ୍ୟା ମଧ୍ୟ ବଢ଼ି ଚାଲିଲା । ପୁଣି ଯିଏ ଯେଉଁ ଜାତିର ହୋଇଥିଲେ ବି ସମସ୍ତେ ପ୍ରାୟ ନିଜକୁ ହରିଜନ ବୋଲି ଦାବି କରିବସିଲେ । ଭେରିଫିକେସନ୍ (Verification)ର ସମ୍ଭାବନା ନଥିବାରୁ ଦାବି ଅନୁଯାୟୀ ଜାତି ସାର୍ଟିଫିକେଟ୍ ମଧ୍ୟ

*ଦଣ୍ଡକାରଣ୍ୟ ଯୋଜନାର ଜମି ଓ ଆର୍ଥିକ ସାହାଯ୍ୟ ପାଇବା ସତ୍ତ୍ୱେ ୧୯୭୮ ପର୍ଯ୍ୟନ୍ତ ରିଫ୍ୟୁଜିମାନେ ନିଜ ମାଟି ଓ ସଂସ୍କୃତିକୁ ଝୁରିହୋଇ ପୂରା ମାତ୍ରାରେ ଉତ୍ପାଦନ ପ୍ରକ୍ରିୟାରେ ସାମିଲ୍ ହୋଇ ନଥିଲେ । କିନ୍ତୁ ମରିଚଝାମ୍ପିକୁ ପଳାୟନ ଓ ସେଠାକାର ପଶ୍ଚିମବଙ୍ଗ ସରକାରଙ୍କ ଗୁଳିକାଣ୍ଡ ପରେ ଓ ସୁନ୍ଦରବନ ଅଞ୍ଚଳରୁ ଜବର ଉଚ୍ଛେଦ ପରେ ଏବଂ ପଳାୟନ - ପ୍ରତ୍ୟାବର୍ତ୍ତନ ପର୍ବରେ ବହୁସଂଖ୍ୟାରେ ମୃତ୍ୟୁବରଣ କଲାପରେ ସେମାନେ ମାଲକାନ୍‌ଗିରି - ଉମରକୋଟ ଅଞ୍ଚଳରେ ମନ, ପ୍ରାଣ ଲଗାଇ କୃଷି ଉତ୍ପାଦନ ଆରମ୍ଭକଲେ ।

ପାଇପାରିଲେ । ଫଳରେ ଚାକିରି ଓ ଋଣ କ୍ଷେତ୍ରରେ ମିଳୁଥିବା ରିଜର୍ଭେସନ୍ ସୁବିଧା ସୁଯୋଗର ସିଂହଭାଗ ସେମାନେ ଦଖଲ କରିଥିଲେ । ସ୍କୁଲ୍, କଲେଜ୍‌ମାନଙ୍କରେ ସେହିମାନଙ୍କର ପିଲାମାନେ ହିଁ ମୁଖ୍ୟଭାଗ ଛାତ୍ର ବୃତ୍ତି ପାଇ ଅଧ୍ୟୟନ କରିପାରିଲେ ।

୭. ଏହିସବୁ ଘାଟିଡିଆଁ ବା ବିଦେଶାଗତ ଅର୍ଥନୈତିକ ଶ୍ରେଣୀ ସହ ଆଉ ଏକଶ୍ରେଣୀ ଆବିର୍ଭୂତ ହେଲେ । ସେମାନେ ଶ୍ରମିକ । ଶ୍ରମିକଶ୍ରେଣୀର ଆବିର୍ଭାବ ସଙ୍ଗେସଙ୍ଗେ ଅବିଭକ୍ତ କୋରାପୁଟ୍‌ରେ ଫିତୁରି - ରାଜନୀତି ସ୍ଥାନରେ ଦେଖାଦେଲା ସର୍ବହରା ନେତୃତ୍ୱରେ ସମାଜର ସର୍ବାଙ୍ଗୀନ ଉନ୍ନତି ବିଷୟକ ଚିନ୍ତା ଓ ଚେତନା । ଭାଗ୍ୟ ଓ ଭଗବାନ ଜାଗାକୁ ଧୀରେଧୀରେ ଆବୋରି ବସିଲା ଉତ୍ପାଦନ ମାଧ୍ୟମ ଓ ଉତ୍ପାଦିକା ଶକ୍ତି ସମ୍ପର୍କୀୟ ଚେତନା । ସେହିପରି ଦେଖାଦେଲେ କର୍ମଚାରୀ ଗୋଷ୍ଠୀ, ବହୁ ସଂଖ୍ୟାରେ ଛାତ୍ର, ଶ୍ରମିକ ଓ ବୁଦ୍ଧିଜୀବୀ ।

ଏହିପରି ଭାବେ ବିଭିନ୍ନ ପ୍ରକାର ଶାସକ-ଶୋଷକ ଶ୍ରେଣୀ ଗୋଟିଏ ପଟେ ନିଜର ଚିରାଚରିତ ଶୋଷଣ ଓ ଦମନ ନୀତି ଚଳାଇ ରଖିବା ବେଳେ ଅନ୍ୟପଟେ ଶ୍ରମିକଶ୍ରେଣୀ ଆପଣାର ୟୁନିଅନ୍ ବା ପାର୍ଟି ଜରିଆରେ ବହୁବିଧ ସଂଗ୍ରାମ ଲଢ଼ିବାକୁ ଲାଗିଲା । ଏହାର ପ୍ରକୃଷ୍ଟ ଦୃଷ୍ଟାନ୍ତ ହେଉଛି ଚିତ୍ରକୋଣ୍ଡା ଶ୍ରମିକ ୟୁନିଅନ୍‌ର ସପ୍ତମଦଶକର ଲଢ଼େଇ ଓ ଏଥିପାଇଁ ସେମାନଙ୍କ ଉପରେ ହୋଇଥିବା ଚିତ୍ରକୋଣ୍ଡା ଷଡ଼୍‌ଯନ୍ତ୍ର ମାମଲା ।

ଏ ସବୁର ସାମଗ୍ରିକ ପ୍ରଭାବ ଆଦିବାସୀ ସଂସ୍କୃତି ଉପରେ ପଡ଼ିବା ପାଇଁ ବାଧ୍ୟ । କାରଣ ସହାବସ୍ଥାନ ସଙ୍ଗେ ସଙ୍ଗେ ଯେଉଁ ଅର୍ଥନୈତିକ ଆନ୍ତଃପ୍ରକ୍ରିୟା ଘଟେ, ଯେଉଁଭଳି ଭାବେ ଉତ୍ପାଦକ ଓ ଉତ୍ପାଦନ ମାଧ୍ୟମର ମାଲିକ ଭିତରେ ସମ୍ପର୍କ ନିର୍ଦ୍ଧାରିତ ହୁଏ, ତାହା ଆଦିବାସୀ ଲୋକ ସଂସ୍କୃତି ଉପରେ ମଧ୍ୟ ପ୍ରଭାବ ପକାଏ । ତେବେ ଏହି ପ୍ରଭାବ କେତେଦୂର ସେହି ନିର୍ଦ୍ଦିଷ୍ଟ ଆଦିବାସୀ ଗୋଷ୍ଠୀର ସଂସ୍କୃତିକୁ ଉନ୍ନତ ବା ବିକୃତ, ବିଜୟୀ ବା ଓ ପରାହତ କରାଏ ?

ଏ ପ୍ରଶ୍ନର ଉତ୍ତର ପଛକୁ ଥାଉ । ପ୍ରଥମେ ଦେଖାଯାଉ ପୂର୍ବର ସ୍ୱୟଂ ସମ୍ପୂର୍ଣ୍ଣ ଅର୍ଥନୀତି ଭୁଷୁଡ଼ି ପଡ଼ିବା ଦ୍ୱାରା ଏବଂ କିଛି ନୂଆ ଅର୍ଥନୀତି ପାଦ ଗାଡ଼ିବା ଦ୍ୱାରା ଏଠାକାର ଲୋକ ସଂସ୍କୃତିରେ କିଭଳି ଅବକ୍ଷୟ ଘଟିଛି । ଜମି ଅର୍ଥନୀତିର ପ୍ରମୁଖତା ଜଙ୍ଗଲ ଅର୍ଥନୀତିକୁ ପଛକୁ ଠେଲିଦେବା ସଙ୍ଗେସଙ୍ଗେ ଜଙ୍ଗଲକୁ କେନ୍ଦ୍ରକରି ଗଢ଼ି ଉଠିଥିବା ବହୁବିଧ ସଂସ୍କୃତିର କ'ଣ ପରିବର୍ତ୍ତନ ହୋଇଛି ? ମୂଳ ସଂସ୍କୃତିର ମୃତ୍ୟୁ ହୋଇଯାଇଛି ନା କେବଳ ପାରିପାର୍ଶ୍ୱିକ ବା ବାହ୍ୟିକ ପରିବର୍ତ୍ତନ ଘଟିଛି ?

ଅର୍ଥନୀତିରେ ପରିବର୍ତ୍ତନ ଯେତେ ଚଞ୍ଚଳ ଘଟେ କୌଣସି ସଂସ୍କୃତି ଉପରେ ତା'ର ପ୍ରଭାବ ସେତେ ଜଲ୍‌ଦି ପଡ଼ିପାରେନା । ସେଥିପାଇଁ ବର୍ଷବର୍ଷ ଅପେକ୍ଷା କରିବାକୁ ପଡ଼େ । ତଥାପି ଏମିତି କିଛି ଘଟଣା ଅଛି, ଯାହାର ପ୍ରଭାବ ସାଙ୍ଗେ ସାଙ୍ଗେ ପଡ଼େ । ଉଦାହରଣସ୍ୱରୂପ ବାଉଁଶ ସମ୍ପଦ ଉପରେ ଆଦିବାସୀର ଅଧିକାର ପ୍ରସଙ୍ଗକୁ ପରୀକ୍ଷାକରି ଦେଖାଯାଇପାରେ । ଆଉ ମଧ୍ୟ କୌଣସି ବିକାଶ ଯୋଜନାରେ ବିସ୍ଥାପିତ ହୋଇ ବା ସାହୁକାରୀ ଶୋଷଣ ଜାଲରେ ପଡ଼ି ଜମିରୁ ଉଚ୍ଛେଦ ହେବା ପ୍ରସଙ୍ଗକୁ ଏଠି ଦେଖାଯାଇପାରେ ।

ପ୍ରଥମେ ଦ୍ୱିତୀୟ ପ୍ରସଙ୍ଗ ।

ସାହୁକାର ଫନ୍ଦିରେ ଜମି ହରାଇ ସାରିବା ପରେ ଆଦିବାସୀ ଆଗରେ ତିନୋଟି ରାସ୍ତା ଦେଖାଦିଏ । ପ୍ରଥମ, ନିଜ ଜମିରେ ନିଜେ ଗୋତି ରୁହ । ଯେମିତି ଘଟିଛି ବିଭିନ୍ନ ବ୍ୟବସାୟିକ ପେଣ୍ଠ ଗାଁରେ ବା ରିଫ୍ୟୁଜି କଲୋନୀକୁ ଲାଗି ରହିଥିବା ଗାଁମାନଙ୍କରେ । ସେଇ ଲୋକ ଥିବେ, ସେମିତି ଚାଷବାସ ଚାଲିଥିବ । କିନ୍ତୁ ଉତ୍ପାଦନ ମାଧ୍ୟମର ଅଧିକାରୀମାନେ ବଦଳି ସାରିଥିବେ । ସୁତରାଂ ଉତ୍ପାଦନ ସମ୍ପର୍କ ବଦଳି ସାରିଥିବ ।

ଦ୍ୱିତୀୟ ରାସ୍ତା, ଦୂର ଦେଶକୁ ଦାଦନ କୁଲି ହୋଇ ଗାଁର ଆଉ ପାଞ୍ଚଜଣଙ୍କ ସହ ଚାଲାଣ ହୋଇଯାଅ । ଦିନ ଥିଲା "ଆସାମକାରିଆ" ହୋଇ ଲୋକେ ଚା'ବଗିଚାମାନଙ୍କୁ ଯାଉଥିଲେ । କିନ୍ତୁ ସେମାନଙ୍କ ସଂଖ୍ୟା ଖୁବ୍ ନଗଣ୍ୟ ଥିଲା । ଆଜିକାଲି ଏମାନଙ୍କ ସଂଖ୍ୟା ଅନେକ ବେଶି । ଦାଦନ ଯିବାବେଳେ ଘରେ ଦାଦନ ଦଲାଲ ଦେଇଥିବା ଅର୍ଥରୁ ଅଳ୍ପକିଛି ଟଙ୍କା ଦେଇ ଏମାନେ ବାହାରି ଯାଆନ୍ତି । ପେଟି ଠିକାଦାର ତାଙ୍କୁ ସ୍ୱପ୍ନ ଦେଖାଇଥାଏ ବାହାରକୁ ଗଲେ ଦିନକୁ ୪୦୦ରୁ ୫୦୦ଟଙ୍କା ମିଳିବ । କିନ୍ତୁ ପ୍ରକୃତରେ କେଉଁ ମୁମ୍ବାଇ କି ହିମାଚଳପ୍ରଦେଶ ବା କାଶ୍ମୀର ଘାଟି ବା ପଞ୍ଜାବ ହରିଆନା ଗଲାପରେ ସେମାନେ ଦଲାଲ ଓ ଗୁଣ୍ଡାମାନଙ୍କ କବଳରେ ପଡ଼ିଯାଆନ୍ତି । ଜଣେଅଧେ ଭଲରେ ଭଲରେ ଫେରି ଆସନ୍ତି । କିନ୍ତୁ ଅଧିକାଂଶଙ୍କ ନାଁ ଗାଁ ଠିକଣା ହଜିଯାଏ ।

ତୃତୀୟ ରାସ୍ତା ହେଉଚି ଗାଁ ଛାଡ଼ି ଉଠିଯିବା ଓ ଅନ୍ୟକେଉଁଠି ଘର ବସାଇବା କିମ୍ୱା ଗାଁ ବସାଇବା । ଦିନ ଥିଲା ଏହା ଆଦିବାସୀର ଇଚ୍ଛା ଉପରେ ନିର୍ଭର କରୁଥିଲା ।

ଏବେ ଜଙ୍ଗଲ ଅଧିକାରୀଙ୍କ ଇଚ୍ଛା ମୁଖ୍ୟ । ମୁଖ୍ୟତଃ ଏସବୁ ଗାଁ ଜଙ୍ଗଲ ଜମିରେ ହିଁ ବସିଥାଏ ଏବଂ ଜଙ୍ଗଲ କର୍ମଚାରୀମାନଙ୍କୁ ଏଥିପାଇଁ ରୀତିମତ ଓ ନିୟମିତ ପାନୁ ଦେବାକୁ ପଡ଼ିଥାଏ । ବିଭୂତି ଭୂଷଣ ବନ୍ଦୋପାଧ୍ୟାୟଙ୍କ "ଆରଣ୍ୟକ"ରେ ଜଙ୍ଗଲ ମାଲିକ ଜମିଦାରଙ୍କୁ ଖଜଣା ଦେବାଭଳି ଏଠାକାର ଅଘୋଷିତ ଜମିଦାର ଜଙ୍ଗଲ କର୍ମଚାରୀମାନଙ୍କୁ ପ୍ରଥମେ ନଜରାନା ବା ଭେଟି ଦେଇ ଜମି ଦଖଲ କରିବାକୁ ପଡ଼େ । ପରେ ପ୍ରତ୍ୟେକ ପାଚିର କିଛି ଫସଲ ଖଜଣା ଆକାରରେ ଦେବାକୁ ପଡ଼େ । ଘଞ୍ଚ ଜଙ୍ଗଲର ଗଛସବୁ ପୂର୍ବରୁ କାଠ ମାଫିଆମାନେ ହଡ଼ପ କରି ସାରିଥାନ୍ତି । ତେବେ ଅଠା ବୋଲାଯାଏ ଏମାନଙ୍କ ମୁଣ୍ଡରେ ।

କଳାହାଣ୍ଡି ଓ ନନ୍ଦପୁରର ପ୍ରାୟ ୫ହଜାର କନ୍ଧ ପରିବାର ସେଠା ଗଉଁତିଆ ଓ ସାହୁକାରମାନଙ୍କ ପାଖରେ ଜମି ବନ୍ଧକ ଦେଇ କିମ୍ବା ବିକ୍ରି କରି ନବରଙ୍ଗପୁରର ଉମରକୋଟ, ରାଇଘର ଓ ଝରିଗାଁ ଅଞ୍ଚଳରେ ଜଙ୍ଗଲ ଗାଁ ବସାଇଛନ୍ତି । ପାଞ୍ଚୋଟି ବ୍ଲକ୍‌ରେ ଓ ଏକ ନିର୍ଦ୍ଦିଷ୍ଟ ଅଂଚଳରେ ଏମାନଙ୍କ ଗାଁ ସଂଖ୍ୟା ପ୍ରାୟ ଏକଶହ । ଏସବୁ ଜଙ୍ଗଲ ଗାଁର ଜଙ୍ଗଲକୁ କାହିଁ କେତେବର୍ଷ ପୂର୍ବରୁ ଜଙ୍ଗଲ କର୍ମଚାରୀ ଓ କାଠ ବ୍ୟବସାୟୀମାନେ ଲୁଟି ସାରିଥିଲେ । ଉପରକୋଲାବ ନଦୀବନ୍ଧ ଓ ମାଛକୁଣ୍ଡ ପ୍ରକଳ୍ପରେ ଜମି ହରାଇଥିବା ସହସ୍ରାଧିକ ଆଦିବାସୀ ରାମଗିରି ଅଞ୍ଚଳରେ ବସତି ସ୍ଥାପନ କରିଛନ୍ତି । କାରଣ ସରକାର ପ୍ରାୟ ୮୦% ବିସ୍ଥାପିତଙ୍କ ନିମନ୍ତେ ପୁନର୍ବାସ ଯୋଜନା କରିପାରି ନାହାନ୍ତି । ଏମାନଙ୍କ ଗାଁ ସବୁ ମଧ୍ୟ ଆଜିଯାକେ ଜଙ୍ଗଲ ଗାଁ । ଗାଁ ବସିବାର ୨୫ବର୍ଷ ପରେ ଏସବୁ ଜଙ୍ଗଲ ଗାଁରେ ସରକାରୀ ନିର୍ଦ୍ଦେଶରେ ଜଙ୍ଗଲୀକରଣ ଚାଲିଲା । ଫଳରେ ଆଦିବାସୀ ଦଖଲରେ ଥିବା ସବୁଜମି ତା'ଠାରୁ ଝିକି ନିଆଗଲା । ତା' ବିରୋଧରେ ପ୍ରବଳ ପ୍ରତିରୋଧ ମଧ୍ୟ ଦେଖାଦେଲା । ୨୦୦୬ ଜଙ୍ଗଲ ଓ ଜଙ୍ଗଲଜମି ଅଧିକାର ଆଇନ ଲାଗୁହେବା ପରେ ଏବଂ ସରକାର ଆଦିବାସୀମାନଙ୍କ ପ୍ରତି ଐତିହାସିକ ଅନ୍ୟାୟକୁ ମାନିନେବା ପରେ ଏସବୁ କିଛିଟା ଶାନ୍ତ ପଡ଼ିଛି ।

ମାଛକୁଣ୍ଡର ବିସ୍ଥାପିତ ଆଦିବାସୀମାନେ ମୁଖ୍ୟତଃ ପରଜା, ଗଦବା, ରଣା ଓ ଗଉଡ଼ । ଏଥିରୁ ଅଧିକାଂଶ ପ୍ରଥମ ପର୍ଯ୍ୟାୟରେ କଣ୍ଡାକମାରୁ ଅଞ୍ଚଳରେ ପୁନର୍ବାସିତ ହୋଇଥିଲେ । ହେଲେ ବାଲିମେଳା ବନ୍ଧ ଯୋଜନାରେ ସେମାନେ ପୁଣିଥରେ ବିସ୍ଥାପିତ ହେଲେ । ଅନେକେ ଗାଁରୁ ଉତ୍‌ଖ୍ୟାତ ହୋଇ ପୁନର୍ବାସ କଲୋନୀମାନଙ୍କରେ ରହିଲେ । କିନ୍ତୁ ୬ଟା ପଞ୍ଚାୟତର ଶତକଡ଼ା ୯୦ଭାଗ ଲୋକ ଗାଁ ଛାଡ଼ି ଗଲେ ନାହିଁ ଓ ଡଙ୍ଗର

ଜମି ଚଷି ପାହାଡ଼ ଉପରେ ଘରକରି ରହିଗଲେ । ଏହି ଛ'ଟି ପଞ୍ଚାୟତର ୧୫୧ଖଣ୍ଡ ରେଭିନ୍ୟୁ ଗାଁକୁ କୁହାଯାଉଛି ଟାପୁଅଞ୍ଚଳ । ଏସବୁ ମଧ୍ୟରୁ ଗୋଟିଏ ମାତ୍ର ପଞ୍ଚାୟତ ବଡ଼ ପଦର ସ୍ଥଳଭାଗ ସହ ଯୋଡ଼ି ହୋଇ ରହିଛି । ବାକି ଅଣ୍ଡ୍ରାପାଲି, ଜଡ଼ାଆମ୍ବ, ପଣସପଦର, ରାଲେଗାଡ଼ା ଓ ପାପୁରୁମେଟଲା ରହିଛି ପାଣି ପର୍ବତ ଘେରରେ । ପ୍ରଥମ ପ୍ରଥମ ୧୯୭୪ରେ ଯେତେବେଳେ ଏସବୁ ଅଞ୍ଚଳ ବୁଡ଼ିଲା, ଲୋକେ ପୂରା ଦ୍ୱୀପାନ୍ତରିତ ହୋଇ ରହିଗଲେ ଦୁଇବର୍ଷ କାଳ । ୧୯୭୬ ବେଳକୁ ଟାପୁ ଅଞ୍ଚଳ ଲୋକଙ୍କ ଲଗାତର ଲଢ଼େଇ ଫଳରେ ଏ ଅଞ୍ଚଳକୁ ଲଞ୍ଚ ଚାଲିଲା । ଚିତ୍ରକୋଣ୍ଡା ଶ୍ରମିକ ୟୁନିଅନର ଦାବି ଓ ଲଗାତର ଆନ୍ଦୋଳନ ମଧ୍ୟ ଏଥିଲାଗି ଦାୟୀ । ତଥାପି ଆଜିସୁଦ୍ଧା ଏହି ଲଞ୍ଚସର୍ଭିସ୍ ଦୈନିକ ନୁହେଁ - ଭୀଷଣ ମନମୁଖୀ । ଏ ବିଷୟ ନେଇ ସରକାର କୌଣସି ଦାୟିତ୍ୱ ଆଜିଯାକେ ମୁଣ୍ଡେଇ ନାହାନ୍ତି । ଲଞ୍ଚ୍ ଚଳେଇଛନ୍ତି ବାଲିମେଳା ପ୍ରୋଜେକ୍ଟ - ଯାହା ଧୀରେ ଧୀରେ ନିଜର ସମସ୍ତ ଅଫିସ୍ ଚିତ୍ରକୋଣ୍ଡାରୁ ଉଠାଇ ନେଉଚି ବାଲିମେଳା ।

ଏହି ଟାପୁରେ ରହିଯାଇଥିବା ପ୍ରାୟ ୨୫,୦୦୦ ଆଦିବାସୀଙ୍କ ଭିତରେ ଡିଡୋୟୀମାନେ ମୁଖ୍ୟ । ତାଙ୍କ ପଛକୁ ମାଛକୁଣ୍ଡର ପୁନର୍ବାସିତ ଆଦିବାସୀ ଜୀବନରେ ଦୁଇଥର ଜମି ହରାଇଥିବା ଅନୁଭୂତିକୁ ଶରୀରର ଏକ କ୍ଷତ ଭଳି ଆପଣେଇ ନେଇ ସେମାନେ ନାହିଁ ନଥିବା ଦାରିଦ୍ର୍ୟ, ଅଶିକ୍ଷା ଓ ଘୋର ଆତଙ୍କ ଭିତରେ ବଣପଶୁ ଭଳି ବଞ୍ଚୁଛନ୍ତି । ଏମାନଙ୍କ ମୁଖ୍ୟ ଗାଁ ଓ ମୁଖ୍ୟଭାଗ ଜମି ଡୁବିଯିବା ପରେ ମଧ୍ୟ ଏଠାରେ ଲାଖି ରହିବା ବ୍ୟତୀତ ସେମାନଙ୍କ ଆଗରେ ଆଉ କିଛି ରାସ୍ତା ନଥିଲା । କାରଣ, ନା ଏମାନଙ୍କୁ କେଉଁଠି ବିକଳ୍ପ ଜମି ଦେଇ ଥଇଥାନ କରାଗଲା ନା ସେତେବେଳେ ଏଠି ଇନ୍ଦ୍ରାବତୀ ବୁଡ଼ି ଅଞ୍ଚଳବାସୀଙ୍କ ଗଣଆନ୍ଦୋଳନ ଭଳି କିଛି ଆନ୍ଦୋଳନ ଗଢ଼ିଉଠି ପାରିଲା ।

**ଟାପୁ ଅଞ୍ଚଳବାସୀଙ୍କ ଉପରେ ସାଂସ୍କୃତିକ ପ୍ରଭାବ ଓ ପରିବର୍ତ୍ତନ :** ଧାନଚାଷ ପାଇଁ ଉପଯୁକ୍ତ ଜମି ନ ମିଳିବାରୁ ଏହି ବ୍ୟାପକ ଅଞ୍ଚଳରେ ଧାନ ଆଉ ଚାଷ ହୋଇପାରିଲାନି । ଲୋକଙ୍କ ଭାତ ଓ ମାଣ୍ଡିଆଜାଉ ଖାଇବାର ଖାଦ୍ୟ ପେଟାର୍ଣ୍ଣ ବା ଅଭ୍ୟାସ ବଦଳିଗଲା । କାଙ୍ଗୁ, ସୁଆଁ, ମକ୍କା ଓ ଆମ୍ବଟାକୁଆ ଆଦି ତା'ର ସ୍ଥାନ ନେଲେ । ଲୋକେ ବଞ୍ଚି ରହିପାରିଲେ କେବଳ ମୁଖ୍ୟ ଅର୍ଥକାରୀ ଫସଲ ଯଥା - କାନ୍ଦୁଲ, ହଳଦୀ, ଅଦା ଓ ପିପ୍ପଳୀ ଆଦି ବିକ୍ରି କରି । ତେବେ ଅଗମ୍ୟ ହୋଇଥିବାରୁ

ଏବେ ବି ଏହା ବ୍ୟବସାୟୀମାନଙ୍କର ସ୍ୱର୍ଗ ଅର୍ଥାତ୍ କୃଷିଜାତ ପଦାର୍ଥରେ ଏକ ମୁଖ୍ୟ ଶୋଷଣକେନ୍ଦ୍ର ପାଲଟିଛି ।

ଧାନଚାଷ ନ ହୋଇ ପାରିବା ଫଳରେ ଟାପୁ ଅଞ୍ଚଳରେ ନଡ଼ା ବା ପିରିର ଏକାନ୍ତ ଅଭାବ ଦେଖାଦେଲା । ବଣ ଘାସରେ ଘର ଛପର ବେଶିଦିନ ତିଷ୍ଠିଲା ନାହିଁ । ଏପରିକି ବର୍ଷକୁ ଏଠି ଦୁଇଥର ଘର ଛପର କରିବାର ଦୃଶ୍ୟ ଅତି ସାଧାରଣ ହୋଇଉଠିଛି । ଏହିସବୁ ଅଞ୍ଚଳକୁ ଶିକ୍ଷକ ବା ଡାକ୍ତର ବା ସ୍ୱାସ୍ଥ୍ୟବିଭାଗ କର୍ମଚାରୀମାନଙ୍କ ଗତାଗତ ନ ଥିବାରୁ ଗୋଟିଏ ପକ୍ଷେ କ୍ୱାକ୍ ବା ସୁଇ ଫୋଡ଼ି ଜାଣିଥିବା ଅଶିକ୍ଷିତ ଡାକ୍ତରଙ୍କ ସଂଖ୍ୟା ଏଠାରେ ଖୁବ୍ ବଢ଼ିଛି । ତେବେ ଏମାନଙ୍କ ଭିତରେ ଠକ ଓ ଶୋଷକ ହେଉଛନ୍ତି ଶତକଡ଼ା ୯୦ଭାଗ । ଅନ୍ୟପକ୍ଷେ ଗୁଣିଗାରେଡ଼ି ଦିଶାରି ଗୁରୁମାଈଙ୍କ ପ୍ରଭାବ ମଧ୍ୟ ଯଥେଷ୍ଟ ବଢ଼ିଛି । ଜଳମଗ୍ନ ହେବା ପୂର୍ବରୁ କୋଣ୍ଡାକୋମାରୁ ଏକ ବ୍ୟବସାୟିକ କେନ୍ଦ୍ର ରୂପେ ବିକଶିତ ହୋଇ ସାରିଥିଲା । ଏଠି ଡାକ୍ତରଖାନା ଥାନା, ସ୍କୁଲ୍ ଇତ୍ୟାଦି ଗଢ଼ି ଉଠିଥିଲା । ହଠାତ୍ ଏ ସମସ୍ତ ବୁଡିଯିବା ଫଳରେ ଶିକ୍ଷା ଓ ସ୍ୱାସ୍ଥ୍ୟର ଯେଉଁ ସଚେତନତା ପର୍ବ ଆଦିବାସୀ ଚେତନାରେ ଦେଖା ଦେଇଥିଲା ତା' ଠପ୍ ହୋଇଗଲା । ତା'ର ଫାଇଦା ନେଲେ କ୍ୱାକ୍ ଓ ଦିଶାରି । କ୍ୱାକ୍‌ମାନଙ୍କ ଅନ୍ଧାଧୁନିଆ ଚିକିତ୍ସା, ଚିକିତ୍ସା ବିଜ୍ଞାନ ପ୍ରତି ଏଠା ଆଦିବାସୀଙ୍କୁ ଆହୁରି ବିମୁଖ କରାଇଦେଲା । ଫଳରେ ବିପଦ ଆପଦ ବେଳେ ଦୂର ଦୂରାନ୍ତରୁ ଦିଶାରି ବା ଗୁଣିଆ ଆଣିବା ପାଇଁ ଏଠାକାର ଲୋକେ ଯାଉଥିବାର ଦୃଶ୍ୟ ଏକ ସାଧାରଣ ଦୃଶ୍ୟ ହୋଇଉଠିଛି ।

ପଟାଙ୍ଗୀ, ନନ୍ଦପୁର ଓ କଳାହାଣ୍ଡିରୁ ଆସି ଉମରକୋଟ ଅଞ୍ଚଳରେ ଗାଁ ବସାଇଥିବା କନ୍ଧମାନଙ୍କ ଭିତରେ ଥିବା ଶିକ୍ଷା ପ୍ରତି ଆଗ୍ରହ ପୂର୍ବ କଥିତ ସାଂସ୍କୃତିକ ଆନ୍ତଃପ୍ରକ୍ରିୟାର ଆଉ ଏକ ଅବଦାନ । ଏହି ଅଂଚଳରେ ଯେଉଁ ପ୍ରାୟ ୧୦୦ଟି ଗାଁ ବସିଛି, ତା'ର ଅଧା ସଂଖ୍ୟକ ଗାଁରେ ଶିକ୍ଷାର ସୁଯୋଗ ନାହିଁ । କିନ୍ତୁ ପ୍ରାୟ ୨୦ଟି ଗାଁରେ କନ୍ଧମାନେ ବାହାରୁ ଶିକ୍ଷକ ଆଣି ପିଲାଙ୍କୁ ପ୍ରାଥମିକ ଶିକ୍ଷାଦେବାର ବ୍ୟବସ୍ଥା କରିଛନ୍ତି । ଘର ପିଛା ଏଥିପାଇଁ ପ୍ରତି ମାସ ଚାଉଳ, ଡାଲି ଓ ଦଶରୁ କୋଡ଼ିଏଟଙ୍କା ଚାନ୍ଦା ଉଠାଯାଏ । ଶିକ୍ଷକ ରହିବା ପାଇଁ ଗାଁ ଲୋକେ ଘର ତୋଳି ଦେଇଛନ୍ତି ଓ ମାସିକ ଦରମା ସ୍ୱରୂପ ୩୦୦ରୁ ୫୦୦ଟଙ୍କା ଦେଉଛନ୍ତି । ଏହା ଅନ୍ୟାନ୍ୟ ଆଦିବାସୀ ଅଞ୍ଚଳର ଏକ ବିପରୀତ ଦୃଶ୍ୟ । (ଘଟଣା ହେଉଛି ୧୯୯୦-୯୫ ବେଳର ।)

ଜଙ୍ଗଲ ଅଭାବରୁ ଉଭୟ ଟାପୁ ଅଞ୍ଚଳ ତଥା ଉମରକୋଟ ଅଞ୍ଚଳରେ ଜାଳେଣୀର ପ୍ରକୃତ ଅଭାବ । ଫଳରେ ବେଶ୍‌କିଛି ଗାଁର କିଛି କିଛି ସାଧାରଣ ଜମିକୁ ଗ୍ରାମ୍ୟ ଜଙ୍ଗଲରେ ପରିଣତ କରି ତାକୁ ସେମାନେ ନିଜେ ଜଗାରଖା କରୁଛନ୍ତି । ଆଉ କେତେକ ଜାଗାରେ ଏହି ଜଙ୍ଗଲକୁ କେନ୍ଦ୍ରକରି ତଥାକଥିତ ରାଜନୈତିକ ନେତାମାନଙ୍କ ଭୋଟ ପନ୍ଥୀ ରାଜନୈତିକ ଚାଲ୍‌ର ଶୀକାର ହୋଇ ଭୋତରା-କନ୍ଧ ସାମ୍ପ୍ରଦାୟିକ ବିବାଦ ଆରମ୍ଭ ହୋଇଯାଇଛି । ଏଥିରେ ମୁଖ୍ୟ ନାୟକ ସାଜିଛନ୍ତି ଜଙ୍ଗଲବିଭାଗର ଅଧିକାରୀମାନେ । ନିକଟରେ ରାଇଘର ଓ ସୁନାବେଡ଼ା ମଧ୍ୟରେ ଘଟିଯାଇଥିବା ସାମ୍ପ୍ରଦାୟିକ ଗଣ୍ଡଗୋଳ ସେଇମାନଙ୍କ ଭିଆଣ । ବିଭିନ୍ନ ଆଦିବାସୀ ଜନଗୋଷ୍ଠୀ ଭିତରେ ଥିବା ସାଂସ୍କୃତିକ ସାଧାରଣ ବିଭାବ ସବୁ (ଯଥା ଗୋଟିଏ ପ୍ରକାର ଧାର୍ମିକ ବିଶ୍ୱାସ ଓ ପର୍ବପର୍ବାଣୀ ପାଳନ, ପିଲାଜନ୍ମ, ବିଭା ଓ ମୃତାହ ପାଳନରେ ସମାନ ରୀତିନୀତି ଅବଲମ୍ବନ ଇତ୍ୟାଦି) ପଛକୁ ପଡ଼ିଯାଇଚି ଓ ଆଗକୁ ଆସିଯାଇଚି ଅର୍ଥନୈତିକ ବିଭାବ । ତୁମେ ଆମ ଅଞ୍ଚଳକୁ ଆସି ଜଙ୍ଗଲ ମାରି ମକାଋଷ କଲ - ବଙ୍ଗାଳୀମାନଙ୍କୁ ଲିଜ୍ ଦେଲ - ତେଣୁ ତୁମେ ଆମ ଅଞ୍ଚଳ ଛାଡ଼ି କଳାହାଣ୍ଡି ପଳାଅ - ବଙ୍ଗାଳୀମାନେ ବାଂଲାଦେଶ ପଳାନ୍ତୁ - ଏଇଭଳି ଏକ ସାଂଘାତିକ ସାମ୍ପ୍ରଦାୟିକ ଭାବନା ଆଦିବାସୀ ସଂସ୍କୃତିରେ ପଶିବା କଷ୍ଟକର ଥିଲା । କିନ୍ତୁ ଆଜି ଏହା ବାସ୍ତବ ହୋଇଚି । (ଯଦିଓ ଫିତୁରି ଭାବନା ଥିଲା ଘାଟିତିଆଁମାନଙ୍କ ବିରୋଧରେ, କିନ୍ତୁ ବହିରାଗତ ଶୋଷକ ଗୋଷ୍ଠୀ ଓ ବ୍ରିଟିଶ୍ ଶାସକ ଶ୍ରେଣୀ ଥିଲେ ତା'ର ଲକ୍ଷ୍ୟ) ଏହା ପଛରେ ମୁଖ୍ୟ ଅବଦାନ ହେଉଚି ଉମରକୋଟ ଅଞ୍ଚଳର ସଫଳ ମକା-ଅର୍ଥନୀତି । ତା' ସହ ସଂକୀର୍ଣ୍ଣ ଭୋଟ-ରାଜନୀତିର ଅବଦାନ ମଧ୍ୟ କିଛି କମ୍ ନୁହେଁ । ଏଯାବତ୍ ଏ ବିବାଦର ଅବସାନ ହୋଇନାହିଁ । କ୍ରମେ ତାହା ଆଦିବାସୀ - ବଙ୍ଗାଳୀ ସାମ୍ପ୍ରଦାୟିକ ବିବାଦକୁ ରୂପାନ୍ତରିତ ହୋଇଛି ଓ ମୂଳ ଜମି - ଜଙ୍ଗଲ ପ୍ରଶ୍ନ ପଛକୁ ଠେଲି ହୋଇଯାଇଚି । ମିଡ଼ିଆ ଏ ସଂପର୍କରେ ସମ୍ବାଦ ପରିବେଷଣ ବେଳେ ବହୁ ସମୟରେ ଏହାର ଶିରୋନାମା ଦେଇଛି - "ଆଦିବାସୀ-କନ୍ଧ ସଂଘର୍ଷ" ସତେ କି କନ୍ଧମାନେ ଆଦିବାସୀ ନୁହଁନ୍ତି !

ବୁଡ଼ି ଅଞ୍ଚଳରୁ ବିସ୍ଥାପିତ ହୋଇଥିବା ଲୋକମାନେ ସବୁଠାରୁ ବଡ଼ ଯେଉଁ ସାଂସ୍କୃତିକ ସଙ୍କଟର ସାମ୍ନା କଲେ, ତା' ହେଉଚି ଭାଷାଗତ ସଙ୍କଟ । ନିଜ ଭାଷା ଗୋଷ୍ଠୀଠାରୁ ଦୂରକୁ ଆସି ଅନ୍ୟ ଭାଷାଗୋଷ୍ଠୀଙ୍କ ପାଖାପାଖି ଅବସ୍ଥାନ କରିବା ଫଳରେ ଅନ୍ୟ ଭାଷା ଶିଖିବା ସେମାନଙ୍କ ପାଇଁ ଜରୁରୀ ହୋଇ ଉଠିଲା । ଫଳରେ ନୂଆ

ପ୍ରଜନ୍ମ ଆଗରେ ପୁରୁଣା ଭାଷା ସହ ଲାଖି ରହିବାର ସାମାଜିକ ଅର୍ଥନୈତିକ ଭିତ୍ତି ରହିଲା ନାହିଁ । ଜଙ୍ଗଲ କମିବା ସହ ଧୀରେଧୀରେ ଜଙ୍ଗଲ ନିର୍ଭର ଅର୍ଥନୈତିକ ଜୀବନ ଯେପରି କମିଲା, ନିଜ ସାମାଜିକ ତଥା ଗୋଷ୍ଠୀଗତ ଆଚରଣରେ ସେପରି ନକାରାତ୍ମକ ପ୍ରଭାବ ପଡ଼ିବାକୁ ଲାଗିଲା ଓ ଅଧିକାଂଶ ଗୋଷ୍ଠୀ ନିଜ ଭାଷାର ନାଟ, ଗୀତ, କଥାଣି ଆଦି ଭୁଲିଯିବାକୁ ବସିଲେ । ଏହା ଧୀରେ ଧୀରେ କେବଳ ସ୍ତ୍ରୀଲୋକ ଓ ବୁଢ଼ା ବୁଢ଼ୀଙ୍କ ଭିତରେ କେନ୍ଦ୍ରୀଭୂତ ଓ ସୀମିତ ହେବାକୁ ଲାଗିଲା । ଅର୍ଥାତ୍ ଏଇମାନଙ୍କ ଭିତରେ ହିଁ ଏହି ଗୋଷ୍ଠୀର ଭାଷା କିଛି ପରିମାଣରେ ବଞ୍ଚି ରହିଲା । ଡିଡୋୟୀ, ତଲବଣ୍ଡା ଓ ସଭ୍ୟ କୟାମାନେ ଏହାର ଶିକାର ହେବାରେ ଲାଗିଛନ୍ତି । ଆଉ ଭାଷା ଯେହେତୁ ସାଂସ୍କୃତିକ ଜୀବନର ମୁଖ୍ୟ ମାଧ୍ୟମ, ସୁତରାଂ ଧୀରେଧୀରେ ଏମାନଙ୍କ ସଂସ୍କୃତିର ମଧ୍ୟ ଅବକ୍ଷୟ ଘଟୁଛି । ଭୂମେୟା, ପରଜା, ଭୋତରା ଓ ଝଡ଼ିଆ ଆଦି ଜନଜାତି ନିଜ ଭାଷାକୁ ଭୁଲି ଦେଶିଆକୁ ଆଦରି ନେଇଛନ୍ତି । ପୁଣି ଅନେକେ ଦେଶିଆକୁ ମଧ୍ୟ ଛାଡ଼ିଦେଇ ଓଡ଼ିଆକୁ ଆଦରି ନେଲେଣି । ରଣା, ପାଇକ ଓ ଗଉଡ଼ମାନେ ଏଥିରେ ଅଗ୍ରଣୀ । ଭୂମେୟା, ପରଜା ଓ କୟାମାନେ ମଧ୍ୟ ପଛରେ ପଡ଼ି ନାହାନ୍ତି ।

ପୂର୍ବରୁ ଉଲ୍ଲେଖ କରିଛି ଯେ କିଛି ଆଦିବାସୀ ଗାଁର ମୁଖ୍ୟଭାଗ ଜମି ଧୀରେ ଧୀରେ ରଇତଠାରୁ ବିଚ୍ଛିନ୍ନ ହୋଇ ଅଣଆଦିବାସୀ ମାଲିକମାନଙ୍କ ହାତକୁ ଗ୍ଲେଯାଇଚି । ସେଇସବୁ ଗାଁରେ ପରଜା, କମାର ଓ କୟାମାନେ କ୍ରମେ ଦେଶିଆ ଓ ବଙ୍ଗଳା ଭାଷାରେ ଗୀତ ଗାଇ ଶିଖିଲେଣି । ନାଚି ଶିଖିଲେଣି । ନିଜ ଭାଷା ଅବଶ୍ୟ ପୂରା ଲୋପ ପାଇନି । କିନ୍ତୁ ଉପନିବେଶିକ ସଂସ୍କୃତି ବା ଦିକୁମାନଙ୍କ ସଂସ୍କୃତି ଧୀରେଧୀରେ ଆସ୍ଥାନ ଜମେଇ ବସୁଚି । ଆଉ ବ୍ୟକ୍ତିଗତ ଭାବେ କିଛି ଆଦିବାସୀ ଇମିତି ବଦଳି ଯାଇଛନ୍ତି ଯେ ପରିଚୟ ନ ଦେବା ପର୍ଯ୍ୟନ୍ତ ସେ ଯେ ଜଣେ ଆଦିବାସୀ, ତା' ଜାଣିବା କଷ୍ଟକର ହୋଇପଡ଼ିଚି ।

ସାଂସ୍କୃତିକ ଆନ୍ତଃ ପ୍ରକ୍ରିୟାର ଗୋଟିଏ ମୁଖ୍ୟ ଦିଗ ହେଉଚି ବିବାହ । ଆନ୍ତଃଗୋଷ୍ଠୀ ବିବାହ ନୁହେଁ, ଆଦିବାସୀ ଓ ଅଣଆଦିବାସୀ, ରଇତ ଓ ଦିକୁମାନଙ୍କ ଭିତରେ ବିବାହ । ଅଧିକାଂଶ କ୍ଷେତ୍ରରେ ପ୍ରତାରଣା ବା ଯୌନ ଶୋଷଣ ହିଁ ଏସବୁ ବିବାହ ବା ବିବାହ-ସମ-ଅନୁଷ୍ଠାନର ମୁଖ୍ୟ ଲକ୍ଷ୍ୟ ହୋଇଯାଏ । ତେବେ ପ୍ରଶ୍ନଉଠେ ଏଭଳି ବିବାହର ସାମାଜିକ ପ୍ରଭାବକୁ ନେଇ । କିଛି ଦିକୁ ଆଦିବାସୀ ଝିଅଙ୍କୁ ବିଭାହୋଇ ଯିବାଟାକୁ ଆଦିବାସୀ ଜମିଦଖଲର ଏକ ସହଜ ମାର୍ଗ ରୂପେ ବାଛି ନେଇଛନ୍ତି ।

ଆଦିବାସୀ ସମାଜ, ପରିସ୍ଥିତି ଅନୁଯାୟୀ ଏହା ପ୍ରତି ନିଜର ପ୍ରତିକ୍ରିୟା ପ୍ରକାଶକରେ । ତେବେ ଅଧିକାଂଶ କ୍ଷେତ୍ରରେ ସାମୟିକ ବାଛନ୍ଦ ବ୍ୟବସ୍ଥା ହିଁ ଲାଗୁହୁଏ । ବର୍ଷେ ଦୁଇବର୍ଷ ପରେ ତାହା ଉଠିଯାଏ । ସାଂସ୍କୃତିକ ଆନ୍ତଃ ପ୍ରକ୍ରିୟାରେ ଏସବୁ ପରିବାରରେ ଅଣଆଦିବାସୀ ସଂସ୍କୃତି ହିଁ ବଳବତ୍ତର ରହେ । କିଛି ଆଦିବାସୀ ବ୍ରାହ୍ମଣ ସୃଷ୍ଟି ହୁଅନ୍ତି । ଆଉ କିଛି ମିଳନ କେବଳ ପ୍ରତାରଣା କୈନ୍ଦ୍ରିକ ହୋଇଥାଏ । ସୁତରାଂ ପତି ପରିତ୍ୟକ୍ତା ଆଦିବାସୀ ନାରୀଟିଏ ନିଜ ସନ୍ତାନମାନଙ୍କୁ ଏକୁଟିଆ ଲାଳନ ପାଳନ କରି ବଡ଼କରେ । ଏହି ସନ୍ତାନମାନେ ନିଜକୁ ଆଦିବାସୀ ଜନଗୋଷ୍ଠୀ ସହ ସହଜରେ ମିଶାଇ ପାରନ୍ତି ନାହିଁ ଓ ଅଧିକାଂଶ କ୍ଷେତ୍ରରେ ଅସାମାଜିକ ଉପାଦାନରେ ପରିଣତ ହୋଇ ରାଜନୈତିକ ଚାଲବାଜିର ଭିତ୍ତିଭୂମି ପାଲଟି ଯାଆନ୍ତି । ଠିକାଦାର ଓ ବ୍ୟବସାୟୀମାନଙ୍କ ପେଟି ଦଲାଲ ରୂପେ ମଧ୍ୟ ଏମାନେ ଏକ ଆବଶ୍ୟକ ସାମାଜିକ ଶକ୍ତି ରୂପେ ଶୋଷକଶ୍ରେଣୀ ଦ୍ୱାରା ସ୍ୱୀକୃତ ହୁଅନ୍ତି ।

ଏବେ ବାଉଁଶ ସମ୍ପଦ ଉପରେ ଆଦିବାସୀ ଅଧିକାର ପ୍ରସଙ୍ଗକୁ ଆସିବା । ଆଦିବାସୀର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ କାର୍ଯ୍ୟରେ ଓ ପ୍ରତ୍ୟେକ ପର୍ଯ୍ୟାୟରେ ବାଉଁଶର ଆବଶ୍ୟକତା ପର୍ଯ୍ୟାପ୍ତ ପରିମାଣରେ ରହିଛି । ପ୍ରକୃତପକ୍ଷେ ଏହା ହେଉଚି ଆଦିବାସୀ ପାଇଁ ଉତ୍ପାଦନର ଏକ ମାଧ୍ୟମ । ଭୂମିହୀନ ଆଦିବାସୀ ବା ଜଙ୍ଗଲ ଗାଁର ଆଦିବାସୀମାନେ ବାଉଁଶକୁ ଜୀବିକାର୍ଜନର ଏକମାତ୍ର ଉପାୟ ରୂପେ ଗ୍ରହଣ କରିଥାନ୍ତି । ଏଥିରୁ ଡାଲା, ଟିଫ୍‌ନି, ଚାଙ୍ଗ୍‌ଡ଼ା, ବିଞ୍ଚଣା, ଛାପା, ତାର୍ଲା, ତାର୍ଲି, ଖଟିଆ, କୁଲା, ଚାଲୁଣି, କଲ୍‌କି ଇତ୍ୟାଦି ତିଆରି କରି ହାଟରେ ବିକନ୍ତି । ଆଦିବାସୀମାନଙ୍କ ମଧ୍ୟରେ କୟା, ଗଦବା, ବଣ୍ଡା ଓ ଡିଡୋୟୀମାନେ ଭଲ ବାଉଁଶ କାରିଗର ରୂପେ ଖ୍ୟାତି ହାସଲ କରିଛନ୍ତି । ପ୍ରତ୍ୟେକ ଆଦିବାସୀ ନିଜ ଘର ଓ ଘରପାଖ ଜମିର ଚାରିକଡ଼ ବାଉଁଶ ବାଡ଼ରେ ତିଆରି । ମାଛ ଧରିବା ବେଳେ ଏଇ ବାଉଁଶରୁ ହିଁ ସେ ତିଆରି କରେ ଜାନ୍ଦର୍, ମୁର୍‌ଡ଼ି, ଗିଲ୍‌ଟାଟି ଓ ପଟା । ଶୋଇବା ପାଇଁ ଏଇଥିରୁ ତିଆରି ହୁଏ ତାଟି, ଖଟିଆ ଓ ପିଲାଙ୍କ ଝୁଲଣା । ଆଦିବାସୀ ପରମ୍ପରା ଅନୁସାରେ ପୁଅ ଓ ଝିଅ ବିଭାହେବା ପରେ ଅଲଗା ଘର ବାନ୍ଧନ୍ତି । ଜଙ୍ଗଲର ଏହି ବାଉଁଶକୁ ସେତେବେଳେ ଘର ତିଆରି ସାମଗ୍ରୀ ରୂପେ ବ୍ୟବହାର କରାଯାଏ । ବର୍ଷାମାସଯାକ କରଡ଼ି ବା ବାଉଁଶଗଜା ଓ ବାଉଁଶ ଛତି ଆଦିବାସୀର ମୁଖ୍ୟ ଶାଗ ରୂପେ ଖିଆଯାଏ । ଏପରିକି କରଡ଼ି ଓ ବାଉଁଶ ଛତୁକୁ ଶୁଖାଇ ଶୀତମାସ ଯାକ ଖାଦ୍ୟ ରୂପେ ବ୍ୟବହାର କରାଯାଏ । ନାଟ ଓ ଗୀତ

ଗାଇବା ପାଇଁ ଏଇ ବାଉଁଶରୁ ନିର୍ମାଣ କରାଯାଏ ସାରଙ୍ଗୀ, ଟଇଲା, କାଠିବାଦ୍ୟ ଓ ବିଭିନ୍ନ ପ୍ରକାରର ବଂଶୀ ଓ କୟାମାନଙ୍କର ଝୁମୁକା ଖଞ୍ଜା ଲାଠି । ଶିକାର ପାଇଁ ଧନୁ ଓ ତୀର ମଧ୍ୟ ନିର୍ମିତ ହୁଏ ଏଇ ବାଉଁଶରୁ । ଗୋଟିଏ କଥାରେ ଆଦିବାସୀ ଜନ୍ମହୁଏ ବାଉଁଶ ତାଟିରେ, ବାଉଁଶ ଝୁଲଣାରେ ଝୁଲେ, ବାଉଁଶ-ବାଦ୍ୟ ବଜାଇ ନାଚେ, ବାଉଁଶ ଅସ୍ତ୍ରରେ ଶିକାର କରେ, ସଲପ ପାରିବା ପାଇଁ ସଲପ ଡାଙ୍ଗ(ବାଉଁଶରେ ନିର୍ମିତ) ସାହାଯ୍ୟରେ ଗଛ ଉପରକୁ ଉଠି ସଲପ ହାଣ୍ଡି ପାରେ ଓ ମଲାପରେ ମଧ୍ୟ ବାଉଁଶ ଦାଣ୍ଡିଆରେ ବୁହାହୋଇ ମଶାଣିକୁ ଯାଏ ।

ତେବେ ସିଂଘାନିଆ ଓ ଥାପାର୍ ଗୋଷ୍ଠୀର ନଜର ଏଇ ବାଉଁଶ ସମ୍ପଦ ଉପରେ ପଡ଼ିବା ପରେ ପରେ ପରିସ୍ଥିତି ବଦଳି ଯାଇଚି । ଗୋଟିଏ ଝିକାରେ ଆଦିବାସୀର ପାରମ୍ପରିକ ଅଧିକାରକୁ ଛିନ୍ନ କରାଯାଇ ଫରେଷ୍ଟ କର୍ପୋରେସନ୍ ଜରିଆରେ ଏହି କାଗଜ ଶିଳ୍ପପତିଗୋଷ୍ଠୀଙ୍କ ହାତକୁ ଏହା ଟେକି ଦିଆଯାଇଛି । ସେମାନେ କମ୍ ଅର୍ଥ ଓ ଶ୍ରମ ବିନିଯୋଗ କରି, ସବୁ ନିୟମ କାନୁନ୍‌କୁ ଫାଙ୍କି ଦେଇ ସୁବିଧାରେ ଓ ସହଜରେ ବ୍ୟାପକ ଅଞ୍ଚଳର ବାଉଁଶ ସମ୍ପଦକୁ ଅବିଚାରିତ ଭାବେ ନିର୍ମୂଳ କରିବାରେ ଲାଗିଛନ୍ତି । ଫଳରେ ଏକ ନାହିଁ ନଥିବା ଦ୍ୱନ୍ଦ୍ୱ ଏହି ଅଞ୍ଚଳରେ ଦେଖାଦେଇଚି । ଏହି ଦ୍ୱନ୍ଦ୍ୱକୁ କମ୍ପାନିମାନେ କାଗଜ ଉତ୍ପାଦନ ଓ ଆଦିବାସୀର ଅଧିକାର ଭିତରେ ଦ୍ୱନ୍ଦ୍ୱ ବୋଲି ଚିତ୍ରଣ କରୁଛନ୍ତି । କିନ୍ତୁ ପ୍ରକୃତରେ ଏହା ହେଉଚି ବଡ଼ ପୁଞ୍ଜିପତି ଗୋଷ୍ଠୀର ଲଗାମ୍‌ହୀନ ମୁନାଫାଖୋର୍ ମନୋବୃତ୍ତି ଓ ଉତ୍ପାଦନ ମାଧ୍ୟମ ଉପରେ ଆଦିବାସୀର ନିୟନ୍ତ୍ରଣ ଅଧିକାର ମଧ୍ୟରେ ଦେଖାଦେଇଥିଲା ଦ୍ୱନ୍ଦ୍ୱ । ଏଥିପାଇଁ ଲଗାତର ସଂଗ୍ରାମ ଜାରି ରହିଛି ଏବଂ ବିଭିନ୍ନ ସମୟରେ ସମଗ୍ର ମାଲ୍‌କାନ୍‌ଗିରି ଜିଲ୍ଲାର ବାଉଁଶକଟାକୁ ଆଦିବାସୀମାନେ ସଂଘବଦ୍ଧ ଭାବେ ବନ୍ଦ କରିଛନ୍ତି । ସରକାର ମଧ୍ୟ ପୁରୁଣା ଲାଇସେନ୍ସର ନବୀକରଣ କରି ନାହାନ୍ତି । ଶିଳ୍ପପତି ଗୋଷ୍ଠୀ ଏଥିପାଇଁ ବାରମ୍ବାର ହାଇକୋର୍ଟର ଦ୍ୱାରସ୍ଥ ହେଇଛନ୍ତି ଏବଂ ବିଭିନ୍ନ ନୂଆ ନୂଆ ଉପାୟରେ ସାମାଜିକ ଶକ୍ତିମାନଙ୍କୁ ହାତକରି ଏହି ସଂପଦର ଲୁଣ୍ଠନ ଚଳାଇଛନ୍ତି ।

ତେବେ ମୁଖ୍ୟ ପ୍ରସଙ୍ଗ ହେଉଚି ବାଉଁଶ ସମ୍ପଦ ଲୋପ୍ ପାଇବାକୁ ବସିଥିବା ବେଳେ ଏହାକୁ କେନ୍ଦ୍ରକରି ବିଭିନ୍ନ ଗାଁରେ ଦେଖା ଦେଇଥିବା ବିବାଦ ଓ ଆଦିବାସୀର ସାମାଜିକ ଜୀବନରେ ଦେଖା ଦେଇଥିବା ପରିବର୍ତ୍ତନ । ରେଖାପାଲି ଗାଁର ଜଣେ କନ୍ଧବୁଢ଼ା ଗୋଟିଏ ନାଟ ଉତ୍ସବରେ ପ୍ରକାଶ କରିଥିଲା ଯେ ଗତ ଦଶବର୍ଷ ଧରି ସେ

ଭଲ ପୁରୁଣା ବାଉଁଶ ଖଣ୍ଡେ ପାଉନି ତା'ର ବଂଶୀ ତିଆରି କରିବା ପାଇଁ । ବେଣ୍ଟବୁଲା ଧନୁ ପାଇଁ ଭଲ ପାକଳ ବାଉଁଶ ଖଣ୍ଡେ ମଧ୍ୟ ମିଳୁନାହିଁ । ଧାଂଡ଼ା ଧାଂଡ଼ୀମାନେ ବିଭା ପରେ ବାଧ୍ୟହୋଇ ବାପାର ଘରେ ରହୁଛନ୍ତି, ଯାହାକି ଆଦିବାସୀ ସଂସ୍କୃତିରେ ଏକ ଅପମାନ ଜନକ ବ୍ୟାପାର । ଶୁଣିଲେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ, କିଛି ବିବାହ ମଧ୍ୟ ଏଥିପାଇଁ ଭାଙ୍ଗିଯାଉଛି । ବେଳେବେଳେ ବାଉଁଶ କିଛି ହାସଲ କରିବା ପାଇଁ ୨/୩ଦିନ ଧରି କାମଦାମ ବନ୍ଦକରି ସ୍ୱାମୀ ସ୍ତ୍ରୀ ଓ ଛୁଆପିଲା ସମସ୍ତଙ୍କୁ ଜଙ୍ଗଲ ଭିତରେ ଘୂରି ବୁଲିବାକୁ ପଡୁଚି । ଅଥଚ ଜଙ୍ଗଲ ସହ ସମ୍ପର୍କ ନ ଥିବା ଶିଳ୍ପପତିମାନେ ନାମକୁ ମାତ୍ର ଲିଜ୍ ଅର୍ଥ ବଦଳରେ ହଜାର ହଜାର ହେକ୍ଟର ବାଉଁଶ ଜଙ୍ଗଲ ଜମିର ମାଲିକ ବନିଯାଇ ପାରିଛନ୍ତି । ଏହା ହିଁ ଆଦିବାସୀ ସଂସ୍କୃତି ଓ ଜନଜୀବନ ପ୍ରତି ରାଷ୍ଟ୍ର ତଥା ସରକାରୀ ଉପେକ୍ଷାର ଏକ ବଡ଼ ଦୃଷ୍ଟାନ୍ତ । ଶିଳ୍ପପତିଗୋଷ୍ଠୀ ଲିଜ୍‌ରେ ଯେଉଁ ଜମି ନେଉଛନ୍ତି ସେଠି ବାଉଁଶ ବଦଳରେ ଲଗା ଯାଲିଛି ଇଉକାଲିପଟାସ୍ ଓ ଆକାଶୀଆ-କାରଣ ଏସବୁ ଗଛ ସହ ଆଦିବାସୀର କିଛି ସାଂସ୍କୃତିକ ସମ୍ପର୍କ ନଥିଲେ ସୁଦ୍ଧା ପ୍ରତି ୭ବର୍ଷରେ ଥରେ ଏହା ଯଥେଷ୍ଟ କଞ୍ଚାମାଲ୍ ଯୋଗାଇ ଦେଇ ପାରିବ । ଖାଲି ସରକାରୀ ଲିଜ୍ ନୁହେଁ, ଏଥିପାଇଁ ଆଦିବାସୀଙ୍କୁ ପ୍ରତାରିତ କରି ହଜାର ହଜାର ହେକ୍ଟର ବ୍ୟକ୍ତିଗତ ଜମି ମଧ୍ୟ ଏମାନେ ପଟା ନେବାରେ ଲାଗିଛନ୍ତି ।

**ସଂସ୍କୃତି ଉପରେ ଅର୍ଥନୀତିର ଦୀର୍ଘକାଳୀନ ପ୍ରଭାବ :** ତେବେ ସଙ୍କଟ କେଉଁଠି ? ଆଦିବାସୀ ସଂସ୍କୃତି ଉପରେ ଏହିସବୁ ଅର୍ଥନୈତିକ ପରିବର୍ତ୍ତନର ଦୀର୍ଘକାଳୀନ ପ୍ରଭାବ ଧୀରେଧୀରେ ଏକ ସାଂସ୍କୃତିକ ସଂକଟ ସୃଷ୍ଟି କରିବାରେ ଲାଗିଛି । ସଙ୍କଟ ଏହି ଅର୍ଥରେ ବ୍ୟବହାର କରାହୋଇଚି ଯେ ଏହା କେବଳ କ୍ଷତିକାରୀ ଦିଗକୁ ଇଙ୍ଗିତ କରୁଛି ଓ ସୂଚାଇ ଦେଉଚି ଯେ ଯଥାଶୀଘ୍ର ଏହି ସଂକଟର ସାମାଧାନ ନ ହେଲେ କିଛି ନିର୍ଦ୍ଦିଷ୍ଟ ଜନଜାତି ଗୋଷ୍ଠୀର ଲୋକସଂସ୍କୃତି ଲୋପ ପାଇଯିବାର ଅବସ୍ଥା ଦେଖାଦେବ । ଏଇ ଦୃଷ୍ଟିରୁ ପୂର୍ବରୁ ସୂଚାଇ ଦିଆଯାଇଥିବା ପ୍ରଶ୍ନକୁ ଦୋହରା ଯାଇପାରେ, ଯେ ଏହି ସବୁ ପରିବର୍ତ୍ତନ କେତେଦୂର କିଛି ନିର୍ଦ୍ଦିଷ୍ଟ ଜନଗୋଷ୍ଠୀର ସଂସ୍କୃତିକୁ ଉନ୍ନତ ବା ବିକୃତ ଓ ପରାହତ କରୁଛି ?

ପ୍ରକୃତରେ ଏହା ଅବିଭକ୍ତ କୋରାପୁଟର ବହୁ ଆଦିବାସୀ ଜନଗୋଷ୍ଠୀର ସାଂସ୍କୃତିକ ଜୀବନ ଓ ମୂଲ୍ୟବୋଧକୁ ନକାରାତ୍ମକ ଭାବେ ପ୍ରଭାବିତ କରୁଛି । ଅର୍ଥନୈତିକ ଆକ୍ରମଣ ତ ରହିଛି ! କିନ୍ତୁ ବଡ଼ ସୂକ୍ଷ୍ମ ଉପାୟରେ ସାଂସ୍କୃତିକ ଆକ୍ରମଣ ମଧ୍ୟ ଆରମ୍ଭ

କରାଯାଇଛି । ଏହା ଘଟୁଚି ଗୀତନାଟ କ୍ଷେତ୍ରରେ ଓ ପର୍ବପର୍ବାଣି କ୍ଷେତ୍ରରେ । ପ୍ରଥମେ ଗୀତନାଟ । ଆଦିବାସୀମାନେ ମୁଖ୍ୟତଃ ଶ୍ରମଜୀବୀ, ରଇତ ଓ ଶିକାରୀ । ନିଜର ଶ୍ରମଭାରକୁ ଲାଘବ କରିବା ପାଇଁ, ଶୁଭକାର୍ଯ୍ୟକୁ ଛନ୍ଦାୟିତ ଓ ତ୍ୱରାନ୍ୱିତ କରିବା ପାଇଁ ନିଜର ଶୋକ ଓ ଆନନ୍ଦକୁ ପ୍ରକାଶ କରିବା ପାଇଁ ଏମାନେ ନାଚ ଓ ଗୀତର ଆଶ୍ରୟ ନେଇଥାନ୍ତି । ନାଚ ଓ ଗୀତ ଏମାନଙ୍କ ଶ୍ରମଜୀବୀ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ପାଲଟି ଯାଏ । ତାହା ଆମଭଳି ଅଣଆଦିବାସୀ, ଗୋଷ୍ଠୀଜୀବୀମାନେ ବୁଝିବା ମଧ୍ଧ କଷ୍ଟସାଧ୍ୟ । କେବେ ସେମାନଙ୍କ ଉଦ୍ଦାମ ନୃତ୍ୟ ସହ ପାଦ ମିଶାଇ ନାଚିଲେ ବୁଝିହେବ ସେମାନେ ନାଚ ଓ ଗୀତକୁ କେତେ ଭଲପାଆନ୍ତି । ବିଭିନ୍ନ ପର୍ବପର୍ବାଣି, ବାହାଘର, ପିଲାଜନ୍ମ, ନାଁ ଦିଆ ଆଦି ଉତ୍ସବରେ ତଥା ଫସଲ ଅମଳ ଓ ବେଣ୍ଟ ସମୟରେ ନିରବଚ୍ଛିନ୍ନ ଭାବେ ରାତିଦିନ ଏ ନାଚ ଚାଲେ । ଦେଖିଲେ ସନ୍ଦେହ ହୁଏ ଏମାନେ ପାଗଳ ହୋଇଯାଇ ନାହାନ୍ତି ତ !

ଅଥଚ ଏଇ ଦୁର୍ବଳତାର ସୁଯୋଗ ନେଇ ଗତ ପ୍ରାୟ ୩୦/୪୦ବର୍ଷ ଧରି ଏଠାରେ "ଦେଶିଆ ନାଟ"ର ପ୍ରଚଳନ ଆରମ୍ଭ ହୋଇଚି । କୁହାଯାଉଚି "ଦେଶିଆ ନାଟ" ! କିନ୍ତୁ ଏହିସବୁ ନାଟର ପ୍ରକୃତ ବିଷୟବସ୍ତୁ ହେଉଚି ଓଡ଼ିଆ ପୁରାଣ । ସେଥିରେ ପୁଣି ବିଭିନ୍ନ କପୋଳକଳ୍ପିତ ଅସାହିତ୍ୟିକ ସାମଗ୍ରୀ ପୂରାଯାଇ କିମ୍ଭୂତକିମାକାର କାହାଣୀ ବନାଯାଇଚି । ଏହାର ଭାଷା ଅତ୍ୟନ୍ତ ବିକୃତ ଓ ଖଣ୍ଡିତ, ପଦ୍ୟ ଓଡ଼ିଆ । ଦେଶିଆ ଭାଷାର ବ୍ୟବହାର କଦବା କ୍ୱଚିତ୍ ଦେଖାଏ । ଏସବୁ ନାଟରେ କେଉଁଠି ହେଲେ ଆଦିବାସୀର ସାମାଜିକ ଅର୍ଥନୈତିକ ଜୀବନର ଝଲକ ନ ଥାଏ କି ନିଜ 'ଲୋକକଥା; କାଥାଣିର ପରିପ୍ରକାଶ ମଧ୍ଧ ନ ଥାଏ । ଗଣେଶ ବନ୍ଦନା, ଜଗନ୍ନାଥ ବନ୍ଦନା ବା ଶିବ ବନ୍ଦନାରୁ ଆରମ୍ଭ ହୋଇ ଏହି ନାଟ କୌଣସି ଅସୁର ବା ରାକ୍ଷସ ବଧ ଆଡ଼କୁ ଅଗ୍ରଗତି କରେ ବା କୌଣସି କନ୍ୟା ହରଣ ଓ ଯୁଦ୍ଧ ଆଡ଼କୁ ଅଗ୍ରଗତି କରି ଯୁଦ୍ଧରେ ବିଜୟ ବା ନାୟକନାୟିକା ବିବାହ ପରେପରେ ତା'ର ଯବନିକା ପଡ଼େ । ଏହିସବୁ ନାଟକରେ ବ୍ୟବହୃତ ଭାଷାର ସାମାନ୍ୟ ଗୋଟିଏ ଦୁଇଟି ଉଦାହରଣ ଏହି ଭାଷା ବିକୃତୀକରଣକୁ ବୁଝିବା ଲାଗି ଯଥେଷ୍ଟ ହେବ ।

"ମତେ ଦେଖାଦିଅ ସଜନି କାହିଁ
ଗଲୁ ମର ମନନୟିନୀ, ଦେଲୁ ମତେ ଦୁଃଖ ବାଲେଣୀ ।"

/

"ତ ଲାଗି ନାସିବି ଜୀବନ ମ ପ୍ରାଣଧନ, ଚନ୍ଦ୍ରବଦନ,

ତ ଲାଗିରେ ଯାଉ ଜୀବନ।"

"ସ୍ୱର୍ଗଛାଡ଼ି ମୁଁ ଭିକାରି ହୋଇଲି ସଖା

ରକ୍ଷାକର ହେ ଦେବତା କର ତୁମ୍ଭେ ରକ୍ଷା ।"

"ରାଗେ କରଇ ଗର୍ଜନ, ଇନ୍ଦ୍ର ନନ୍ଦନ,

ବୀରବେଶକୁ ସାଜିଣ"

"ଛାଡ଼ି ମର୍ତ୍ତପୁର ଆସିଛିରେ ଅସୁର

ଖଣ୍ଡ ଖଣ୍ଡ ହେବ ବଦନ ତୁମ୍ଭର ।"

(ମୁଡ଼ାସୁର ବଧ)

"ଆରେ ଅସୁର,

ପ୍ରାଣକୁ ନାହିଁ ଡର ଡର

ଆଜ କାଟିବି ତ ମୁଣ୍ଡ, କିଏରେ ତର ମାର୍ତଣ୍ଡ

ପ୍ରସ୍ତୁତ ହୁଅ ପାପୀ ଦେଖିବି ତ ଭଣ୍ଡ ।"

"ମୂର୍ଖ ମୁଡ଼ାସୁର ମାଧବେ କରୁ କପଟ,

ରାକ୍ଷସ ପ୍ରସ୍ତୁତ ହୁଅ ହେଉ ଘମାଘୋଟ ।"

ମୁଡ଼ା- "ହା ହା ହାରେ ପାଣ୍ଡବ

ମୁଡ଼ା ଆଗେ କହୁକିରେ ଏପରି ଭାଷ,

ବିଧାଘାତ କରିବି ମରଣ -

ଆସରେ ପାଣ୍ଡବ

ହେଉ ତର ରକ୍ତ ଆମ୍ଭ !

ଭୀମ- "ହଁ ପ୍ରସ୍ତୁତ ଅଛି ।

"ଆରେ ପାପୀ ମୁଡ଼ା ଅଜ୍ଞାନୀ ଅଜଡ଼ା

ଗର୍ଭ ଭାଙ୍ଗିଦେବି ତରରେ, ଆଜ ମଡ଼ି ଦେବି ଶିରରେ
ହୁଅ ଅଗ୍ରସର, ଅଧର୍ମ ଅସୁର, ଆଜ ମୋ ସାଥେ ତୁ ଲଢ଼ରେ
ଅଙ୍କା ବଙ୍କା କରି ମଥାକୁ ମଡ଼ିବି ଭାଙ୍ଗିଦେବି ମେରୁ ହାଡ଼ରେ ।"

(ମୁଡ଼ାସୁର ବଧ)

ଏହିପରି କୋରାପୁଟ୍‌ରେ ବିଭିନ୍ନ ପ୍ରାନ୍ତରେ ପ୍ରଦର୍ଶିତ ହେଉଥିବା ନାଟକଗୁଡ଼ିକ ହୋଇପାରେ ବକାସୁର ବଧ, କଳାବତୀ ହରଣ, କେଶବତୀ ହରଣ ଓ ଏପରିକି ଦ୍ରୌପଦୀ ବସ୍ତ୍ର ହରଣ । ଅଥଚ ଏସବୁକୁ ଦେଖିବା ପାଇଁ ଆଦିବାସୀ ଧାଂଡ଼ାଧାଂଡ଼ୀ ଡୋକ୍ରାଡୋକ୍ରୀ ରାତି ରାତି ଉଜାଗର ରହିପାରନ୍ତି ଓ ଅବଲୀଳା କ୍ରମେ ୧୦ପନ୍ଦର କି.ମି.ର ଘାଟି / ଜଙ୍ଗଲରାସ୍ତା ଅତିକ୍ରମ କରିପାରନ୍ତି । ଗାଁ ଗାଁ କେ ଏଥିପାଇଁ ମାଇକ୍, ଜେନେରେଟର କିଣାଯାଏ । ଡ୍ରେସ୍ କିଣାଯାଏ । ନାଟଗୁରୁଙ୍କୁ ପଇସା ଦିଆଯାଏ । ଆଧୁନିକ ବାଦ୍ୟଯନ୍ତ୍ର ବି କିଣାଯାଏ । ଦରକାର ପଡ଼ିଲେ ଗାଁର ସର୍ବସାଧାରଣ ଜମିକୁ ବନ୍ଧକ ଦିଆଯାଏ । ଲୋକେ ଗାଈଗୋରୁ, ଛେଳି, ମେଣ୍ଢା ଇତ୍ୟାଦି ବିକି ନାଟଗୁରୁଙ୍କୁ ଦେୟ ଚାନ୍ଦା ଦିଅନ୍ତି । ଏଣେ ନାଟଗୁରୁ ବୋଲାଉଥିବା ଅର୍ଦ୍ଧଶିକ୍ଷିତ ଆଦିବାସୀ ବା ଅଣଆଦିବାସୀଟି ଡ୍ରେସ୍‌ବାଲା, ଜେନେରେଟର୍ ବ୍ୟବସାୟୀ, ବାଦ୍ୟଯନ୍ତ୍ର ବ୍ୟବସାୟୀ ଇତ୍ୟାଦିଙ୍କ ସହ ସଲାସୁତୁରା ସମ୍ପର୍କ ରଖି ଶହେରେ ଶହେ କମିଶନ୍ ହାସଲ କରେ । ବିଚାରା ଆଦିବାସୀ ବୁଝିପାରେନି ଯେ ମାତ୍ର ୫,୦୦୦ଟଙ୍କାର ଜିନିଷକୁ ସେ ୧୦,୦୦୦ରେ କିଣୁଚି । ମନେମନେ ସେ ଦିକୁମାନଙ୍କ ସଭ୍ୟତାର ନିକଟବର୍ତ୍ତୀ ହୁଏ ଓ ରଙ୍ଗାପୋଷାକ ପିନ୍ଧି ବେଶ୍ କୁଦାକୁଦି କରି ମନେମନେ ଆହ୍ଲାଦିତ ହୁଏ ଯେ ଏଥିରେ ନିଶ୍ଚେ ଧାଂଡ଼ୀମାନଙ୍କ ମନ ଜୟ କରିପାରିବ । ତେଲୁଗୁ ସାହୁକାରମାନଙ୍କ ହରିକଥା ଫର୍ମରେ ଅଭିନୀତ ହେଉଥିବା ଏହିସବୁ ନାଟକ ମୁଖ୍ୟତଃ ଗୀତିନାଟକ । ଯାହାକିଛି ଅଳ୍ପସ୍ୱଳ୍ପ ଡାଇଲଗ୍ ବା ସଂଳାପ ବୋଲାଯାଏ ସେ ସମସ୍ତ ପ୍ରମ୍ପଟର ବୋଲିଦିଏ । ନିଜେ ଗୁରୁ ସବୁ ଗୀତ ଗାଆନ୍ତି । ଅଭିନେତା, ଅଭିନେତ୍ରୀମାନେ କେବଳ ପାଟି ପାକୁ ପାକୁ କରନ୍ତି । ତେବେ ନାଟଗୁରୁର ପ୍ରମୁଖ ଭୂମିକା ଏଇଠି ସରେନି । ସେ ଅବଲୀଳାକ୍ରମେ ନାଟ ଗାଁ ମାନଙ୍କରେ ଜମିମାଲିକ ସାହୁକାର ଭଳି ଗୋଟିଏ ପରେ ଗୋଟିଏ ୭/୮ଟି ପର୍ଯ୍ୟନ୍ତ ଝିଅକୁ ବିଭାହୋଇ ଚାଲେ । ଏହାପ୍ରତି ଆଦିବାସୀ ସମାଜର ବିଶେଷ ପ୍ରତିରୋଧ ଦେଖିବାକୁ ମିଳେନି । ନାଟଗୁରୁ ପ୍ରତି ଥିବା ସାଧାରଣ ଶ୍ରଦ୍ଧାଂ

ଫାଇଦା ଉଠାଇବାକୁ ସେ କେବେ ପଛାଏନି । ଗାଁର ବାରିକମାନେ ଏକକାଳୀନ ୫/୬ଜଣଙ୍କୁ ଖିଅର କଲାଭଳି ଜଣେ ଜଣେ ନାଟଗୁରୁ ଏକକାଳୀନ ବିଭିନ୍ନ ଜାଗାରେ ଅର୍ଥାତ୍ ଦୂର ଦୂରାନ୍ତରରେ ଏକକାଳୀନ ପ୍ରାୟ ୧୦୦କି.ମି. ଆକ୍ରାନ୍ତରେ ୬/୭ଟି ଗାଁରେ ନାଟ ଶିଖାଇ ଚାଲନ୍ତି । ଅଥଚ ଆଦିବାସୀ ସମାଜର ପାରମ୍ପରିକ କମନୀୟ ଉଦ୍ଦାମ ନୃତ୍ୟ ଓ ସ୍ୱଚ୍ଛନ୍ଦ ଗୀତ ରହିଯାଏ କେବଳ ବିଭିନ୍ନ ଉପଲକ୍ଷ୍ୟ ପାଇଁ, ପର୍ବପର୍ବାଣି ପାଇଁ । ଏସବୁ ସ୍ୱତଃସ୍ଫୂର୍ତ୍ତ ଓ ସ୍ୱତଃ ପ୍ରବୃତ୍ତ ଗୀତ ଓ ନାଟ ପାଇଁ କେବେ କିଛି ଲିପିବଦ୍ଧ ବା ବିଧିବଦ୍ଧ ନାଟକର ବା ଆସରର ଯୋଜନା କରାଯାଏ ନାହିଁ । କେବେ କେମିତି ସରକାରୀ ବ୍ୟବସ୍ଥା ହୁଏ ସତ, ହେଲେ ଆଦିବାସୀ ସମାଜରେ ତା' ବିଶେଷ କିଛି ପ୍ରଭାବ ପକାଇ ପାରେନି । ସେମାନଙ୍କ ସଂସ୍କୃତି ସଂପର୍କରେ ଅନଭିଜ୍ଞ ବିଚାରକ ଓ ସଂଯୋଜକମାନଙ୍କ ତତ୍ତ୍ୱାବଧାନରେ ଏହା ଅଣଆଦିବାସୀ ଶ୍ରୋତା ଓ ଦର୍ଶକମାନଙ୍କ ଉଦ୍ଦେଶ୍ୟରେ ପରିବେଷଣ କରାଯାଏ । ତେଣୁ ଏହାଦ୍ୱାରା ଆଦିବାସୀ ସମାଜର କିଛି ହେଲେ ସାଂସ୍କୃତିକ ବିକାଶ ଘଟେନାହିଁ । ପୁଣି ଏକ ବିଦେଶୀ ପରିବେଶରେ ସେ ସବୁ ଦେଶିଆ ନାଟ ଆଦିବାସୀ ପାଇଁ ମୂଲ୍ୟହୀନ ହୋଇଉଠେ ।

ଦେଶିଆ ନାଟର ଏଇ ଆତ୍ମବିରୋଧୀ ପ୍ରଯୋଜନା ଓ ଅଭିନୟ ବହୁ କୌତୁକପ୍ରଦ ଘଟଣାକୁ ଜନ୍ମଦିଏ । ସେଭଳି ଏକ ଘଟଣା ମାଲ୍‌କାନ୍‌ଗିରିରେ ଏକ କଥନିକା ବା ବଚନିକାରେ ପରିଣତ ହୋଇଛି । "ଚନ୍ଦ୍ରଗୁଡ଼ା" ଏକ କୟା ଭାଷାଭାଷୀ ଗାଁ । ସେଠି ନାଟ ଶିଖଉଥାନ୍ତି କଉଡ଼ି ଗୁଡ଼ାର ନାଟଗୁରୁ ଡମ୍ବୁ ଓଡ଼ି । ନାଟମାନଙ୍କରେ ନାଟଗୁରୁ ତ ସମସ୍ତଙ୍କ ଡାଇଲଗ୍ ଗାଆନ୍ତି, ଅଭିନେତା ଅଭିନେତ୍ରୀମାନେ ମଞ୍ଚକୁ ବାହାରିବା ବେଳେ ନାଟଗୁରୁଙ୍କୁ ସୂତ୍ରଧର ରୂପେ ତାଙ୍କ ବିଷୟରେ ଘୋଷଣା କରିବାକୁ ହୁଏ । ଥରେ ଗଣେଶଙ୍କ ଉପରେ ହେଉଥିବା ଏକ ନାଟରେ ନାଟଗୁରୁ ଘୋଷଣା କଲେ –

"ବାହରିଲେ ଗଣେଶ୍ୱର
କୈଳାସପୁରେ ବିଜେକର
ସଭାକୁ କଲେ ଗମନ
ସବୁ ସଭା ଜନ ।"

ତିନିଥର ଏହି ପଦକୁ ଦୋହଲାଇ ସାରିବା ପରେ ମଧ୍ୟ ଗଣେଶ୍ୱର ଭୂମିକାରେ ଅଭିନୟ କରୁଥିବା କୟାପିଲାଟି ମଞ୍ଚକୁ ନ ବାହାରିବା ଦେଖି ଗୁରୁ ପାଟିକଲେ - "ମିରିବାଡ଼ା ଗଣେଶ୍ୱର, ମିରିବାଡ଼ା ଗଣେଶ୍ୱର ।" ଅର୍ଥାତ୍ - "ଗଣେଶ୍ୱର ବାହାରି ଆସ ।" ଗୁଦୁଗୁଦୁ ହୋଇ ଗଣେଶ୍ୱର ବାହାରି ଆସିଲା । ବିଚାରା କୟାପିଲାଟି ଓଡ଼ିଆଭାଷା ଭଲଭାବେ ବୁଝିପାରେନି । କ'ଣ କରାଯିବ ? କିନ୍ତୁ ମିରିବାଡ଼ା ଗଣେଶ୍ୱର ଗୋଟେ ପ୍ରବାଦ ହୋଇ ରହିଗଲା । ଓଡ଼ିଆ ବୁଝୁ ନ ଥିବା ବା ଭୁଲ୍ ବୁଝୁଥିବା ଲୋକଙ୍କୁ ସେଇ କଥନିକା କହି ଥଟ୍ଟା କରାଯାଏ ।

ବାକି ରହିଲା ତଥାକଥିତ 'ଧର୍ମ' ଓ ପର୍ବପର୍ବାଣି ବିଷୟ । ଧର୍ମକୁ ନେଇ ଯେଉଁ ରାଜନୈତିକ ପାର୍ଟିମାନେ ଭୋଟଚାଲ ଖେଳନ୍ତି ସେମାନେ ବିଧିବଦ୍ଧ ଭାବେ ଆଦିବାସୀମାନଙ୍କୁ ହିନ୍ଦୁତ୍ୱକରଣ କରିବାର ଚେଷ୍ଟା ଚଳାନ୍ତି । ଏଥିରେ ମିଶିଯାଏ ସରକାରୀ କଳର ପ୍ରଚେଷ୍ଟା । ଜନଗଣନା ସମୟରେ ଜନଗଣନାକାରୀଙ୍କୁ କୁହାଯାଏ ଯେ ସବୁ ଆଦିବାସୀଙ୍କୁ ହିନ୍ଦୁରୂପେ ଲେଖେଇ ନେବାକୁ ହେବ । ଆଉ ନିଜେ ଆଦିବାସୀ ବି ସେ କ୍ଷେତ୍ରରେ ଜାଣିବା ପୂର୍ବରୁ ତା'ର ଧର୍ମ ବିଷୟରେ ସିଦ୍ଧାନ୍ତ ହୋଇଯାଏ । ତା' ପଛକୁ ରହିଛନ୍ତି ମିସନାରୀମାନେ । ସେମାନେ ଗତ ୨୦୦ବର୍ଷ ଧରି ଅଭ୍ୟନ୍ତର ଆଦିବାସୀ ଅଞ୍ଚଳରେ ଜନସେବା ନାଁରେ ପଶି ବେଶ୍‌କିଛି ଆଦିବାସୀମାନଙ୍କୁ ଧର୍ମାନ୍ତରୀକରଣ କଲେଣି । ସଭା କରିବା ନାଁରେ ସେମାନଙ୍କୁ ଶିଖେଇ ସାରିଲେଣି ଯେ, ନିଜ ଧର୍ମ ଓ ପରମ୍ପରା ଘୃଣାର ଯୋଗ୍ୟ । ଏବେ ଏବେ ବଡ଼ ଉତ୍ସାହରେ ସେମାନଙ୍କ ବିକଳ୍ପ ଭାବେ ଦେଖା ଦେଇଛନ୍ତି ଗାୟତ୍ରୀ ପରିବାର, ବିଶ୍ୱ ହିନ୍ଦୁ ପରିଷଦ, ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ଓ ଗୋ କଲ୍ୟାଣ ସମିତି । ସେହି ଅନୁକ୍ରମରେ ଅଭ୍ୟନ୍ତର ଆଦିବାସୀ ଅଞ୍ଚଳରେ ଆଦିବାସୀଙ୍କ ଅଜଣା ବହୁ ଦେବାଦେବୀଙ୍କ ମନ୍ଦିର ନିର୍ମାଣ ହେଲାଣି । ସେମାନଙ୍କ ହୁଣ୍ଡି ବା ଦେବତା "ଗାସାଏଁରାଣୀ", ସିଂବଙ୍ଗା ଓ ଦୁଃଖ ଶୋକର ଆତ୍ମାମାନେ କୁଆଡ଼େ ଲୁଚିଗଲେଣି । ନବମ ଦଶକରେ ଏଠାକାର ଅଧିକାଂଶ ଗାଁରୁ ଅଯୋଧ୍ୟାର ରାମମନ୍ଦିର ନିର୍ମାଣ ନାଁରେ ପ୍ରତ୍ୟେକ ଘରୁ ୧୦ଟଙ୍କା କରି ସଂଗ୍ରହ ହୋଇଛି । ଅଥଚ ଅଯୋଧ୍ୟା କେଉଁଠି କି ରାମଚନ୍ଦ୍ର କିଏ ଏ କଥା ଆଦିବାସୀ ଜାଣେନି ।

ବିଭିନ୍ନ ଆଦିବାସୀ ଜନଗୋଷ୍ଠୀ ଋଗ୍‌ବେଦ କାଳର ଆର୍ଯ୍ୟମାନଙ୍କ ଭଳି ପ୍ରକୃତିର ବିଭିନ୍ନ ଶକ୍ତିକୁ ହିଁ ଦେବତା ରୂପେ ପୂଜା କରେ । ସେ ମଙ୍ଗଳକର ହୋଇପାରେ ଠିକ୍ ବଣଦେବୀ ବା ଡାଲଖାଇ ପରି କିମ୍ବା ଅମଙ୍ଗଳକର ହୋଇପାରେ ରୋଗ

ବଇରାଗର ଠାକୁରାଣୀ ପରି । ଏ ଦିଗରେ ସବୁ ଜନଗୋଷ୍ଠୀ ପରସ୍ପରର ଦେବତା-ଦେବୀମାନଙ୍କୁ ସମ୍ମାନ ଦିଅନ୍ତି । ସେହିପରି ପର୍ବପର୍ବାଣି । ସମସ୍ତେ ସାଧାରଣ ଭାବେ ଚଇତିପରବ, ପୁଷ ପରବ, ବେଣ୍ଟ ଓ ବାଲି ଇତ୍ୟାଦି ପାଳନ କରନ୍ତି । କିନ୍ତୁ ଏବେ ଏବେ ସାହୁକାରମାନଙ୍କର ସହଯୋଗ ଓ ପ୍ରଯୋଜନା ଫଳରେ ଅନାନ୍ୟ ହିନ୍ଦୁ ପର୍ବର ଚାକଚକ୍ୟ ବଢ଼ିଛି । ମାଇକ୍ ବଜେଇ ବିରାଟ୍‌କାୟ ମେଢ଼କରି ଦଶଦିନ ଧରି ଦୁର୍ଗାପୂଜା ଚାଲୁଛି । କାଳୀପୂଜା, ରଥଯାତ୍ରା, ଜାଗର ତଥା ଗଣେଶ ଓ ସରସ୍ୱତୀପୂଜା କିଛି ହେଲେ ବାଦ୍ ପଡୁନି । ତେଣୁ ଧର୍ମ ଓ ପର୍ବପର୍ବାଣି କ୍ଷେତ୍ରରେ ବିଚାରା ଆଦିବାସୀଟି ବିଭିନ୍ନ ବୈରଦ୍ୱନ୍ଦ୍ୱର ସମ୍ମୁଖୀନ ହେଉଛି । ସାହୁକାର ଗୋଷ୍ଠୀ ଓ ସେମାନଙ୍କର ରାଜନୈତିକ ପାର୍ଟି ଏବଂ ବହୁ ସାଂସ୍କୃତିକ ଶୋଷକଙ୍କର ଏହିସବୁ ବିଧିବଦ୍ଧ ଆକ୍ରମଣକୁ ପ୍ରତିହତ କରିବା ପାଇଁ ଆଦିବାସୀଙ୍କୁ ସୁସଂଗଠିତ ଭାବେ ସଂସ୍କୃତିମନସ୍କ ହେବାକୁ ପଡ଼ିବ । ନିଜ ସଂସ୍କୃତିର ପୁନର୍ଜାଗରଣ ଆଣିବାକୁ ପଡ଼ିବ । ଅର୍ଥନୈତିକ ସଂଗ୍ରାମ ସହ ମିଶାଇ ଏହାକୁ ଏକ ଆନ୍ଦୋଳନରେ ପରିଣତ କରିବାକୁ ପଡ଼ିବ । କୌଣସି ବାହ୍ୟଶକ୍ତି ଉପରେ ଭରସା କଲେ ଏହା ହୋଇପାରିବ ନାହିଁ । ଅଣଆଦିବାସୀମାନଙ୍କ ମଧ୍ୟରୁ କେହି ଯଦି କିଛି କରିବାକୁ ଚାହେଁ ତାକୁ ଆଦିବାସୀମାନଙ୍କ ପାଖକୁ ଆସିବାକୁ ପଡ଼ିବ । ସେମାନଙ୍କ ସହ ଏକାତ୍ମ ହୋଇ ସାଂସ୍କୃତିକ ଆନ୍ଦୋଳନର କାମ କରିବାକୁ ପଡ଼ିବ । ତେବେ ହୁଏତ ଆଦିବାସୀ ଜନଗୋଷ୍ଠୀ ଆଗରେ ଦେଖା ଦେଇଥିବା ଏହି ଆସନ୍ନ ସାଂସ୍କୃତିକ ସଂକଟକୁ ଟାଳି ଦିଆଯାଇପାରିବ । ନଚେତ୍ କେତେ ନା କେତେ ଛୋଟିଆ ଛୋଟିଆ ଆଦିବାସୀ ଜନଜାତି ଗୋଷ୍ଠୀର ଭାଷା ଓ ଲୋକସଂସ୍କୃତି ଏହି ସଂକଟର ସାମ୍ନା କରି ନ ପାରି ବିଲୟ ଭଜିବେ ବା ମର୍ମନ୍ତୁଦ ଭାବେ ପରାହତ ହୋଇ ପୋଛି ହୋଇଯିବେ ତା' ନିର୍ଣ୍ଣୟ କରିବା କଷ୍ଟକର ।

*(ଆଦିବାସୀ ଭାଷା ଓ ସଂସ୍କୃତି ଏକାଡ଼େମୀ ଦ୍ୱାରା ଗତ ୨୦୦୧ ମସିହା ନଭେମ୍ବର ମାସରେ ଆୟୋଜିତ କର୍ମଶାଳାରେ ପଠିତ ଓ ଆଲୋଚିତ ଏବଂ ପ୍ରକାଶ ପୂର୍ବରୁ ପୁନର୍ସଂଯୋଜିତ ।)*



# ଭୋକ ସଂସ୍କୃତିର ଇତିବୃତ୍ତ

## - ୧ -

ଆଦିବାସୀ ଅଞ୍ଚଳରେ ଶିକ୍ଷାଦାନ କରୁଥିବା ଜଣେ ଶିକ୍ଷକଙ୍କ ସହ କଥା ହେଉଁ ହେଉଁ ହଠାତ୍ ସେ ଭାବପ୍ରବଣ ହୋଇଉଠିଲା ।

ସେଦିନ ଥିଲା ଡି.ପି.ଇ.ପି. ବା ସର୍ବଶିକ୍ଷା ଅଭିଯାନର ସର୍ବଭାରତ ସ୍ତରୀୟ ବଡ଼ ବଡ଼ ଅଧିକାରୀମାନଙ୍କ ଗସ୍ତର ଦିନ । ମାଲକାନ୍‌ଗିରି ଜିଲ୍ଲାର କୋରକୋଣ୍ଡା ବ୍ଲକ୍ । ସ୍ଥାନୀୟ ଶିକ୍ଷାବିଭାଗ ସବ୍‌ଇନ୍‌ସ୍ପେକ୍ଟରମାନେ ସମସ୍ତ ଶିକ୍ଷକଙ୍କୁ ବ୍ଲକ୍‌ସ୍ତରୀୟ କେନ୍ଦ୍ରୀୟ କ୍ଲାସ୍ ଦିନ କହି ଦେଇଥିଲେ - ଦେଖ ! ସେଦିନ ତିନିଟା ବାଜୁ କି ଚାରିଟା, ଡାଇରେକ୍ଟର ନ ଯିବା ପର୍ଯ୍ୟନ୍ତ କେହି ସ୍କୁଲ୍‌ଛୁଟି କରି ନ ଥିବ । ସେ ଅଞ୍ଚଳକୁ ଡାଇରେକ୍ଟର ଓ ଅନ୍ୟ ଅଧିକାରୀମାନେ ଆସିଲେ ୧୧ଟାରୁ ସାଢ଼େ ୧୨ଟା ଭିତରେ । ଖରାଦିନ ଯୋଗୁଁ ସକାଳୁଆ ସ୍କୁଲ୍ । ତଥାପି କିଛି କିଛି ସ୍କୁଲ୍‌ରେ ଗାଁ ଲୋକଙ୍କ ସହଯୋଗରେ ଶିକ୍ଷକମାନେ ପିଲାମାନଙ୍କୁ ଅଟକାଇ ରଖିଥିଲେ । ଡାଇରେକ୍ଟର ଆସିଲେ । ନୂଆକରି ରଙ୍ଗର ପ୍ରଲେପ ଦିଆଯାଇଥିବା ସ୍କୁଲ୍‌ମାନଙ୍କରେ ପଶିଲେ ଓ ବାହାରି ଗଲେ । କେଉଁଠି କେମିତି ଗୋଟିଏ ଦୁଇଟା ପ୍ରଶ୍ନ । "ପିଲାମାନେ ବାରନ୍ଦାରେ ବସିଛନ୍ତି ?" "ପାଞ୍ଚଟା ଶ୍ରେଣୀକୁ ତୁମେ ଦୁଇଜଣ ଶିକ୍ଷକ କିପରି ଚଳଉଚ ?" କିମ୍ବା "ବାରଟା ବାଜିଲାଣି, ପିଲାଙ୍କୁ କାହିଁକି ଛାଡ଼ିନାହଁ ?" ଇତ୍ୟାଦି । କିମ୍ବା ପିଲାଙ୍କୁ ପ୍ରଶ୍ନ, "ଆଜି କି କି ଖାଇବା ହୋଇଥିଲା ?" କିନ୍ତୁ ସେଥିରେ ଟିକେହେଲେ ଆନ୍ତରିକତା ନ ଥିଲା । ଭିତର ଅଞ୍ଚଳରେ ଥିବା ସ୍କୁଲ୍‌ମାନଙ୍କ ଭାଗ୍ୟରେ ସେତକ ବି ଜୁଟିଲାନି । କେବଳ ରୋଡ୍ ସାଇଡ୍ ସ୍କୁଲ୍‌ମାନଙ୍କୁ ସେମାନେ ଦେଖି ଦେଇଗଲେ । ତାଙ୍କ ସହ ଥିଲେ ଉପଜିଲ୍ଲାପାଳ, ଡି.ଆଇ., ବି.ଡ଼ି.ଓ. ଇତ୍ୟାଦିଙ୍କର ଗୋଟିଏ ପଲ୍‌ଟଣ ଓ ସଭିଙ୍କ ପାଇଁ ଅଲଗା ଅଲଗା ଗାଡ଼ି । ମଇମାସ ମଧ୍ୟାହ୍ନରେ ଧୂଳି ଉଡ଼ାଇ ସେମାନଙ୍କ ପଲ୍‌ଟଣ ବାହାରିଗଲା ।

ଭାବପ୍ରବଣ ଶିକ୍ଷକ ଜଣକ କହିଲେ ଡି.ପି.ଇ.ପି. ଆଜିଯାକେ ୩୦କୋଟି ଟଙ୍କା ଖର୍ଚ୍ଚ କଲେଣି ବୋଲି ଶୁଣୁଚୁ । କିନ୍ତୁ କୁଆଡ଼େ ଗଲା ସେ ପଇସା ? ପିଲାଙ୍କୁ ଦେବାପାଇଁ ଆମ ହାତକୁ ତ ଗୋଟିଏ ପଇସା ଆସିନି । ପିଲାଙ୍କର ଖଡ଼ିଖଣ୍ଡେ ନାହିଁ କି ସିଲଟଟିଏ ନାହିଁ । ବିନା ଅସ୍ତ୍ରରେ ଯୁଦ୍ଧ । କି ପାଠପଢ଼ିବେ ସେମାନେ ? ଆମେ ଅବଶ୍ୟ ସିଲଟ ଥିବା ପିଲାଙ୍କୁ ନିଜ ଦରମାରୁ ଖଡ଼ି ଯୋଗାଇ ଦେଉଚୁ । କିନ୍ତୁ ସେମାନେ କେତେଜଣ ? ଅଧିକାଂଶ ପିଲା ସୁଦ୍ଧୁ ଲଙ୍ଗଳା ହୋଇ କ୍ଲାସ୍‌କୁ ଆସୁଛନ୍ତି । ପେଣ୍ଟ ସାର୍ଟ ପିନ୍ଧିଥିଲେ ମଧ୍ୟ ଅଧିକାଂଶ ଫଟା-ଛିଣ୍ଡା । ପ୍ରକାଶଥାଉ କି ସେତେବେଳେ ପିଲାମାନଙ୍କୁ ସ୍କୁଲ୍ ପୋଷାକ ଦେବାର ବ୍ୟବସ୍ଥା ହୋଇ ନଥିଲା । ସବୁପିଲା ସ୍କୁଲ୍ ଆସି ପ୍ରଥମେ ଲକ୍ଷ୍ୟ କରିବେ ଏମ୍.ଡି.ମିଲ୍ ରନ୍ଧା ହେଉଚି କି ନା ! ଯଦି କୌଣସି କାରଣରୁ ରନ୍ଧା ବନ୍ଦ ହୋଇଥିବ, ତେବେ ବାହାରକୁ ଯାଉଚି କହି ଜଣେ ପରେ ଜଣେ ଘରକୁ ଚାଲିଯିବେ । ନଅଟା ସୁଦ୍ଧା ସ୍କୁଲ୍ ଫାଙ୍କା ହୋଇଯାଇଥିବ । ଆଉ ଯେଉଁଦିନ ରେକ୍ଷେଇ ହେଉଥିବ, ପିଲା 'ଅ ଆ' ଡାକୁଥିବେ । କିନ୍ତୁ ମନ ଥିବ ଭାତ ପାଖରେ । ଭାତର ବାସ୍ନା ଆସିଯିବା ସଙ୍ଗେ ସଙ୍ଗେ ପିଲେ ଏକ ସ୍ୱରରେ କହିବେ, ସାର୍ ଭାରି ଭୋକ । ତାଙ୍କ 'ରାଟୁ' ଶୁଣି ପାଠପଢ଼େଇବାର ଯୁ' ନଥିବ । ବାଧ୍ୟହୋଇ ତୁମେ ଭାତ ବାଢ଼ିବାକୁ କହିବ । ଆଉ ଭାତବଢ଼ା ହେଉ ହେଉ ସେ ଏକ ଅପୂର୍ବ ଦୃଶ୍ୟ । ଡାଲି ପରଷା ହେବା ପୂର୍ବରୁ ଭାତ ସରିଥିବ । ପୁଣି ମାଗିବେ । ଜଣେ ଜଣେ ପିଲା ଅତି କମ୍‌ରେ ୨୫୦ଗ୍ରାମ୍ ଚାଉଳର ଭାତ ଖାଇବେ । ଯଦି ପିଲାଙ୍କ ଉପସ୍ଥାନକୁ ବଢ଼ାଇ ଲେଖାଯାଉ ନ ଥାନ୍ତା, ସେତକ ସେମାନେ ପାଉ ନଥାନ୍ତେ । କାରଣ ଜଣକ ପିଛା ଗ୍ରାଣ୍ଟ ୧୦୦ଗ୍ରାମ୍ ଚାଉଳ । ସେଥିରେ ପୁଣି ଅଫିସର୍ ଗୋଷ୍ଠୀଙ୍କ କୃତ୍ରିମ ଭୋକ । ଡାଲି, ପରିବା, ତେଲ ଓ ଜାଳେଣି କାଠର ଅଦ୍ଭୁତ ହିସାବ । ତେଲ ଦିଆଯିବ ଜଣକ ପିଛା ୭ଗ୍ରାମ୍, ପରିବା ପାଇଁ ୨ପଇସା, ଜାଳ ପାଇଁ ୧ପଇସା । ସେ ସବୁ ଟଙ୍କା ପୁଣି ଆଣିବା ପାଇଁ ଗଲାବେଳକୁ ଶତକଡ଼ା ଦଶ କମିଶନ୍ ଦିଅ । ଚାଉଳ ଦେଲା ବେଳକୁ ବସ୍ତାକୁ ୫/୧୦ କେ.ଜି. କମ୍ । ମଝି ମଝିରେ ବ୍ଲକ୍‌ସ୍ତରରେ ବସ୍ତେଅଧେ ଚାନ୍ଦା ବି ଦେବାକୁ ପଡ଼ିବ । ନ ହେଲେ ତୁମ 'ଗଫଲତି' ଧରା ପଡ଼ିବ ହିଁ ପଡ଼ିବ । ସସ୍‌ପେଣ୍ଡ, ପ୍ରସିଡ଼ିଂ, ଡିସ୍‌ମିସ୍ - କେତେ କ'ଣ !

"ଏଇ ଅବସ୍ଥାରେ ଆଦିବାସୀ ପିଲା କ'ଣଟା ପଢ଼ିବେ ? ଡିପିଇପି କ'ଣ ଏସବୁ କଥା ଜାଣୁନି ? ଏଇ ଆଜି ଦିନର କଥା ଶୁଣନ୍ତୁ ! ଡାଇରେକ୍ଟର ଆସିବା

ଉପଲକ୍ଷେ ପିଲାଙ୍କ ପାଇଁ ଟିକେ ସୁଜି କରା ହୋଇଥିଲା । ସେ ସୁଜିରେ ଚିନି ପଡ଼ିଥିଲା । ତେବେ ପରିମାଣ କମ୍ । ତୁମେ ଆମେ ଖାଇବା କଷ୍ଟ ହେବ । ପିଲା କିନ୍ତୁ ଚାଟିଚୁଟି ଥାଳି ସବୁ ସଫା କରିଦେଲେ । କହିଲେ ବହୁତ ବଢ଼ିଆ । ଏଣେ ଭାତଖିଆ ସରିବା ପରେ କେତେଜଣ ପିଲାଙ୍କୁ ସୁଜି କଡ଼େଇ ଓ ଭାତହାଣ୍ଡି ମାଜିବା ପାଇଁ ପଠାଗଲା । ମୁଁ ଯାଇ ଦେଖିଲି ସୁଜି ଚଟୁକୁ ପୋଛିପାଛି ଦୁଇଜଣ ଚାଟିବାରେ ଲାଗିଛନ୍ତି । ଯେଉଁଠି ଭୋକର ପ୍ରକୋପ ଏତେ ବେଶି, ସେଠି ପାଠ କ'ଣ ପଢ଼ାଇବେ ?

ପୁଣି ଶୁଣନ୍ତୁ ଆଉଗୋଟେ କଥା । ଆମ ହେଡ୍‌ସାର୍ ପ୍ରତିଦିନ ବଣ୍ଡା(ଅଟା ଓ ଗୁଡ଼ ଦ୍ୱାରା ପ୍ରସ୍ତୁତ ଗୁଲ୍‌ଗୁଲା) ଜଳଖିଆ ସ୍କୁଲ୍‌କୁ ନେଇ ଆସନ୍ତି । ଆଜି ମଧ୍ୟ ଆଣିଥିଲେ । ମୋତେ ସେ ଯେଉଁ ଚାରିପାଞ୍ଚଟି ବଣ୍ଡା ଦେଲେ, ମୁଁ ତାହା ପିଲାଙ୍କୁ ବାଣ୍ଟିଦେଲି । କିନ୍ତୁ ଗୋଟିଏ ବଣ୍ଡା ତଳେ ଧୂଳିରେ ପଡ଼ିଗଲା । ପଡ଼ିଗଲା ତ ପଡ଼ିଗଲା । ସେଥିପ୍ରତି କାହାର ନଜର ନାହିଁ । କିନ୍ତୁ ଛୁଟି ହେବାପରେ ଆମେ ଫେରିବା ବେଳକୁ ଦେଖିଲୁ, ଗୋଟିଏ ଛୋଟପିଲା ବୟସ ତିନି କି ଚାରି - ଯାହାର ସ୍କୁଲ୍ ଆସିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଭାତ ଖାଇବା, ସେ ବିଚାରା ସେଇ ବଣ୍ଡାଟିକୁ ଧୂଳିରୁ ଉଠେଇ ଖାଉଚି । ଟିକେ ଆଗରୁ ଗୋଟେ କୁକୁର ସେଇ ବଣ୍ଡାକୁ ଶୁଙ୍ଘି, ବୋଧେ ତା'ର ରୁଚି ହେଲାନି କି କ'ଣ, ନ ଖାଇ ଚାଲି ଯାଇଥିଲା । କିନ୍ତୁ ଏଇ ମାନବ ଶିଶୁର ଭୋକ ଆଗରେ ସେ ସବୁ ରୁଚି ଫୁଚି ହାର୍ ମାନିଗଲା ।"

ସାର୍ ଦୀର୍ଘ ନିଃଶ୍ୱାସ ପ୍ରକାଇଲେ ! "କି ଶିକ୍ଷା ଆମେ ଏଠି ଦେବୁ ? ଭୋକର ହଜାରେ ଏକ ଉତ୍କଟ ମୂର୍ତ୍ତି ସାଙ୍ଗେ ଲଢ଼ିବୁ ନା ପାଠ ପଢ଼ାଇବୁ ? ମୋତେ ଲାଗୁଚି ଡିପିଇପି ଆହୁରି ହଜାରେ ପ୍ରୋଗ୍ରାମ୍ ହଜାରେ ବର୍ଷ ଧରି କଲେ ମଧ୍ୟ ଏଠି ପାଠ ହେବନି । ପାଠ ନାଁରେ ସରକାରୀ ଅଫିସର୍‌ମାନେ ଖାଲି ଯାହା କୋଟି କୋଟି ଟଙ୍କା ଆଣି ନିର୍ମାଣ କାମ କରୁଥିବେ, ବି.ଡ଼ି.ଓ., ଜେ.ଇ. ଓ ଠିକାଦାରମାନଙ୍କୁ ପୋଷୁଥିବେ, ରାଜନେତାମାନଙ୍କ ହାତ ଚିକ୍କଣ କରୁଥିବେ । ଆଉ ସେଇଟାଇଁ ହେଉଚି ଅସଲ ଲକ୍ଷ୍ୟ । ଆଦିବାସୀ ଶିଶୁମାନେ ଥିବେ ଖାଲି ଉପଲକ୍ଷ୍ୟ ।"

ସାର୍‌ଙ୍କ ଭାବାବେଗ କିଛି ହେଲେ ବାଧା ମାନୁ ନ ଥିଲା ! "ଅଥଚ ଆମ ପିଲାମାନେ ? ମୁହଁରେ, ନାକରେ ଦୁଧସର ଗୁଞ୍ଜିଲେ ମଧ୍ୟ ଥୁ ଥୁ କରି ଫିଙ୍ଗୁଥିବେ ! ଆମ ପିଲାମାନଙ୍କ ସାଙ୍ଗେ ଏମାନଙ୍କୁ କେମିତି ସମାନ କରାଯାଇ ପାରିବ ? ଶିକ୍ଷାରେ ସମାନତା କଥା ଏଠି କେତେଦୂର ପ୍ରଯୁଜ୍ୟ ?"

ସତରେ ! ଆଦିବାସୀ ଅଞ୍ଚଳର ଦାରିଦ୍ର୍ୟ ଓ ଭୋକର ଯେଉଁ ଚିତ୍ର ସାର୍ ଦେଲେ, ମୋତେ ତ ଲାଗିଲା, ମହାଶ୍ୱେତାଦେବୀଙ୍କ 'ଅରଣ୍ୟର ଅଧିକାର'ରେ ରନ୍ଧାଭାତର ଯେଉଁ ଚିତ୍ର, ଯେଉଁ ରୂପକଳ୍ପ, ଯେଉଁ ଲୋକକଥା ଦିଆଯାଇଚି, ତାକୁ ଏହା ବଳିଗଲା । ରୁଷୀୟ ଉପନ୍ୟାସ 'ବିଦାୟ ଗୁଲ୍‌ସାରୀ'ରେ ଜାଉ ଉପରେ ଯେଉଁ ଲୋକକଥା ଦିଆଯାଇଛି ତାହା ବି ଏଠି ମଳିନ ପଡ଼ିଗଲା । କେବଳ ବିଭୂତି ବନ୍ଦୋପାଧ୍ୟାୟଙ୍କ 'ବନଚାରୀ' ଉପନ୍ୟାସରେ କ୍ଷୁଧାର ଯେଉଁ ବର୍ଣ୍ଣନା ଦିଆଯାଇଚି - ଭାତ ଥାଳିରେ ଯେଉଁ ଆସୁରିକ ପରିମାଣର ତୁଚ୍ଛା ଭାତକୁ ଆଦିବାସୀ ରଇତମାନେ ପରମ ତୃପ୍ତିରେ ଖାଉଥିବାର ଦୃଶ୍ୟ ସେଠି ଉଲ୍ଲେଖ ରହିଛି, ତାହାରି ସହ ଏହା ତୁଳନୀୟ ।

ମନେପଡ଼ିଲା, କୋରାପୁଟ ସହ ମୋର ପ୍ରଥମ ଅନୁଭୂତିର କଥା । ୧୯୭୨ ମସିହା । ଦଳେ ସମ୍ଭ୍ରାନ୍ତ ଛାତ୍ରଙ୍କୁ କଟକ, ଭୁବନେଶ୍ୱରରୁ ଧରି ଆସିଥିଲୁଁ ରାୟଗଡ଼ା । ରାୟଗଡ଼ାର ଗୋପାଳ ବାଡ଼ିରେ ଥିବା ବେଳେ ଦିନେ ଯାଇଥିଲୁ ଗୋଟିଏ ଆଦିବାସୀ ବିଭା ଭୋଜିରେ ଯୋଗ ଦେବାପାଇଁ । ସେଠି ସମସ୍ତଙ୍କୁ ବଢ଼ା ହେଉଥାଏ ବଡ଼ବଡ଼ ଦନାରେ ଭାତ ଓ ଟିକିଏ ଟିକିଏ ଚିନି । ଲୋକେ ତାକୁ ପରମ ତୃପ୍ତିରେ ଖାଉ ଥାଆନ୍ତି । ଆମ କଟକ ମେଡ଼ିକାଲ୍ କଲେଜ ଓ ଭୁବନେଶ୍ୱର ରେଜିଓନାଲ୍ ଏଜୁକେଶନ କଲେଜର ଛାତ୍ର କର୍ମୀମାନେ ବିକଳରେ ମୋତେ ଅନେଇଲେ । ମୁଁ ତାଙ୍କୁ ଠାରିଲି । ନିର୍ବିକାର ଚିତ୍ତରେ ଖାଇଦିଅ । ନ ହେଲେ ପରିସ୍ଥିତି ଖରାପ ହେବ ! ବିଚାରାମାନେ ଶଉରା ଆଦିବାସୀମାନଙ୍କୁ ଡରି ସେସବୁ ଗିଳି ପକେଇଲେ । ପରେ ସେ କଥା ନେଇ ଯେତେ ନାକଟେକା, ଯେତେ ଛି ଛାକର !

ଆମ ଅଞ୍ଚଳର ଲୋକ କିପରି ବୁଝିବେ, ଯେ ଏଇ ସାମାନ୍ୟ ଭାତ ଏଠି କାହିଁକି ଭୋଜିର ସାମଗ୍ରୀ ? ଦିନ ଥିଲା, ଯେତେବେଳେ ବର୍ଷରେ ମାସେ କି ଦି'ମାସ ପାଇଁ ଆଦିବାସୀ ଧାନ ପାଉଥିଲା । ବାକି ଦଶମାସ ମାଣ୍ଡିଆ ପେଜ, ମହୁଲଗୁଣ୍ଡ, ଚଣାସିଝା, ଆମ୍ବ, କେନ୍ଦୁ, କି ସିଜା କନ୍ଦା କି ଆମ୍ବଟାକୁଆ ବା ସଲପ ଗଣ୍ଡିର ଜାଉ ଖାଇ ଜୀବନ ଧରିବାକୁ ଦେଉଥିଲା । ଏବେ ବିପିଏଲ୍ ପାଇଁ ହେଉ କି ଏମ୍.ଡ଼ି. ପାଇଁ ଅନ୍ତ୍ୟୋଦୟ ଅନ୍ନପୂର୍ଣ୍ଣା ପାଇଁ ହେଉ କି ହେଉ ଫୁଡ୍ ଫର୍ ୱାର୍କ ପାଇଁ ହେଉ, ଖାଇବା ଲାଗି ଆଦିବାସୀକୁ ଗଣ୍ଡେ ଗଣ୍ଡେ ଚାଉଳ ମିଳିଯାଉଛି । କିନ୍ତୁ ସେତିକି ପାଇଁ ବି ଆଦିବାସୀର ସମ୍ବଳ ନାହିଁ । ତା' ପାଇଁ ଉଦ୍ଦିଷ୍ଟ ଚାଉଳ ରିସାଇକଲ୍ ହୋଇ ଚାଲିଚି ।

ସେ ଅବଶ୍ୟ ଭୋକ ଉପାସରେ ପୂର୍ବଭଳି ମରୁନି । କିନ୍ତୁ ଯେଉଁଦିନ ଏ ସବୁ ଯୋଜନା ଠପ୍‌କିନା ବନ୍ଦ୍ ହୋଇଯିବ, ସେ ଦିନ ଆଦିବାସୀମାନେ ପୋକ ମାଛି ପରି ଝରିପଡ଼ିବେ । ଯେମିତି ମରିଥିଲେ ଲାଟିନ୍ ଆମେରିକାର ଆଦିବାସୀମାନେ । ତେବେ ସେ ଆଉ ଏକ କାହାଣୀ । ମନେପଡ଼ିଲା ଦିବଂଗତ ସାଥୀ ମନମୋହନ ମିଶ୍ରଙ୍କ କବିତା - "ଭୋକ ଯେଉଁଠି ମୂରତି ଧରେ, କୋଟି ମଣିଷ ପଂଜରା ତଳେରେ..." ପୁଣି "କୁଳବାଳା ଭିଟାହରା ମାଉଁସ ନିଲାମ୍ / ଭୋକୀ ତୁଣ୍ଡେ ଭରିଦିଏ ରଘୁ ରାଜାରାମ୍ !" କିମ୍ବା "ମାସ ମହିନାରେ କିଣି ନୋହେ ଯେବେ / ହପ୍ତାକର ତେଲ ଲୁଣ ରୁଟି । ଗୋରା ମାଲିକର କାରଖାନା ଘରେ / ବିନା ଦରମାରେ ମିଳେ ଛୁଟି ।"

ଆଜି ଅବଶ୍ୟ ଗୋରା ମାଲିକମାନଙ୍କର ପ୍ରତ୍ୟକ୍ଷ ଶୋଷଣ ନାହିଁ । କିନ୍ତୁ ପରୋକ୍ଷରେ ସାରା ଭାରତ ସେମାନେ ଦଖଲ କରିବାକୁ ଅଭିଯାନ ଆରମ୍ଭ କଲେଣି । ଭୋକର ଆହୁରି ଭୟାନକ ଚିତ୍ର ଭବିଷ୍ୟତର ଅନ୍ଧାର ଭିତରେ ଅଟ୍ଟହାସ୍ୟ କରୁଚି । ଟାଟା, ବେଦାନ୍ତ, ଏସାର୍, ଷ୍ଟାର୍‌ଲାଇଟ୍, ହିଣ୍ଡାଲ୍‌କୋ, ହାମ୍‌କୋ, ଏଲ୍.ଏନ୍.ଟି - ସେମାନଙ୍କ ଧାଡ଼ି ଲମ୍ବି ଲମ୍ବି ଚାଲଚି । ହଜାର ହଜାର ଆଦିବାସୀ ଗାଁର ଭାଗ୍ୟ ସୂତା ଖିଅକରେ ଝୁଲୁଚି । କେତେଦିନ ଆଉ ତିଷ୍ଠି ରହିବ ଆଦିବାସୀ ସମାଜ ?

- ୨ -

ଗୋଟିଏ ଅଂଚଳରେ ଗୋଟିଏ ନିର୍ଦ୍ଦିଷ୍ଟ ଜନଗୋଷ୍ଠୀ ବା କେତେକ ଜନଗୋଷ୍ଠୀ କ୍ରମାଗତ ଭାବେ ଭୋକ କବଳରେ ପଡ଼ି ସଡ଼ି ଚାଲିବା ଫଳରେ ତାହା ସେମାନଙ୍କର ସଂସ୍କୃତିକୁ କେତେଦୂର ପ୍ରଭାବିତ କରେ ? ତାହା ପୁରୁଣା ସଂସ୍କୃତିରେ ଏପରି କିଛି ପରିବର୍ତ୍ତନ ଆଣିଥାଏ, ଯାହା କି ତା'ର ମୌଳିକ ଢାଞ୍ଚାକୁ ମଧ୍ୟ ସ୍ପର୍ଶ କରିଯାଏ, ବଦଳାଇ ଦିଏ ଓ ତା' ଫଳରେ ଜନ୍ମନିଏ ଏପରି ଏକ ସଂସ୍କୃତି ଯାହାଠାରେ ପୂର୍ବ ସଂସ୍କୃତିର ପରିଚିତି ମିଳୁଥିଲେ ମଧ୍ୟ ତା'ର ଆତ୍ମାକୁ ଖୋଜି ପାଇବା କଷ୍ଟକର ହୁଏ । "ଆଦିବାସୀ ଭୋକ ସଂସ୍କୃତି" ଉପରେ ପ୍ରଥମ ଲେଖାଟି ଶେଷ କରିବା ପରେପରେ ଏଇ ମୌଳିକ ପ୍ରଶ୍ନଟିଏ ମୋତେ ବିଚଳିତ କଲା । ଲେଖାଟି ଯିଏ କପି କରିଦେଲେ, ସେ କହିଲେ, ଯେଉଁ ଆଦିବାସୀ ପିଲାଟି ଧୂଳିରୁ ଗୋଟେଇ ବଣ୍ଡା (ଗୁଲଗୁଲା) ଖାଇଲା, ତାହା ତା'ର ଭୋକ ମେଣ୍ଟାଇବା ପାଇଁ ନୁହେଁ, ଲୋଭ ପାଇଁ । ତେବେ ମାତ୍ର ଚାରିଅଣାର ବଣ୍ଡା ପାଇଁ କାହିଁକି ଏ ଲୋଭ ? ଏହା କ'ଣ ଭୋକର ଆନୁସଂଗିକ ଉପାଦାନ । ନା ସଂସ୍କୃତିଗତ ଶିକ୍ଷାର ଅଭାବ ? କୁଆଡ଼େ ଗଲା ଆଦିବାସୀର ଆତ୍ମାଭିମାନ ? କେଉଁଠି ବଳି ପଡ଼ିଗଲା ତା'ର ଅନନ୍ୟ ସଂସ୍କୃତିର ଆଭିଜାତ୍ୟ ?

ବହୁଦିନ ତଳେ ମୋର ପି.ଜି. ଛାତ୍ର ଜୀବନରେ ପେସେଞ୍ଜର ଟ୍ରେନ୍‌ରେ ଭୁବନେଶ୍ୱରରୁ ବାଲେଶ୍ୱର ଯାଉଥିବା ବେଳେ ଗୋଟିଏ ଛୋଟ ଘଟଣା ମୋତେ ଖୁବ୍ ବିଚଳିତ କରିଥିଲା । ଜଣେ ମଳିନବସ୍ତ୍ରା ସ୍ତ୍ରୀଲୋକ ତାଙ୍କର ୪/୫ ବର୍ଷର ପୁଅକୁ ଧରି ଆମ ସହ ଯାଉଥିଲେ । ବସିଥିଲେ ପାଖ ବେଞ୍ଚରେ । ଉଭୟେ ମାଆ ଓ ପୁଅଙ୍କ ମୁହଁକୁ ଦେଖିଲେ ମନେ ହେଉଥିଲା ବେଶ୍ କିଛିଦିନ ହେଲା ଭୋକରେ କ୍ଳେଶକୁ ସେମାନେ ମୁହଁଚାପି ସହି ଯାଉଛନ୍ତି । ଦି'ଜଣଙ୍କ ପାଖରେ କଥାବାର୍ତ୍ତା ହେବାର ଶକ୍ତି ମଧ୍ୟ ନଥିଲା । ପିଲାଟି କାନ୍ଦୁ ନଥାଏ କିମ୍ବା କୌଣସି କଥା ପାଇଁ ଅଳି ବା ଜିଗର କରୁ ନ ଥାଏ । ଆମ ପାଖରେ ବସିଥିବା ଆଉଜଣେ ପାସେଞ୍ଜର ଅବିରତ ବାଦାମ ଚୋବାଇ ଚାଲିଥିଲେ । ପିଲାଟି ତାଙ୍କର ଇଞ୍ଜିନ୍ ଭଳିଆ ଚାଲିଥିବା ମୁହଁକୁ ମଝି ମଝିରେ ଅନାଉ ଥିଲା । ହଠାତ୍ ବାଦାମ ମଞ୍ଜିଟିଏ ତଳେ ପଡ଼ିଗଲା । ପିଲାଟିର ଆଖି ତାଙ୍କ ମୁହଁରୁ ତଳକୁ ଓହ୍ଲାଇ ଆସିଲା, ଯେଉଁଠି ପଡ଼ିଥିଲା ସେ ବାଦାମ ଦାନା । ସେ ତା' ମାଆ ମୁହଁକୁ ଚାହିଁଲା । ମାଆ ମୁହଁରେ କେଉଁ ଆକଟର ଇଙ୍ଗିତ ସେ ପାଇଲା କେଜାଣି, ସ୍ୱତଃ ଉତ୍‌ପ୍ରେରିତ ତଳକୁ ବଢ଼ିଯାଉଥିବା ତା'ର କୁନି ହାତଟି ଧୀରେ ଫେରି ଆସିଲା ଏବଂ ସେ ଅନ୍ୟଆଡ଼େ ଦୃଷ୍ଟି ଫେରାଇ ନେଲା । ସେମିତି ଚୁପ୍‌ଚାପ୍, ସତେଯେମିତି କିଛିହେଲେ ଘଟିନାହିଁ ଏବଂ ଯାହା ବା ଘଟିଛି ସେଥିପାଇଁ ସେ ଖୁବ୍ ଲଜ୍ଜିତ ।

ଆଜିକି ତିରିଶ ବର୍ଷ ବିତି ଯାଇଥିଲେ ବି ସେ ଦୃଶ୍ୟ ମୋ ଭିତରେ ଆଜିବି ଉଦ୍‌ଜୀବିତ । କିନ୍ତୁ ତାହା ସହ ଟକ୍‌କର ଦେଉଥିବା ଏଠିକାର ବିପରୀତ ଦୃଶ୍ୟ ! କି ସଫେଇ ଦିଆଯିବ ଏଥିପାଇଁ ? ଏଠିକାର ଆଦିବାସୀମାନେ ସକାଳେ ଉଠି ଦାନ୍ତ ନ ଘଷି ବେଡ଼ାକୁ ଯାଆନ୍ତି । "ସକାଳେ ଉଠ୍‌ଲୁ ଦାନ୍ତ ନା ଘଷ୍‌ଲୁ କାମେ ଧାମେ ଚାଲିଗଲୁ ।" ପ୍ରାୟ ଦିନ ଏଗାରଟା ବେଳକୁ ବେଡ଼ାରୁ ଫେରି ସେମାନେ ଭାତ ଖାଆନ୍ତି । ମାଆମାନେ ପ୍ରାୟ ଦଶଟା ସୁଦ୍ଧା ଘରକୁ ଆସି ରୋଷେଇ ବସାନ୍ତି । କେବେ କେବେ ପୂର୍ବ ରାତିର ଶୁଖିଲା ଭାତ ଖାଇବାକୁ ପଡ଼ିଥାଏ । ସାଙ୍ଗରେ ଥାଏ କିଛି ବଣୁଆ ପତ୍ରର ଶାଗ କିମ୍ବା ଚାଉଳ ଚୂନାର ଆମଟ(ଆମ୍ବିଳ) ବା ଖାଲି ଲୁଣମରିଚ । ଖୁବ୍ କମ୍ ଲୋକଙ୍କ ଘରେ ଡାଲି ବା ପରିବା ତରକାରୀ ହୋଇଥାଏ । ପରବର୍ତ୍ତୀ ମିଲ୍ ଖିଆଯାଏ ସଂଜ ସାତଟାରେ । ମଝିରେ କିଛି ଖିଆଯାଏ ନାହିଁ । ପିଲାଛୁଆ ବୁଢ଼ାବୁଢ଼ୀ ସମସ୍ତଙ୍କ ପାଇଁ ଏଇ ଗୋଟିଏ ନିୟମ । ଆଉ ଯେତେବେଳେ ସେଇ ଚାଉଳ ଗଣ୍ଡାକ ବି ନ ଥାଏ, ସେତେବେଳେ ମାଆମାନେ ଏଣୁତେଣୁ କିଛି ଖାଦ୍ୟ ଅଖାଦ୍ୟ ସଂଗ୍ରହ

କରି ସିଝାଇ ଦେଇଥାନ୍ତି । ଆଗରୁ ଆଦିବାସୀ ପ୍ରଚୁର ମାଣ୍ଡିଆ ପଚାଉଥିଲା । ଘରେ ରାତି ପାହିଲା ବେଳକୁ ମାଆମାନେ ହାଣ୍ଡି ଭର୍ତ୍ତି ମାଣ୍ଡିଆ ଫୁଟାଇ ଦେଉଥିଲେ । ପେଟେ ଲେଖାଏଁ ମାଣ୍ଡିଆ ପେଜ ପିଇ ଦେଇ ସଭିଏଁ ବେଢ଼ାକୁ ବାହାରି ଯାଉଥିଲେ । ପିଲାମାନେ ଭୋକ ହେଲେ ସେଇ ପେଜ ପିଇ ରହି ଯାଉଥିଲେ । ତା' ପୂର୍ବରୁ ଥିଲା ମହୁଲଗୁଣ୍ଡ ବା 'ଲକ୍‌ଟି' । ଏଇ ଲକ୍‌ଟି ପୁଡ଼ା ଧରି ଆଗକାଳର ଆଦିବାସୀ ଶିକାରକୁ ଯାଉଥିଲେ । ମହୁଲଗୁଣ୍ଡ ଥିଲା ସବୁପ୍ରକାର ଖାଦ୍ୟର ମୂଳଆଧାର । ଜଙ୍ଗଲ କରଡ଼ି, ଛତୁ, ସାରୁ ଶାଗ, ବାଉଁଶ ଚାଉଳ, କନ୍ଦ, ସୁଆଁ, ଶାଳମଞ୍ଜି, ପିତାକନ୍ଦା, ଗଡ଼ିଆଲି ଶାଗ, ଭେଣ୍ଡା ଶାଗ, ଅଲ୍‌ସୀ ଗୁଣ୍ଡ, ଏସବୁରୁ ଯେଉଁଟା ବି ମିଳିଲା ମହୁଲଗୁଣ୍ଡ ସହ ମିଶାଇ ଅଦିବାସୀ ଛତୁଆ ଭଳି ଏକ ଖାଦ୍ୟ ପ୍ରସ୍ତୁତ କରିନେଉଥିଲା । ସବା ପଛରେ ଆସିଲା ମାଣ୍ଡିଆ । ଧୀରେ ଧୀରେ ମାଣ୍ଡିଆ ଦଖଲ କରିନେଲା ମହୁଲଗୁଣ୍ଡର ସ୍ଥାନ ଓ ଆଦିବାସୀର ମୁଖ୍ୟ ଖାଦ୍ୟ ହୋଇଉଠିଲା । ଇଂରେଜମାନେ ଆସିବା ସଂଗେ ସଂଗେ ମହୁଲ ଚାଲିଗଲା ଶୁଣ୍ଢୀ ବା କଲାରମାନଙ୍କ ଦଖଲକୁ । ସେମାନେ ଆଦିବାସୀମାନଙ୍କଠାରୁ ମହୁଲ କିଣି ସେଇମାନଙ୍କୁ ବିକିଲେ ମହୁଲି ମଦ । ଇଂରେଜ ସରକାରଠୁ ଲାଇସେନ୍‌ସ ଆଣି ଏଇ ମଦର ପ୍ରଚଳନ କରି ଆଦିବାସୀକୁ ସେମାନେ ତା'ର ଏକ ପ୍ରିୟ ପୁଷ୍ଟିକର ଖାଦ୍ୟ ବଂଚିତ କଲେ - ଦୂରେଇ ନେଲେ । ଓଲଟି ତାକୁ ସବୁବେଳେ ନିଶାଗ୍ରସ୍ତ ରଖି ତା'ର ଜମିଜମାକୁ ଚିତା କାଟିନେଲେ । ପର୍ବପର୍ବାଣୀ, ପୂଜା, ଜନ୍ମ ମୃତ୍ୟୁ ବିବାହାଦି ଦିନରେ ଖୁସିବାସିରେ ପିଉଥିବା ମଦ ହୋଇଉଠିଲା ସବୁଦିନିଆ ପାନୀୟ । ପୂର୍ବରୁ ସେ ଜାଣିଥିଲା କେବଳ ଗୋଟିଏ ପ୍ରକାର ପାନୀୟ । ସଲପ । ଶବରମାନେ ଆବିଷ୍କାର କରିଥିଲେ ସଲପ । ବେଣ୍ଟକୁ ଯାଇ ପାହାଡ଼ ଉପରେ ବୁଲି ବୁଲି ଶୋଷିଲା ଅନୁଭବ କଲାବେଳେ ଡଙ୍ଗର ଉପରେ ଆଦିବାସୀମାନେ ବିଭିନ୍ନ ଗଛର ଗଣ୍ଡି ଓ ପତ୍ରରୁ ଜଳ ସନ୍ଧାନ କରୁଥିଲେ । ଏହିପରି କରୁକରୁ ହଠାତ୍ ଶବରମାନେ ଆବିଷ୍କାର କରିଥିଲେ ସଲପ । ଲୋକକଥା ରହିଛି ଯେ ଆଗକାଳରେ ଶବରମାନେ ମନ୍ତ୍ର ପଢ଼ିଲେ ସଲପଗଛ ନଇଁ ଆସୁଥିଲା । ତା'ର ରସ ବାହାର କରିନେଇ ପୁଣି ମନ୍ତ୍ର ପଢ଼ି ସେ ଗଛକୁ ସେମାନେ ଫେରାଇ ଦେଉଥିଲେ ପୂର୍ବାବସ୍ଥାକୁ । ଜଣେ ଋଷି - (ବ୍ୟାସଦେବଙ୍କ ମହାଭାରତରେ ଅନୁରୂପ ଗଳ୍ପକଥା ମନେପକାନ୍ତୁ) - ଏହା ଦେଖି ଶବର ପାଖରୁ ସେ ମନ୍ତ୍ର ଶିଖିବାର ଚେଷ୍ଟାକଲେ । ଶବର କିନ୍ତୁ ଋଷିଙ୍କୁ ମନ୍ତ୍ର ଦେବାକୁ ନାରାଜ । ସେଥିପାଇଁ ପ୍ରତିଦିନ ଋଷି ତା'ର ଘରକୁ ଆସିବା ପୂର୍ବରୁ ସେ ଜଙ୍ଗଲକୁ ପଳେଇଯାଏ । ଏଇମିତି

ତିନିଦିନ ଫେରିବା ପରେ ଋଷି ପ୍ରତି ଦୟାଶୀଳ ହୋଇ ଶବର ପୁଅ ତାକୁ ଆସିବାର କାରଣ ପଚାରିଲା । ଋଷି ତାଙ୍କର ଉଦ୍ଦେଶ୍ୟ ବ୍ୟକ୍ତ କରିବାରୁ ସେ ପିଲା ଆଗପଛ ନ ବିଚାରି ତାକୁ ମନ୍ତ୍ର ଶିଖାଇ ଦେଲା । ଶବର ଘରକୁ ଫେରି ଏ କଥା ଶୁଣିବା ପରେ ପୁଅକୁ କହିଲା ତୁ ତାକୁ ମନ୍ତ୍ର ଦେଇ ତା'ର ଗୁରୁ ହେଲୁ, କିନ୍ତୁ ସେ ତ ବ୍ରାହ୍ମଣ, ସେ କାହିଁକି ତୋତେ ଗୁରୁ ରୂପେ ମାନ୍ୟ କରିବ ? ତେଣୁ ଆଜିଠାରୁ ଏ ମନ୍ତର ଶକ୍ତି ଲୋପ ପାଇଯିବ । ସତକୁ ସତ ସେହିଦିନୁ ମନ୍ତ୍ର ଆଉ କାମ କଲାନି । ସଲପ ଗଛକୁ ଚଢ଼ିବା ପାଇଁ ଗୋଟିଏ ବାଉଁଶ ଦାଣ୍ଡି ବ୍ୟବହାର କରାଗଲା । ଯାହାକି ଏବେ ମଧ୍ୟ ପ୍ରଚଳିତ । ସଲପ ସାଙ୍ଗକୁ ଥିଲା ତାଲ୍ ବା ଖଜୁରୀ ରସ । ସଲପକୁ ଆଦିବାସୀ କହୁଥିଲା ମା' କ୍ଷୀର । ତାକୁ ସର୍ଗଗଛ ଭଳି ପୂଜୁଥିଲା, ଦେବତା ବୋଲି ମାନୁଥିଲା । ପରେ ପରେ ପରଜାମାନେ ବାହାର କଲେ ପେଣ୍ଡମ୍, ଲନ୍ଦା ବା ହାଣ୍ଡିଆ । ସୁଆଁ ପେଣ୍ଡମ୍, ଜଣା ପେଣ୍ଡମ୍, ମାଣ୍ଡିଆ ପେଣ୍ଡମ୍ ଓ ସବା ପଛକୁ ଚାଉଳ ପେଣ୍ଡମ୍ । କିନ୍ତୁ ମହୁଲୀ ମଦ ସବୁ କିଛିକୁ ଜିଣିଗଲା । ଆଦିବାସୀ ନିଜେ ମଧ୍ୟ ଧୀରେଧୀରେ ମଦ ତିଆରି କରିବା ଶିଖିଗଲା ଓ ତିଆରି କଲା ମହୁଲୀ ସହ କୁସୁମ କୋଳିର ମଦ, ଆମ୍ବ, ପଣସ, ଆଖୁ, ଭାଲିଆ(କାଜୁଫଳ), କଦଳୀ, ଜାମୁକୋଳି, ତେନ୍ତୁଳି ଓ ଡୁମ୍ବୁରୀ ଫଳର ମଦ । ଏହିଭଳି ତା'ର ସମସ୍ତ ପାରମ୍ପରିକ ଖାଦ୍ୟ ଧୀରେଧୀରେ ସଂକୁଚିତ ହୋଇଆସିଲା ଓ ଭାତ ହିଁ ହୋଇଗଲା ତା'ର ମୁଖ୍ୟ ଖାଦ୍ୟ । ଧାନ ହେଲା ମୁଖ୍ୟ ଚାଷ । ମଦ ହୋଇଗଲା ମୁଖ୍ୟ ପାନୀୟ । ପୂର୍ବରୁ କେବଳ ଭୋଜି ବେଳେ ହିଁ ଖେଡ଼ଜଣା-କଦ-ସୁଆଁ ଓ କାଂଗୁ ଭାତ ସହ ଚାଉଳ ଭାତର ବ୍ୟବହାର ହେଉଥିଲା ।

ପ୍ରକୃତରେ ଭୋଜିକୁ ଆସୁଥିବା ଅଣଆଦିବାସୀ ବିଶିଷ୍ଟ ଅତିଥି ଯଥା ସାହୁକାର ବା ସରକାରୀ ଅଧିକାରୀମାନଙ୍କ ପାଇଁ କଷ୍ଟେମଷ୍ଟେ କିଛି ଚାଉଳ ଯୋଗାଡ଼ କରାଯାଇ ଭାତ କରାହେଉଥିଲା । ଧୀରେ ଧୀରେ ସେଇ କଥାଟା ଶିଷ୍ଟାଚାର ଓ ସମ୍ମାନବୋଧ ସହ ଯୋଡ଼ା ହୋଇଗଲା । ବାହାରୁ ଆସିଥିବା ଭିନ୍ନ ଗାଁ ବା ଭିନ୍ନ ପରିବାରର ଲୋକଙ୍କ ପାଇଁ ଚାଉଳ ଲୋଡ଼ା ପଡ଼ିଲା ।

ପାହାଡ଼ ଉପରେ ଚିତ୍ରକୋଣ୍ଡା ବନ୍ଧ ଦ୍ୱାରା ଟାପୁ ପାଲଟିଥିବା ଅଂଚଳରେ ଗୋଟିଏ ଗାଁ ହେଉଛି ହନ୍ତାଳଗୁଡ଼ା । କିଛିବର୍ଷ ତଳେ ସେଠାକୁ ସଂଘର କିଛି କର୍ମୀ ବର୍ଷା ମାସରେ ଏକ ସଭା ପାଇଁ ଯାଇଥିଲେ । ସେଠି ଥିବା ତିରିଶଟା ଯାକ ଘର ସିନ୍ଧିକୁଟାରେ ଛପର ହୋଇଛି । ସିନ୍ଧି ହେଉଛି ଏକପ୍ରକାର ବୁଦାଳିଆ ଖଜୁରୀଗଛ ।

ଧାନଚାଷ ହେଉ ନ ଥିବାରୁ ଭଲ ପିରି କାହାକୁ ମିଳେନି । ସବୁ ଘରେ ପାଣି ପଡୁଚି । ଦୁଇଟି ଘର ଭୁଷୁଡ଼ି ଯାଇଛି । ବସିବା ପାଇଁ କେଉଁଠି ହେଲେ ସ୍ଥାନ ନାହିଁ । ତେଣୁ ଛତା ଫୁଟାଇ ଠିଆ ଠିଆରେ ମିଟିଂ ହେଲା । ଲୋକେ ନିଜ ଦୁଃଖ ବଖାଣିଲେ । ଏକାତ୍ମ ହେଲେ । ଜଣେ କନ୍ଧଭାଇ ଏତେ ମଇଳା ଲେଙ୍ଗଟିଟେ ପିନ୍ଧିଥିଲା ଯେ, ସଂଘର ସଭାପତି ତାକୁ ପଚାରିଲେ ଭାଇ ଏ ଲୁଗାଟା ଟିକେ କାଚିକରି ପିନ୍ଧିପାରୁନୁ, ଖୁବ୍ ମଇଳା ହେଲାଣି ।

ସେ ଉତ୍ତର ଦେଲା, "ମୁଁ ମିଶା ଜାଣିଲିଣି ଯେ ଏଇଟା ଖୁବ୍ ଗନ୍ଧିଆ ହେଲାଣି । କିନ୍ତୁ କିସ୍ କରିବି ? ମୋର ମାତ୍ର ଏଇ ଖଣ୍ଡେ ଥାନ । ବର୍ଷା ଛାଡ଼ିଲେ ତ କେଉଁ ଝୋଲାକୁ ଯାଇ ଏହାକୁ କାଚି ଶୁଖେଇ ପୁଣି ପିନ୍ଧିବି । ବର୍ଷା ତ ଦିନେ ବୋଲି ଛାଡ଼ିବାକୁ ନାହିଁ ।" ସେଇ ଦରିଦ୍ର କନ୍ଧ ଗାଁରେ ସେଦିନ କର୍ମୀମାନେ ରହିଗଲେ । କିନ୍ତୁ ସେମାନଙ୍କ ଭାଳେଣି ପଡ଼ିଲା, ସଂଘ ଭାଇମାନଙ୍କୁ କ'ଣ ଖାଇବାକୁ ଦେବୁ ? ଗାଁରେ ତ ଚାଉଳ ନାହିଁ । ତାଙ୍କ ଭାଷା ବୁଝିପାରି ସଭାପତି ସମସ୍ତଙ୍କୁ ବହୁତ ବୁଝାଇଲେ । ଆମକୁ ମିଶା ମାଣ୍ଡିଆ କି ସୁଆଁ ଭାତ ଦିଅ । କିଛି ଅସୁବିଧା ନାହିଁ । ହେଲେ ସେମାନେ ଭାବିଲେ, କି କଥା ? ଗାଁର ସମ୍ମାନରେ ଆଞ୍ଚ ଆସିବନି ? ଶେଷରେ ପଡ଼ୋଶୀ ଗାଆଁରୁ ଚାଉଳ ଯୋଗାଡ଼ ହୋଇ ଆସି ଅତିଥିମାନଙ୍କ ପାଇଁ ଭାତ ତିଆରି ହେଲା । ବରଂ ସେମାନଙ୍କୁ ଉପାସ ରହିବାକୁ ପଡୁ, କିନ୍ତୁ ଚାଉଳ ଭାତ ଭିନ୍ନ ଅନ୍ୟକିଛି ଦିଆଯାଇ ପାରିବ ନାହିଁ । ଏହା ହେଉଚି ଗାଁର ସମ୍ମାନର ପ୍ରଶ୍ନ ।

ଏଇ ସମ୍ମାନର ପ୍ରଶ୍ନ ଧୀରେ ଧୀରେ ପ୍ରତି ପରିବାରକୁ ଗ୍ରାସ କଲା । ଅଧିକାଂଶ ମନସ୍ତତ୍ତ୍ୱରେ ଏ କଥା ଲେଖି ହୋଇଗଲା ଯେ ଚାଉଳ ନାହିଁ ଅର୍ଥ ଖାଦ୍ୟ ନାହିଁ । ଏହା ଆଦିବାସୀର ଖାଦ୍ୟ ଅଭ୍ୟାସକୁ ବଦଳାଇ ଦେବା ସଂଗେ ସଂଗେ ଚାଷ ଅଭ୍ୟାସକୁ ମଧ୍ୟ ବଦଳାଇ ଦେଲା । ପ୍ରତି ପରିବାରର ପ୍ରତିଦିନର ମୁଖ୍ୟ ଆହାର ହେଲା ଭାତ । ଚାଉଳ ନଥିଲେ ଏଣୁତେଣୁ ଖାଦ୍ୟ ଅଖାଦ୍ୟ ଖାଅ ବା ଉପାସ ରୁହ । ଏପରିକି ଡଙ୍ଗର ଜମିରେ ଯେଉଁଠି ମାଣ୍ଡିଆଚାଷ ହେଉଥିଲା, ସେଠି ମଧ୍ୟ ମାଣ୍ଡିଆକୁ ବାଛନ୍ଦ କରି ଧାନଚାଷ ହେଲା । ପୁଣି କେଉଁଠି ସାହୁକାରୀ ହାଇବ୍ରିଡ୍ ମକା ସେ ସ୍ଥାନ ଦଖଲ କଲା । ଆଉ ବା କେଉଁଠି ନିଶାବେପାରୀର ଗଞ୍ଜେଇ । ଏବେ ନବରଙ୍ଗପୁର ଜିଲ୍ଲାର ଉମରକୋଟ ବ୍ଲକ୍ ଏହି ହାଇବ୍ରିଡ୍ ମକାଚାଷ ପାଇଁ ବେପାରୀମାନଙ୍କ ସ୍ୱର୍ଗ ପାଲଟିଛି ଏବଂ ମାଲ୍‌କାନ୍‌ଗିରି ଜିଲ୍ଲାର ଶହଶହ ଏକର ଜଙ୍ଗଲ ଜମିରେ ଗଞ୍ଜେଇ ଚାଷ ଚାଲିଛି ।

ଏଥିପାଇଁ ପୁଲିସ୍ ଓ ଅବକାରୀ ଅଧିକାରୀ ଓ ଗଞ୍ଜେଇ ବେପାରୀମାନଙ୍କର ଏହା ହୋଇଛି ଚାରଣଭୂମି । ବର୍ଷଯାକ ଆଦିବାସୀ ଖଟୁଛି କିନ୍ତୁ ସିଂହଭାଗ ଲାଭ ଏଇମାନେ ହିଁ ଲୁଟି ନେଉଛନ୍ତି । ତା' ହାତକୁ ଯେଉଁ ସାମାନ୍ୟ କିଛି ଡାବୁ ଆସୁଛି ସେଥିରେ ନିତ୍ୟାନି ଖର୍ଚ୍ଚ ବାଦ୍‌ଯାଇ ଛ'ମାସର ଧାନ ବି କିଣାଯାଇ ପାରୁନି । ଏପରିକି ବି.ପି.ଏଲ୍. ବା ଅନ୍ତ୍ୟୋଦୟ ଚାଉଳ କିଣିବା ପାଇଁ ବି ତା' ପାଖରେ ପଇସାର ଅଭାବ । ତେଣୁ କାର୍ଡ଼ ବନ୍ଧା ପକାଇ ପଇସା ଆଣ ଓ ଖୋଲା ବଜାରରୁ ଚାଉଳ କିଣ । ଖାଦ୍ୟ ପାଇଁ କାମ ଯୋଜନାର ଚାଉଳ କିପରି ବାଟ ମାରଣା ହୋଇ ରିସାଇକଲ୍ ହେଉଛି ତାହା ସମସ୍ତଙ୍କୁ ଜଣା । ଏଥିରେ ମଧ୍ୟ ସରକାରୀ ଘୋଷିତ ମଜୁରୀ କାହାକୁ କେବେ ମିଳେନାହିଁ । ଚାଉଳ ପାଗଳ ଆଦିବାସୀଙ୍କୁ ଅଧା ହାରରେ ମଜୁରୀ ହିସାବ କରାହୋଇ ବଜାର ରେଟ୍‌ର ଚାଉଳ ଧରାଇ ଦିଆଯାଏ । ପରସ୍ତ ପରସ୍ତ ମୁନାଫାର ପାହାଡ଼ ଭିତରେ ସାହୁକାର, ବେପାରୀ ଓ ଠିକାଦାର – ଅଧିକାରୀମାନେ ପୋତି ହୋଇଯାଆନ୍ତି ।

ଏହିପରି ଏହିପରି ଆଦିବାସୀ ସଂସ୍କୃତିର ପାରମ୍ପାରିକ ଖାଦ୍ୟ ଧୀରେଧୀରେ ପଛକୁ ହଟିଯାଇ ତା'ର ଜାଗା ମାଡ଼ି ବସିଛି ସାହୁକାରୀ ସଂସ୍କୃତିର ଚାଉଳ – ଭାତ । ଜଙ୍ଗଲରେ ପର୍ଯ୍ୟାପ୍ତ ଶିକାର ନାହିଁ କି ଗଛବୃଛରେ ଆବଶ୍ୟକ ଫଳ ନାହିଁ । ସେହି ପୁରୁଣା ଆଦିବାସୀ ଲୋକକଥାର ସେ ଡୋକ୍ରାଡୋକ୍ରୀ ନାହାନ୍ତି ଯେଉଁମାନେ ଲକ୍‌ଟିପୁଡ଼ା ଧରି ଗୋଇ ଶିକାର କରିଯାଇଥିଲେ । ଗୋଇ(ଗୋଧି) ପଶିଗଲା ପଲ୍‌ଗା (ସଂକୀର୍ଣ୍ଣ ଗୁଂଫା) ଭିତରେ । ତାକୁ ଗୋଡ଼ାଇ ଗୋଡ଼ାଇ କୁକୁର ମିଶା (ମଧ୍ୟ) ତା' ଭିତରେ ପଶିଗଲା । କୁକୁର୍ ନ ବାହାରିବା ଦେଖି ଡୋକ୍ରା ମଧ ପଲ୍‌ଗା ଭିତରେ ପଶିଗଲା । ପୁଣି ସେ ବାହାରିବା ପାଇଁ ଡେରି କରିବାରୁ ଡୋକ୍ରୀ ତା'ର ଲକ୍‌ଟିପୁଡ଼ା ଛାଡ଼ି ଭିତରେ ପଶିଲା । ନା କୁକୁର, ନା ଡୋକ୍ରା ନା ଡୋକ୍ରୀ, କେହି ଆଉ ବାହାରିଲେ ନାହିଁ । ମାଲ୍‌କାନ୍‌ଗିରି ପାଖରୁ ପ୍ରାୟ ତିନି କିଲୋମିଟର ଦୂରରେ ରହିଛି ସେଇ ଗୋଇ ପର୍ବତ । ତା' ସାମ୍ନାରେ ଥୁଆ ହୋଇଛି ପାକ୍‌ନା ବା ପଥର ପାଲଟି ଯାଇଥିବା ସେଇ ଲକ୍‌ଟିପୁଡ଼ା । ଆଦିବାସୀ ସମାଜରେ କିନ୍ତୁ ଲକ୍‌ଟି ପୁଡ଼ାର ପ୍ରଚଳନ ଆଉ ନାହିଁ ।

ସେହିପରି ଆମ୍ବଟାକୁଆର ଜଟିଳ ପ୍ରକ୍ରିୟାକରଣ ଆଜି ଲୋପ ପାଇଛି । ଦିନେ ଯେ ଆଦିବାସୀ କୋଇଲିଚୁନାରୁ ପ୍ରସ୍ତୁତ ପିଠାକୁ ୨/୩ମାସ ଧରି ଖାଦ୍ୟ ରୂପେ ବ୍ୟବହାର କରୁଥିଲା, ତା'ର ସ୍ମୃତି ସ୍ୱରୂପ ରହିଯାଇଛି 'ଟାକୁ ପରବ' । ଆଜି ବି ଏହି

ଟାକୁ ପରବ ପାଳନ ହେଉଛି । ଅଥଚ କୋଇଲି ଗୁଣ୍ଡର ଚୂନା ବ୍ୟବହାର କରିବା ପାଇଁ ତା' ପାଖରେ ଯଥେଷ୍ଟ ଟାକୁଆ ନାହିଁ କି ନାହିଁ ସେଇ ପୁରୁଣା ଧୈର୍ଯ୍ୟ ଓ କୌଶଳ । କୋଇଲିଗୁଣ୍ଡକୁ ଧୋଇ ଶୁଖାଇ ଗୋଟିଏ ରାତି ପାଇଁ ଝରଣା ପାଖରେ ଏପରି ଜାଗାରେ ରଖାଯାଏ, ଯେଉଁଠି ଉପରୁ ପାଣି ପଡୁଥାଏ । ସେହି ପାଣିରେ ବାରଘଣ୍ଟା ଧରି ଧୋଇ ହେବାପରେ ତାକୁ ଘରକୁ ଆଣି ଶୁଖାଇ ଦେଲାପରେ ତାହା ପାଲୁଅଗୁଣ୍ଡ ପରି ଚିକ୍‌କଣ ହୋଇଯାଏ । ତାକୁ ଲକ୍‌ଟି, ମାଣ୍ଡିଆ ବା ଅନ୍ୟ ଶସ୍ୟ ସହ ମିଶାଇ ପିଠା କରାଯାଏ । ମାଂସ ସହ ମିଶାଇ ଚକୁଳି ମଧ୍ୟ କରାଯାଏ । ସର୍ଗିମଞ୍ଜିର ଗୁଣ୍ଡ ମଧ୍ୟ ବ୍ୟାପକ ଭାବେ ପ୍ରଚଳିତ ଥିଲା । ସେ ସବୁ ଧୀରେ ଧୀରେ ଲୋପ ପାଇଗଲାଣି । ସବୁଠୁ ଦୁଃଖର କଥା ଯେ ଗତ ପ୍ରାୟ ପାଞ୍ଚଦଶକ ଧରି ଯେଉଁ ମାଣ୍ଡିଆ ଆଦିବାସୀର ମୁଖ୍ୟ ଖାଦ୍ୟ ଥିଲା, ତାହା ଧୀରେ ଧୀରେ ଲୋପ ପାଉଛି । ମାଣ୍ଡିଆର ପେଜ, ଜାଉ, ଅଣ୍ଡା(ମାଣ୍ଡିଆର ଉପମା), ଚକ୍‌ଲି, ମାଣ୍ଡୁ(ଦକ୍ଷିଣ ଭାରତୀୟ ଉତ୍ତପମ୍), ମେଚା(ହାତରେ ମଣ୍ଡାପିଠା ଭଳି ଗୋଲ ଗୋଲ କରି ପାଣିର ବାମ୍ଫରେ ସିଝାଇ ପ୍ରସ୍ତୁତ କରାଯାଏ), ଲାନ୍ଦା(ମାଣ୍ଡିଆ ଗଜାରୁ ପ୍ରସ୍ତୁତ ପାନୀୟ) ଓ ସୁରାମ୍ । ବରଂ ସେଇ ମାଣ୍ଡିଆ 'ରାଗି' ନାମ ଧାରଣ କରି ଦେଶ ବିଦେଶରେ ଶିଶୁଖାଦ୍ୟ ଓ ରୋଗୀ ପଥ୍ୟ ରୂପେ ପ୍ରଚଳିତ ହେଉଛି । ତାକୁ ନେଇ ବହୁ ଜାତୀୟ କର୍‌ପୋରେସନ୍‌ମାନଙ୍କ ବେପାର ଚାଲୁଛି । କିନ୍ତୁ ତା'ର ଜନ୍ମଦାତା ତାକୁ ଭୁଲିଯାଉଛି । ତା' ସହ ଭୁଲିଯାଉଛି ମାଣ୍ଡିଆରୁ ଜନ୍ମ ନେଇଥିବା ଗୋଟିଏ ଅନହୁତି ଜନସଂସ୍କୃତିକୁ ଓ ହରେକ୍ କିସମର ଖାଦ୍ୟକୁ ।

ଏହିଭଳି ଚାଉଳ ସହ ହାତ ଧରାଧରି ହୋଇ ପ୍ରବେଶ କରିଛି ଭୋକସଂସ୍କୃତି । ପୂର୍ବରୁ ଆଦିବାସୀର ବାପ ମା' ଥିଲା ଜଙ୍ଗଲ । ଏବେ ସେ ସ୍ଥାନ ନେଇଛନ୍ତି ସରକାର । ଜଙ୍ଗଲରେ ଥିଲା ଅପର୍ଯ୍ୟାପ୍ତ ମହୁଲ, ସଲପ ଓ ସର୍ଗିଗଛ । ଥିଲା ଅପର୍ଯ୍ୟାପ୍ତ କରଡ଼ି, କନ୍ଦା ଓ ଛତୁ । ଯେତେ ଗଛକୁ ସେତେ କିସମର ଛତୁ । ଏବେ ସେ ଛତୁକୁ ମଧ୍ୟ ଅଣଆଦିବାସୀ ପେଣ୍ଟ୍ ପିନ୍ଧା ବାବୁମାନେ ଆଖେଇଲେଣି । ଡାବୁ ଲୋଭରେ ନିଜର ପିଲାଙ୍କ ପେଟରୁ କାଟି ଆଦିବାସୀ ଜଙ୍ଗଲୀ ଛତୁକୁ ସଂଗ୍ରହ କରି ବଜାରରେ ବିକିଲାଣି । ବିକିଲାଣି କରଡ଼ି ଓ କନ୍ଦା । ଜଙ୍ଗଲ କାଠ ଅଶୀଭାଗ ଚୋରେଇ ନେଲେ କାଠ ମାଫିଆମାନେ । ବାକି ଯାହା ରହିଲା ଅଙ୍ଗାର କରି କରି ଗରିବ ଆଦିବାସୀ ଛୋଟବଡ଼ ବଜାରମାନଙ୍କରେ ବିକିଲେ । ଛୋଟଛୋଟ କାଠ ଚୋରମାନେ ଖଟ, ଟେବୁଲ୍,

ପଲଙ୍କ ପାଇଁ ସବୁ ରକମର ଗଛ କାଟି ପକାଇଲେ । କିଏ ବ୍ୟବହାର କରୁଛି ସେ ସବୁ କାଠ ଉପକରଣ ? ତୁମେ, ଆମେ, ବାବୁମାନେ ନା ଜଙ୍ଗଲର ଆଦିବାସୀ ?

ଗୋଟିଏ ଆଦିବାସୀ ଗାଁରେ ଜଙ୍ଗଲ ସୁରକ୍ଷା ପାଇଁ ଅନୁଷ୍ଠିତ ହେଉଥାଏ ଏକ କର୍ମଶାଳା । ବଡ଼ ବଡ଼ ଜଙ୍ଗଲ ଅଧିକାରୀ ଓ ସ୍ୱେଚ୍ଛାସେବୀମାନେ ଆସିଥାନ୍ତି । ଦିନଯାକର ବୟାନବାଜି ପରେ ସମସ୍ତେ ଯେତେବେଳେ ଖାଇବା ଲାଗି ଉଠିଲେ, ସେ ଗାଁର ନାୟକ ସମସ୍ତଙ୍କୁ ଅନୁରୋଧ କଲା, ମହାପ୍ରଭୁମାନେ ! ଖାଇବା ଆଗରୁ ଚାଲନ୍ତୁ ଟିକିଏ ଗାଁ ବୁଲିଆସିବେ । ସମସ୍ତେ ତା' ସହ ଚାଲିଲେ । ଗୋଟି ଗୋଟି କରି ପ୍ରତି ଘରକୁ ଯାଇ ସେ ଫଡ଼୍‌କିନା କରି ଟାଟିମାନ ଖୋଲି ଦେଉଥିଲେ । ପୁଣି ବନ୍ଦ କରୁଥିଲେ । ସବୁଘର ଶେଷହେବା ପରେ ଖାଇବା ଜାଗାକୁ ଫେରି ଖାଦି ସମୟରେ ସମସ୍ତଙ୍କୁ ପ୍ରଶ୍ନ କଲା, "ଆଜ୍ଞାମାନେ କିସ୍‌ଟା ଦେଖିଲେ ଆମ ଗାଁରେ ? କେତେଟା କାଠର କବାଟ, ଝରକା, ଚେୟାର୍, ଟେବୁଲ୍, ଖଟ, ପଲଙ୍କ ଦେଖିଲେ ? ଏଇଠୁ ବୁଝନ୍ତୁ କିଏ କାଠ ଚୋରାଉଚି ! ଆମେ ତ ନିମିତ୍ତ ମାତ୍ର ! ଆପଣମାନଙ୍କର ଝରକା, କବାଟ, ଖଟ ପଲଙ୍କ ଦରକାର ! ଦରକାର ପୁଲିସ୍‌ବାବୁର, ଫରେଷ୍ଟବାବୁର, ଜଜ୍ ଓ ହାକିମବାବୁର, କଲେକ୍ଟର ବାବୁର ! ଆମେ ତ ସାମାନ୍ୟ ଆଜ୍ଞାବହ କୁଲି ! ୫୦ କି ୧୦୦ଟଙ୍କାର ମଜୁରୀର ଗୋତି ! ତେବେ ଉପଦେଶ ଆପଣମାନେ କାହାକୁ ଦେବା କଥା ?"

ଏବେ ସରକାର ବାହାଦୁର ଆଦିବାସୀର ମା' ବାପ ବୋଲାଉଛନ୍ତି । ଅନ୍ନପୂର୍ଣ୍ଣାରୁ ଅନ୍ତ୍ୟୋଦୟ, ବି.ପି.ଏଲ୍.ରୁ ଖାଦ୍ୟ ପାଇଁ କାମ, ଏମ୍.ଡ଼ି.ମିଲ୍‌ସ୍‌ରୁ ଅଙ୍ଗନୱାଡ଼ି । ତଥାପି କାହିଁକି ଭୋକ ? ତଥାପି କାହିଁକି ଲୋକେ ମରୁଛନ୍ତି କାଶୀପୁରରେ ? ଆଦିବାସୀକୁ ଚିତାକାଟି ସାହୁକାରମାନେ ଝିଙ୍କି ନେଇଥିବା ସବୁ ଜମି ତାକୁ ଫେରାଇବା ଲାଗି ସରକାର ତହୁଁ ଟାଣ ତହୁଁ ଟାଣ ଆଇନ୍ କରୁଛନ୍ତି । ପ୍ରଧାନମନ୍ତ୍ରୀଜୀ କହୁଛନ୍ତି ଭୋକରେ କାହାରିକୁ ମରିବା ପାଇଁ ଦିଆଯିବନି । ପର୍ଯ୍ୟାପ୍ତ ଚାଉଳ ମହଜୁଦ୍ ଅଛି ଦେଶରେ । ତଥାପି କାହିଁକି ବି.ପି.ଏଲ୍. କାର୍ଡ଼ ବନ୍ଧା ପଡୁଚି ? କାହିଁକି ଚାଉଳ ରିସାଇକ୍ଲ ହେଉଚି ? ସରକାରୀ କଳ ଖାଲି ଦୁର୍ନୀତିଗ୍ରସ୍ତ କହିଲେ ଭୁଲ୍ ହେବ । ସେମାନେ ହିଁ ପାଲଟିଛନ୍ତି ନବ୍ୟ ଶୋଷକ । ସେଇମାନେ ହିଁ ଆଦିବାସୀର ରୁଚି ଓ ସଂସ୍କୃତିକୁ ବଦଳେଇ ତାକୁ ପରମୁଖାପେକ୍ଷୀ କରିଛନ୍ତି । ତା'ର ସମସ୍ତ ଜମି, ଘରବାଡ଼ି, ପିଲାଛୁଆଙ୍କୁ ଚୋରାଇଛନ୍ତି । ଗୋତି କରିଛନ୍ତି । ମଣିଷ ବେପାର କରି ଦେଶ ବିଦେଶକୁ ଦାଦନ ପଠାଇଛନ୍ତି । ଭୋକରେ ଆଉଟୁପାଉଟୁ ପେଟ ବିକଳିଆ

ମଣିଷ ମିଛ ପ୍ରତିଶ୍ରୁତି ବୋଲି ଜାଣି ମିଶା ଠକିହୋଇ ଦାଦନ ଯାଉଚି । ପିଲାଛୁଆ ମୁହଁରେ ଟିକିଏ ହସ ଫୁଟାଇବା ପାଇଁ ଆଶା ରଖୁଚି । ମିଛ ହେଲେ ବି କଥାଟା ତ ମିଠା ! ମିଛ ଆଶାରେ ବରଂ କଟିଯାଉ ଆଉ ବର୍ଷେ ଛ'ମାସ ! ଠିକଣା ବରଂ ହଜିଯାଉ ! ହାତ କଟିଯାଉ କି ଗୋଡ଼ କଟିଯାଉ । ପ୍ରାଣ ବରଂ ଚାଲିଯାଉ ସେଇ ଅପନ୍ତରା ପ୍ରଦେଶରେ । କିନ୍ତୁ ସେ ଥରେ ଦାଦନ ଯାଇ ଦେଖୁ !

ଆଉ ଯେଉଁମାନେ ସତ କହୁଛନ୍ତି, ମିଛ କଥା ପଛରେ ନ ଯିବା ପାଇଁ ବୁଝାଉଛନ୍ତି, ନିଜର ସମ୍ମାନ, ସ୍ୱାଭିମାନ, ଜୀବନ ଓ ଜୀବିକାର ସୁରକ୍ଷା ଲାଗି ଲଢ଼େଇର ଡାକରା ଦେଉଛନ୍ତି, ଶୋଷକ ସାହୁକାର ଶାସକ ଚକ୍ରର ଭଣ୍ଡାଫୋଡ଼ କରୁଛନ୍ତି, ସେମାନଙ୍କୁ ଅର୍ଥାତ୍ ସତ୍ୟକୁ ଦବେଇ ଦେବା ପାଇଁ ପ୍ରୟୋଗ କରାଯାଉଚି ଲାଠି, ଗୁଳି, ନିର୍ଯାତ଼ନା, ଗରିଫଦାରି, ଜେଲ୍ ଓ ଫାଶୀ । ଚାର୍ବାକ୍ ଓ ଶୂଦ୍ରକ ଭଳି ଆଜି ବି ଲୋକଙ୍କ ଭିତରେ ସତ୍ୟ ପ୍ରଚାର କରୁଥିବା ବ୍ୟକ୍ତିମାନଙ୍କୁ ଜୀଅନ୍ତା ଜଳେଇ ଦିଆଯାଉଚି । ଧର୍ମନିରପେକ୍ଷତାକୁ କବର ଦେଇ ବ୍ରାହ୍ମଣବାଦର ପୁନରୁଦ୍ରେକ କରାହେଉଚି ଏବଂ ଏସବୁ କରିବା ପାଇଁ ହିଟ୍‌ଲର୍ ଦରବାରର ଗୋଏବ୍ଲସ୍‌ଙ୍କ ଭଳି ମିଠା ମିଠା ମିଛକଥାର ନୂଆ ନୂଆ ଶାସ୍ତ୍ର ରଚିଦେବାକୁ ଆଗେଇ ଆସୁଛନ୍ତି ଶହଶହ ବିବେକବିକା ଲେଖକ, ଗବେଷକ, ବୁଦ୍ଧିଜୀବୀ ! ପରିସ୍ଥିତି ଏପରି ହୋଇଛି ଯେ ଯଦି କେହି ପ୍ରଶାସକ ସତ୍ୟ ପ୍ରତିଷ୍ଠା ପାଇଁ କିଛି କାର୍ଯ୍ୟାନୁଷ୍ଠାନ କଲା, ଦୁର୍ନୀତିର ଚେର ଉପାଡ଼ିବାର ଚେଷ୍ଟାକଲା, ତୁରନ୍ତ ତା' ନାମରେ 'ଜନପ୍ରତିନିଧି'ମାନେ ଯେଉଁମାନେ କି ଅସଲରେ ଶୋଷକ ପ୍ରତାରକ ଗୋଷ୍ଠୀର ପ୍ରତିନିଧି, ଆରମ୍ଭ କରିଦିଅନ୍ତି ମିଥ୍ୟା ଅଭିଯୋଗର ବିଚାର ପ୍ରହସନ । ତୁମ୍ଭି ତୋଫାନରେ ଥରି ଉଠେ ବିଧାନସଭା । ହୁଇସିଲ୍ ବ୍ଲୋଆର୍‌ମାନଙ୍କର ନିଧନ ହୁଏ । ଦାଦନ ଯାଉଥିବା କଳାହାଣ୍ଡି ଜିଲ୍ଲାର ହଜାର ହଜାର ଆଦିବାସୀମାନଙ୍କ ଉପରେ ଜଣେ ପ୍ରଶାସକ ଯେଉଁ ସାହସିକ ତଥ୍ୟାନୁସନ୍ଧାନ କରିଥିଲେ, ନିଜ ପରିଚୟକୁ ଗୋପନ ରଖି ଖଡ଼ିଆଳ ରୋଡ୍ ଷ୍ଟେସନ୍‌ରେ ରପ୍ତାନୀ ହେଉଥିବା ଦାଦନ ଠିକାଦାରମାନଙ୍କୁ ଭେଟିଥିଲେ ଓ ପରିସ୍ଥିତି ଅନୁଧ୍ୟାନ କରିଥିଲେ, କେଉଁ ଦପ୍ତରରେ ଧୂଳି ଜମିଗଲା ସେଇ ରିପୋର୍ଟ ଫାଇଲ୍ ଉପରେ ? ସେଇ ରିପୋର୍ଟର ଛାୟା ମାତ୍ର ପ୍ରକାଶ ପାଇଥିଲା ଏକ ଗଳ୍ପ ଆକାରରେ, 'ଝଙ୍କାର' ପୃଷ୍ଠାରେ । କେଉଁମାନେ ଏହି ଦାଦନ ରାକେଟ୍‌ର କେନ୍ଦ୍ରମଫିଆ ? ମଧ୍ୟ ମଣି ? ଯେଉଁ 'ଜନପ୍ରତିନିଧି'ମାନେ ଏଇ ମାଫିଆମାନଙ୍କ ସହ ଜଡ଼ିତ, କେଉଁଠି ରହିଛି ସେମାନଙ୍କ ମୂଳ ? ପାଇଟିକାରୀ

ଆଦିବାସୀ ସଂସ୍କୃତିରେ ନା ଅପରାଧୀ ଲୁଟେରା ସମାଜରେ ? ଏ କଥା ଦିବାଲୋକ ପରି ସ୍ପଷ୍ଟ । ଜାତିରେ, ଗୋତ୍ରରେ, କୁଳରେ, କୁଟୁମ୍ବରେ ସେମାନେ ଆଦିବାସୀ ହେଲେ ସୁଦ୍ଧା ଆଚରଣରେ, ବ୍ୟବସାୟରେ, ବୁଦ୍ଧିରେ, ଧର୍ମରେ, ସେମାନେ ହୋଇଯାଇଛନ୍ତି ଦିକୁ ବା ସାହୁକାର । ଆଦିବାସୀ ସଭ୍ୟତାର ପାରମ୍ପରିକତାକୁ ନଷ୍ଟ କରିବା ଦିଗରେ ସେମାନଙ୍କ ଭୂମିକା ମୁଖ୍ୟ ନ ହେଲେ ମଧ୍ୟ କିଛି କମ୍ ନୁହେଁ । ଖାଦ୍ୟପେୟ, ପୋଷାକ ପରିଚ୍ଛଦ, ପର୍ବପର୍ବାଣୀ, ସବୁଥିରେ ସେମାନେ ଆମନ୍ତ୍ରଣ କରିଛନ୍ତି ଆଦିବାସୀ ବିଦ୍ୱେଷୀ ବିଦେଶୀ ସଂସ୍କୃତିକୁ ।

ଏଣେ ଚାଉଳର ସବୁ ବିକଳ୍ପ ଧୀରେ ଧୀରେ ଲୋପ ପାଇଯିବା ଫଳରେ ଚାଉଳ ନଥିଲେ ଖାଦ୍ୟ ନାହିଁ, ଏହି ଅନୁଭବ ଆଦିବାସୀ ଗୋଷ୍ଠୀର ଆତ୍ମସମ୍ମାନ ଓ ଆତ୍ମାଭିମାନକୁ ନଷ୍ଟ କରିଦେଉଛି । ମହୁଲ ଗୁଣ୍ଡରେ ତା'ର ଆଉ ରୁଚି ନାହିଁ । ସୃଜନଶୀଳ ଭାବେ ଚିନ୍ତାକରି ସେ ପୁଣିଥରେ ମାଣ୍ଡିଆ ଚାଷର ବ୍ୟାପକ ପ୍ରବର୍ତ୍ତନ କଥା ଚିନ୍ତା କରୁନି, ଯଦିଓ ମାଣ୍ଡିଆ ପେଜ ଓ ଜାଉ ପ୍ରତି ତା'ର ଆଗ୍ରହ ଓ ଆକର୍ଷଣ ଏବେ ବି ଅପ୍ରତିହତ ରହିଛି । ଏଇ ଆଠବର୍ଷ ହେଲା ଅବିଭକ୍ତ କୋରାପୁଟର ବିଭିନ୍ନ ଗାଆଁରେ ଖେଦି ଯାଇଛନ୍ତି ଥାପ୍ପାର ଗୋଷ୍ଠୀର, ସେବା ପେପରମିଲ୍, ବିର୍ଲା ଗୋଷ୍ଠୀର ମଙ୍ଗଳମ୍ ଟିମ୍ବରସ୍ ଓ ଜେକେ ପେପର୍‌ମିଲ୍‌ର ଦଲାଲମାନେ । ହାତରେ ଟଙ୍କାଥଳୀ । ଆଦିବାସୀମାନଙ୍କୁ ସେମାନେ ବୁଝାଉଚନ୍ତି ପ୍ରତି ଏକର ଜମିପାଇଁ ଆମେ ୨୫,୦୦୦ଟଙ୍କା ଦେବୁ । ତୁମେ ପ୍ରଥମେ ନେବ ଅଢ଼େଇହଜାର, ପ୍ରତି ବର୍ଷ ଆମେ ଦୁଇହଜାର କରିଦେବୁ । ତୁମେ ଜମିରେ ଆକାଶିଆ ଓ ଆମେ ଦେବା ଅନ୍ୟ ଚାରା ରୋପିବ ଓ ଗଛ ବଢ଼ାଇବ । ଆଠବର୍ଷ ପରେ ଆମେ ଗଛ କାଟିନେବୁ । ଓଜନ ପରେ ବାକି ପ୍ରାପ୍ୟ ଦେଇଦେବୁ । ନଗଦ ଅର୍ଥରେ ଭୁଲି ଅଧିକାଂଶ ଆଦିବାସୀ କିଛି କିଛି ଜମି ଦେଇ ପକାଉଛନ୍ତି । କିନ୍ତୁ ଇଂରାଜୀରେ ଲେଖା ହେଉଥିବା ଜମି ରାଜିନାମାର କପି ତାଙ୍କୁ ମିଳୁନି । ଏହାର ପ୍ରତିବାଦ କରି ଆନ୍ଦୋଳନ କରିବାରୁ ବୈପାରୀଗୁଡ଼ାର କିଛି ଚାଷୀ ସେବା ପେପରମିଲ୍ ଓ ପୁଲିସ୍‌ବାଲାଙ୍କ ଷଡ଼ଯନ୍ତ୍ରରେ ବିଭିନ୍ନ ମିଥ୍ୟା କେଶ୍‌ରେ ପଡ଼ି କୋର୍ଟରୁ ଜେଲ୍ ଓ ଜେଲ୍‌ରୁ କୋର୍ଟ ଧାଉଁଛନ୍ତି । ପଇସାପତ୍ର ବ୍ୟାପାରରେ ମଧ୍ୟ ପ୍ରଥମରୁ ତାଙ୍କୁ ଚିତା କଟାଯାଇଛି । ଆଉ ହାତକୁ ଯେଉଁ ପଇସା ଆସୁଛି, ଆଦିବାସୀ ରଇତ ମଦଭାଟିରେ ଉଡ଼ାଇ ଦେଉଛି । ସେହିପରି ଆନ୍ଧ୍ର ସୀମାନ୍ତ ଗାଆଁମାନଙ୍କରେ ଚାଲିଛି ଆନ୍ଧ୍ରର ବଡ଼ବଡ଼ ଚାଷୀମାନଙ୍କର କପାଚାଷର ଉତ୍ପାତ । ଏକର ପିଛା ବର୍ଷକୁ

ଅଢ଼େଇ ହଜାର ଟଙ୍କାର ପ୍ରଲୋଭନ ଦେଖାଇ ଏମାନେ ମଧ୍ୟ ବ୍ୟାପକ ଜମି ଦଖଲ କରୁଛନ୍ତି । ଏଣେ ସାହୁକାରମାନଙ୍କ ହାତରେ ଥିବା ସିଂହଭାଗ ଜମିରେ ସେମାନେ ଅଧିକରୁ ଅଧିକ ଅର୍ଥକାରୀ ଫସଲ କରୁଛନ୍ତି । ଏହିପରି ଆଦିବାସୀର ସବୁ ପ୍ରିୟ ଜିନିଷ ତା' ହାତରୁ ଛଡ଼େଇ ନିଆଯାଉଛି । ନିକଟ ଅତୀତରେ ସହୀଦ ହୋଇଥିବା କୁଇଭାଷାର କବି ଦାସୁରାମ ତାଙ୍କ ଗୀତରେ ଲେଖିଛନ୍ତି "ମଦ ଆମକୁ ଧ୍ୱଂସ କରିଦେବ ।" "ଆମର ପୈତୃକ ଓ ପୂର୍ବପୁରୁଷର ଜମିରୁ ଅଲଗା କରିଦେବ ।" ସେ ପୁଣି ଲେଖିଛନ୍ତି, ଆଜିର ଶୋଷଣକାରୀ ସଭ୍ୟତା "ଆମର ପ୍ରେମକୁ ଭାଙ୍ଗୁଚି ।" "ଆମେ ବେଶି ଭଲପାଉଥିବା ସମସ୍ତ ଦରଦ ଆମଠାରୁ ଛଡ଼େଇ ନେଉଛି ।" "କୁଇଦିନା ବୁମ୍ବୁଗାଡ଼ି"(କୁଇ ଅଞ୍ଚଳର ଆନ୍ଦୋଳନ ଗୀତ)

ଆଉଜଣେ ବିଶିଷ୍ଟ କବି ତଥା ପି.ୟୁ.ସି.ଏଲ୍.(ପିପୁଲସ୍ ୟୁନିଅନ୍ ଫର୍ ସିଭିଲ୍ ଲିବାର୍ଟିସ୍)ର ସଂପାଦକ ଗୁରୁ ମହାନ୍ତି 'କାଶୀପୁର' କବିତାରେ ଲେଖିଛନ୍ତି, "ମଣିଷ ରାଜୁତିର ତାମ୍‌ସା / ସାଥୀମଣିଷକୁ ସନ୍ତାପିତ କରି / ପ୍ରକୃତିର ଜଙ୍ଘକୁ ଉଲଗ୍ନ କରି / କାହିଁକି କେଜାଣି, ତୋତେ ଏକ ସନ୍ତାପିତ / ନଗରୀର କାରୁଣ୍ୟରେ ଭରି ଦେବାକୁ ତତ୍ପର !" "ଆଦିମ ଅଧିବାସୀ ଉଦ୍‌ବାସ୍ତୁ ହୋଇଯିବ / ତା'ର ଆଦି ଆସ୍ଥାନରୁ ପ୍ରଗତିର ଅଗ୍ରଦୂତମାନେ ଆସି / ମୃତାତ୍ମାମାନଙ୍କର ଉଜ୍ଜ୍ୱଳ ସ୍ୱପ୍ନ ଭିତରୁ । ତାକୁ ଟାଣିନେଇ ଫିଙ୍ଗିଦେବେ / ସହରର ଅନ୍ଧ ନର୍ଦ୍ଦମା ଭିତରକୁ ।" (ଝଙ୍କାର - ୨୦୦୩) ସେହିପରି ଜଗନ୍ନାଥ ଦାସଙ୍କ "କାଶୀପୁର" - "ଏଥର କଳାହାଣ୍ଡିକୁ ଭୁଲିଯାଅ / ପର୍ଯ୍ୟଟନର ମାନଚିତ୍ରରେ / ଏ ବର୍ଷର ତୀର୍ଥ ହେଉଚି କାଶୀପୁର ।" ଷ୍ଟର୍‌ଲାଇଟ୍ କମ୍ପାନୀର ବକ୍‌ସାଇଟ୍ ଅଭିଯାନକୁ ତଥା ସେଠାକାର ଆଦିବାସୀ ଜନଆନ୍ଦୋଳନକୁ ଇଙ୍ଗିତ କରି ଗୁରୁବାବୁଙ୍କ ଏହି କବିତାକୁ ପ୍ରଶଂସା କରି ତାଙ୍କୁ ଏ ଲେଖକ ଦେଇଥିବା ଏକ ଚିଠିର ଉତ୍ତରରେ ସେ ଲେଖିଛନ୍ତି "ମୋର ଆଶଙ୍କା, ଆଦିବାସୀ ଆଉ ପଚିଶ ବର୍ଷ ଭିତରେ ନିଶ୍ଚିହ୍ନ ହୋଇଯିବେ । ଧନ୍ୟବାଦ୍ ଆପଣମାନଙ୍କୁ ଯେଉଁମାନେ ତାଙ୍କୁ ବଂଚାଇ ରଖିବାର ପ୍ରଚେଷ୍ଟା ଜାରି ରଖିଛନ୍ତି ।" ବଡ଼ ଦାରୁଣ ଆଘାତ ଦେଇଥିଲା ଉଦ୍ଧୃତିରେ ଥିବା ପ୍ରଥମ ବାକ୍ୟଟି । କିନ୍ତୁ କେତେ ନିର୍ମମ ସତ୍ୟ ଏଇ ବାକ୍ୟଟି । ପ୍ରତିଭା ରାୟଙ୍କ "ଆଦିଭୂମି" ଉପରେ ବିତର୍କକୁ ଓହ୍ଲେଇ ପଡ଼ିଥିବା କୋରାପୁଟ ବିଧାୟକମାନଙ୍କର ବଣ୍ଡାମାନଙ୍କ ପ୍ରତି ଦରଦ କେତେ ? ରାଜ୍ୟସରକାର ବଣ୍ଡା ଉନ୍ନୟନ ପ୍ରକଳ୍ପ ଖୋଲି କିଛି ଅଧିକାରୀ ଓ କିଛି କର୍ମଚାରୀମାନଙ୍କୁ ପୋଷି

ଚାଲିଛନ୍ତି । ସେଇ ଖୋଦ ସରକାର ବାହାଦୂର୍‌ଙ୍କ ଦରଦ ପ୍ରକୃତରେ କେତେ ? (୧୯୭୭ରେ ଆରମ୍ଭହେଲା ଏହି ବଣ୍ଡା ଉନ୍ନୟନ ଯୋଜନା । ଦଶକୋଟି ଟଙ୍କା ବ୍ୟୟ ବରାଦ ହୋଇଥିଲା । କିନ୍ତୁ ୨୦୦୨ ଯାଏ ମିଳିଛି ମାତ୍ର ଏକକୋଟି ପଚିଶଲକ୍ଷ । ସେଥିରୁ ଖର୍ଚ୍ଚ ହୋଇପାରିନି ୫୮ଲକ୍ଷ ।) କିମ୍ବା ସେହିସବୁ ନୃତତ୍ତ୍ୱବିଦ୍‌ମାନଙ୍କର ଦରଦ କେତେ ଯେଉଁମାନେ ସେଇ "ରେମେ"ମାନଙ୍କଠାରୁ ନୃତତ୍ତ୍ୱ ବିଦ୍ୟାର ଅ ଆ କ ଖ ଆରମ୍ଭ କରନ୍ତି ? କାହିଁକି ୩୨ଟି ଗାଁର ପାଞ୍ଚହଜାର ବଣ୍ଡାଙ୍କ ସଂଖ୍ୟା କମି କମି ଚରିହଜାରରେ ପହଞ୍ଚିଲାଣି ? ଆଦିବାସୀ ବିଧାୟକମାନେ ଏଥିନେଇ ଚିନ୍ତିତ ନୁହଁନ୍ତି । ବରଂ ତଳବଣ୍ଡାଙ୍କ ସହ ମିଶାଇ ସେମାନେ ହିସାବ ଦେଖାନ୍ତି ୯୦୦୦ । ନିର୍ବାଚନର ଗଣିତ ଦ୍ୱାରା ପ୍ରେରିତ ହୋଇ ଆଦିବାସୀ ସଂସ୍କୃତି ସହ ସାହୁକାରୀ ସଂସ୍କୃତିକୁ ସମତୁଲ କରି ଦର୍ଶାଇବା ହିଁ ସେମାନଙ୍କର ଏ ପ୍ରତିକ୍ରିୟାର ପ୍ରଧାନ କାରଣ । କିନ୍ତୁ ବାସ୍ତବ ସତ୍ୟ ତ ଏହାଦ୍ୱାରା ଚାପି ଦିଆଯାଇ ପାରିବ ନାହିଁ । ଆଜିକି ପଚାଶ ବର୍ଷ ପୂର୍ବେ ବି ଗୋପୀ ମହାନ୍ତି ଏହାର ସୁରାଗ୍ ଦେଇଥିଲେ । କହିଥିଲେ, "ଜନ୍ମ ନେଉଛି ଏକ ବିଶ୍ୱାମିତ୍ର ସୃଷ୍ଟି । ଯିଏ ନୁହେଁ ଆଦିବାସୀ କି ନୁହେଁ ବ୍ରାହ୍ମଣ । ପ୍ରେତ ସନ୍ତତି । ଗନ୍ଧର୍ବର ଦଳ !" (ଅମୃତର ସନ୍ତାନ)

ହଁ, କ୍ରମାଗତ ଭୋକରେ ସଢ଼ି ସଢ଼ି ଆଦିବାସୀର ସାମୂହିକ ସଂସ୍କୃତିରେ ଆସିଥିବା ପରିବର୍ତ୍ତନ କଥା ପଡ଼ିଥିଲା । ଆଦିବାସୀ ଜନଗୋଷ୍ଠୀ ଆଜି ସିଧାସଳଖ ଦୁଇଭାଗରେ ବିଭକ୍ତ ହୋଇଯାଇଛି । ଥୋକେ ସରକାରୀ ରିଜର୍ଭେସନ୍‌ର ସୁଯୋଗ ନେଇ ଶିକ୍ଷିତ ହେଇଛନ୍ତି, ଜନପ୍ରତିନିଧି ହୋଇଛନ୍ତି, ଚାକିରି ପାଇଛନ୍ତି ଓ ନିଜର ଲୋକମାନଙ୍କୁ ଲୁଟ୍ ତଥା ଶୋଷଣ କରିବାର ସୁଯୋଗ ପାଇଛନ୍ତି । ସେମାନେ ଆଉ କେବେ ସେ ଭୋକ ସଂସ୍କୃତିକୁ ଫେରିଯିବା ଲାଗି ପ୍ରସ୍ତୁତ ନୁହଁନ୍ତି । ତେଣୁ ସେ ସଂପର୍କୀୟ ସମସ୍ତ ବର୍ଣ୍ଣନା ସେମାନଙ୍କୁ ପିତା ଲାଗୁଛି । ଏମାନଙ୍କୁ ଛାଡ଼ି ପଛରେ ରହିଗଲେ ଯେଉଁ ବ୍ୟାପକ ଆଦିବାସୀ ଜନତା, ସେମାନେ ତଳି ତଳାନ୍ତ ହେବା ପଥରେ ଆଗେଇ ଚାଲିଛନ୍ତି । ଜୀବନ ସଂଗ୍ରାମର ଏକମାତ୍ର ଅର୍ଥ ସେମାନଙ୍କ ପାଇଁ ହୋଇଛି ଖାଦ୍ୟ ସଂଗ୍ରାମ । ଆପଣାର ଶ୍ରମ ବିକ୍ରି ହୋଇଛି ସେମାନଙ୍କର ଏକମାତ୍ର ଜୀବିକା । ସେ ପୁଣି ଶୈଶବରୁ । କେତେବେଳେ ଶୈଶବ ଚାଲିଯାଏ, କୈଶୋର ଆସେ, ପୁଣି କୈଶୋର ଯାଇ ଯୌବନ, ତା'ପରେ ପ୍ରୌଢ଼ତ୍ୱ, ତା'ପରେ ବାର୍ଦ୍ଧକ୍ୟ, ସେ ସବୁ ଅବସ୍ଥାକୁ ପରସ୍ପରଠାରୁ ଫରକ କରିବାର ବସ୍ତୁଗତ ଭିତ୍ତି କିଛି ସେମାନଙ୍କ

ଜୀବନରେ ନଥାଏ । ପିଲାମାନେ ପଢ଼ାପଢ଼ି ପାଇଁ ଖୁବ୍ କମ୍ ସ୍କୁଲ୍‌କୁ ଯାଆନ୍ତି ଓ ଯେତେ ଯାଆନ୍ତି ସେଥିରୁ ୯୦% ଅଧାରୁ ପାଠ ଛାଡ଼ନ୍ତି । ତେଣୁ ଶିକ୍ଷା ଅଧିକାର ଆଇନ୍ ସେମାନଙ୍କ ପାଖରେ ଅର୍ଥହୀନ । ଶ୍ରମ କରିବାର ସାମର୍ଥ୍ୟ ଆସିବା ଯାଏଁ ବିଦ୍ୟାର୍ଥୀ ରୂପେ ନୁହେଁ, ଖାଦ୍ୟାଶୀ ରୂପେ ସେମାନଙ୍କୁ ସ୍କୁଲ୍ ପ୍ରାଙ୍ଗଣରେ ଦେଖିବାକୁ ମିଳେ । ଆଉ ମଧ୍ୟ ସେମାନଙ୍କ ସଂସ୍କୃତିକୁ ଭିତ୍ତିକରି କୌଣସି ସୃଜନଶୀଳ ପାଠ୍ୟଖସଡ଼ା ବା ଦରଦୀ ଶିକ୍ଷକ ଗୋଷ୍ଠୀ ଓଡ଼ିଶା ରାଜ୍ୟରେ ସୃଷ୍ଟି କରାଯାଇ ପାରିନାହିଁ, ଯାହାକି ସେମାନଙ୍କୁ ଅତ୍ୟନ୍ତ ପକ୍ଷେ ବିଦ୍ୟାଗ୍ରହୀ କରିପାରିଥାନ୍ତା । ଏହି ସମସ୍ୟା ପ୍ରତି ପ୍ରାୟ ଦାନବୀୟ ଏକ ପ୍ରାଶାସନିକ ଦୃଷ୍ଟିଭଙ୍ଗୀ ଏହାର ସମ୍ଭାବନା ଟିକକୁ ବି ନଷ୍ଟ କରିସାରିଛି । ଡି.ପି.ଇ.ପି.ର ଶିକ୍ଷାଭିଯାନ ରଥଚକ ତଳେ ସବୁ ସୃଜନଶୀଳତା ପେଷି ହୋଇ ଚାଲିଛି ଓ ବାହାସ୍ଫୋଟର ଶବ୍ଦରେ ଗିରିକାନ୍ତାର ଖୁବ୍ ପ୍ରତିଧ୍ୱନିତ ହେଉଛି । ଶ୍ରାବଣ ମାସର ବର୍ଷା ବି ସେ ରଥର ଚକକୁ ଅଟକାଇ ପାରୁନି । ପ୍ରହସନ ଶୋଭାଯାତ୍ରାର ମିଛ ସ୍ଲୋଗାନ ଶୁଣିଶୁଣି ଓ ତୁମ୍ଭିତୋଫାନର ମିଛ ଫଟୋଚିତ୍ର ଦେଖି ଦେଖି ଏଠା ଲୋକେ ଥକି ଗଲେଣି ।

ସୁତରାଂ ଆଦିବାସୀ ସେଇ ନିରକ୍ଷର ଶ୍ରମଜୀବୀର ଜୀବନକୁ ଫେରିଆସେ । ଖାଦ୍ୟ ପାଇଁ କାମ ଯୋଜନା ତାକୁ ମାସକରେ ୭/୮ ଦିନ କାମ ଯୋଗାଇ ଦିଏ । ବାକି ବାକି ଯୋଜନା ଯଥା ମହାତ୍ମାଗାନ୍ଧୀ ନିଶ୍ଚିତ କର୍ମ ଯୋଗାଣ, ଜବାହାର ରୋଜଗାର, ପ୍ରଧାନମନ୍ତ୍ରୀ ସଡ଼କ ଓ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଇତ୍ୟାଦି ତାକୁ ହାରାହାରି ଆଉ ୩/୪ଦିନର କାମ ଯୋଗାଏ । ସେ ପୁଣି ନିର୍ଦ୍ଧାରିତ ମଜୁରିର ଆଧାରେ । ଏଥିରେ ଭୋକର ରାଜୁତି ନ ରହିବ କେମିତି ? ବର୍ଷେକୁ ଶହେଦିନ କାମର ଯୋଜନା କିଭଳି ବିଫଳ ହୋଇଛି, ସେ ତଥ୍ୟ ପ୍ରଚୁର । ଶହେ ଦିନକୁ ୨୦୦ଦିନ କରିଦେଲେ ସତେ ଯଦି ସମସ୍ୟାର ସମାଧାନ ହୋଇଯାଆନ୍ତ !

ଭୋକର ଦାଉରେ ପ୍ରଥମ-ବଳିପଡ଼େ ତା'ର ଗୋଷ୍ଠୀ ଜୀବନର 'ସମଷ୍ଟି' ମୂଲ୍ୟବୋଧ । ଆମେ ବେଦରେ ଯେଉଁ "ସହନୋର୍ଭୁନକ୍ତୁ" କିମ୍ବା "ସମାନୋମନ୍ତ୍ର ସମିତି ସମାନୀ" ଇତ୍ୟାଦି ମନ୍ତ୍ର ପଢୁ ତାହା ଏହିପରି ଏକ ଗୋଷ୍ଠୀ ଜୀବନର ଦର୍ଶନରୁ ଜନ୍ମ ନେଇଥିବ । ଆଦିବାସୀ ସମାଜରେ ଦୈନନ୍ଦିନ ଜୀବନର ଖାଦ୍ୟପେୟ ଗ୍ରହଣଠାରୁ ଆରମ୍ଭକରି କୃଷି ଜୀବନଯାତ୍ରା, ବେଣ୍ଟବୁଲା, ପର୍ବପର୍ବାଣୀ, ଶିରା-ଦିଶାରି-ଗୁରୁମାୟୀ ବ୍ୟାପାର; ବିଭା ପୁଆଣି, ପିଲାଜନ୍ମ, ଝିଅ ବର୍ତ୍ତମାନ (ବଡ଼ ହେବା) ଓ ମୃତ୍ୟୁ ପର୍ଯ୍ୟନ୍ତ

ସବୁଥିରେ 'ସମୂହ' ହେଉଛି ଗୁରୁତ୍ୱପୂର୍ଣ୍ଣ । ବ୍ୟକ୍ତି ସେଠି ନିମିତ୍ତ ମାତ୍ର । ସଭ୍ୟ ନଗରୀ ଜୀବନର ଜୀବନଚର୍ଯ୍ୟା ଠିକ୍ ଓଲଟା । ତମ ଚାଷ ଉଠୁନି । ଗୋଷ୍ଠୀ ଭାଇମାନେ ଉଠାଇ ଦେବେ । ତମ ବିଭାଘରେ ରୋଷେଇ ହବ । ଗୋଷ୍ଠୀ ପିଲାମାନେ କରିଦେବେ । କିଏ ମରିଗଲା, ବନ୍ଧୁ ବାନ୍ଧବଙ୍କୁ ଖବର ଦିଆଯିବ । ଗୋଷ୍ଠୀ ପିଲାଏ ଖେଦିଯିବେ । କିଏ ରୋଗରେ ପଡ଼ିଛି ଡାକ୍ତରଖାନା କି ଦୂର ଗାଆଁର ଦିଶାରି ପାଖକୁ ଯିବ । ଗାଁ ପିଲା ବୋହି ନେବେ । ଝିଅ ବଡ଼ାଣି, ଦାରୁ ଆସିବ, ଗାଁ ବାଲା ଜଙ୍ଗଲ ଯିବେ । ଏ ସବୁ ସ୍ୱେଚ୍ଛାଶ୍ରମ, ଆଦିବାସୀ ଜୀବନର ଅତ୍ୟାବଶ୍ୟକ ମୂଲ୍ୟବୋଧ । ଏମିତିକି ଯଦି କିଏ ଏ ସବୁରେ ଭାଗ ନେଇ ନ ପାରିଲା; ବାହା ଭୋଜିକୁ ବାଡ଼ି କଦଳୀ କାନ୍ଧିଏ ବା ଚାଉଳ ଦି'ପୁଞ୍ଜା ଦେଇ ନ ପାରିଲା, ତେବେ ସେ ଗାଁରେ ଗୋଷ୍ଠୀରେ ସମାଜରେ ନିନ୍ଦା ପାଇବ ହିଁ ପାଇବ । ତୁମ ଘରେ ବାହାଘର, କିନ୍ତୁ ତୁମେ କିଛି ବଜେଟ୍ କରିବା ଦରକାର ନାହିଁ । ବନ୍ଧୁ ବାନ୍ଧବ ଯଦି ଛେଳି ଦଶମୁଣ୍ଡ, କୁକୁଡ଼ା ୨୦ଟା ଆଣିଲେଣି ତ ଆୟୋଜନ ହେବ ମାଂସ ଭୋଜି । ନାଇଁ ସେସବୁ କିଛି ଆସିପାରିନି ତ ସାଦା ଭାତର ଭୋଜି । ଗୋଷ୍ଠୀ ହାତରେ ସବୁକିଛି । ଆମମାନଙ୍କ ଭୋଜିର କୂଟ କପଟ, ପ୍ରୌଢ଼ି, ଆଭିଜାତ୍ୟ, ବାଛବିଚାର, ବ୍ୟକ୍ତିବାଦିତା ସେଠି ନାହିଁ । ସେହିପରି କେହି ମଲେ ଯେତେ କାମ ଥାଉ ପଛକେ ବୁଡ଼ ଘରକୁ ଯିବା, ଧନୁ ଧରି ଜାଣି ନ ଥିଲେ ବି ବେଣ୍ଟ ବା ଶିକାରକୁ ଯିବା, ଗୀତ ନାଚ ଜାଣି ନଥିଲେ ମଧ୍ୟ ପରବରେ ନାଟ କରିବା, ନିଜେ ଗୀତ କୁଡ଼ିଆ କି ଗୀତକୁଡ଼ିଆନୀ ନ ହୋଇଥିଲେ ମିଶା ଗୀତରେ ପାଳି ଧରିବା –ଏସବୁ ସେହି ସାମୂହିକ ମୂଲ୍ୟବୋଧର ଅଂଶ । ଏପରିକି ଏ ସମାଜର ନୈତିକତାକୁ ମଧ୍ୟ ଏଇ "ସାମୂହିକତା"ର ଦର୍ଶନ ହିଁ ନିର୍ଦ୍ଧାରଣ କରିଥାଏ ।

କୌଣସି କାର୍ଯ୍ୟରେ ଗୋଟିଏ ଜାଗାରେ ଦଳେ ଲୋକ ଏକାଠି ହୋଇଛନ୍ତି । ମାତ୍ର ଜଣକ ପାଖେ କିଛି ପଇସା ଅଛି । ସେଥିରେ ଯାହାବି ଖାଦ୍ୟ କିଣାହୋଇ ଆସିବ, ସଭିଙ୍କ ଭିତରେ ସମାନ ଭାବେ ବଣ୍ଟାହେବ । ନୋଚେତ୍ ଲଙ୍କାକାଣ୍ଡ ଘଟିଯିବ । ଆଉ ଖାଦ୍ୟଟା ଏପରି ସମାନ ଭାବେ କାହିଁକି ବଣ୍ଟାହୋଇ ପାରିବନି, ଆଦିବାସୀ ଭାବି ପାରେନି । ଦଳେ ରେମୋ(ବଣ୍ଡା) ଗୋବିନ୍ଦପାଲିର ଗୋଟିଏ ପରିବା ଦୋକାନ ପାଖେ ବସ୍‌କୁ ଜଗିଥିଲେ । ଦୋକାନୀ ସେ ଦଳର ଜଣକୁ ଦୁଇଟା ମଟର ଛୁଇଁ ଦେଲା । ସେ ଜଣକ ବଡ଼ ଯତ୍ନରେ ଛୁଇଁ ଦୁଇଟିକୁ ଛଡ଼ାଇ ଉପସ୍ଥିତ ସମସ୍ତଙ୍କ ଭିତରେ ବଡ଼ ସ୍ୱାଭାବିକଭାବେ ଗୋଟେ ଗୋଟେ କରି ବାଣ୍ଟିଦେଲା । ଏଭଳି ଦୃଶ୍ୟ

ଚାଷଜମିରେ, ଗୁଡ଼ିଘରେ, ପର୍ବପର୍ବାଣୀରେ, ସଲପଗଛ ମୂଳେ ଓ ହାଟରେ ବେଶ୍ ମାମୁଲି । ଘରେ କଦଳୀ କି ଅମୃତଭଣ୍ଡା କି ଆମ୍ବଟିଏ ପାଚିଲେ ଏଭଳି ଫଳ ଚିରୁଳା ବାଣ୍ଟିବାର ଦୃଶ୍ୟ ଅତି ସାଧାରଣ । କିନ୍ତୁ ଆମ କ୍ଷେତ୍ରରେ ଯାହାର ପଇସା, ଯାହାର ସମ୍ପତ୍ତି ସେ ହିଁ ଆଗ ସେ ଫଳକୁ ଭୋଗ କରିବ । ଏପରିକି ପାଖରେ ଥିବା ଶିଶୁ, ବୁଢ଼ା ଓ ରୋଗୀମାନଙ୍କ ପ୍ରତି ବି ନଜର ଦେବନି - ଇଏ ହେଲା ଆମର ସଂସ୍କୃତି-ସାହୁକାରୀ ସଂସ୍କୃତି । ମନେପକାନ୍ତୁ ଟ୍ରେନ୍ ଯାତ୍ରା ବେଳେ ବୁଭୁକ୍ଷୁ ଆଖିମାନଙ୍କ ସାମ୍ନାରେ ବସନ୍ତ ଶତପଥୀଙ୍କ ଗନ୍ଧନାୟକ ନିର୍ବିକାର ଅଙ୍ଗୁର-ଛେନାପୋଡ଼ ଖାଇବାର ଦୃଶ୍ୟ କିମ୍ବା ଆପଣାର କାଠ ଫାଳଉଥିବା କ୍ଷୁଧାର୍ତ୍ତ ସାନ୍ତାଳଟିକୁ ଲୁଚାଇ ଅଥଚ ତା'ର କ୍ଷୁଧା କଥା ଚିନ୍ତା କରୁ କରୁ ସ୍ୱାର୍ଥପର ଭାବେ ଗନ୍ଧନାୟକ ମାଂସ ଓ ମୁଢ଼ି ଉଦରସାତ୍ କରିବାର ଦୃଶ୍ୟ । ସଭ୍ୟତାର ଏଇ ସଂକ୍ରମଣ ଭିତରେ ଲଜ୍ୟାକର ସାହୁକାରୀ ସଂସ୍କୃତି ଆଦିବାସୀ ପରମ୍ପରା ଉପରେ ଆକ୍ରମଣ ଆରମ୍ଭକରି ଦେଲାଣି । ଅଭାବଗ୍ରସ୍ତ ଜଣେ ବିଧବା ବା ଅସହାୟ ଅନାଥ କିଶୋରକୁ ସାହାଯ୍ୟ କରିବା ପାଇଁ ଗାଁ ଭାଇମାନେ ଆଉ ଆଗେଇ ଆସୁ ନାହାନ୍ତି । ଅନ୍ୟାନ୍ୟ ଘଟଣାରେ ବି କେହି କିଛି ସ୍ୱେଚ୍ଛାଶ୍ରମ କରିବା ପାଇଁ କୁଣ୍ଠିତ ହେଲେଣି । ସେ ସ୍ଥାନ ଦଖଲ କରୁଛି ମଜୁରି ଶ୍ରମ । ଗାଁ ନାଇକର ଯେଉଁ କେତେକ ଅସ୍ତିମୂଳକ ଦିଗ ଥିଲା, ତାହାର ପ୍ରୟୋଗ ଆଉ ନାହିଁ । ଶତକଡ଼ା ଷାଠିଏ ଭାଗ ଜାଗାରେ ଗାଁ ନାଇକର କଥା ଆଉ ରହୁନି । ସେ ଜାଗାରେ ଆସି ଯାଇଛନ୍ତି ୱାର୍ଡ଼ମେମ୍ବରମାନେ । ସାମାନ୍ୟ ତାଚ୍ଛଲ୍ୟ ସହ ଲୋକ ସେମାନଙ୍କୁ ଡାକୁଛନ୍ତି ମେମ୍ବର । ସେମାନେ କେବଳ ନିଜର ସ୍ୱାର୍ଥ ଦେଖନ୍ତି । କିଛି ସେବା କଲେ କିଛି ପ୍ରାପ୍ତି ଖୋଜନ୍ତି । ଗାଁ ଗାଁରେ ଗୋଟିଏ ସମୟରେ ବ୍ୟାପକଭାବେ ପାରସ୍ପରିକ ଶ୍ରମ ସହଯୋଗ ବ୍ୟବସ୍ଥା ପ୍ରଚଳିତ ଥିଲା । ଯେପରିକି ଗୋଟିଏ ଗାଁର ସମସ୍ତ ଜମିକୁ ଦଳବଦ୍ଧ ଭାବେ ଗାଁ ଲୋକେ ଚାଷ କରିଦେବେ । ଯେଉଁଦିନ ଯାହାର ଜମି ଚାଷ ହେବ, ସେ କେବଳ ସେଦିନର ଖାଦିପିଦି ସମସ୍ତଙ୍କୁ ଯୋଗାଇ ଦେବ । ଏହି ବ୍ୟବସ୍ଥା ଏବେ ଦର୍ଶନୀୟ ଭାବେ ସଂକୁଚିତ ହୋଇଛି । କେବଳ କନ୍ଧ ଓ ବଣ୍ଡା ଗାଁମାନଙ୍କରେ ଏହା ପ୍ରଚଳିତ ରହିଛି। ବଣ୍ଡା ଗାଁମାନଙ୍କରେ ଏବେ ବି ବ୍ୟକ୍ତି ହେଉଛି ସମଷ୍ଟିର ଗୋଟିଏ ଅଂଶ । ଜଣକ ଉପରେ ଆକ୍ରମଣ ହେଲେ ସାରା ଗୋଷ୍ଠୀ ଉପରେ ଆକ୍ରମଣ ହେଲା ବୋଲି ଧରି ନିଆଯାଏ । ସେ ବାଘ ହେଉକି ତଳ ଗାଁର ଲୋକ ହୁଅନ୍ତୁ । ଗତ ଦଶବର୍ଷ ଭିତରେ ଏଭଳି ଅନ୍ତତଃ ୮/୧୦ଟି ଘଟଣା ଘଟିଥିବ, ଯେଉଁଠି କୌଣସି ବଣ୍ଡା

ଉପରେ ହୋଇଥିବା ଆକ୍ରମଣର ପ୍ରତିରୋଧ ପାଇଁ ଦଳବଦ୍ଧ ବଣ୍ଡାମାନେ ଆକ୍ରମଣକାରୀମାନଙ୍କ ଗାଁକୁ ଉଜାଡ଼ି ଦେଇଛନ୍ତି । ନେଇଯାଇଛନ୍ତି ସେମାନଙ୍କର ଗାଈଗୋରୁ ଛେଳି, କୁକୁଡ଼ା । ଆଉ କୌଣସି ବଣ୍ଡାକୁ ହତ୍ୟା କରିଦେଲେ ତ ହତ୍ୟାକାରୀର ରକ୍ଷାନାହିଁ । ତାକୁ ନ ମାରିଲା ଯାଏ ବଣ୍ଡାସମାଜ ଶାନ୍ତିରେ ନିଶ୍ୱାସ ମାରିବ ନାହିଁ । ବାଘ ଆକ୍ରମଣ ସଂପର୍କରେ ଗୋପୀ ମହାନ୍ତିଙ୍କ ଶୁଣାକଥା ଯେ ବାଘ କୋପ କଲେ ବଣ୍ଡାମାନେ ସମସ୍ତେ ଏକାଠି ହୋଇ ପ୍ରାଣକୁ ପାଣି ଛଡ଼ାଇ ବାଘକୁ ମାରନ୍ତି, ତା'ର ମାଂସ ଖାଆନ୍ତି, ତେବେ ଯାଇ ତାଙ୍କ ରିଷା ଶାନ୍ତହୁଏ । ଏହା ଆଜିଯାକେ ଘଟି ଚାଲିଛି । ସେମାନେ ଭୋକର ଦାଉ ସହୁଛନ୍ତି । ତଥାପି ଚାଉଳ ମୋହରେ ଘାରି ହେଉନାହାନ୍ତି । କିନ୍ତୁ ଥରେ ପର୍ବତରୁ ଓହ୍ଲାଇ ଖଇରପୁଟ ବ୍ଲକ୍ ଅଫିସ୍ ଘେରାଉ କରିଦେଲେ ଯେତେ ଦୁର୍ନୀତିଗ୍ରସ୍ତ ଅଧିକାରୀ ହେଲେ ବି ଭୟରେ ଥରିଥରି ସେମାନଙ୍କ ନ୍ୟାଯ୍ୟ ପାଉଣା ଦେଇଦେଉଛି । ତାହା ହିଁ ବୋଧେ ସଜୀବ କରି ରଖିଛି ସେମାନଙ୍କ ସ୍ୱାଭିମାନ ଓ ପରମ୍ପରାକୁ ।

କିନ୍ତୁ ଅନ୍ୟାନ୍ୟ ଗୋଷ୍ଠୀ ପାଖରେ ଏଇ ସଂଗ୍ରାମୀ ଏକତାର ଅଭାବ । ସାହୁକାରୀ ବ୍ୟକ୍ତିବାଦୀ ସଂସ୍କୃତିର ତୋଡ଼ରେ କିଛିକିଛି ଲୋକ ସାହୁକାରୀ ପଥରେ ପାଦଦେଇ କଣ୍ଟ୍ରୋଲ୍ ଡିଲର୍ କିମ୍ବା ଠିକାଦାର ହେଉଛନ୍ତି । ଏଇମାନେ ସମଷ୍ଟିକୁ ନିଜ ସ୍ୱାର୍ଥରେ ଲଗେଇ ଲଗେଇ ସମଷ୍ଟିବାଦର ମହତ୍ତ୍ୱକୁ ସାରି ଦେଉଛନ୍ତି । ଫଳରେ ସମଷ୍ଟି ଦେହରେ ଫୁଟ ପଡୁଛି । ଧୀରେ ଧୀରେ ପୂର୍ବ ପରମ୍ପରାର ଟାଣପଣ ନରମି ଯାଉଛି । କେବଳ ଅପରିହାର୍ଯ୍ୟ ପରିବେଶ ଓ ବିଶେଷ ଘଟଣାମାନଙ୍କରେ ସମଷ୍ଟିର ଭୂମିକା ଦେଖିବାକୁ ମିଳୁଛି । ଦୁଃଖ ଓ ଅଭାବ ବେଳେ ଏହାର ଭୂମିକା କିଛି ରହୁନାହିଁ । ଫଳରେ ରୋଗ କାଇଲାରେ ଚିକିତ୍ସା ଅଭାବରୁ ମୃତ୍ୟୁ ବା ଭୋକ ଉପାସରେ ମୃତ୍ୟୁ ଭଳି ଘଟଣା ଘଟି ପାରୁଛି । ମଲାପରେ ଶବଦାହ କାମରେ ଅବଶ୍ୟ ସମଷ୍ଟି ବାହାରି ପଡୁଛି । କିନ୍ତୁ ଡାକ୍ତରଖାନା ନେବାକୁ କିମ୍ବା ବ୍ଲକ୍‌ଅଫିସ୍ ଘେରାଉ କରି ଉପାସୀ ଲୋକଟି ପାଇଁ ଖାଦ୍ୟ ଆଣିବାକୁ ଲୋକେ ବାହାରୁ ନାହାନ୍ତି ।

ଭୋକର ଦ୍ୱିତୀୟ ବଳି ଆତ୍ମସମ୍ମାନ ଓ ତୃତୀୟ ବଳି ସଂଗ୍ରାମୀ ଏକତା । ଗୋଟିଏ ସମୟରେ ଆଦିବାସୀର ଆତ୍ମସମ୍ମାନବୋଧ ଏତେ ବେଶି ଥିଲା ଯେ ପୂର୍ବ ସାହୁକାରମାନେ ଗାଁ ନାଇକର ପାଦତଳେ ଉପହାର ଥୋଇ, "ମୁଁ ତୋର ପରଜା, ତୁଇ ଦୟା ନ କଲେ ମୁଁ ମରିଯିବିନି କି ?" ବୋଲି କହି ବା ତା' ସହ ମଇତ୍ର ବସି

ନିଜ ପାଇଁ ସ୍ଥାନ ଯୋଗାଡ଼ କରି ନେଉଥିଲେ । ତା' ପରେ ଧୀରେ ଧୀରେ ନିଜ ଶୋଷଣର ଜାଲ ସେମାନେ ମେଲାଉ ଥିଲେ । ଗର୍ବର ସହ କଥା ହେଉଥିବା ଲୋକକୁ ଆଦିବାସୀ ଗାଁ ନାୟକ ଆଦୌ ପାଖ ପୂରାଇ ଦିଏନାହିଁ । ଆଉ ଏହି ଉପାୟରେ କପର୍ଦ୍ଦକଶୂନ୍ୟ ବହୁ ବାରବୁଲା ଆଦିବାସୀ ଇଲାକାରେ ମେଢ଼ବାନ୍ଧି ଗାଁ ପରେ ଗାଁର ଜମିବାଡ଼ି ଦଖଲ କରିଯାଇଛନ୍ତି । ଥରେ ଟଙ୍କାଥଳି ବା ବ୍ୟାପକ ଭୂମିର ମାଲିକ ହେଲାପରେ ସେମାନେ ପାଲଟିଛନ୍ତି ଆଦିବାସୀର ମହାପ୍ରୁ । ସେଇମାନଙ୍କ ପାଖରେ ହୁଏତ ନାଇକର ପୁଅ ଭାଇ ଗୋତି ରହିଥାନ୍ତି, ନିଜେ ନାଇକ ପାଲଟିଛି ତା'ର ଖାତକ, ଗାଁଟା ଯାକର ଜମିବାଡ଼ି ବଂଧା ପଡ଼ିଛି । ଏଣେ ଜଙ୍ଗଲ ନାହିଁ ଯେ ଆଦିବାସୀ ତା'ର ଜମି ହରାଇ ଦେଲେ ନୂଆ ଜାଗାକୁ ଉଠିଯିବ । ଜଙ୍ଗଲରେ ପଶି ଖାଦି ଖୋଜିବ । ପୁରୁଣା ଖାଦ୍ୟ ଅଭ୍ୟାସ ଓ ରୁଚି ବି ତା'ର ବଦଳି ଯାଉଛି । ତେଣୁ ସେ ଆଦରି ନେଉଛି ଗୋତିର ସଂସ୍କୃତିକୁ । ସାହୁକାର ତା'ର ଝିଅ ବୋହୂକୁ ଧର୍ଷଣ କଲେ, ଗୋଷ୍ଠୀ ବିଚାରରେ ତାହା ନ ପଡୁଣୁ ଟଙ୍କା ଓ ମଦ ଦେଇ ସାହୁକାର ସଭିଙ୍କ ମୁହଁ ବନ୍ଦ କରିଦେଉଚି । "ଟୁଣୁହୁୟାମ୍" କହି ଗୋଷ୍ଠୀ ତା'ର ଆତ୍ମସମ୍ମାନ ରକ୍ଷାପାଇଁ ସାହୁକାରକୁ ଶିକାର କରୁନି । ଏଇ ଅଳ୍ପଦିନ ତଳର ଘଟଣା । ମେକା ପଞ୍ଚାୟତର କଉଡ଼ିଗୁଡ଼ା ବୋଲି ଭୂମେୟା ଗାଁରେ ବଳି ଜେନା ସାହୁକାର ଆଦିବାସୀଙ୍କ ଜମି ବନ୍ଧା ଧରିଧରି ପ୍ରାୟ ୭୦ଏକର ଜମିର ମାଲିକ ହୋଇଚି । ପାଙ୍ଗାମ୍ ବଜାର ତଥା ଆଉ ୨/୩ ଜାଗାରେ ତା'ର ମେଢ଼ ବାନ୍ଧି ଜମିବାଡ଼ି କରିଚି । ତା'ର କଉଡ଼ିଗୁଡ଼ା ଘରେ କମଳା ଭୂମେୟା ବୋଲି ୧୫ବର୍ଷର ଝିଅଟିଏ କାମଦାମ କରିଦିଏ । ଜୁଲାଇ ୧୪(୨୦୦୩) ସକାଳ ୭ଟାରେ କମଳା ବଳି ଜେନାର ଘର ଝାଡୁ ଦେଉଥିବା ସମୟରେ ବଳି ପ୍ରସ୍ତାବ ଦେଲା, ଚାଲ୍ ଆମେ ଶୋଇବା, ସେ ରାଜି ନ ହେବାରୁ ତାକୁ ଜବରଦସ୍ତ ଗୋଦାମ ଘରକୁ ଟେକିନେଲା । ଟୋଲାଗଦା ଉପରେ ଧର୍ଷଣ କଲା । ଧସ୍ତାଧସ୍ତି ସମୟରେ ତା'ର ମୁଣ୍ଡ ମଧ୍ୟ ଫାଟିଗଲା । ସେ କାନ୍ଦିକାନ୍ଦି ଘରକୁ ଫେରିଲା । ଘରେ ବାପା ମା' କେହି ନଥିଲେ । ସମସ୍ତେ ବେଡ଼ାକୁ ଯାଇଥିଲେ । ଏଣେ ସେଇଦିନ ୧୦ଟା ସମୟରେ ବନ୍ଧୁ ଦୋରାର ବେଡ଼ାକୁ ଯାଇ ବଳିଜେନା ଦୋରାର ସ୍ତ୍ରୀକୁ ଗୋଟିଏ କର୍ଲି(ବାଉଁଶଡାଲା) ମାଗିଲା । ବନ୍ଧୁର ସ୍ତ୍ରୀ ଘରକୁ ଉଠିଗଲା କର୍ଲି ଦେବାପାଇଁ । ବଳି ତା' ପଛେପଛେ ଯାଇ ସେ ଘରେ ପଶି ଭିତରୁ ଶିକୁଳି ଲଗାଇଦେଲା । ପ୍ରାୟ ଅଧଘଣ୍ଟା ପରେ ବନ୍ଧୁ ଆସି କବାଟ ବାଡ଼େଇବାରୁ ଶିକୁଳି ଖୋଲି ବଳି ଧାଇଁ

ପଳାଇଗଲା । ପଛେପଛେ ବାହାରିଲା ତା'ର ସ୍ତ୍ରୀ । ସେ ମଧ୍ୟ ଅଭିଯୋଗ କଲା ଯେ ବଳି ମତେ ଦୋଷ କଲା । କିଛିସମୟ ପରେ ବଳି ଫେରିଆସି ସେ ଘରୁ ନିଜର ଛାଡ଼ି ଯାଇଥିବା ଗାମୁଛା ନେଇଗଲା । ଏହି ଦୁଇ ଘଟଣା ଗାଁ ଲୋକଙ୍କୁ ଉତ୍ତ୍ୟକ୍ତ କରିଦେଲା । ବନ୍ଧୁର ସ୍ତ୍ରୀ ସେଇ ଗାଁରେ ଥିବା ତା'ର ବାପଘରକୁ ପଳେଇଯାଇ ବଳି ଜେନାକୁ ଧର୍ଷଣ ଦୋଷ ପାଇଁ ଦଣ୍ଡ ସଗର୍ଭା ଦାବି କରି ବସିଲା । ଏ ବିଚାର ପ୍ରଥମେ ମାଥିଲି ଥାନାକୁ ଗଲା । କିନ୍ତୁ ଥାନାବାବୁ ଲୋକଙ୍କ ଅଭିଯୋଗ ଗ୍ରହଣ ନ କରି ସମସ୍ତଙ୍କୁ ଯା'ଛାତା ଗାଳିକରି ଫେରେଇ ଦେଲେ । ସାଙ୍ଗରେ ଆସିଥିବା ଧର୍ଷିତାମାନଙ୍କୁ ଡାକ୍ତର ମାଇନା ପାଇଁ ମଧ୍ୟ ପଠେଇଲେନି । ପରେ ସେ ଘଟଣାର ବିଚାର ପାଇଁ ଜିଲ୍ଲା ଆଦିବାସୀ ସଂଘର ସ୍ଥାନୀୟ ଶାଖା କମିଟିରେ ଲୋକେ ଅଭିଯୋଗ କଲେ । ଆଖପାଖ ଗାଁ ଲୋକେ ରୁଣ୍ଡହୋଇ ୧୮ ତାରିଖ ଦିନ ବିଚାର ତାରିଖ ଧାର୍ଯ୍ୟ କଲେ । କିନ୍ତୁ ସଂଘକର୍ମୀମାନେ ସେ ଗାଁରେ ସର୍‌ଜମିନ୍ ପାଇଁ ପହଞ୍ଚିଲା ବେଳକୁ ଗାଁଯାକ ଲୋକ ଆକଣ୍ଠ ମଦ ପିଇ ବଳିର ପ୍ରଶଂସା କରୁଛନ୍ତି । କମଳା କିମ୍ବା ବନ୍ଧୁ ଦୋରାର ସ୍ତ୍ରୀକୁ ମଧ୍ୟ ଲୁଚାଇ ଦେଇଛନ୍ତି । ଏକୁଟିଆ ବନ୍ଧୁ କାନ୍ଧରେ ଟାଙ୍ଗିଆ ଧରି ଉତ୍‌କ୍ଷିପ୍ତ ବାଘ ଭଳି ଘୂରି ବୁଲୁଛି । ଆଉ କାହାରି ଦେଖାନାହିଁ । ବିଚାର କରି ନ ପାରି ସଂଘଲୋକେ ଫେରିଲେ । ବଳି ଜେନା ଧମକ ଦେଉଛି, "କେଉଁ ସଂଘ ମୋର କାଇଟା କରିପକେଇବ ।"

କେଉଁ ପ୍ରତିପତ୍ତି ଓ କେତେ ଟଙ୍କା ବିନିମୟରେ କଉଡ଼ିଗୁଡ଼ା ଗାଁର ଭୂମେୟାମାନେ ଆପଣା ଗୋଷ୍ଠୀର ଦୁଇ ଦୁଇଟି ନାରୀର ଇଜ୍ଜତକୁ ବଳିଦେଲେ ? ବନ୍ଧକ ଧରିଥିବା ୭୦ ଏକର ଜମି ମାଲିକାନାର ପ୍ରତିପତ୍ତି ନା ବଣ୍ଟା ହୋଇଥିବା ୨୦୦୦ଟଙ୍କା ତଥା ଆଉ ୫୦୦/୧୦୦୦ଟଙ୍କାର ମଦର କରାମତି ? ଆଗକାଳ ହୋଇଥିଲେ ଏଠି ଘିନୁଆର ତୀର ଚାଲିଥାନ୍ତା । ଶୁକ୍ରା ଓ ମାଣ୍ଡିଆ ଜାନିର ଟାଙ୍ଗିଆ ବୁଲିଥାନ୍ତା । କିନ୍ତୁ ଏବେ ଅର୍ଥ ଅଜାଡ଼ି ଦେଲେ ସବୁ ଦୋଷ ମାଫ୍ ହୋଇଯାଉଚି । ଏଇ ତ କାଲିଭଳି, ଅନ୍ୟଏକ ଘଟଣାରେ ମହୁଲପୁଟ ଗାଁର ଝିଅ ଲକ୍ଷ୍ମୀ ଖିଲକୁ ରକ୍ଷିତା ରଖିଥିଲା ପାଖ ଗାଁର ଜଣେ ବଙ୍ଗାଳୀ ସାହୁକାର । ଲକ୍ଷ୍ମୀ ପେଟ ହେଇଯିବାରୁ ସାହୁକାର ଦାବିକଲା ଏହାକୁ ଭଙ୍ଗାଇ ଦେ । ଲକ୍ଷ୍ମୀ ମନାକଲାରୁ, ଠିକ୍‌ଅଛି ଏଇ ଭିଟାମିନ୍ କେପ୍‌ସୁଲ୍ ଖାଇଦେ ବୋଲି କହି ସେ ତାକୁ ବିଷ ଦେଇଦେଲା । ଲକ୍ଷ୍ମୀ ବିଚାରୀ ମଲା । 'ସାବେରୀ' ବୋଲି ଏକ ଗଣସଂଗଠନ ଏହା ବିରୁଦ୍ଧରେ ଖୁବ୍ ଆନ୍ଦୋଳନ

କଲା । କାରଣ ଲକ୍ଷ୍ମୀ ଥିଲା ସେଇ ସଂଗଠନର ସଭ୍ୟା । କିନ୍ତୁ ଶେଷ ପର୍ଯ୍ୟନ୍ତ ସାକ୍ଷୀ ସାବୁତ୍ ଅଭାବରୁ ସେ କେଶ୍ ମଧ୍ୟ ଚପା ପଡ଼ିଗଲା । ଝିଅର ମା' ବାପା ପାଟି ଖୋଲିଲେନି । ଅଥଚ ଅଭିଯୁକ୍ତର ଯଦି ଅର୍ଥବଳ ନ ଥାନ୍ତା କିମ୍ବା ସେ ଯଦି ନିଜ ଗୋଷ୍ଠୀର ରଇତ ପିଲାଟିଏ ହୋଇଥାନ୍ତା ତେବେ ହୁଏତ ତା'ର ଠିକ୍ ବିଚାର ହୋଇପାରିଥାନ୍ତା, ଯେପରି ବିଚାର ହୋଇଛି 'ଆଦିଭୂମି'ର ସମ୍ଧାରୀ କେଶ୍‌ରେ ।('ଆଦିଭୂମି' ହେଉଚି ବଣ୍ଡା ଜନଜୀବନ ଉପରେ ପ୍ରତିଭା ରାୟଙ୍କ ସେଇ ବିଖ୍ୟାତ ଉପନ୍ୟାସ, ଯାହା ବିରୁଦ୍ଧରେ ଏବେ ଏବେ ମାଲ୍‌କାନ୍‌ଗିରିର ଆଦିବାସୀ ଲୋକପ୍ରତିନିଧିମାନେ ଖୁବ୍ ତୁମ୍ଭି ତୋଫାନ୍ କଲେ । ତଳ ବଣ୍ଡା ଓ ଉପର ବଣ୍ଡା ଲୋକଙ୍କୁ ଉତ୍ତେଜିତ କରି ପ୍ରତିମାସ ଖଇରପୁଟରେ ବୈଠକ ବସିଲା । ଅଥଚ ତିନୋଟି ବୈଠକ ପରେ ବଣ୍ଡାମାନେ ଆଉ ଏ ବୈଠକକୁ ଆସିଲେନି ! କାରଣ ସେତିକିରେ ଅଣଆଦିବାସୀ ନେତାଙ୍କ ବଣ୍ଡାସଂସ୍କୃତି ବିରୋଧୀ ଆଭିମୁଖ୍ୟ ବିଷୟ ସେମାନେ ଠିକ୍‌ଠାକ୍ ବୁଝିଗଲେ । ସବୁ ତୁମ୍ଭି ତୋଫାନ୍ ପବନରେ ଉଡ଼ିଗଲା ।) ସମ୍ଧାରୀର ବାବା ହାଦିକୁ ପଚାରିଲେ - "ମୋର ଟୋକି ସମ୍ଧାରିକୁ ତୁଇ ପେଟ୍‌ରି କରିଚୁକି ? ମୋର ଟୋକି ତୋର ନାଁ କହୁଛି ?" "ତୁଇ ମୋର ଟୋକିକୁ ବା' ହେବୁକି ?" "ନାଇଁ, ମୁଁ ଅନ୍ୟ ଟୋକି ସୁତୁରେଇଚି । ତୋ'ର ଟୋକିଠି ଆଉ ମୋର ମନ ନାଇଁ ।" ×××

"ତେବେ ସଗର୍ତ୍ତା ଦେସ୍‌ବେ ! ଦେବୁ କି ନ ଦେବୁ ?" ଦି' ଝରିଟା ଟାଙ୍ଗିଆ ଉଦ୍ଧକୁ ଉଠିଲା । ××× ହାଦି ଦି' ପାଦ ପଛକୁ ହଟିଗଲା । ଦୁଇହାତ ଯୋଡ଼ି କହିଲା - "ଇଡି ଡେସ୍‌ସୁ ନ ନିଙ୍ଗ୍‌ନିଙ୍ଗ୍(ମୁଁ ହଲପ୍ କରି କହୁଛି) ମିଛ ଆସୁ ଡେନ୍‌ତ ତିଙ୍ଗ୍ । ସଗର୍ତ୍ତା ଦେବି ଦେବି ଦେବି ହଲପ୍ କରି କହୁଛି ।" ସାପ ଫଣା ପରି ଚୋଟ ଉଠାଇଥିବା ଟାଙ୍ଗିଆ ସବୁ ନଇଁଗଲା ।" (ଆଦିଭୂମି, ପୃ.୮୧)

ନାରୀ ପୁରୁଷ ଭିତ୍‌ରର ଏଇ ଅବୈଧ ସମ୍ପର୍କ ଆପଣାର ଗୋଷ୍ଠୀ ଭିତର କଥା ବୋଲି ସହଜରେ ବିଚାର ଛିଡ଼ିଲା । କିନ୍ତୁ ସେଇ ଉପନ୍ୟାସର ଅନ୍ୟତ୍ର ଉଲ୍ଲିଖିତ ବିଚାରୀ ଆଦିବାରୀର ଅନାହୂତ ମାତୃତ୍ୱର କିଛି ସମାଧାନ ହୋଇପାରିଲା ନାହିଁ । କାରଣ ତାକୁ ପେଟ୍‌ରି କରିଥିବା ଅଣ୍ଡ୍ରା ଥିଲା ଅନ୍ୟ ଜାତିର ପୁରୁଷ, ଜଣେ ଗୁଲଙ୍ଗ୍ ବା ପୁଲିସ୍‌ବାବୁ । "ଆଦିବାରୀ ବାବୁଟାକୁ କହିଲା "ତୁଇ ମାନିଯା । ବଣ୍ଡା ଆଇନ୍‌ରେ ଅଛି ସଗର୍ତ୍ତା ଦେଲେ ଦୋଷ କଟିଯାଏ । କେହି ତୋତେ ଧରିବେନି ।" "ବଣ୍ଡା ଆଇନ୍‌ରେ ମାରିବେନି, ଗୁଲଙ୍ଗ୍ ଆଇନ୍‌ରେ ତ ମାରିବେ, ତିନି ପାଞ୍ଚିରୁ ଯିବି ।"

"ତେବେ ତୁଇ ମତେ ଡିଅ ବସାଇ ଭାରିଯା କରିନେ ।" "ଗାଁରେ ମୋର ଗୁଟେ ଭାରିଯା ଅଛି ।" ଆଦିବାରୀ ପ୍ରସ୍ତାବ ଦେଇଚି "ଆରଟାକୁ ଖେଦି ଦେ ନ ହେଲେ ମତେ ସାନ୍‌ଲି କରିନେ ।" କିନ୍ତୁ କୌଣସି ପ୍ରସ୍ତାବରେ ଗୁଲଙ୍ଗ୍ ରାଜି ହୋଇନି । ଯଦିଓ ବଣ୍ଡା ଜାତିର 'ୟଙ୍ଗ'(ମା') ଅଁଅଁ(ଶିଶୁ)କୁ ଜନମ୍ ଦିଏ, ମରଣ୍ ଦିଏନି, ଆଦିବାରୀ ବାଧ୍ୟ ହୋଇ ତା'ର ଅଁଅଁକୁ ଜନମ୍ ଦେଇ ମାରିଦେବା ପାଇଁ ପର୍ବତ୍ ତଳକୁ ଓହ୍ଲାଇ ଆସିଛି । ବଣ୍ଡା ସମାଜ ତାକୁ ଛାଡ଼ି ଦେଇଛି । ଭୁଲି ଯାଇଛି । (ତତ୍ରୈବ - ପୃ.୪୫୩-୪୫୫) ଅର୍ଥାତ୍ ବଣ୍ଡା ସମାଜରେ ଏବେ ବି ସଂସ୍କୃତି ଭିତରେ ଭଙ୍ଗା ଆସିନି । ଛିଦ୍ର ଦେଖାଦେଇନି । ପରମ୍ପରା ଭାଙ୍ଗୁଥିବା ବଣ୍ଡାମାନେ ନିର୍ବାସିତ ହୋଇ ପର୍ବତ ତଳକୁ ଓହ୍ଲାଇ ଆସିଛନ୍ତି ଓ ଗଢ଼ିଛନ୍ତି ତଳବଣ୍ଡାର ସଂସ୍କୃତି । ସେଠି ଅନେକ ଛିଦ୍ର, ଅନେକ ଦୁର୍ବଳତା । ପୁଣି ସେଇ ପାଖ ପର୍ବତରେ ଥିବା ଡିଡୋୟୀ ସମାଜରେ ପୂର୍ବର ନିୟମକାନୁନ୍ ଧୀରେଧୀରେ ଶିଥିଳ ହେଉଛି । ବାଲିମେଳା ନଦୀବନ୍ଧର ପାଣି ତଳେ ସେମାନଙ୍କ ସଂସ୍କୃତି ବୁଡ଼ିଛି । ମାଲ୍‌କାନ୍‌ଗିରିର ବୃହତ୍ତମ ଜନଗୋଷ୍ଠୀ କୟା ସମାଜରେ ଶତଛିଦ୍ର ଦେଖାଗଲାଣି । ପାଖାପାଖି ରହୁଥିବା ବଙ୍ଗାଳୀ, ରିଫ୍ୟୁଜି, ସାହୁକାର, ବେପାରୀ ଓ ଦାଦନ ଦଲାଲମାନଙ୍କ କବଳରେ ପଡ଼ି କିଛି କିଛି ଝିଅ ବମ୍ବେ, ଦିଲ୍ଲୀ, କଲିକତାର ଗଣିକା ବଜାରକୁ ମଧ୍ୟ ଚାଲାଣ ହେଲେଣି । ସବୁ ଜାଣି ବି ଦାଦନ ଦଲାଲମାନଙ୍କ ବିରୁଦ୍ଧରେ ନ ଲଢ଼ି ଗୋଷ୍ଠୀ ଓ ସମାଜ ଚୁପ୍ ରହୁଛି । ସେ ଝିଅମାନଙ୍କୁ ମୃତ ବୋଲି ଧରି ନିଆଯାଉଛି । ନାରୀ ଦଲାଲ ଓ ଦାଦନ ସାହୁକାରମାନେ ଦଣ୍ଡ ନ ପାଇ ନିର୍ଭୟରେ ଘୂରି ବୁଲୁଛନ୍ତି ଓ ଅଧିକରୁ ଅଧିକ ନିଜର କାରବାର ଅବାଧରେ ଚଳାଇଛନ୍ତି ।

ଏଇଠି ଯେଉଁ ତୃତୀୟ ବଳିର କଥାଟା କହିଥିଲି, ସେ ପ୍ରସଙ୍ଗକୁ ଆସିବା । ତା' ହେଉଛି ସଂଗ୍ରାମୀ ଏକତା । ସମଷ୍ଟିର ଏହି ସଂଗ୍ରାମୀ ଏକତା ବଳରେ ସାପଫଣା ପରି ଟାଙ୍ଗିଆ ଉଞ୍ଚେଇ ଧନୁତୀର ଧରି ଆଦିବାସୀ ସବୁ ଅନ୍ୟାୟ, ଅବିଚାର, ଦମନ ଓ ଅତ୍ୟାଚାରର ସାମ୍ନା କରୁଥିଲା, ସମାଧାନ କରୁଥିଲା । କୋର୍ଟ କଚେରୀର ଆଶ୍ରୟ କମ୍ ନେଉଥିଲା । କୌଣସି ବିଚାର ଗାଁ ବା ପଞ୍ଚାୟତ ସ୍ତରରେ ହୋଇ ନ ପାରିଲେ ସମୁଦାୟ ଗୋଷ୍ଠୀ ବିଚାର ଡାକୁଥିଲା । ଏବେ ମଧ୍ୟ ଛତିଶଗଡ଼ ଓ ମାଥିଲି - ମାଲ୍‌କାନ୍‌ଗିରିର ଗଣ୍ଡିଆ ସମାଜ ଭିତରେ ଏ ପ୍ରଥା ପ୍ରଚଳିତ ଅଛି । ହାଲ୍‌ବି ଓ ଦୁରୁଆ ସମାଜରେ ମଧ୍ୟ ୬୦/୭୦ ଗାଁର ଲୋକ ଓ ବିଚାରପତିମାନେ ଏକାଠି ହୋଇ ବିଚାର

ଜାହିର କରିବାର ପ୍ରଥା ଏବେବି ଚାଲିଛି । କିନ୍ତୁ ଏଥିରେ ବାଧା ଦେଉଛନ୍ତି ଉଭୟ ଓଡ଼ିଶା ଓ ଛତିଶଗଡ଼ର ଗୁଲଙ୍ଗ୍ ବାବୁମାନେ ଓ ବିଭିନ୍ନ ରାଜନୈତିକ ପାର୍ଟିର ତଥାକଥିତ ଆଦିବାସୀ ଜନପ୍ରତିନିଧିମାନେ । ତା' ସାଙ୍ଗକୁ ରହିଛି ସରକାରୀ ବିକାଶ ଯୋଜନାର ନିଧଡ଼କ ରଥ ଓ NGOମାନଙ୍କର ମିଠା ମିଠା କଥାର ମାୟାଜାଲ । ପାରମ୍ପାରିକ ନ୍ୟାୟ ନିଶାପର ଧାରାକୁ ନିରନ୍ତର ଏହା ପେଷି ଦେବାର ଚେଷ୍ଟା କରୁଛି ଓ ତା' ବିରୁଦ୍ଧରେ ଏକ ସ୍ୱାଭାବିକ ଆତ୍ମରକ୍ଷାର ସଂଗ୍ରାମ ଜାରି ରହିଛି । ତେବେ ବହିରାଗତ ସଭ୍ୟତାର ଏଇ ଅତ୍ୟାଚାରକୁ ମୁକାବିଲା କରିବା ପାଇଁ ଯେଉଁ ସଂଘବଦ୍ଧ ପ୍ରଚେଷ୍ଟା ଦରକାର, ଜାତି ଓ ଗୋଷ୍ଠୀର ଯେଉଁ ସମନ୍ୱୟ ଦରକାର, ଯେଉଁ ପ୍ରବଳ ଇଚ୍ଛାଶକ୍ତି ଲୋଡ଼ା, ତା'ର ଅଭାବରେ, ସେତିକି ଶକ୍ତିଶାଳୀ ସଂଗ୍ରାମୀ ଏକତା ଗଢ଼ିଉଠି ପାରିନି । ଏକାକାଳୀନ ହଜାର ହଜାର ବଙ୍ଗୀୟ ଶରଣାର୍ଥୀଙ୍କର ଥଇଥାନ ସହ ଚାରି ଚାରିଟା ବୃହତ୍ ନଦୀବନ୍ଧ ପ୍ରକଳ୍ପର କର୍ମଚାରୀ ତଥା ସରକାରୀ କର୍ମଚାରୀମାନଙ୍କ ସ୍ରୋତ ଅବିଭକ୍ତ କୋରାପୁଟ ଜିଲ୍ଲାରେ ନାହିଁ ନ ଥିବା ଓଲଟ ପାଲଟ ଘଟାଇ ଦେଇଛି । ବିଶେଷକରି ଅର୍ଥନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ । ଏମାନଙ୍କ ମନମୁଖୀ ଚାଲ ଚଳଣି, ନୂଆ କୃଷିପଦ୍ଧତି ସହିତ ନୂଆ ସାହୁକାରୀ ଶୋଷଣ, ଅତ୍ୟାଚାରୀ ଓ ଅତ୍ୟାଚାରିତର ଅବଶ୍ୟମ୍ଭାବୀ ଆନ୍ତପ୍ରକ୍ରିୟା ଓ ଅନ୍ତହୀନ ପ୍ରତାରଣାର ବାତାବରଣ ଆଗରେ ହତଭମ୍ଭ ହୋଇ ନ ଯଯୌ ନ ତସ୍ଥୌ" ରହିଯାଇଛି ପୁରୁଣା ଆଦିବାସୀ ସମାଜ । କିଛି ରାହା ଖୋଜି ପାଉନି । ନେତୃତ୍ୱହୀନତାର ଏହି ପରିବେଶକୁ ଆହୁରି ଭୟାନକ କରିଦେଇଛି ନିର୍ବାଚନୀ ପ୍ରକ୍ରିୟାର ରିଜର୍ଭେସନ ତତ୍ତ୍ୱ, ମିଥ୍ୟା ପ୍ରତିଶ୍ରୁତି ଓ ପ୍ରତାରଣା ତଥା କିଛି ତଥାକଥିତ ଆଦିବାସୀ ଦରଦୀ ଆଇନ୍‌କାନୁନ୍ । ଆଦିବାସୀ ସମାଜରେ ଆବିର୍ଭୂତ ହୋଇଛନ୍ତି ଅନେକ ବିଭୀଷଣ, ଯେଉଁମାନେ ଗାଁ ଗାଁରେ ଖେଦିଯାଇ ଫାଟ ଧରାଉଛନ୍ତି ଆଦିବାସୀର ସଂଗ୍ରାମୀ ଏକତାରେ । ତେଣୁ ତା'ର ଧନୁତୀର ଓ ନଳୀ, ଟାଙ୍ଗିଆ କେବଳ ଏକ ଅଳଙ୍କାର ହୋଇ ରହିଯାଇଛି । ହରାଇ ବସିଛି ତା'ର ଦାଢ଼ ଓ ଯୁଗୋପଯୋଗିତା ।

ଏହିଭଳି ଏହିଭଳି ଜନ୍ମ ନେଇଛି ଅନହୁତି ଏକ ଭୋକ ସଂସ୍କୃତି । ଏହା ନିଧଡ଼କ ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ସଂକ୍ରମି ଚାଲିଛି ଆଦିବାସୀ ସଂସ୍କୃତିର ଅସଲ ଆତ୍ମାକୁ । ତେଣୁ ତ ଆଦିବାସୀର ନିଉଛୁଣା ନ୍ୟୂନଭାବ - ନିରକ୍ତ ଚେହେରା । ଏହାକୁ ରୋକିବାର ଏକମାତ୍ର ବାଟ ହେଉଛି ଗୋଷ୍ଠୀ ଓ ଜାତିଭେଦର ଉର୍ଦ୍ଧ୍ୱକୁ ଉଠି

ସବୁ ଜନଜାତିକୁ ଏକତ୍ର କରି ଏକ ବଳିଷ୍ଠ ସଂଗ୍ରାମୀ ଏକତା ଗଢ଼ି ତୋଳିବା ଏବଂ ସବୁ ସାହୁକାରୀ ସରକାରୀ ଓ ବେସରକାରୀ ଶୋଷଣ ଜୁଲୁମ୍‌କୁ ଗୋଟି ଗୋଟି କରି ସାମ୍ନା କରିବା । ତେବେ ଯାଇ ଫେରିଆସିବ ତା'ର ଭୂଲୁଣ୍ଠିତ ଆତ୍ମସମ୍ମାନ ଓ ସମଷ୍ଟି ଜୀବନର ଉତ୍ତୁଙ୍ଗ ଦର୍ଶନ । ନ ହେଲେ ଆଗାମୀ ପଚାଶବର୍ଷ ଭିତରେ ଆଦିବାସୀମାନେ ଲୋପ ପାଇଯିବାର ଯେଉଁ ଆଶଙ୍କା ଗୁରୁବାକୁ ପ୍ରକାଶ କରିଛନ୍ତି, ତାହା ସତ୍ୟରେ ପରିଣତ ହେବ । କାରଣ ଯେଉଁ ପ୍ରକ୍ରିୟା ଆରମ୍ଭ ହୋଇଯାଇଛି, ତାକୁ କେଉଁଠି ନା କେଉଁଠି ରୋକା ନ ଗଲେ, ତାହା ନିଃଶ୍ଚେ ତା'ର ଅବଶ୍ୟମ୍ଭାବୀ ଉପସଂହାରରେ ଉପନୀତ ହେବ ହିଁ ହେବ । ଆଉ ସେତେବେଳେ ଗବେଷଣାଗାରର ନଥିପତ୍ର ଘାଣ୍ଟି ଖୋଜିବାକୁ ପଡ଼ିବ ଆଦିବାସୀମାନଙ୍କର ଚମତ୍କାର ସଂସ୍କୃତି ଓ ଉତ୍ତୁଙ୍ଗ ଜୀବନାଦର୍ଶକୁ । ଆଶା କରୁଛି ଅନୁଭବୀ ସମାଜସେବୀ, କର୍ମୀ ଓ ସଚେତନ ଆଦିବାସୀ ଯୋଦ୍ଧାମାନେ ଏହା କଦାପି ଘଟିବା ପାଇଁ ଦେବେନାହିଁ ଓ ସବୁପ୍ରକାର ସମାନ୍ତୀ ସାମ୍ରାଜ୍ୟସାହୀ ଷଡ଼ଯନ୍ତ୍ରକୁ ସାମ୍ନା କରି ଏହି ପ୍ରକ୍ରିୟାକୁ ଧୂଳିସାତ୍ କରିଦେବେ ।



# ଢେମ୍‌ସା ନାଚୁଥିବା ଧାଂଡ଼ୀ ଓଠରେ ଉଜୁଡ଼ା ହସ

(ପରିବର୍ତ୍ତିତ ଆଦିବାସୀ ସଂସ୍କୃତିର ଏକ ପଟ୍ଟଚିତ୍ର)

ଆଦିବାସୀ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେଉଚି ଢେମ୍‌ସା । ଅବିଭକ୍ତ କୋରାପୁଟ, ବଲାଙ୍ଗୀର ଓ କଳହାଣ୍ଡିର ବିଭିନ୍ନ ଆଦିବାସୀଗୋଷ୍ଠୀର ମୁଖ୍ୟ ଜୀବିକା ହେଉଚି ଚାଷ ଓ ଜଙ୍ଗଲଜାତ ଦ୍ରବ୍ୟର ସଂଗ୍ରହ । ଶ୍ରମ ବିଜଡ଼ିତ ଏଇ ଦୁଇ ଜୀବିକାନିର୍ବାହ ପାଇଁ ଅଣଆଦିବାସୀ ସଂପ୍ରଦାୟରେ ଆଗ୍ରହ କମିକମି ଚାଲିଥିବା ବେଳେ ଆଦିବାସୀ ସଂପ୍ରଦାୟରେ ଏହା ବଢ଼ିବଢ଼ି ଚାଲିଛି । କାରଣ ଶିକ୍ଷା ସେମାନଙ୍କ ମଧ୍ୟରୁ ମୁଖ୍ୟଭାଗ ଲୋକଙ୍କ ପାଇଁ ଏବେବି ଅପହଞ୍ଚ । ଯେଉଁ ୫/୧୦ଭାଗ ମେଟ୍ରିକ୍ ପାରଉଛନ୍ତି ଓ ଚାକିରି ପାଉଛନ୍ତି, ସେମାନେ ପ୍ରାୟତଃ ଗୋଷ୍ଠୀଠୁ ଅଲଗା ହୋଇଯିବାରେ ଅଧିକ ଆଗ୍ରହୀ । ବଡ଼ବଡ଼ ସ୍ୱପ୍ନର କଥା ତ ଦୂରର କଥା, ଛୋଟିଆ ସ୍ୱପ୍ନଟିଏ ମଧ୍ୟ ଦେଖିବା ସାଧାରଣ ଆଦିବାସୀ ପକ୍ଷେ ଅସମ୍ଭବ । ତେଣୁ କଠିନ ଶ୍ରମମୟ ଏଇ ଦୁଇ ଜୀବିକା ସଂଧାନ ସେମାନଙ୍କ ଆଗରେ ଏକମାତ୍ର ବିକଳ୍ପ ହୋଇ ଦେଖା ଦେଇଥାଏ । ସେ କୃଷି ପୁଣି ଏପରି କୃଷି ଯେ, ସେଥିରୁ ଗୋଟିଏ ପ୍ରକାର ହେଉଛି କୋଡ଼୍‌କିମାରୁ ଚାଷ, ପୋଡୁଚାଷ ବା ଡଙ୍ଗରଚାଷ, ଅନ୍ୟଟି ଅଣଜଳସେଚିତ ଜମିରେ ନଙ୍ଗଲ୍‌ଚାଷ, ଯେଉଁଠି ଶହେକେ ଦଶ ଜମିରେ ଧାନରୁଆ ହୁଏ, ବାକି ସବୁରେ ବୁଣା । ଆଦିବାସୀ ଏଇ ଚାଷରୁ ଅଲ୍‌ସୀ, ମକା, ରାଶି, ଜନା, ସୁଆଁ, କାଙ୍ଗୁ, ମାଣ୍ଡିଆ ଓ ଧାନ ଫଳାଇ ତା'ର ବର୍ଷକ ଗୁଜୁରାଣ ମେଣ୍ଟାଇବା ପାଇଁ ଚେଷ୍ଟାକରେ । କିନ୍ତୁ କଷ୍ଟେମଷ୍ଟେ ବାରିହା, ଭାଲୁ ଓ ଗାଈଗୋରୁ ଆଦି ଜୀବଜନ୍ତୁ ଓ ସାହୁକାର ଦାଉରୁ ଫସଲକୁ ରକ୍ଷାକରି ସେ ୬ରୁ ୮ମାସ ଚଳେ । ବାକି ୬ମାସ ପାଇଁ ତାକୁ ଜଙ୍ଗଲ ଭିତରକୁ ଯିବାକୁ ପଡ଼େ । ବନଦେବୀର ଶରଣ ନେବାକୁ ପଡ଼େ । ଦୁଇମାସ ସେ ମହୁଲ, ଟୋଲ ସଂଗ୍ରହକରି ଓ କେନ୍ଦୁପତ୍ର ତୋଳି ଚଳେ ତ ଆଉ ଦୁଇ ଚାରିମାସ ଶାଳମଂଜି, ଅଁଳା, ବାହାଡ଼ା, କନ୍ଧ୍ୱା, ଛତି, ବାଉଁଶ କରଡ଼ି ଇତ୍ୟାଦି ସଂଗ୍ରହକରି ଓ କୁଲିଭୁତି ଯାଇ ଭୋକେ ଉପାସେ

ଚଳିବାକୁ ପଡ଼େ । ନାହିଁ ଯଦି ତଥାପି ଚୁଲି ନ ଜଳିଲା, ସେ ଗାଁ ଛାଡ଼ି ବିଦେଶକୁ ଦାଦନ ଯାଏ - ହାଣ ମୁହଁକୁ ଛେଳି ଗଲା ଭଳି । ଅଳ୍ପେ ବହୁତେ ଓଡ଼ିଶାର ଅନ୍ୟାନ୍ୟ ଆଦିବାସୀ ଅଂଚଳରେ, ପଡ଼ୋଶୀ ଛତିଶଗଡ଼, ବିହାର, ଝାଡ଼ଖଣ୍ଡ, ମଧ୍ୟପ୍ରଦେଶ ଓ ମହାରାଷ୍ଟ୍ରରେ ମଧ୍ୟ ଏଇ ଅବସ୍ଥା ।

ଏହିଭଳି ଅଧାପୂରା ପେଟର ଭୋକକୁ ବହଲେଇବା ପାଇଁ, ସାହୁକାରୀ ଶୋଷଣ ଓ ଅଧିକାରୀ ଜୁଲୁମ୍‌ର ଦୁଃଖକୁ ଭୁଲିବା ପାଇଁ ସେ ଢେମ୍‌ସା ନାଚେ, ଚଇତି ଗାଏ, ପରବ ପରେ ପରବ ପାଳେ, ବେଣ୍ଟକୁ ଯାଏ, ଦିସାରୀ ଗୁରୁମାୟୀର ଭବିଷ୍ୟତବାଣୀ ଶୁଣିବା ପାଇଁ ବୀରୁ କରେ । ଅଂଲେଜୀ ମାତାଠାରୁ ଆରମ୍ଭକରି କେତେକେତେ ଡୁମା ଦେବତାଙ୍କୁ । ସନ୍ତୁଷ୍ଟ କରିବା ପାଇଁ କୁକୁଡ଼ା, ଛେଳି ବଳିଦିଏ । ଲନ୍ଦା ସଲପ ପିଏ ଓ ଢେମ୍‌ସା ନାଚିନାଚି ରାତି ପରେ ରାତି ବିତାଇ ଦିଏ । ଏଇ ନାଚଗୀତ ପାଲଟି ଯାଏ ତା' ଜୀବନର ଏପରି ଏକ ଅବିଚ୍ଛିନ୍ନ ଅଙ୍ଗ ଯେ, ସେ ଅଳ୍‌ସୀ ମିଣ୍ଡିଲା ବେଳେ, ଧାନ କାଟିଲା ବେଳେ, ମାଣ୍ଡିଆ ବୁନ୍‌ଲା ବେଳେ, ବେଣ୍ଟକୁ ଯିବାବେଳେ, ହାଟରେ ବାଟରେ, ପୁନେଇପରବ ଗତିଆଘର ବିଭା ମୃତ୍ୟୁ ସବୁ କାର୍ଯ୍ୟରେ ଗୀତ ହିଁ ଗୀତ ଗାଏ, ନାଟ ହିଁ ନାଟ ନାଚେ ।

ଏଇ ଗୀତନାଚର ଗୋଟିଏ ଅଲଗା ମହକ ଅଛି । ଜଣେ ଦେଶିଆ ଆଦିବାସୀ ପାଇଁ ତାହା ହେଉଚି ତା'ର ଜୀବନ ଓ ଜୀବିକାର ସଂଗୀତ । କିନ୍ତୁ ଜଣେ ହୃଦୟୀ ଅଣଆଦିବାସୀ ପାଇଁ ତାହା ସୁର ଓ ଛନ୍ଦରେ ଭରା ଦୁଃଖ ପାସୋରା ଏକ ଆମେଜ୍ । ଜଣେ ବ୍ୟବସାୟୀ - ସାହୁକାର ପାଇଁ ତା' ହେଉଚି ବେପାର ପସରା ବା ଶୋଷଣ ପସରା ମେଲାଇବାର ଏକ ମଉକା । ସେହିପରି ଆଦିବାସୀ ପଲ୍ଲୀକୁ ଯାଇ ଢେମ୍‌ସା ନାଚ ଦେଖିବା ଓ ଗୀତ ଶୁଣିବା ଗୋଟିଏ ଅଲଗା କଥା - ସେଠାକାର ଉନ୍ମାଦନା ଦେଖିଲେ ଜଣକର ମନପ୍ରାଣ ଉତ୍ତଳା ଦେବ ହିଁ ହେବ । କିନ୍ତୁ ସେଇ ନାଚକୁ ବ୍ଲକ୍ ବା ଜିଲ୍ଲାର ମୁଖ୍ୟ ସହର ବା ରାଜ୍ୟର ମୁଖ୍ୟ ସହରକୁ ଆମଦାନି କଲେ ଯାହା ସେଥିରୁ ହଜିଯାଏ, ତା' ହେଉଚି କାର୍ଯ୍ୟକାରଣ ସଂପର୍କ, 'ଯାହା ପାଇଁ ଯିଏ'ର ସଂପର୍କ । ଢେମ୍‌ସା ନାଚ ଓ ଗୀତ ଆବ୍‌ଷ୍ଟ୍ରାକ୍‌ଟ୍ ବା ବିଶୁଦ୍ଧ ପାଲଟିଯାଏ । ଆଉ ତୁମେ ସହଜରେ ଉପଲବ୍ଧି କରିବ ଯେ ଢେମ୍‌ସା ନାଚୁଥିବା ଆଦିବାସୀ ଧାଂଡ଼ାଧାଂଡ଼ୀଙ୍କ ମୁହଁରୁ ଉଜୁଡ଼ି ଯାଇଚି ହସ - ଠିକ୍ ଅତିବୃଷ୍ଟି ବା ଅନାବୃଷ୍ଟି ସକାଶେ ତା' କ୍ଷେତରୁ ଫସଲ ଉଜୁଡ଼ି ଯିବା ଭଳି ।

କାର୍ଯ୍ୟକାରଣ ସଂପର୍କ ରହିତ ପରବ, (କୋରାପୁଟ) ମଣ୍ଡେଇ (ନବରଙ୍ଗପୁର), ଚଇତି(ରାୟଗଡ଼ା) ବା ମାଲ୍ୟବନ୍ତ ମହୋତ୍ସବ(ମାଲ୍‌କାନ୍‌ଗିରି) ଇତ୍ୟାଦି ସରକାର ପ୍ରାୟୋଜିତ ନାଟ ଗୀତ ଓ ପ୍ରତିଯୋଗିତାମାନଙ୍କରେ ତାହାହିଁ ଘଟୁଛି । ଧାଂଡ଼ାଧାଂଡ଼ୀମାନଙ୍କ ଢେମ୍‌ସା ନାଚଗୀତ ବା ଦେଶିଆ ନାଚଗୀତ ବା ଦେଶିଆନାଟସବୁ କୃତ୍ରିମ ଲାଗୁଚି । ସତେଯେପରି ସେଠି ହଜିଯାଇଚି ଜୀବନସ୍ପନ୍ଦ । ଏ ସବୁରେ ଭାଗ ନେଉଥିବା ଅଧିକାଂଶ ନଟନଟୀ ମଧ୍ୟ ସରକାରୀ ଆଶ୍ରମ ସ୍କୁଲ୍‌ର ଛାତ୍ରଛାତ୍ରୀ ବା ନୂଆକରି ସରକାରୀ ସାହାଯ୍ୟରେ ସୁଧଖୋରୀ କାରବାର ଆରମ୍ଭ କରିଥିବା ସ୍ୱୟଂସହାୟକ ଗ୍ରୁପମାନଙ୍କର ଟିମ୍ । ପରବ ପଡ଼ିଆର ସାମ୍ନାପଟେ ଲାଗିଥିବ ଜଙ୍ଗଲ ଜମି ଓ ଜଳ ଲୁଟେରା ବଡ଼ବଡ଼ କର୍ପୋରେଟ୍ ଓ କଂପାନୀମାନଙ୍କର ହୋଡ଼ିଂ । ସତେଯେପରି ବାଘ ଆୟୋଜନରେ ଛେଳିଙ୍କ ନାଟ ।

ଅନ୍ୟଏକ କାରଣ ହେଉଛି ଆଦିବାସୀ ସମାଜ ଉପରେ ମାଡ଼ିଆସୁଥିବା ବିଭିନ୍ନ ସରକାରୀ ବେସରକାରୀ ପ୍ରକଳ୍ପର ଦନ୍ତାହାତୀ ଆକ୍ରମଣ । ଜଙ୍ଗଲ ଓ ଜମି ଉପରେ ଫରେଷ୍ଟକର୍ପୋରେସନ୍ ଓ ବିଭିନ୍ନ କମ୍ପାନୀ କର୍ପୋରେଟ୍‌ମାନଙ୍କ ଆକ୍ରମଣ ଏମିତି ଏକ ଅବସ୍ଥାରେ ପହଞ୍ଚିଗଲାଣି ଯେ ସେଠି ନିର୍ବାଚିତ ପଞ୍ଚାୟତ କର୍ମକର୍ତ୍ତା ଓ ଗ୍ରାମସଭାଠାରୁ ଆରମ୍ଭକରି ବିଧାନସଭା ଓ ସଂସଦର ପ୍ରତିନିଧି ପର୍ଯ୍ୟନ୍ତ ସମସ୍ତେ ଡରିମରି କାକୁସ୍ଥ । ତୁମ ଜମି, ଜଙ୍ଗଲ, ଡଙ୍ଗରପର୍ବତ ଦେବ କି ନ ଦେବ ସେ ଆଇନ୍‌ଗତ ହକ୍ ତୁମକୁ ଦିଆଯାଇଛି । କିନ୍ତୁ ତୁମେ 'ନା' କହିପାରିବ ନାହିଁ । 'ନା' କହିଲେ ଅବସ୍ଥା ଗୋଲ୍ - ଜିଲ୍ଲାପାଳଙ୍କ ରିପୋର୍ଟ ଯିବ - ଠିକ୍‌ଭାବେ ଗ୍ରାମସଭା - ପଞ୍ଚାୟତ ସଭା ଡକାଯାଇନି । ଯେହେତୁ ସେକ୍ରେଟାରୀ ବା ଭିଏଲ୍ ଡବ୍ଲୁମାନେ ସରକାରୀ କର୍ମଚାରୀ - ତେଣୁ ଅଲିଖିତ ସରକାରୀ ଆଦେଶନାମାର ଦାସ । ସୁତରାଂ ସରପଞ୍ଚ ସସ୍‌ପେଣ୍ଡ ହେବ କିମ୍ବା ଗିରଫ ହେବ - ଯାହା ଘଟିଛି ଦେଓମାଳୀ ଅଂଚଳରେ । ଘଟିଛି ପୋସ୍କୋରେ, କାଶୀପୁରରେ । କେବଳ ନିୟମଗିରିରେ ସୁପ୍ରିମ୍‌କୋର୍ଟଙ୍କ ରାୟକୁ ଅସ୍ତ୍ରକରି ଯେଉଁ ୧୨ଟି ଗାଁରେ ଗ୍ରାମସଭା କରାଗଲା ସବୁଠି 'ବେଦାନ୍ତ'କୁ 'ନା' କହିବା ସତ୍ତ୍ୱେ ବି ନିକଟ ଅତୀତରେ ପୁଣିଥରେ ଗ୍ରାମସଭାର ସରକାରୀ ଫାର୍ସ ଶେଷ ହୋଇଛି । ଆଉ କେତେଥର ଏଭଳି ଫାର୍ସ ଚାଲିବ କିଏ କହିବ ? ତେଣୁ ପେସା (PESA)ଆଇନ୍ ପାଲଟିଛି ଧର୍ମକୁ ଆଖିଠାର । ଜଙ୍ଗଲ ଅଧିକାର ସ୍ୱୀକୃତି ଆଇନ୍ ତ ସବୁ ଆଦିବାସୀମାନଙ୍କୁ ଆଦିବାସୀ ବୋଲି ମାନିବା ପାଇଁ ନାରାଜ, କାରଣ ତାହା କରାଗଲେ ଅଧିକାଂଶ ଦଖଲି ଜଙ୍ଗଲଜମି ବନବାସୀମାନଙ୍କ ହାତକୁ ଚାଲିଯିବ ।

ତେଣୁ ସେଇ ଆଇନ୍‌ରେ ଆଦିବାସୀ ଅଣଆଦିବାସୀମାନଙ୍କ ମଧ୍ୟରେ ଯୋଜନେ ଦୂରତ୍ୱ ସୃଷ୍ଟି କରାଯାଇଛି । ବାସ୍ତବତା ହେଉଛି କୋଣ୍ଡାଦୋରା, କୋଣ୍ଡାରେଡ୍ଡି, ଦୁରୁଆ, ରଣା, ଗଉଡ଼, କମାର, କୁମ୍ଭାର ଆଦି ବହୁ ଆଦିବାସୀଗୋଷ୍ଠୀ ସିଡ଼ିଭଲ୍‌ରେ ସ୍ଥାନ ପାଇ ନାହାନ୍ତି । ଅଣଆଦିବାସୀ ଦଖଲକାରୀମାନଙ୍କୁ ତିନିପୁରୁଷ ବା ୭୫ବର୍ଷର ଦଖଲକାରୀର ପ୍ରମାଣ ଦେବାପାଇଁ କୁହାଯାଇଛି, ଯାହା ସରକାରୀ ରେକର୍ଡ଼ ରୂପେ ଉପସ୍ଥାପିତ କରାଯିବା ଏକାନ୍ତ ଅସମ୍ଭବ । କାରଣ ସେତେବେଳେ ଅର୍ଥାତ୍ ସ୍ୱାଧୀନତା ପୂର୍ବରୁ ଜଙ୍ଗଲଜମି ଅଧିକାରର କୌଣସି ପ୍ରକାର ରେକର୍ଡ଼ ହିଁ ନଥିଲା । ତେଣୁ ଚାହୁଁଥିବା ଜମି ଅବଧାରିତ ଭାବେ କଂପାନୀ-କର୍ପୋରେଟ୍‌ମାନଙ୍କ ହାତକୁ ଯିବ ହିଁ ଯିବ । ଏହି ଭୟାନକ ଭବିଷ୍ୟତ ସବୁ ସଂପ୍ରଦାୟର ଆଦିବାସୀମାନେ ଜଳଜଳ କରି ଦେଖିପାରୁଛନ୍ତି । ତେଣୁ ଢେମ୍‌ସାନାଚର ସ୍ୱାଭାବିକତାକୁ ଏହା ଧୀରେଧୀରେ ଗ୍ରାସ କରିବାରେ ଲାଗିଛି । ଗୋଟିଏ ପଟେ ରାଷ୍ଟ୍ରର କପଟତା ଓ ଅନ୍ୟପଟେ ସେମାନଙ୍କ ଅର୍ଥନୈତିକ ଜୀବନ ଉପରେ ନାତ୍ - ଏହାରି ଭିତରେ ସନ୍ତୁଳିତ ଆଦିବାସୀର ସ୍ୱଭାବ ସୁଲଭ ଢେମ୍‌ସା ନାଚ ଆଜି ରାହୁଗ୍ରସ୍ତ ହେବାରେ ଲାଗିଛି ।

ସ୍ୱାଭାବିକ ଭାବେ ଏହି ସଂକଟଗ୍ରସ୍ତ ଅର୍ଥନୈତିକ ଭବିଷ୍ୟତକୁ ସମ୍ଭାଳିବାକୁ ଯାଇ ଧାଂଡ଼ାଧାଂଡ଼ୀମାନେ ବହୁସଂଖ୍ୟାରେ ଦାଦନ ଯିବାକୁ ଆରମ୍ଭ କରିଛନ୍ତି । ଏହା ଉପରେ ଯଦିଓ ବିଧିବଦ୍ଧ ଅଧ୍ୟୟନ ଆଜିପର୍ଯ୍ୟନ୍ତ ହୋଇନାହିଁ, ପ୍ରତି ଗାଁରେ ପ୍ରାୟ ୨୦ରୁ ୨୫ଭାଗ କିଶୋର କିଶୋରୀ ଓ ଯୁବକ ଯୁବତୀ ପ୍ରତିବର୍ଷ ମରଣତୀର୍ଥ ଗଲାଭଳି ଦାଦନ ଯାଉଛନ୍ତି । ଫଳରେ ଦୁଇ ବା ତିନୋଟି ବିଶିଷ୍ଟ ପରବ ଯଥା - ଚଇତି, ପୁଷ୍ ପରବ ଓ ଅସାପରବକୁ ଛାଡ଼ିଦେଲେ ବାକିସବୁ ପରବ କେବଳ ବିଧିବିଧାନ ରକ୍ଷାରେ ସୀମିତ ହେବାରେ ଲାଗିଛି । ଢେମ୍‌ସାନାଚର ମୁଖ୍ୟ ନାୟକନାୟିକାମାନଙ୍କ ଅନୁପସ୍ଥିତି ଫଳରେ ଯାହା ବା ନାଚଗୀତ ହେଉଚି, ତାହା ମୁଖ୍ୟତଃ କୃଷିକାର୍ଯ୍ୟରୁ ଛୁଟି ମନାଇବାରେ ପର୍ଯ୍ୟବେସିତ ହୋଇପାରିଛି ।

ତା' ସାଙ୍ଗକୁ ଆଧୁନିକ ଟି.ଭି. ଓ ଭିଡ଼ିଓ ସଂସ୍କୃତିର ଆକ୍ରମଣ ତା'ର ଚମତ୍କାରିତା ଦେଖାଇବାରେ ଲାଗିଛି । ଯେଉଁସବୁ ସାମାଜିକ କର୍ମ ଯଥା ବିଭା, ପିଲାଜନ୍ମ ଓ ମୃତାହ ବେଳେ ଢେମ୍‌ସା ଏକ ଅପରିହାର୍ଯ୍ୟ ଅଙ୍ଗ ଥିଲା । ତା'ର ସ୍ଥାନ ନେଇଯାଇଛି ରାତିରାତିର ଭିଡ଼ିଓ ପ୍ରଦର୍ଶନ । ଦିନ ଥିଲା, ଯେତେବେଳେ ଉଜଲ୍ ଜହ୍ନରାତିରେ ଢେମ୍‌ସାନାଚ ଥିଲା ଭାରି ସ୍ୱାଭାବିକ । କିନ୍ତୁ ଏବେ ଜହ୍ନରାତି ସବୁ

ଟି.ଭି. ଓ ଭିଡ଼ିଓ ପ୍ରଦର୍ଶନର ହଲ୍ଲୋଳ ଓ ଚମତ୍କାରିତ ଭିତରେ ବେକାର ବିତୁଛି । ଏପରିକି ଅଭ୍ୟନ୍ତରରେ, ବିଜୁଳିତାର ଟଣା ଯାଇଥିବା ବା ନ ଥିବା ଗାଁମାନଙ୍କରେ ମଧ୍ୟ ଏହି ପ୍ରଭାବ ଅନୁଭୂତ ହେଲାଣି ।

ପରବର୍ତ୍ତୀ ସମସ୍ୟା ହେଉଚି ତା'ର ଖାଦ୍ୟ ବିପର୍ଯ୍ୟୟ । ଅର୍ଥାତ୍ କୃଷି ବିପର୍ଯ୍ୟୟ ଓ ଶୀକାର ବିପର୍ଯ୍ୟୟ । ଶୀକାର ବିପର୍ଯ୍ୟୟ କଥାଟି ସହଜରେ ବୁଝିହୁଏ । ଜଙ୍ଗଲ ସଂକୋଚନ, ଜୀବଜନ୍ତୁଙ୍କର ସଂଖ୍ୟା ହ୍ରାସ ଓ ବନ୍ୟଜନ୍ତୁ ଶୀକାର ଉପରେ ଆଇନ୍‌ଗତ କଟକଣା ଧୀରେଧୀରେ ଆଦିବାସୀର ଚଇତି ବେଣ୍ଟପରବକୁ କେବଳ ଏକ ଆନୁଷ୍ଠାନିକତାରେ ପରିଣତ କରିଛି । ଦିଶାରି, ନାୟକ, ପୂଜାରୀ ଓ ଘଲାଣ(ବାରିକ)ଙ୍କର ସହଯୋଗରେ ଆନୁଷ୍ଠାନିକ ବୀରୁ ଓ ଲାଖବିନ୍ଧା ଇତ୍ୟାଦି ସରିବା ପରେ ଲୋକେ ଜଙ୍ଗଲକୁ ଯାଆନ୍ତି ସତ, କିନ୍ତୁ ତିନିଦିନ ବା ସାତଦିନ ବଦଳରେ ଗୋଟିଏ ଦିନ ମଧ୍ୟରେ ଗାଁକୁ ଫେରିଆସନ୍ତି । କେବେ କେମିତି ଗୋଟେ ଅଧେ ବାରିହା, ଖାରା କିମ୍ବା ବଣମୂଷା ସିନା ଶୀକାର ହୁଏ । କିନ୍ତୁ ପ୍ରାୟତଃ ଶୀକାରୀଦଳ ଖାଲି ହାତରେ ହିଁ ଫେରନ୍ତି ଓ ଗାଁରେ ଧାଂଡ଼ୀ ଓ ଡୋକ୍ରୀମାନଙ୍କର 'ତଅଡ଼େ' ଗୀତ ଓ ଗୋବରମାଡ଼ର ଗଂଜଣା ସହନ୍ତି । କିନ୍ତୁ ଶେଷ ପର୍ଯ୍ୟନ୍ତ ଛେଳି କିମ୍ବା ଘୁଷୁରି ବା ମଇଁଷି ବଳିଦେଇ ବେଣ୍ଟ ପରବର ବିଧି ସମ୍ପୂର୍ଣ୍ଣ କରିବାକୁ ପଡ଼େ । ଏଥିରେ ଆଦିବାସୀର ଦିନକର ଖାଦ୍ୟ କଷ୍ଟ ମଧ୍ୟ ଭରଣା ହୁଏନାହିଁ ।

ଦ୍ୱିତୀୟରେ କୃଷିକ୍ଷେତ୍ରରେ ବିପର୍ଯ୍ୟୟ । ସାର ଓ ଔଷଧ ନିର୍ଭରଶୀଳ ହାଇବ୍ରିଡ଼୍ ବିହନ ବା ବିଦେଶୀ ବିହନ ଧୀରେଧୀରେ ଗତ ଦଶବର୍ଷ ମଧ୍ୟରେ ଦେଶୀବିହନକୁ ହଟେଇ ଦେଲାଣି । ଅବିଭକ୍ତ କୋରାପୁଟ ଜିଲ୍ଲାର ବେଡ଼ା, ଡଙ୍ଗର, ପାହାଡ଼, ଅଟାଲ୍ ଓ ଗନ୍ଧି ଇତ୍ୟାଦି ବିଭିନ୍ନପ୍ରକାର ଜମିରେ ପାରମ୍ପରିକଭାବେ ବିଭିନ୍ନ ପ୍ରକାର ପାଚି ଉତ୍ପାଦନ କରାଯାଉଥିଲା । ଏଥିପାଇଁ ଲୋଡ଼ା ହେଉଥିବା ଭୂମିର ଗୁଣ ତଥା ପାଗଯୋଗ ଇତ୍ୟାଦି ବିଷୟରେ ଆଦିବାସୀର କୃଷିଜ୍ଞାନ ବେଶ୍ ପୁଷ୍କଳ ଥିଲା । ବିଭିନ୍ନପ୍ରକାର ପାଚି ପରସ୍ପରକୁ ଅର୍ଥାତ୍ ପରସ୍ପରର ଅଭିବୃଦ୍ଧିକୁ ସାହାଯ୍ୟ କରୁଥିଲେ । ଏପରିକି ପରସ୍ପରର ରୋଗ ଓ ପୋକକୁ ମଧ୍ୟ ନିୟନ୍ତ୍ରଣ କରୁଥିଲେ । ଏହିସବୁ ପାରମ୍ପରିକ ଶସ୍ୟ ମଧ୍ୟରେ ଥିଲା ମାଣ୍ଡିଆ, ସୁଆଁ, କାଙ୍ଗୁ, ଜନା, ଖେଡ଼ଜଣା, ଡଙ୍ଗର ରାଣୀ, କୋଶଲା, ରେଙ୍ଗୋଇ, ଗୁରଜୀ, ଅଲ୍‌ସୀ, ମକା, ଜୁଡ଼ଙ୍ଗ, କାନ୍ଦୁଲ, ବିରି, କୋଳଥ, ବାଜରା, ରାଶି, ସିମ୍, ବୁଟାସିମି, ସାମେଲ୍, ଜିପା, କୁଅାଁ, ବାଇଲ୍, କଦ ଇତ୍ୟାଦି । ତାକୁ ଛାଡ଼ି ରହିଥିଲା

ବିଭିନ୍ନ ପ୍ରକାରର ମାଟିଆଳୁ, ହଳଦୀ, ଅଦା, ପିପଲ୍, ପାଳୁଅ ଇତ୍ୟାଦି ମାଟିତଳର ଫସଲ ଏବଂ କଦଳୀ, ଅମୃତଭଣ୍ଡା, ସଜନା, କୁମୁଡ଼ା ଓ ଚ଼ରକୁମୁଡ଼ା(ପାଣିକଖାରୁ) ଇତ୍ୟାଦି ପରିବା ଫସଲ । ଦେଶୀଧାନ ସହ ମିଶ୍ରଚ଼ଷ ପାଇଁ କାନ୍ଦୁଲ, କୋଳଥ, ଖେଡ଼୍‌ଜଣା, ଜନା ଓ ମକା ଇତ୍ୟାଦି ପ୍ରାୟତଃ ସବୁଆଡ଼େ ନିୟମିତଭାବେ ବ୍ୟବହାର କରାଯାଉଥିଲା । ସମୟ ଅନୁଯାୟୀ ବିଭିନ୍ନ ମାସରେ ୫ପ୍ରକାରର ମାଣ୍ଡିଆ ଓ ୭ପ୍ରକାରର ସୁଆଁ ଉତ୍ପାଦନ ହେଉଥିଲା । ମେ'ମାସ ଅଧାରୁ ସେପ୍ଟେମ୍ବର ଅଧା ଯେଉଁ ଚ଼ରିମାସ ଆଦିବାସୀ ଅତି ଅଭାବରେ ଥାଏ, ସେହି ଚତୁର୍ମାସ୍ୟା ସମୟରେ ସାନମାଣ୍ଡିଆ ଅମଳ ହୁଏ । ଗୁରୁଡ଼ି ସୁଆଁ ଓ ବୁରି ସୁଆଁର ମଧ୍ୟ ସାନଅମଳ - ଅର୍ଥାତ୍ ଏପ୍ରିଲ୍‌ରେ ବୁଣା ଓ ଜୁଲାଇରେ ଅମଳ । ଗୁର୍ଜି ମଧ୍ୟ ବର୍ଷକୁ ଦୁଇଥର ଅମଳ ହେଉଥିଲା । ଏପରିକି ଯେଉଁ ଦେଶୀଧାନ ସବୁ ଚ଼ଷ ହେଉଥିଲା, ଜମି ଅନୁଯାୟୀ ସେ ସବୁ ଭିନ୍ନଭିନ୍ନ କିସମର ଥିଲା ଏବଂ ଭିନ୍ନଭିନ୍ନ ସମୟରେ ବୁଣା ଓ ଅମଳ ହେଉଥିଲା । ବିଶେଷକରି ମହୁଲ କୁଂଚି ଓ ଦଶରାବାଟି ଧାନ ସାନ ଅମଳ କିସମର ବିହନ । ସେପ୍ଟେମ୍ବର ସୁଦ୍ଧା ଏହାର ଅମଳ ହୋଇଯାଏ । ଫଳରେ ଖାଦ୍ୟ ସମସ୍ୟା କିଛିଟା ଦୂର ହେଉଥିଲା । କିନ୍ତୁ ବର୍ତ୍ତମାନ ସରକାରୀ ଓ କମ୍ପାନୀ ବିହନ - ସବୁକିଛି ହେଉଛି ବଡ଼ ଅମଳ କିସମର । ଡିସେମ୍ବର - ଜାନୁଆରୀ ମାସରେ କଟାହୁଏ । ପାରମ୍ପରିକ ସବୁପ୍ରକାର ବିହନ ବିଲୋପ ପଥରେ । ମାଲ୍‌କାନ୍‌ଗିରି ଜିଲ୍ଲାରେ ବିଭିନ୍ନ ସ୍ଥାନରେ ଏବେମାତ୍ର ୫କିସମର ଦେଶୀଧାନ ବିହନ ଆମେ ଦେଖିବାକୁ ପାଉଛୁ । ଅନ୍ୟାନ୍ୟ ୧୦/୧୫ପ୍ରକାରର ଧାନ ବିଲୁପ୍ତ ପ୍ରାୟ । ସେହିପରି ମିଶ୍ରଚ଼ଷ ପ୍ରଥା କମିକମି ଚ଼ଲିଛି । ମାଣ୍ଡିଆ, ସୁଆଁ ଓ ଜନାର ଚ଼ଷ ମଧ୍ୟ କମି ଚ଼ଲିଛି । ଦିନେ ମାଣ୍ଡିଆ ଅଣ୍ଡା ନ ହେଲେ କନ୍ଧର ଦିନ କଟୁ ନଥିଲା । କିନ୍ତୁ ଏବେ କନ୍ଧ ଗାଁରେ ମାଣ୍ଡିଆଜାଉ ମିଳିବା କଷ୍ଟକର ହୋଇପଡ଼ିଛି । ମାଣ୍ଡିଆ ଓ ସୁଆଁର ମାତ୍ର ଗୋଟିଏ ଲେଖାଏଁ କିସମ ଉପଲବ୍ଧ । ତାହା ପୁଣି ଅବିଭକ୍ତ କୋରାପୁଟ୍‌ର ଚ଼ଷ ଯୋଗ୍ୟ ଜମିର ପ୍ରାୟ ୨୦ଭାଗରେ ହିଁ କରାଯାଉଥିବା ଅନୁମେୟ । ଫଳରେ ଖାଦ୍ୟ ଅଭ୍ୟାସରେ ମଧ୍ୟ ପରିବର୍ତ୍ତନ ଘଟୁଛି ।

ଏହି ଚ଼ଷଯୋଗ୍ୟ ଜମିର ଗୋଟିଏ ବେଶ୍ ବଡ଼ଅଂଶ କାଗଜକଳ ମାଲିକମାନଙ୍କର କାଗଜବୃକ୍ଷ ଚ଼ଷ ପାଇଁ ବେଆଇନ୍ ଲିଜ୍ ମାଧ୍ୟମରେ କମ୍ପାନୀର ସେବା କରୁଛି ଓ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ କଂପାନୀ ଦଲାଲ୍‌ମାନଙ୍କ ହାତକୁ ଚ଼ଲିଯାଇଛି । ରାୟଗଡ଼ାର ଜେ.କେ.ପେପର୍‌ମିଲ୍, ଜୟପୁରର ସେବା ବା ବାଲାର୍‌ପୁର

କାଗଜକଳ, ନବରଙ୍ଗପୁର ମଙ୍ଗଲଟିମ୍ବରସ୍ ପ୍ଲାଇଉଡ୍ କାର୍ଖାନା ବିଭିନ୍ନ ତଥାକଥିତ ଏନ୍.ଜି.ଓ. ଓ ସ୍ଥାନୀୟ ଦଲାଲ୍‌ମାନଙ୍କର ସାହାଯ୍ୟ ନେଇ ଚାରି ଜିଲ୍ଲାର ହଜାର ହଜାର ଏକର ଜମି ହସ୍ତଗତ କରି ଏଥିରେ ଆକାଶିଆ, ୟୁକାଲିପଟାସ ଓ ଚକୁନ୍ଦା ଚାଷ କରିଆସୁଛନ୍ତି । ଏହି ପ୍ରକ୍ରିୟାରେ, ଚାରି ଜିଲ୍ଲାରେ ଚାରିଚାରିଟି ବଡ଼ବଡ଼ ନଦୀବନ୍ଧ ପ୍ରକଳ୍ପର ଜମି ହରଣ ପର୍ବ ପରେ ପରେ ବଂଚିଯାଇଥିବା ସୀମିତ ଚାଷଜମି ଆହୁରି ସଂକୁଚିତ ହୋଇଛି । ଠିକ୍ ଏତିକିବେଳେ ଧୂମକେତୁ ଭଳି ଦେଖା ଦେଇଛନ୍ତି ନାଲ୍‌କୋ ଭଳି ସରକାରୀ ଖଣିଭିତ୍ତିକ ଶିଳ୍ପ ଓ ତା' ସାଙ୍ଗକୁ R.C.B., ଆଲ୍‌କାନ୍ ଓ ବେଦାନ୍ତ ଆଦି ବେସରକାରୀ ଅର୍ଥାତ୍ ଘରୋଇ ପୁଞ୍ଜି ଦ୍ୱାରା ପରିଚାଳିତ ଖଣିଭିତ୍ତିକ ଶିଳ୍ପ । ଏହି ମାଲିକମାନେ ସରକାରୀ କଳ ଓ ତଥାକଥିତ ଜନମଙ୍ଗଳକାରୀ ଆଇନ୍‌ର ସାହାଯ୍ୟ ନେଇ ତଥା ବିଭିନ୍ନ ଦମନମୂଳକ ପନ୍ଥା ଆପଣେଇ ଗାଁ ପରେ ଗାଁ ଦଖଲ କରିବାରେ ଲାଗିଛନ୍ତି । ଆଉ ତାକୁ ବିରୋଧକରି ଚାରିଆଡ଼େ ଜୁଆର ଭଳି ମାତି ଉଠୁଥିବା ଲୋକଙ୍କ ସଂଗ୍ରାମକୁ କେମିତି ନୂଆନୂଆ ଉପାୟରେ ଦମନ କରାଯିବ, ସେଥିରେ ସରକାରୀକଳ ବ୍ୟସ୍ତ ରହୁଛି । ତେଣୁ ଆର୍ଥରାଜନୈତିକ ସଂକଟର ଚାବୁକ୍‌ମାଡ଼ ସାଙ୍ଗକୁ ଖାଦ୍ୟାଭାବର ଯାତନା ସବୁ ସଂପ୍ରଦାୟର ଆଦିବାସୀଙ୍କୁ ମ୍ରିୟମାଣ କରି ଦେବାରେ ଲାଗିଛି ।

ଅନ୍ୟ ପକ୍ଷରେ ଅଧିକ ଅମଳକ୍ଷମ ଧାନ ସାଂଗକୁ ସେହି ଜଗତୀକରଣ ଦଶକ ୧୯୯୦-୨୦୦୦ ମଧ୍ୟରେ ବ୍ୟାପକ ଭାବେ ଆନ୍ଧ୍ର ବ୍ୟବସାୟୀମାନଙ୍କର ଅର୍ଥକାରୀ କୃଷି ଯଥା - ମରୀଚ, କପା, ଲେମନ୍‌ଗ୍ରାସ୍, ଧୂଆଁପତ୍ର ଓ ଆଖୁ ଏହି ଅଞ୍ଚଳରେ ପ୍ରବେଶ କଲା । ଅର୍ଥଲୋଭ ଦେଖାଇ ବାହାରର ଚାଷୀମାନେ ଶହଶହ ଏକର ଜମି ବେଆଇନ୍ ଲିଜ୍ ଜରିଆରେ ଅଧିକାର କରିନେଲେ ଓ ଚାଷ କରିବାକୁ ଲାଗିଲେ । ଏତେବଡ଼ ସାମାଜିକ ଆର୍ଥନୈତିକ ଦୁର୍ଦ୍ଦଶାର ପରିଣତିକୁ ସାମୟିକଭାବେ ଘୋଡ଼ାଇ ଦେବାପାଇଁ କାର୍ଯ୍ୟକାରୀ ହେଲା ବି.ପ.ଏଲ୍. ଯୋଜନା । ଜମି ହରାଉଥିବା ଆଦିବାସୀ ଗତ ୧୦/୧୨ ବର୍ଷ ଭିତରେ ବି.ପି.ଏଲ୍ ଯୋଜନାକୁ ଏକ ଆର୍ଥ-ରାଜନୈତିକ ବାସ୍ତବତା ରୂପେ ଗ୍ରହଣ କରିନେଇ ତା' ଉପରେ ନିର୍ଭର କରିବାକୁ ଶିଖିଲା । ତଥାପି ବି.ପି.ଏଲ୍ ତାଲିକାର ପେଞ୍ଚରେ ପଶି ନ ପାରି କେତେ ନା କେତେ ଭୂମିହରା ବସ୍ତୁହରା ଆଦିବାସୀ ଦେଶାନ୍ତରୀ ଦାଦନ ହେବାକୁ ବାଧହେଲା । ଫଳରେ ଢେମ୍‌ସା ସଂସ୍କୃତିର ଧାରାରେ ମଧ୍ୟ ଧୀରେଧୀରେ ଅବକ୍ଷୟ ଘଟିବାରେ ଲାଗିଲା ଓ ଲାଗିଛି ।

ଏଇ କ୍ଷେତ୍ରରେ ଶିକ୍ଷାର ନକରାତ୍ମକ ପ୍ରଭାବ କିଛି କମ୍ ନୁହେଁ । ପାଠପଢ଼ିବା ପାଇଁ ଗାଁ ଛାଡ଼ି ପାଖଆଖରେ ଆଦିବାସୀ ହଷ୍ଟେଲ୍ କିମ୍ବା ଦୂର ସହରକୁ ଯାଉଥିବା ପିଲାମାନେ ଧୀରେଧୀରେ ନିଜ ଭାଷା ଓ ସଂସ୍କୃତିଠାରୁ ଦୂରେଇ ଯାଇ ଅନ୍ୟ ଭାଷା ଓ ସଂସ୍କୃତିକୁ ଆପଣେଇବା ଶିଖିଲେ । ଆଉ ମଧ୍ୟ ନିଜଭାଷା ଭୁଲିଯିବାର ପ୍ରବଣତା ସେମାନଙ୍କ ମଧ୍ୟରେ ଦେଖାଦେଲା । ଅନେକ ଡିଡ଼ୋୟୀ ଓ କୟା ଗାଁରେ, ପରଜା ଓ ଭୂମେୟା ଗାଁରେ, ଦୁରୁଆ ଓ ଦୋରା ଗାଁରେ ଆମେ ସେହି ସେହି ଭାଷା ବଦଳରେ ଦେଶିଆ ଭାଷାର ପ୍ରଚଳନ ଦେଖୁଛୁ । ନିଜ ଭାଷା କହୁଛନ୍ତି କେବଳ ସଂପ୍ରଦାୟର ଡୋକ୍ରା ଡୋକ୍ରୀମାନେ ।

ପରବମାନଙ୍କ ପ୍ରତି ଦୃଷ୍ଟିଦେଲେ ଏହି କଥାଟି ଆହୁରି ସୁସ୍ପଷ୍ଟ ହୋଇଯିବ । ସାମୂହିକଭାବେ ସମସ୍ତ ଆଦିବାସୀ ସଂପ୍ରଦାୟରେ କୃଷି ବର୍ଷ ଭିତରେ ଯେତେବେଳେ ପର୍ବ କରାଯାଉଥିଲା, (ପ୍ରାୟ ୧ ୨ ମାସରେ ୧୩ପର୍ବ) ତାହା ସଂକୁଚିତ ହୋଇ ମାତ୍ର ୩ଟି ମୁଖ୍ୟ ପରବରେ ପହଞ୍ଚିଛି । ପ୍ରଥମପର୍ବ ହେଉଛି ଅମେଇସା ପର୍ବ ବା ଦିଷ୍ଟି / ଦୃଷ୍ଟି ପରବ । ଆଷାଢ଼ ଅମାବାସ୍ୟା ଦିନ ଏହା ପଡ଼େ । ଏହାକୁ କୁହାଯାଏ ଜନମ୍ ପରବ । ଅର୍ଥାତ୍ ଏଇ ପରବ ବର୍ଷଯାକର ଅନ୍ୟ ସମସ୍ତ ପର୍ବକୁ ଜନ୍ମ ଦେଇଛି । ଋଷକାମ ଶେଷ ହେଲା ବୋଲି ଏହା ସୂଚାଇ ଦେଇଥାଏ । ଦେଓବାଡ଼୍‌ନୀ, ବଣହଳଦୀ, ବଣଗଂଜେଇ, କଟୁଆଫଳ, ଭାଲିଆପତ୍ର, ବାଉଁଶଛିଟ୍‌କି ଇତ୍ୟାଦି ସର୍ବନିମ୍ନ ଋରିପ୍ରକାରର ଶାଗଡ଼ାଳ ସଂଗ୍ରହକରି ଜମି ହିଡ଼ରେ ଗାଡ଼ି ଦିଆଯାଏ । କେନ୍ଦୁଡାଙ୍ଗକୁ ବାନା ରୂପେ ପୋତି ତା'ର ଛାଲିକୁ ଖୋଲି ଚିତ୍ର କରାଯାଏ । ଲିଆ ଓ ପିଠା ସହ ବେଣ୍ଡା(ଖଟାଭେଣ୍ଡି) ତରକାରୀ କରି ତାହା ଡୁମ୍ବାକୁ ସମର୍ପଣ କରାଯାଏ । ପରେପରେ ଆସେ ଅସାପରବ । ଏହା ଭାଦ୍ରବ ମାସରେ ପଡ଼େ । ଏହାକୁ ମକାପରବ ବା ନୂଆଖିଆ ପରବ ମଧ୍ୟ କୁହାଯାଏ । ଭାତ ସହ ଧାନପତ୍ର, ସାରୁପତ୍ର, କୁମୁଡ଼ାପତ୍ର ଓ କଞ୍ଚାତେନ୍ତୁଳିକୁ ସିଝାଇ ଋରୁ ରନ୍ଧାଯାଏ ଓ ଆନିଦାଦିମାନଙ୍କ ନାମଧରି କୁକୁଡ଼ା ବଳି ଦେଇ ବୀରୁ କରାଯାଏ । ଏଠି ମଧ୍ୟ ସେଇ ଡୁମାଙ୍କୁ ସମର୍ପଣ । ତା'ପରେ ଯାଇ ସେଇସବୁ ନିର୍ଦ୍ଦିଷ୍ଟ ଦ୍ରବ୍ୟ ଆଦିବାସୀମାନେ ଖାଇଥାନ୍ତି । ତେବେ ଅନେକ ଜାଗାରେ ଅମେଇସା ପରବ ସହ ଏହା ପାଳନ କରାଯାଏ । ଏହା ପରେପରେ ଆସୁଥିବା ପୁଷ୍‌ପରବ ତଥା ଦିଆଲିପରବ ପାଚି ଅମଳ ସହ ପ୍ରତ୍ୟକ୍ଷ୍ୟ ଭାବେ ସଂଯୁକ୍ତ ହୋଇଥିବା ଯୋଗୁଁ ଏବଂ କୃଷିର ଅନିଶ୍ଚିତତା ଫଳରେ ପାଚି ଉତ୍ପାଦନ ବିଳମ୍ବ ହେଉଥିବା ଯୋଗୁଁ, ବେଶ୍‌କିଛି ସ୍ଥାନରେ ଏହାର

ପାଳନ ବନ୍ଦ ହୋଇଗଲାଣି କିମ୍ବା ମାଙ୍ଗ୍‌ନୀ / ଛେର୍‌ଛେରା ଗୀତ ମଧ୍ୟରେ ସୀମିତ ହୋଇ ରହିଗଲାଣି । ତୃତୀୟ ବଡ଼ପର୍ବ ରୂପେ ଏବେ ଚଇତିକୁ ଗ୍ରହଣ କରାଯାଉଚି । ଯାହା ଅନ୍ତତଃ ପକ୍ଷେ ଫସଲ ଉତ୍ପାଦନର ଏକ ନିଶ୍ଚିତ ନିର୍ଣ୍ଣାୟକ ମାସ ରୂପେ ପହଞ୍ଚିଥାଏ । ଏହା ପରେ ମୁଖ୍ୟଫସଲ ଆଉ ପାଚିବାର ନାହିଁ । ତେଣୁ ଚଇତି ପରବ / ବେଣ୍ଟ ପରବ ବର୍ଷର ଶେଷ ମୁଖ୍ୟପରବ ରୂପେ ପାଳନ କରାଯାଏ । ଏହିପରି ଭାବେ ୧ ୨ ମାସରେ ତେରପରବ ପାଳୁଥିବା ଆଦିବାସୀ ମାତ୍ର ୩ ବା ୪ଟି ପରବରେ ନିଜକୁ ସୀମିତ ରଖିବାକୁ ବାଧ୍ୟ ହେଲାଣି ।

ପରିବର୍ତ୍ତନଶୀଳ ଆଦିବାସୀ ସଂସ୍କୃତିରେ ଆଜି ଏହାହିଁ ସବୁଠାରୁ ବଡ଼ ବିଡ଼ମ୍ବନା ! ଏହି ଅବସରରେ ସରକାରୀସ୍ତରରେ ସବୁ ପରବକୁ ମାଡ଼ିମକଚି ଗୋଟିଏ ପରବ କରିବାର ଯେଉଁ ଚେଷ୍ଟା ଚାଲିଛି । ସେଥିରେ ମଧ୍ୟ ବଳିପଡୁଛି ଆଦିବାସୀର ନିଆରାପଣ ଓ ନିଆରା ସଂସ୍କୃତି । ଅବଶ୍ୟ ସେଥିରେ ଆଦିବାସୀ ସଂପ୍ରଦାୟମାନଙ୍କର ଅଂଶଗ୍ରହଣ ଏଯାଏଁ ସ୍ୱତଃସ୍ଫୂର୍ତ୍ତ ହୋଇପାରିନି କି ପାରିବନି । ଯେଉଁମାନଙ୍କୁ ଯତନକରି ସହରାଞ୍ଚଳକୁ ନିଆଯାଉଚି, ସେଠି ସେମାନେ ଆପଣାକୁ କିଂଭୂତ କିମାକାର ଓ ଅପାଂକ୍ତେୟ ମନେ କରୁଛନ୍ତି । ନାଚ ଓ ଗୀତ ସେଠି କାର୍ଯ୍ୟକାରଣ ସଂପର୍କ ରହିତ ଓ ବ୍ୟବସାୟିକ 'ଇକୋଟୁରିଜ୍‌ମ୍‌'ର ବାର୍ତ୍ତା ବହନ କରୁଥିବାରୁ ସ୍ୱାଭାବିକତା ହରାଇ ବସିଛି । ପୁଣି ନା ଅଛି ସେଠି ଦିଶାରି - ଗୁରୁମାୟୀ - ପୂଜାରୀ - ନାୟକ - ଚାଲାଣଙ୍କର କିଛି ଭୂମିକା ନା କିଛି ବିଧିବିଧାନ । ଆଉ ମଧ୍ୟ କ୍ରୀଡ଼ା, କୁଇଜ୍, ଏସେ, ଡିବେଟ୍, ଏପରିକି ସୁନ୍ଦରୀ ପ୍ରତିଯୋଗିତା ତଥା ବହିରାଗତ ସାଂସ୍କୃତିକ ଟିମ୍‌ମାନଙ୍କର ପ୍ରୋଗ୍ରାମ୍ ଭିତରେ ସ୍ଥାନୀୟ ଆଦିବାସୀମାନଙ୍କ ତୁଳନାରେ ଅଣଆଦିବାସୀମାନଙ୍କ ଅଂଶଗ୍ରହଣ ଓ ଗୁରୁତ୍ୱ ଧୀରେଧୀରେ ବଢ଼ି ଚାଲିଛି । ଯାହା ବା କିଛି ଆଦିବାସୀ ନାଚ, ନାଟ ଓ ଗୀତ ତଥାପି ଗାନ ବା ଅଭିନୟ କରାଯାଇଛି ତା'ର ବିଚାରକ ହେଉଛନ୍ତି ଏଇ ଅଣଆଦିବାସୀ ବିଚାରକମାନେ । ଅଡିଟ୍ ରହିତ ଏହି ଉତ୍ସବର ପ୍ରାୟୋଜକମାନେ ହେଉଛନ୍ତି ବିଭିନ୍ନ କମ୍ପାନୀ ଓ କର୍ପୋରେଟ୍ । ତେଣୁ ଷ୍ଟେଜ୍ ଉପରେ ଢେମ୍‌ସାନାଟ ହେଲାବେଳେ ଭାରି ସ୍ୱାଭାବିକ ଭାବେ ଧାଂଡ଼ୀର ପ୍ରାଣବନ୍ତ ଜୀବନୋଚ୍ଛଳ ମନଲୋଭା ହସ ଟିକକ ଲିଭିଯାଇଚି । ପାରିବା କି ଆମେ ତା' ହୃଦୟ ତଳର ଦାବାନଳକୁ ପ୍ରଶମିତ କରି ? ପାରିବା କି ଆର୍ଥସାମାଜିକ ଜୀବନରେ ଥିବା ବୈଷମ୍ୟ ଦୂରକରି ?

ଯେଉଁ ଖଣ୍ଡା ତା'ର ଭବିଷ୍ୟତ ଉପରେ, ତା'ର ଜମି ଓ ଜଙ୍ଗଲ ଉପରେ ଝୁଲି ରହିଛି, ତାକୁ ଆମେ ହଟାଇ ଦେଇପାରିବା କି ? ପୁଣି ଉଦ୍ଧାରି ପାରିବା କି ବେଆଇନ୍ ଭାବେ କଂପାନୀ, କର୍ପୋରେଟ୍ ସରକାରୀ ବେସରକାରୀ ସଂସ୍ଥା ତଥା ନୂଆପୁରୁଣା ସାହୁକାରମାନେ ଅପହୃତ କରି ନେଇଥିବା ଯେତେସବୁ ଆଦିବାସୀ ଜମି ? ବନ୍ଦ କରିପାରିବାକି ତଥାକଥିତ କମ୍ବିଂ ଜନିତ ଦମନଲୀଳା, ହାଜତ ମୃତ୍ୟୁ ଓ ମିଥ୍ୟା ଗିରଫଦାରୀ ? ଏବଂ ସର୍ବଶେଷରେ ସେମାନଙ୍କୁ ତାଙ୍କରି ପ୍ରାକୃତିକ ପରିବେଶରେ ସ୍ୱାଭାବିକ ଭାବେ ସେମାନଙ୍କର ଧର୍ମବିଶ୍ୱାସ, ସାମାଜିକ ବିଧିବିଧାନ ଓ ଦିଶାରି-ନାୟକ-ପୂଜାରୀ-ବାରିକ-ଗୁରୁମାୟୀ ସମନ୍ୱିତ ପରବ ପାଳିବା ପାଇଁ ଛାଡ଼ି ଦିଆଯାଇପାରିଲେ ରାଷ୍ଟ୍ରକୃତ ସଂକଟ କିଛି ପରିମାଣରେ ହଟିପାରିବ । ଅଣଆଦିବାସୀର ମାପକାଠିରେ ତାଙ୍କୁ ମୂଲ୍ୟାୟନ ନ କରି କିମ୍ବା ସେମାନଙ୍କ ନାଚଗୀତର କୁଶଳତାକୁ ବଢ଼ାଇ ଅଧିକ ବ୍ୟବସାୟିକ କରିବାର ଯୋଜନା ନ କରି, କାଲିର ଶ୍ରମ ପାଇଁ ଶକ୍ତି ସଂଗ୍ରହର ଉତ୍ସରୂପେ ସେ ସବୁକୁ ବ୍ୟବହାର କରିବା ଲାଗି ଆଦିବାସୀମାନଙ୍କୁ ଛାଡ଼ି ଦିଆଯାଉ ।

ଆଦିବାସୀ ସଂସ୍କୃତିରେ ଯେଉଁ ପରିବର୍ତ୍ତନ ଆସିଛି ବା ଆସୁଛି, ତା'ର ପ୍ରକ୍ରିୟା ଦୁଇଟି ସ୍ତରରେ ସଂଘଟିତ ହେଉଛି । ପ୍ରଥମଟି ହେଉଛି ମୁଖ୍ୟ ସ୍ରୋତର ସଭ୍ୟତା ସହ ସଂସର୍ଗ ଓ ସଂଘର୍ଷ ଫଳରେ ଆଦିବାସୀର ଅର୍ଥନୀତି ଓ ସମାଜ-ମାନସ ସ୍ତରରେ ସଂଘଟିତ ପରିବର୍ତ୍ତନ । ଏହା ଖୁବ୍ ଧୀର ଗତିରେ ଚୁପ୍‌ଚାପ୍ ଓ ସୂକ୍ଷ୍ମଭାବେ ଘଟିଥାଏ । ଏହି ପରିବର୍ତ୍ତନ ଆଉଟିକେ ଦ୍ରୁତ ହୋଇଥାଏ ଯେତେବେଳେ ଏକକାଳୀନ ବହୁସଂଖ୍ୟାରେ ଆଦିବାସୀ ନିଜ ଅଂଚଳରେ ଗଢ଼ି ଉଠିଥିବା କଳକାରଖାନାରେ ଶ୍ରମିକ ରୂପେ କାମ କରିବା ଆରମ୍ଭ କରନ୍ତି । ଗୋଟିଏ ଅଲଗା ଜୀବିକା ସେମାନଙ୍କୁ ଏକ ନୂଆ ଜୀବନଧାରା ଯୋଗାଇ ଦିଏ । ସେତେବେଳେ ସେମାନେ ନିଜ ସଂସ୍କୃତିର ସଚେତନ ବିଶ୍ଳେଷଣ କରି ନୂଆ ଜୀବିକାକୁ ପ୍ରୋତ୍ସାହିତ ଓ ସଂଗଠିତ କଲାଭଳି ନାଟକ ଓ ନାଚଗୀତକୁ ନୂଆଭାବେ ସଂରଚନା କରିଥାନ୍ତି । ଯେପରି ଘଟିଛି ସୁନାବେଡ଼ାର ମିଗ୍‌ବିମାନ କାର୍ଖାନା ବା ରାଉରକେଲାର ସେଲ୍‌ଠାରେ । ସେତେବେଳେ ଜାତି, ଗୋଷ୍ଠୀ ଓ ବସ୍ତିଭିତ୍ତିକ ସଂଗଠନମାନ ଜନ୍ମନିଏ । ଏମାନେ ସକରାତ୍ମକ ଦୃଷ୍ଟିଭଙ୍ଗୀ ନେଇ ନିଜର ନାଚଗୀତକୁ ସଜାଡ଼ି ନିଅନ୍ତି । ଫଳରେ ନୂତନ ସମାଜର ନୂଆ ଦ୍ୱନ୍ଦ୍ୱମାନ ପରିସ୍ଫୁଟିତ ହେବାପାଇଁ ଜାଗା ପାଆନ୍ତି । ଏହା ମଧ୍ୟ ସ୍ୱାଭାବିକ ଓ ସ୍ୱତଃସ୍ଫୂର୍ତ୍ତ ଭାବରେ ଘଟି ଚାଲେ ।

କିନ୍ତୁ ଦ୍ୱିତୀୟ ସ୍ତରଟି ଅଧିକ ବିପଜ୍ଜନକ । ଏହି ସ୍ତରରେ ଯୋଜନାବଦ୍ଧ ଭାବେ ଆଦିବାସୀ ସମାଜରେ ଦ୍ରୁତ ସାଂସ୍କୃତିକ ପରିବର୍ତ୍ତନ ଅଣାଯାଏ । ତଥାକଥିତ ମୁଖ୍ୟ ସ୍ରୋତ ବା 'ସଭ୍ୟ'ଜଗତର ସଂସ୍କୃତିକୁ ଆଦର୍ଶଭାବେ ଉପସ୍ଥାପିତ କରାଯାଏ ଓ ଲଦି ଦିଆଯାଏ । ଚେଷ୍ଟା କରାଯାଏ ଆଦିବାସୀ ସମାଜକୁ ଦୁଇଭାଗ କରି ଅନ୍ତତଃ ଗୋଟିଏ ଭାଗକୁ, ହେଉପଛେ ତାହା ଯେତେ କ୍ଷୁଦ୍ର ମୁଖ୍ୟ ସ୍ରୋତରେ ମିଶାଇ ନେବାପାଇଁ । ଏହାକୁ ଅଣ-ଆଦିବାସୀକରଣ ବା ଆର୍ଯ୍ୟୀକରଣ ବୋଲି ମଧ୍ୟ କୁହାଯାଇପାରେ । ବିଭିନ୍ନ ଆଦିବାସୀ ଗୋଷ୍ଠୀର କିଛିକିଛି ସୁବିଧାଭୋଗୀ ଅଂଶ ଏଥିରେ ରାଷ୍ଟ୍ରକୁ ସାଥ୍ ଦେଇଥାନ୍ତି । ଶୋଷକଶ୍ରେଣୀର ପ୍ରାୟୋଜନରେ ସଂଘଟିତ ଏହି ପରିବର୍ତ୍ତନ ପୁରାତନ ଆଦିବାସୀ ସଂସ୍କୃତି ଉପରେ ବୁଲ୍‌ଡୋଜର୍ ଚଳାଇ ଦେଇ ଶତ୍ରୁ ଓ ମିତ୍ର ଉଭୟଙ୍କୁ ଗୋଟିଏ ମଂଚରେ ଥୋଇଦିଏ । ଫଳରେ ଶ୍ରେଣୀ ସଂଘର୍ଷର ତୀକ୍ଷ୍ଣତାର ବିଲୟ ଘଟି ଦେଖା ଦେଇଥାଏ ଶ୍ରେଣୀ ସହାବସ୍ଥାନ । ଏହି ଦୁଇ ଲକ୍ଷ୍ୟ ଏବଂ ଢେମ୍‌ସାନାଟର ବାଣିଜ୍ୟକରଣ ଉଦ୍ଦେଶ୍ୟ ନେଇ ଗତ ୧୯୯୬ରେ କୋରାପୁଟ୍‌ର ତତ୍କାଳୀନ ଜିଲ୍ଲାପାଳ ସଂଜୀବ୍ ଚୋପ୍ରାଙ୍କ ଅମଳରେ ଆରମ୍ଭ କରାଯାଇଥିଲା "ପରବ" । ଦୁଇବର୍ଷ ପରେ ଅପରାଜିତା ଷଡ଼ଙ୍ଗୀଙ୍କ ଅମଳରେ ତାହାକୁ ତ୍ୱରାନ୍ୱିତ କରାଗଲା । ଗତବର୍ଷ ମାନଙ୍କରେ ଏହା ଦ୍ରୁତଗତିରେ ଅନ୍ୟାନ୍ୟ ଆଦିବାସୀ ବହୁଳ ଜିଲ୍ଲାମାନଙ୍କୁ ପ୍ରସାରିତ ହୋଇଛି । ବିଭିନ୍ନ କଂପାନୀ ଓ କରପୋରେଟ୍ ପରିବାର ଏହାର ପ୍ରାୟୋଜକ ସାଜିଛନ୍ତି । ଲୋକସଂସ୍କୃତିର ଜଗତୀକରଣ ନାଁରେ ଅନ୍ୟାନ୍ୟ ଦୂରଦୂରାନ୍ତର ରାଜ୍ୟର ଲୋକନାଟ୍ୟ ଟିମ୍‌ମାନେ ମଧ୍ୟ ଏଥିରେ ସାମିଲ୍ ହୋଇଛନ୍ତି । ପୁରସ୍କାର, ସମ୍ମାନ, ଉପଢ଼ୌକନ ଓ ପ୍ରତିଯୋଗିତା ଇତ୍ୟାଦି ମାଧ୍ୟମକୁ ବ୍ୟବହାର କରି ବିଶୁଦ୍ଧ ନାଚଗୀତ ଓ ବାଦ୍ୟର ଜୟଗାନ ଚାଲିଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କିପରି ଭାବେ ଗୋଟିଏ ନାଚର ସବୁତକ ସ୍ୱରୂପ (form) ପ୍ରଦର୍ଶିତ ହୋଇପାରିବ, ସେ ଶିକ୍ଷା ଦିଆଚାଲିଛି । ଫଳରେ ଦ୍ରୁତତର ହୋଇଛି ସାଂସ୍କୃତିକ ପରିବର୍ତ୍ତନ । ରାତିରାତି ଚାଲୁଥିବା ପୁରୁଣା ଢଙ୍ଗର ଡଙ୍ଗର ନାଟ ଓ ଢେମ୍‌ସା ସଂସ୍କୃତି ତା'ର ମର୍ଯ୍ୟାଦା ହରାଇ ଚାଲିଛି । ଏହାର ସମର୍ଥକ ସାଜିଛନ୍ତି ମୁଷ୍ଟିମେୟ ଶିକ୍ଷିତ ଆଦିବାସୀ ଓ ବୁଦ୍ଧିଜୀବୀ ।

ବାକି ଯେଉଁ ବୃହତ୍ତର ଆଦିବାସୀ ଗୋଷ୍ଠୀ ଏଥିରେ ସାମିଲ୍ ନ ହୋଇ ରହିଗଲେ, ସେହିମାନଙ୍କ ଉପରେ ନିର୍ଭର କରୁଛି ଏହି ତଥାକଥିତ ଆଦିବାସୀ ଦରଦୀ ଉଦ୍ୟମର ମୁଖା ଉନ୍ମୋଚନ କରି ତା' ବିରୋଧରେ ଲଗାତର ଲଢ଼େଇ ଜାରି ରଖିବାର

ଦାୟିତ୍ୱ । ଲୋକଗଳ୍ପର ବିଲୁଆଟି ଗଛରେ ବସିଥିବା କୁକୁଡ଼ାର ଗୀତକୁ ପ୍ରଶଂସା କରି ତାକୁ ପାଖକୁ ଡାକି ଖାଇଦେଲା ଭଳି କମ୍ପାନୀ-କର୍ପୋରେଟ୍ ଓ ରାଷ୍ଟ୍ରର ମିଳିତ ଉଦ୍ୟୋଗରେ ଅନୁଷ୍ଠିତ ପରବ - ମଣ୍ଡେଇ - ଚଇତି - ମାଲ୍ୟବନ୍ତ ଉତ୍ସବ ପାହାଡ଼ - ପର୍ବତର ଅଭ୍ୟନ୍ତରରେ ରହୁଥିବା ପ୍ରତିଟି ପଲ୍ଲୀର ଆଦିବାସୀମାନଙ୍କୁ ଓଟାରି ଆଣି 'ସଭ୍ୟତା'ର 'ମୁଖ୍ୟ ସ୍ରୋତ'ରେ ସାମିଲ୍ କରିବାର ଚେଷ୍ଟା କରୁଛନ୍ତି । ଅର୍ଥାତ୍ ତୁମ ଶତ୍ରୁମାନେ କେତେ ଦରଦୀ ଓ ଦୟାବନ୍ତ ତା' ତୁମେ ଦେଖ ଓ ଦେଇଦିଅ ତୁମ ଜମି-ଜଙ୍ଗଲ-ଡଙ୍ଗର-ଖଣି-ଖାଦାନ-ଜଳ । ସରକାରୀ ନିର୍ଦ୍ଦେଶରେ ସେମାନଙ୍କ ସମର୍ଥନରେ ବହୁ ଶିକ୍ଷକ - କର୍ମଚାରୀ ଓ ବୁଦ୍ଧିଜୀବୀମାନେ ମଧ୍ୟ ସାମିଲ୍ ହେଉଛନ୍ତି । ଏହା ଯେ ଶ୍ରେଣୀଘୃଣା ଓ ଶ୍ରେଣୀ ସଂଘର୍ଷର ଧାରକୁ, ତୀକ୍ଷ୍ଣତାକୁ କମେଇବା ପାଇଁ ଷଡ଼ଯନ୍ତ୍ର, ଏଥିରେ କିଛି ସନ୍ଦେହ ନାହିଁ । ଠିକ୍ ଏହି ଢଙ୍ଗରେ ଲୋହିତ ଭାରତୀୟ ଓ ଆଫ୍ରିକାର ତଥା ଆମେରିକାର କଳା ଲୋକମାନଙ୍କର ଶ୍ରେଣୀସଂଘର୍ଷକୁ ଆମେରିକାର ପୋଖତ ରାଷ୍ଟ୍ର ସାବାଡ଼୍ କରିଥିଲା । ବୃହତ୍ତର ଆଦିବାସୀଗୋଷ୍ଠୀ ଓ ସମାଜ ତଥା ଅନ୍ୟାନ୍ୟ ସଂଗ୍ରାମୀ ଲୋକେ ଏହାକୁ ନିଜେ ବୁଝି ତଥା ଅନ୍ୟମାନଙ୍କୁ ବୁଝାଇ ଓ ଏହା ବିରୁଦ୍ଧରେ ସଂଗଠିତ ହୋଇ ନୂଆ ଉପାୟରେ ସଂଗ୍ରାମ ଚଳାଇବା ଦରକାର । ଏହି ସଂଗ୍ରାମର ପ୍ରଥମ ପର୍ଯ୍ୟାୟ ହେବ ଏଭଳି ଆୟୋଜନର ଛଦ୍ମ ଆବରଣକୁ ଫୋପାଡ଼ି ଦେବା ଏବଂ ଦ୍ୱିତୀୟ ପର୍ଯ୍ୟାୟ ହେବ ଜମି-ଜଙ୍ଗଲ-ଜଳ ପାଇଁ ବେସାଲିସ୍ ସଂଗ୍ରାମ ଚଳାଇବା । ଆଦିବାସୀମାନଙ୍କ ପାଇଁ ପରବ ଜରୁରି, କିନ୍ତୁ ତା'ଠାରୁ ଅଧିକ ଜରୁରି ହେଉଛି ଏହି ସଂଗ୍ରାମ । ଆଦିବାସୀର ଜୀବନ ସଂଗ୍ରାମ ।



# ଆଦିବାସୀ ସଂସ୍କୃତି ଓ ପାରଂପରିକ ମୂଲ୍ୟବୋଧ ଉପରେ ବିସ୍ଥାପନର ପ୍ରଭାବ

ଆଦିବାସୀ ସଂସ୍କୃତିର ଏପରି କିଛି ବିଭାବ ରହିଛି ଏବଂ ଆଦିବାସୀ ମୂଲ୍ୟବୋଧ ବ୍ୟବସ୍ଥାରେ ଏପରି କିଛି ନମନୀୟତା ଓ ଦୃଢ଼ତା ରହିଚି, ଯାହା ସମସ୍ତ ନୃତତ୍ତ୍ୱବିଦ୍‌ଙ୍କ ଭବିଷ୍ୟବାଣୀକୁ ମିଥ୍ୟା ପ୍ରମାଣିତ କରି ସେମାନଙ୍କୁ ଏ ପର୍ଯ୍ୟନ୍ତ ତିଷ୍ଠି ରହିବାରେ ମଦଦ୍ ଯୋଗାଇଛି ଏବଂ ଏକ ସଂଗ୍ରାମଭରା ଉଜ୍ଜ୍ୱଳ ଭବିଷ୍ୟତ ଆଡ଼କୁ ଇଙ୍ଗିତ କରୁଚି । ଏହି ବିଭାବଗୁଡ଼ିକ କ'ଣ ? ପୁଣି ଏହି ମୂଲ୍ୟବୋଧ ବ୍ୟବସ୍ଥାର ବିଶେଷତ୍ୱ କେଉଁଠି ? ଏ ସବୁ ବିଷୟ ପର୍ଯ୍ୟାଲୋଚନା କରିବା ସଙ୍ଗେସଙ୍ଗେ ଆଦିବାସୀ ଅଂଚଳକୁ ଛିନ୍ନ ଭିନ୍ନ ଓ ଖଣ୍ଡ ବିଖଣ୍ଡିତ କରିବାରେ, ବିସ୍ଥାପନ ଯେଉଁ ଭୂମିକା ପାଳନ କରିଛି, ବିଶେଷକରି ଗତ ଦୁଇ ଦଶକରେ ଜଗତୀକରଣ, ଘରୋଇକରଣ ଓ ନୂଆ ଅର୍ଥନୈତିକ ପଲିସି ଯେଉଁ ନୂଆ ବିସ୍ଥାପନର ପର୍ବ ଆରମ୍ଭ କରିଛି ତା'ର ପ୍ରଭାବକୁ ଆଦିବାସୀ ସଂସ୍କୃତି ଓ ମୂଲ୍ୟବୋଧ ବ୍ୟବସ୍ଥା କିପରି ସାମ୍ନା କରିଛି ବା ଏହି ଆଘାତକୁ କିଭଳି ସମ୍ଭାଳି ନେଇଛି, ତାହା ହିଁ ଏଠାରେ ପରୀକ୍ଷା ଓ ବିଶ୍ଳେଷଣ କରିବାର ଚେଷ୍ଟା କରାଯାଇଛି ।

ଗୋଟିଏ ସଂସ୍କୃତିର ମୂଳ ଆତ୍ମା ହେଉଚି ସେହି ଗୋଷ୍ଠୀ ବା ସଂପ୍ରଦାୟର ଦୃଷ୍ଟିଭଙ୍ଗୀ, ଯାହା ନିର୍ମାଣ କରିଥାଏ ବିଭିନ୍ନ ସାମାଜିକ ଚଳଣି ଓ ମୂଲ୍ୟବୋଧ । ବିଶ୍ୱାସ ଓ ଅନ୍ଧବିଶ୍ୱାସ, ଶ୍ରଦ୍ଧା ଓ ଘୃଣା, ନିଷ୍ଠା ଓ ସାହସ, ଶ୍ରମ ଓ କାରିଗରୀ, ଆବେଗ ଓ ଉଚ୍ଛ୍ୱାସ, କଳାପ୍ରାଣତା ଓ ସୌନ୍ଦର୍ଯ୍ୟବୋଧ - ସବୁ ମିଶି ତିଆରି କରିଥାନ୍ତି ଏଇ ସଂସ୍କୃତି ଓ ବିଭିନ୍ନ ମୂଲ୍ୟବୋଧ, ଏସବୁ ଗୋଟିଏ ସୂତାରେ ଗୁନ୍ଥା ମାଳ ଭଳି । ଯାହାକୁ ପରସ୍ପରଠାରୁ ବିଚ୍ଛିନ୍ନ କରିବା କଷ୍ଟକର । କାରଣ ଗୋଟିଏ ଭିତରେ ଆଉ ଗୋଟିଏ ପଶି ରହିଥାଏ । ଏହି ବୈଚିତ୍ର୍ୟମୟ ସଂସ୍କୃତିର ବିଭିନ୍ନ ବିଭାବ ଓ ମୂଲ୍ୟବୋଧ ଉପରେ ପ୍ରଥମେ ଦୃଷ୍ଟିପାତ କରିବା ।

ପ୍ରଥମ କଥା ହେଉଚି ଅବିଭକ୍ତ କୋରାପୁଟ ଜିଲ୍ଲାର ୨୬ଟି ଯାକ ଜାତିର ଭାଷାଗତ ତଥା ସାଂସ୍କୃତିକ ବିଭିନ୍ନତା ସତ୍ତ୍ୱେ ଏମାନଙ୍କ ମଧ୍ୟରେ ଥିବା ବହୁ ସାଧାରଣ ବିଭାବ ପାଇଁ ଏସବୁକୁ ଗୋଟିଏ ସଂସ୍କୃତି ବୋଲି ଅଭିହିତ କରାଯାଇପାରିବ । ଆଫ୍ରିକାରେ ଯେପରି ବହୁବିଧ ଭାଷା ଓ ସାଂସ୍କୃତିକ ଗୋଷ୍ଠୀ ସତ୍ତ୍ୱେ ଗୋଟିଏ ଭାଗ୍ୟ ବା ଦୁର୍ଭାଗ୍ୟ ଏବଂ ସମାନ ପ୍ରକାରର ଜୀବନ ଜୀବିକାର ପୃଷ୍ଠଭୂମି ସେମାନଙ୍କୁ ଗୋଟିଏ ନିଗ୍ରୋ ସମାଜରେ ପରିଣତ କରିପାରିଛି, ଠିକ୍ ସେହିପରି ଏଠିକାର ଆଦିବାସୀ ସମାଜରେ କିଛି କିଛି ବୈଷମ୍ୟ ସତ୍ତ୍ୱେ ମୂଳତଃ ଏମାନଙ୍କୁ, ଗୋଟିଏ ଧର୍ମ ଓ ସଂସ୍କୃତିର ଧାରକ ବୋଲି କୁହାଯାଇପାରିବ । ଏହି ଶାବର ସଂସ୍କୃତିର ଗୋଟିଏ ବଡ଼ଦିଗ ହେଉଚି ବହିରାଗତମାନଙ୍କ ସହ ଆନ୍ତଃପ୍ରକ୍ରିୟା । ପ୍ରାଥମିକ ଭାବେ ଏହାକୁ ବିରୋଧ କରି ଘାଟିଡ଼ିଆଁ ବିରୋଧୀ କନ୍ଧ ଓ କୟା ଆନ୍ଦୋଳନ ହୋଇଥିଲେ ମଧ୍ୟ ଏବଂ ବ୍ରିଟିଶ ଶାସନ ସମୟରେ ଏହା ବିରୋଧରେ ସାରା ଭାରତରେ ଶତାଧିକ ଆଦିବାସୀ ଆନ୍ଦୋଳନ ହୋଇଥିଲେ ମଧ୍ୟ, ଏହି ଆନ୍ତଃପ୍ରକ୍ରିୟା ଘଟି ଆସିଛି ଓ ଏବେ ମଧ୍ୟ ଘଟୁଛି । ଏପରିକି ବଣ୍ଡାମାନଙ୍କ ମଧ୍ୟରେ ଏଭଳି ଆନ୍ତଃପ୍ରକ୍ରିୟାକୁ ଘୋର ବିରୋଧ କରାଯାଉଥିଲେ ମଧ୍ୟ ଏବଂ ଏଭଳି ପ୍ରଭାବିତ ବ୍ୟକ୍ତିଙ୍କୁ ବଣ୍ଡା ପାହାଡ଼ ତଳକୁ ନିର୍ବାସିତ କରାଯାଉଥିଲେ ମଧ୍ୟ ତଳ ବଣ୍ଡା ସଂପ୍ରଦାୟର ସଂପ୍ରସାରଣକୁ ଦେଖିଲେ ମନେହୁଏ ଏହି ଆନ୍ତଃପ୍ରକ୍ରିୟା କେତେ ବାସ୍ତବ ! କାରଣ ଆଦିବାସୀର ନିଜସ୍ୱ ନିୟନ୍ତ୍ରଣରେ ନ ଥିବା ବାହ୍ୟଶକ୍ତି ଦ୍ୱାରା ଏହି ଆନ୍ତଃପ୍ରକ୍ରିୟା ରାଷ୍ଟ୍ର ତଥା ତା'ର ପ୍ରଶାସନ ଦ୍ୱାରା ନିରନ୍ତର ଘଟି ଚାଲିଥାଏ, ଯେଉଁ କାରଣ ପାଇଁ ସମ୍ବିଧାନ ଭିତରେ ଆଉ ଗୋଟିଏ ସମ୍ବିଧାନ ଭଳି ୫ମ ଓ ୬ଷ୍ଠ ସିଡ୍ୟୁଲ୍‌ର ବ୍ୟବସ୍ଥା କରାଯାଇଥିଲା । ତାହା ହେଉଚି ମୁଖ୍ୟତଃ ଆଦିବାସୀ ସମାଜ / ସଂସ୍କୃତିକୁ ଯଥେଷ୍ଟ ସୁରକ୍ଷା ଯୋଗାଇ ଦେବା, କାରଣ ସେମାନେ ଅତ୍ୟନ୍ତ ସରଳ, ରାଜନୈତିକ ଓ ଅର୍ଥନୈତିକ ଜଟିଳତାଠାରୁ ଦୂରରେ ଏବଂ ସହଜରେ ଶୋଷଣର ଶିକାର ହୋଇପାରନ୍ତି । ସମ୍ବିଧାନ ପ୍ରଣେତାମାନଙ୍କ ଏହି ଲକ୍ଷ୍ୟ ଯେ ସଂପୂର୍ଣ୍ଣ ପଣ୍ଡ ହୋଇଯାଇଛି, ତା' ନିଜେ ସରକାର ସ୍ୱୀକାର କରି ୧୯୭୬ ବେଳକୁ ପୁଣି କିଛି ସବ୍‌ପ୍ଲାନ୍ ଓ ପୁନର୍ଗଠନ ସିଦ୍ଧାନ୍ତ ନେଇଥିଲେ । ତେବେ ଏ କଥା ବି ସତ୍ୟ ଯେ ଏହି ଆକ୍ରମଣାତ୍ମକ ଆନ୍ତଃପ୍ରକ୍ରିୟା ସତ୍ତ୍ୱେ ଆଦିବାସୀ ସମାଜ ତଥାପି ବିଲୋପ ପାଇଯାଇନି ।

**ମଣିଷ ଓ ଭୂମା ଭାବନା :** ମଣିଷ ପ୍ରତି ଆଦିବାସୀର ଅସୀମ ଶ୍ରଦ୍ଧା । କିଏ ଏହି ମଣିଷ ? ପ୍ରଥମତଃ ସେ ତା'ର ପରିବାର ଓ ଗାଁର, ଦ୍ୱିତୀୟରେ ପାଖ ପଡ଼ିଶା

ଗାଁର, ତୃତୀୟରେ ଯେ କୌଣସି ମଣିଷ ବା ବହିରାଗତ, ଯାହାକୁ କୁହାଯାଇପାରେ ଅତିଥି । ପୁଣି, ଏହି ମଣିଷମାନଙ୍କ ମଧ୍ୟରେ ଅଛନ୍ତି ପୂର୍ବପୁରୁଷମାନେ, ଯେଉଁମାନେ ଡୁମା ପାଲଟି ଯାଇଚନ୍ତି । ଅଛନ୍ତି ଆଗାମୀ ପିଢ଼ି ବା ଜନ୍ମ ନ ନେଇଥିବା ବା ସଦ୍ୟ ଜନ୍ମିତ ଉତ୍ତର ପୁରୁଷ, ଯେଉଁମାନଙ୍କ ପ୍ରତି ଆଦିବାସୀର ଦୃଷ୍ଟିଭଙ୍ଗୀ ଖୁବ୍ ସକାରାତ୍ମକ । ଡୁମାମାନେ ସବୁବେଳେ ପରିବାରର ଶୁଭକାମୀ । ଯେ କୌଣସି ପର୍ବପର୍ବାଣି ବା ଶୁଭ କାର୍ଯ୍ୟରେ ସେମାନେ ପ୍ରଥମେ ଲୋଡ଼ା ପଡ଼ନ୍ତି । ଆଉ ସେମାନେ ମଧ୍ୟ ଦେଖନ୍ତି ନିଜର ଉତ୍ତର ପୁରୁଷମାନେ ଆପଣାର ଘରବାଡ଼ି, ଜମିଜମା, ଗଛବୃଛ ଓ ପଶୁ ସଂପଦର ରକ୍ଷଣାବେକ୍ଷଣ ଠିକ୍‌ଭାବେ କରୁଚନ୍ତି କି ନା । ଯଦି କରୁ ନାହାନ୍ତି ତେବେ ସେମାନେ ରିଷା ହୁଅନ୍ତି । ସେମାନଙ୍କର ଏହି ଅସନ୍ତୋଷ ଗାଁ ଓ ପରିବାରର କ୍ଷତି କରେ । ମରୁଡ଼ି, ମଡ଼କ, ହଇଜା, ବଘେଇ, ଜ୍ୱର ଇତ୍ୟାଦି ଜରିଆରେ ଏହା ପ୍ରକାଶ ପାଏ । ଡୁମାର ଆଶୀର୍ବାଦ ବା ଅଭିଶାପ ଆଦିବାସୀର ଉତ୍ପାଦନ ତଥା ଶାରୀରିକ / ମାନସିକ ସ୍ୱାସ୍ଥ୍ୟକୁ ପ୍ରଭାବିତ କରେ । ସୁତରାଂ ବିସ୍ଥାପିତ ଜୀବନ ସବୁକାଳେ ଡୁମାମାନଙ୍କ ଦ୍ୱାରା ଅଭିଶାପଗ୍ରସ୍ତ ବୋଲି ମନେ କରାଯାଏ । ଆଉ ମଧ୍ୟ ଏହି ଡୁମାମାନେ ନିଜର ଗାଁ ଓ ଡଙ୍ଗର / ଜଙ୍ଗଲ ଛାଡ଼ି ଅନ୍ୟାନ୍ୟ ଅଞ୍ଚଳରେ ନିଜର ପ୍ରଭାବ ବିସ୍ତାର କରିପାରନ୍ତି ନାହିଁ ବୋଲି ବିଶ୍ୱାସ ଅଛି । ଜଳମଗ୍ନ ଗୁଡ଼େମ ବା ସମାଧି ଭିତରେ ଡୁମାମାନଙ୍କ କ୍ଷୋଭ ଓ ଅସନ୍ତୋଷ ଚାପା ପଡ଼ିରହେ ଓ ଉତ୍ତର ପୁରୁଷକୁ ବ୍ୟସ୍ତକରେ । ଯେପରି ଘଟିଛି ଚିତ୍ରକୋଣ୍ଡା, କୋଲାବ, ମାଛକୁଣ୍ଡ ଓ ଇନ୍ଦ୍ରାବତୀର ବୁଡ଼ି ଅଞ୍ଚଳରେ ।

ସେହିପରି ପରବର୍ତ୍ତୀ ପୁରୁଷ ବା ପିଢ଼ି । ଏହି ଉତ୍ତର ପୁରୁଷମାନଙ୍କୁ ଯଥେଷ୍ଟ ସ୍ୱାଧୀନତା ଦିଏ ଆଦିବାସୀ ସମାଜ । ପିତୃକୈନ୍ଦ୍ରିକ ସମାଜର ବାପାପଣିଆ ଏଠାରେ ଚଳେନି । ପୁଅ ବଡ଼ହେବା ସଙ୍ଗେସଙ୍ଗେ ନିଜର ସାଥୀ ଚୟନ ପାଇଁ ତାକୁ ଅଖଣ୍ଡ ସ୍ୱାଧୀନତା ମିଳିଥାଏ । ତା' ପରେ ବାପ ତା' ପାଇଁ ଘରଖଣ୍ଡେ କରିଦିଏ ବା ସେ ଲାଗି ତାକୁ ସାହାଯ୍ୟ କରେ । ଜମିବାଡ଼ି ଯାହା ବି ଅଛି ପିଲାମାନଙ୍କ ଭିତରେ ସମାନଭାବେ ବାଣ୍ଟି କରିଦିଏ । ପୁଅ, ଝିଅ ବାଛବିଚାର କରେନି, ଯଦିଓ ପରବର୍ତ୍ତିତ ପରିସ୍ଥିତିରେ ଏ ସମସ୍ୟା ଧୀରେଧୀରେ ଦେଖା ଦେଲାଣି । କାରଣ ଏହି ଶ୍ରମଜୀବୀ ନାରୀର ସାଥୀ ଚୟନ, ଛାଡ଼ପତ୍ର, ପୁନଃବିବାହ ଓ ବିଧବା ବିବାହର ସ୍ୱାଧୀନତା ଥାଏ । ବାପପୁଅର ନେତୃତ୍ୱଗତ ସଂଘର୍ଷ ଖୁବ୍‌କମ୍ କ୍ଷେତ୍ରରେ ଦେଖିବା ପାଇଁ ମିଳିଥାଏ । ବାପ ଯେଉଁଠି ନିଜେ ଭୂମିହୀନ ବା ଅତ୍ୟନ୍ତ ଗରିବ ସେଠି ସାବାଳକ ପୁଅ ନିଜ

ବାଟରେ ନିଜ ଗୁଜୁରାଣ ମେଣ୍ଟାଇବାରେ ବ୍ୟବସ୍ଥା କରେ । ସେ କାହା ଘରେ ଗୋତି ରହି ହେଉ ବା ଗାଁର ଗୋରୁବଗାଳ କରି ହେଉ ବା ପ୍ରବାସକୁ ଦାଦନ ଯାଇ ହେଉ । ଅନ୍ୟପକ୍ଷରେ ସାନମାନଙ୍କ ପ୍ରତି ନିଜର କର୍ତ୍ତବ୍ୟ ପାଳନରେ ଅବହେଳା ନ ଥାଏ । "ଶ୍ରମ ପ୍ରତି ଶ୍ରଦ୍ଧା", "ପ୍ରକୃତି ସହିତ ଏକାତ୍ମତା" ଇତ୍ୟାଦି ବଡ଼ମାନେ ନିଜର ପିଲାମାନଙ୍କୁ ବଡ଼ ଯତ୍ନରେ ଶିଖାଇଥାନ୍ତି । ସାନବେଳୁ ତୀରଧନୁ, ଟାଙ୍ଗିଆ ନେଇ ଖେଳିବା, ଦାରୁ କାଟିବା ପାଇଁ ଓ ବେଣ୍ଟ ପାଇଁ ବଡ଼ମାନଙ୍କ ସହ ଜଙ୍ଗଲ ଯିବା, ବିଭିନ୍ନ ଗଛ ସହ ପରିଚିତ ହେବା, ବିଭିନ୍ନ ଔଷଧପତ୍ର, ମୂଳ, ବୃକ୍ଷ ତଥା କନ୍ଦା ଓ ଛତୁ ସହ ପରିଚିତ ହେବା, ଲଙ୍ଗଳ କରି ଶିଖିବା, କୃଷି ସମ୍ପର୍କୀୟ ଜ୍ଞାନ ଆହରଣ କରିବା, କାଉଡ଼ି ଓ ଡୋଲି ବୋହି ଶିଖିବା, ବାଇଦ ବଜାଇ ନାଚି ଶିଖିବା ଇତ୍ୟାଦି ଅତି ସାବଲୀଳ ଓ ସ୍ୱାଭାବିକ ଭାବେ ଘଟିଥାଏ । ଜୀବନ ସଂଗ୍ରାମ ପାଇଁ ପୁଅ ଉପଯୁକ୍ତ ହୋଇପାରିଛି ବୋଲି ଭାବି ସାରିବା ପରେ ବାପ ତା' ପାଇଁ ଅଲଗା ଘର ବସାଇବା କଥା ଚିନ୍ତାକରେ । ସେହିପରି ଝିଅମାନେ ମାଆ, ଖୁଡ଼ୀମାନଙ୍କ ସହ ସମସ୍ତ ଘରକରଣା କାମ, ମାଣ୍ଡିଆପେଜ ଓ ପେଣ୍ଡମ୍ ତିଆରି କରିବା କାମ, ନାଚଗୀତ, ଚାଷକାମ, ମହୁଲବେଟା, ଟୋଲଛଡ଼ା, ଧାନ, ମାଣ୍ଡିଆ କୁଟା, ଜଙ୍ଗଲରେ ଦାରୁ, ଛତି ଓ କନ୍ଦା ଖୋଜା କାମ ଶିକ୍ଷା କରିଥାନ୍ତି । ବିଭାଯାକେ ଏ ଶିକ୍ଷା ଚାଲିଥାଏ ।

ସରକାରୀ ପ୍ରାଥମିକ ଶିକ୍ଷା (ଯାହାକୁ DPEP ସଫଳ ଭାବେ ହନନ କରିସାରିଛି) ସହିତ ଏହାର କିଛି ସମ୍ବନ୍ଧ ନ ଥାଏ । ଏଭଳି ଶିକ୍ଷା ଦେବା ହେଉଛି ମାଆ ବାପାଙ୍କର ସର୍ବନିମ୍ନ କର୍ତ୍ତବ୍ୟ ।

**ସମଦୃଷ୍ଟିର ଭାବନା :**

ନିଜ ଗୋଷ୍ଠୀ ଭିତରେ ସବୁ ମଣିଷ ସମାନ । ନାୟକ, ବାରିକ, ଦିଶାରି, ପୂଜାରି, ଜାନି ଇତ୍ୟାଦିଙ୍କର ଯଦିଓ ସମାଜରେ ସ୍ୱତନ୍ତ୍ର ସ୍ଥାନ ଓ ସମ୍ମାନ ଅଛି । ସେ କେବଳ ବିଶେଷ ଉପଲକ୍ଷ୍ୟରେ । ଅନ୍ୟ ସମୟରେ ସେ ମଧ୍ୟ ତୁମ ଆମ ପରି ମଣିଷଟିଏ । ଆମମାନଙ୍କ ଭାଷାରେ ଯେପରି ଧନୀମାନୀ ଓ ସମ୍ମାନାସ୍ପଦମାନଙ୍କ ପ୍ରତି 'ଆପଣ', ସମସ୍କନ୍ଧଙ୍କ ପ୍ରତି 'ତୁମେ' ଏବଂ ଗରିବ ଦିନମଜୁରିଆ ତଥା ବୟସରେ ସାନମାନଙ୍କ ପ୍ରତି 'ତୁ'ର ପ୍ରଚଳନ ରହିଛି, କୌଣସି ଆଦିବାସୀ ଭାଷାରେ ସେପରି ନାହିଁ । ଯେତେବଡ଼ ଲୋକ ଏପରିକି ଦେବତା ହୋଇଥିଲେ ମଧ୍ୟ ସେମାନେ 'ତୁ' ବା 'ତୁଇ'ରେ ସମ୍ବୋଧିତ ହୋଇଥାଆନ୍ତି । ପୁଅ ବାପାଙ୍କୁ, ରଇତ ନାଇକକୁ ଏବଂ

ଅଧିକାରୀ ତଥା ସାହୁକାରଙ୍କୁ ତୁ ବୋଲି ହିଁ ସମ୍ବୋଧନ କରିଥାନ୍ତି । ଅଧିକାରୀ ବା ସାହୁକାର କ୍ଷେତ୍ରରେ ଯଦି କେଉଁଠି ବିପଦ ଅଛି, ତେବେ ସେ ଅନ୍ୟ କାହା ଜରିଆରେ କଥା କୁହାଇ ଦେଇ ନିଜେ ଚୁପ୍ ରହିବାକୁ ଅଧିକ ଶ୍ରେୟସ୍କର ମଣେ । ନ ହେଲେ 'ମହାପ୍ରୁ' ବା 'ଆଜ୍ଞା' ବୋଲି ସମ୍ବୋଧନ କରେ । ସବୁ ଗଡ଼ିଆ ବା ଅଣଆଦିବାସୀ ଲୋକେ ତା' ପାଇଁ 'ଆଜ୍ଞା' ।

ବେଡ଼ା ବା ବାଡ଼ିରେ କୌଣସି ଫଳ ପାଚିଲେ କିମ୍ବା ଘରକୁ କେହି କିଛି ଖାଦ୍ୟପଦାର୍ଥ ଉପହାର ରୂପେ ଆଣିଲେ ତାହା ଯେତେ କ୍ଷୁଦ୍ର ଓ ନଗଣ୍ୟ ହେଲେ ମଧ ଉପସ୍ଥିତ ସମସ୍ତ ବ୍ୟକ୍ତି ମଧରେ ତାକୁ ବାଣ୍ଟି ଦିଆଯାଏ । ସେହିପରି ବେଣ୍ଟ ପରବରେ ଯେତେ ଛୋଟ ଜନ୍ତୁ ଶିକାର ହେଉ ନା କାହିଁକି ତାହାକୁ ଗାଁ ମୁଣ୍ଡକୁ ଅଣାଯାଏ ଓ ଯେତେ ପରିବାର ସେତେ ବାଣ୍ଟ କରାଯାଏ; ବରଂ ଭାଗକୁ ଫୁଟେ ଫୁଟେ ମାଉଁସ ପଡୁ । ମାଲକାନଗିରି ଜିଲ୍ଲାର ବନ୍ଧଗୁଡ଼ା ଗାଁରେ ବେଣ୍ଟପରବ ସମୟରେ ଚାରିପାଞ୍ଚ ଧାଙ୍ଗଡ଼ା ଗୋଟେ କାଡ଼ା(ଠେକୁଆ) ଶିକାର କରି ଆଣିଥିଲେ । କିନ୍ତୁ ଲୋଭ ସମ୍ଭାଳି ନ ପାରି ସେଇ ଜଙ୍ଗଲରେ ତାକୁ ପୋଡ଼ି ଖାଇଦେଲେ । ପରେ ଗାଁରେ ଏହାର ନିଶାପ ହେଲା । ସେଇ କାଡ଼ା ଓଜନର ଦୁଇଗୁଣ କୁକୁଡ଼ା ସେମାନଙ୍କୁ ଜୋରିମାନା ସ୍ୱରୂପ ଦେବାକୁ ପଡ଼ିଲା ଏବଂ ତାହାର ମାଂସ ଗାଁଯାକ ବଣ୍ଟାଗଲା ।

ତେବେ ଏ କଥା ମଧ ସତ୍ୟ ଯେ ଆଦିବାସୀମାନଙ୍କ ଭିତରେ ଗୋଷ୍ଠୀ ବାହାରେ ଛୋଟଜାତି, ବଡ଼ଜାତିର ଭାବନା ଅଛି । ଆନ୍ତଃ ସାମ୍ପ୍ରଦାୟିକ ବିବାହ ତ କରାଯାଏ ନାହିଁ, ଯଦି ହୋଇଯାଏ, ସେଥିପାଇଁ ବିଚାର ବ୍ୟବସ୍ଥା ରହିଛି । ବିଶେଷକରି ଡମମାନଙ୍କ କ୍ଷେତ୍ରରେ ଆଦିବାସୀମାନଙ୍କର ପ୍ରତିକ୍ରିୟା ଖୁବ୍ ତୀବ୍ର । ପଟ୍‌କାର୍ ଶବ୍ଦଟା ସେମାନଙ୍କ ପ୍ରତି ଏବେବି ପ୍ରୟୋଗ ହୁଏ । ତେବେ ଅନ୍ୟ ଜାତିମାନଙ୍କ ପ୍ରତି ମଧ ମନୋଭାବଟା ବିଭିନ୍ନ ଢଗଢମାଳୀ ଓ ବୋଲି ଜରିଆରେ ପ୍ରକାଶ ପାଇଥାଏ । ଅବଶ୍ୟ ଏଥିରେ କିଛିଟା ଥଟ୍ଟା ପରିହାସ ବି ରହିଥାଏ । ଯେପରିକି;

୧. ଆମଟ୍ ଲାନ୍ଦା ଗଣ୍ଡ କେ ନିକ
ତେତେରୁଜାଟି ପାଟ୍‌କେ ନିକ
ଗଣ୍ଡଚ୍‌ବୁଦି ଲାଡ଼ି ରାକା
ଢିଟଲ୍ ଦିଲେ ବଲେ ନାଇଁ ଆକା ।

(ଅମ୍ବିକା ଲାନ୍ଦା ଗଣ୍ଡକୁ ମଜା, ତେନ୍ତୁଳିଛାଟ ପିଠିକୁ ସାଜେ, ଗଣ୍ଡର ବୁଦ୍ଧିଘର ଫାଙ୍କା ରଖି ଛାମୁଡ଼ିଆରେ ଶୋଇବା, ପୁଣି ଯେତେ ଦେଲେ ମଧ୍ୟ ଦେଇନାହିଁ ବୋଲି କହିବା ।)

୨. ମାଲି ଶୁଣ୍ଡି ଆକାରି (ଅହଂକାରୀ)

ବାମନ୍ ଭିକାରି

ଡଗ୍ ଢେକାରୀ (କେତେବେଳେ ଗୋଡ଼ ଧରିବେ ତ କେବେ ଚୁଟି)

ଠକ୍ ସୁନାରି, ଗୌଡ଼ ମିତ

ସଂଜେ କଇଲା କାତା ସକାଲେ ମିଛ ।

୩. ଗାଁକେ ରାଣା ଚତୁର

ବନ୍‌କେ କାଡ଼ା ଚତୁର ।

କିନ୍ତୁ ଯେ କୌଣସି ଜାତିର ହେଉନା କାହିଁକି ତାକୁ ଅତିଥି ରୂପେ ଆଦିବାସୀ ସମ୍ମାନ ଦିଏ । ଆଦିବାସୀ ନିଜେ ଗୋତି ରହେ । କିନ୍ତୁ ଗାଁରେ ଗୋତି ରଖିବାର ପରମ୍ପରା ନାହିଁ । ଏପରିକି ଗାଁରେ କୌଣସି ବିଧବା ବା ଅସହାୟ ଲୋକର ଚାଷବାସ ଯଦି ଉଠି ପାରୁନି ଗାଁର ଲୋକେ ମୁଫତରେ ଶ୍ରମଦାନ ଦେଇ ତା'ର କାମ ଉଠାଇ ଦିଅନ୍ତି । ପ୍ରତି ବଦଳରେ ସେ କେବଳ ଖାଦି ଗଣ୍ଡେ ଦିଏ, ସେହିପରି ଅଘୋଷିତ ସମବାୟ ଶ୍ରମ ବିନିମୟରେ ପ୍ରତ୍ୟେକେ ପ୍ରତ୍ୟେକଙ୍କର ବେଡ଼ାରେ ମଧ୍ୟ ଚାଷକାର୍ଯ୍ୟ ଉଠାଇ ଦିଅନ୍ତି । ଏଥିପାଇଁ ବଜାରରେ ପ୍ରଚଳିତ ସର୍ବନିମ୍ନ ମଜୁରି କାହାକୁ ଦେବାକୁ ପଡ଼େନି । ଅନ୍ୟ ଗାଁର ସାହୁକାର ଘରେ କିନ୍ତୁ ଆଦିବାସୀ ନ୍ୟାଯ୍ୟ ମଜୁରି ପାଇଁ ଦାବି ଓ ଲଢ଼େଇ କରେ । ଯେଉଁ ସାହୁକାର ଗୋତି ରଖେ, ତା' ପ୍ରତି ସାଧାରଣ ଆଦିବାସୀର ମନୋଭାବ କିନ୍ତୁ ଭାରି ନକାରାତ୍ମକ । ସେଇଟା ହିଁ ଜନ୍ମଦିଏ ଶ୍ରେଣୀ ଘୃଣାକୁ । ବେଳେ ବେଳେ ଏହା ବିସ୍ଫୋରିତ ମଧ୍ୟ ହୁଏ ଏବଂ ଜମି ଦଖଲ ଆନ୍ଦୋଳନରେ ପରିଣତ ହୁଏ । ଯେପରି ହୋଇଚି ଗୁଡ଼ାରି, ପଦ୍ମପୁର, ମାତିଲି ଓ ରାଇଘର ଅଂଚଳରେ । ମଣିଷକୁ ମଣିଷ ଭଳି ଯିଏ ନ ଦେଖେ ତାକୁ ସେ ବା କିପରି ନିଜର ଭାଇବନ୍ଧୁ କୁଟୁମ୍ବ ରୂପେ ଦେଖିବ ? ବିଶିଷ୍ଟ ମାଗାସେସେ ପୁରସ୍କାର ବିଜେତା ସାମ୍ବାଦିକ ପି.ସାଇନାଥ ଏଇ ଗୋତିମାନଙ୍କ ଉପରେ ସୁପ୍ରିମ୍‌କୋର୍ଟଙ୍କ ଏକ କମିଟିର ରିପୋର୍ଟ

ବିଷୟରେ ଉଲ୍ଲେଖ କରି କହିଛନ୍ତି ତାମିଲନାଡୁରେ ଏମାନଙ୍କର ସଂଖ୍ୟା ଦଶଲକ୍ଷ । ଓଡ଼ିଶାର ନିର୍ଦ୍ଦିଷ୍ଟ ସରକାରୀ ରିପୋର୍ଟ ଆମ ପାଖେ ନ ଥିଲେ ମଧ୍ୟ ତାହା ଯେ ସମପରିମାଣରେ ହୋଇଥିବ, ତାହା ହିଁ ମୋର ଅଭିଜ୍ଞତା, ଆଉ ସେତିକି ପରିମାଣର ଲୋକ ଯାଆନ୍ତି ଦାଦନ, (ଦ୍ର:ମରୁଡ଼ି ପଡ଼ିଲେ ସଭିଙ୍କ ମଉଜ)

**ଦାଦନ ଚାଲାଣ :**

ଦାଦନକୁ ନେଇ ସରକାର ବହୁ ଆଇନ୍ ପ୍ରଣୟନ କରିଛନ୍ତି । କିନ୍ତୁ ସେ ସବୁ କେବଳ ବେଆଇନ ଦାଦନ ଚାଲାଣକୁ ଆଇନ୍‌ସଙ୍ଗତ କରି ଲାଇସେନ୍‌ସ ନାମରେ କିଛି ଅର୍ଥ ସଂଗ୍ରହ କରିବା ପାଇଁ । ଏହାର ପ୍ରତିକାର ପାଇଁ ବା ଦାଦନ ଯାଉଥିବା ବ୍ୟକ୍ତିମାନଙ୍କର ନିରାପତ୍ତା ପାଇଁ ନୁହେଁ ।

ଦିନ ଥିଲା ଯେତେବେଳେ ଆଦିବାସୀ ପାଇଁ ବିଦେଶ ଯିବା ଥିଲା ମୃତ୍ୟୁ ସଙ୍ଗେ ସମାନ । ପୂର୍ବରୁ ୧୯୬୫ ସୁଦ୍ଧା ଯେଉଁମାନେ ଆସାମକାରିଆ ଭାବେ ଆସାମ ଯାଉଥିଲେ ସେମାନଙ୍କୁ ମୃତ ବୋଲି ଧରିନିଆ ଯାଉଥିଲା । କିନ୍ତୁ ବ୍ୟାପକ ବିସ୍ଥାପନ ପ୍ରକ୍ରିୟା ଏପରି ଏକ ଘରଛଡ଼ା ପ୍ରକ୍ରିୟା ଆରମ୍ଭ କରିଦେଲା ଯେ, ଏଇ ଅଭିଶାପକୁ ଆଦିବାସୀ ସମାଜ ଏକ ବାସ୍ତବତା ରୂପେ ଗ୍ରହଣ କରିନେଲା । ତେଣୁ ଧୀରେଧୀରେ ଆଦିବାସୀର ମୂଲ୍ୟବୋଧ ମଧ୍ୟ ବଦଳି ଗଲା । ଲୋକେ ଦାଦନ ଦଲାଲଙ୍କ କବଳରେ ପଡ଼ି ବିଦେଶ ଯିବାରେ ଲାଗିଲେ । ସେପଟୁ ହାତଗୋଡ଼ ହରାଇ ଫେରିଲେ । କେତେ କାହାର ମରିବା ଖବର ମଧ୍ୟ ଆସିଲା । ଏଭଳି ବିଦେଶ ଯିବା ଲୋକଙ୍କ ସୁମାରି ସରକାର ତ କରନ୍ତି ନାହିଁ । ତେବେ ଆଦିବାସୀ ଅଧ୍ୟୁଷିତ କେବିକେ ଜିଲ୍ଲାମାନଙ୍କରୁ ତିରୋଟି ସମୟରେ ୪ଭାଗରୁ ଭାଗେ ଲୋକ ଯେ ଦାଦନ ଖଟିବାକୁ ବିଦେଶ ଯାଇଥାନ୍ତି, ଏଥିରେ ସନ୍ଦେହ ନାହିଁ । ଅବିଭକ୍ତ କୋରାପୁଟର ବେଶିଭାଗ ଲୋକ ଯାଆନ୍ତି ହାଇଦ୍ରାବାଦ ଇଟାଭାଟି । ତା' ପଛକୁ ରହିଛି ସୁରାଟ, ମୁମ୍ବାଇ, ବାଙ୍ଗାଲୋର, କାଶ୍ମୀର । ସେଥିପାଇଁ 'ବୋଲି' ମଧ୍ୟ ଆରମ୍ଭ ହୋଇଯାଇଛି:

ହାଇଦ୍ରାବାଦର କନ୍‌କୀ
ପେଟ୍ ଗାଲାନି ଦମ୍‌କି

ଅର୍ଥାତ୍ ହାଇଦ୍ରାବାଦର ଖୁଦଭାତ ଖାଇ ଖାଇ ପେଟ ପଶିଗଲାଣି । ଯଦିଓ ଏହି ଦାଦନ ପାଇଁ ଅନେକ ସଂସ୍କାର ଭାଙ୍ଗି ଯାଉଚି, ଅନେକ ଲୋକ ସେଇପଟେ ମରିହଜି

ଯାଉଚନ୍ତି, ସେମାନଙ୍କ ଚିତା ଭସ୍ମ ଫେରୁଚି, ଅନେକଙ୍କର ଠିକଣା ମିଳୁନି । ଶ୍ରମବିଭାଗର ସାହାଯ୍ୟ ନେଇ କିଛି କିଛି ଅଭିଯୋଗକାରୀଙ୍କୁ ଫେରାଇ ଅଣାଯିବାର ଉଦ୍ୟମ କରାଯାଉଚି, ଅନେକେ ମଧ୍ୟ ଗୋଟିଏ ଲେଖାଁ ଛୋଟ ଟିମ୍‌ରେ ଏକାଠି ହୋଇ ଗୁଣ୍ଡାବାହିନୀର ବଳୟକୁ ଅତିକ୍ରମ କରି ଫେରି ଆସୁଛନ୍ତି, ତଥାପି ଏହି ପ୍ରଥା ନିୟମିତ ଭାବେ ବଢ଼ି ବଢ଼ି ଚାଲିଛି । ପରୋକ୍ଷ ସରକାରୀ ପ୍ରୋତ୍ସାହନ ମଧ୍ୟ ଏହା ପଛରେ ରହିଛି । ଦାଦନ ଦଲାଲମାନେ ସମସ୍ତେ ରାଜନୈତିକ ଭାବେ ଖୁବ୍ ଶକ୍ତିଶାଳୀ । ଦାଦନ ଯିବା ଲୋକଙ୍କ ବି.ପି.ଏଲ୍.-ଅନ୍ତୋଦୟ-ଅନ୍ନପୂର୍ଣ୍ଣା କାର୍ଡ଼ର ଚାଉଳ ରିସାଇକ୍ଲିଂ ହେଉଚି ବିନା ବାଧାରେ । (ବାକି ଅନେକଙ୍କ କାର୍ଡ଼ ତ ଏମିତିରେ ବନ୍ଧା ପଡୁଚି ।) ପୁଣି ସେମାନଙ୍କ ଜବ୍‌କାର୍ଡ଼ ଉପରେ ମିଛକାମ ଦେଖାଇ ଠିକାଦାରମାନେ କାମ ପାଇଁ ବ୍ୟବହାର କରନ୍ତି । ପ୍ରକ୍ଲିନ ମେସିନ୍ ଲଗାଇ ଦେଇ ମଜୁରି ବାବଦ ସେମାନଙ୍କ ପ୍ରାପ୍ୟକୁ ଆପଣା ଭିତରେ ବାଣ୍ଟି ନିଅନ୍ତି । ପୁଣି ଦାଦନ ଗଲେ ସେମାନଙ୍କୁ ପ୍ରାପ୍ୟ ମଜୁରିର ଅଧାରୁ କମ୍ ମିଳିଥାଏ । ବାକିତକ ଯାଏ ଦଲାଲ ଓ ଛୋଟବଡ଼ ମଝି ଧାରିଆ ଦଲାଲମାନଙ୍କ ପାଖକୁ ଓ ଶ୍ରମଅଧିକାରୀମାନଙ୍କ ପାଖକୁ, ଯେଉଁମାନେ ବାଟ ଜଗି ବସିଥାନ୍ତି । ସୁତରାଂ ଦାଦନ ଗଲେ ସଭିଙ୍କର (ଶୋଷକ ବର୍ଗର) ଲାଭ ହୋଇଥାଏ । ସେଥିପାଇଁ ଏନ୍.ଜି.ଓ.ମାନେ ଏହାକୁ ବଢ଼େଇ କୁଢ଼େଇ କହିଲେଣି Smart Migration । ଆଦିବାସୀ ସମାଜ ମଧ୍ୟ ଦାଦନ ଫେରୁଥିବା ଲୋକଙ୍କୁ ଆଉ ସମାଜରୁ ବହିଷ୍କାର ନ କରି କୋଳେଇ ନେଉଚି । ସେମାନଙ୍କ ଅଭିଜ୍ଞତାରୁ ଶିକ୍ଷାଲାଭ ପାଇଁ ଚେଷ୍ଟା କରୁଚି ଏବଂ ପୁଣିଥରେ ସେମାନଙ୍କୁ ବିଦେଶ ଛାଡ଼ି ନ ଦେବାର ଚେଷ୍ଟା କରୁଚି ବା ଯଦି ଯାଏ, ତେବେ ପରିସ୍ଥିତିର ଦାସ ନ ହୋଇ ପ୍ରଭୁ ହେବାର ଉଦ୍ୟମ କରୁଛି ।

**ସ୍ୱୟଂସମ୍ପୂର୍ଣ୍ଣ ବା ଆତ୍ମନିର୍ଭରଶୀଳ ଅର୍ଥନୀତି :**

ଆଦିବାସୀର ପାରମ୍ପରିକ ମୂଲ୍ୟବୋଧର ମୂଳ ଭିତ୍ତି ଥିଲା ତା'ର ସ୍ୱୟଂ ସମ୍ପୂର୍ଣ୍ଣ ବା ଆତ୍ମ ନିର୍ଭରଶୀଳ ଅର୍ଥନୀତି । ବାରିକ, ଧୋବା, କମାର, ତନ୍ତୀ, ତେଲି ଇତ୍ୟାଦି ସମସ୍ତ ବୃତ୍ତିଗତ କାମ ଆଦିବାସୀ ସମାଜର ପ୍ରତ୍ୟେକ ବ୍ୟକ୍ତି ଜାଣୁଥିଲେ । ଯଦିବା କମାର ଓ କୁମ୍ଭାରକାମ ମୂଳତଃ ଜାତିଗତ ବୃତ୍ତି ଥିଲା, ଅନ୍ୟାନ୍ୟ ସମସ୍ତକାମ ସମସ୍ତେ ଜାଣୁଥିଲେ । ସେହିପରି ଲୁଣ ଓ କିରୋସିନି ବ୍ୟତୀତ ଅନ୍ୟକିଛି ଦ୍ରବ୍ୟ ପାଇଁ ବାହାର ଦୁନିଆ ଉପରେ ନିର୍ଭର କରିବାକୁ ପଡୁ ନଥିଲା । ଜମିରେ ଉତ୍ପନ୍ନ ହେଉଥିଲା ସବୁପ୍ରକାର

ଫସଲ - ଡାଲିଜାତୀୟ କାନ୍ଦୁଲ, ବିରି, ମୁଗ, ଡଙ୍ଗରରାନୀ, ବୁଟାସିମ୍ ଓ ବିଭିନ୍ନ ପ୍ରକାରର ସେମା ବା ଶିମ୍ବ; ତୈଳଜାତୀୟ ଅଳସୀ, ରାଶି, ବାଦାମ, ଟୋଲା; ଶସ୍ୟ ରୂପେ ଧାନ, ମାଣ୍ଡିଆ, ଜନା, କାଙ୍ଗୁ, ସୁଆଁ, ଖେଡ଼୍‌ଜଣା ଓ ଗୁରୁଜୀ ଇତ୍ୟାଦି । ତେଣୁ ଗଢ଼ିଉଠେ ଏକ ନିଆରା ସମାଜ - ବାହାର ଜଗତଠାରୁ ବିଚ୍ଛିନ୍ନ ପୁଣି ଗୋଷ୍ଠୀଗତ ସମାଜ ସହ ନିବିଡ଼ ଭାବେ ସଂପୃକ୍ତ । ଏହି ସମାଜର ଥାଏ ଏକ ସ୍ୱାୟତ୍ତଶାସନ ବ୍ୟବସ୍ଥା । ଏହି ସ୍ୱାୟତ୍ତ ଶାସନ ମଧ୍ୟରେ ଥାଏ ନିଜସ୍ୱ ନ୍ୟାୟପାଳିକା ବା ବିଚାର ବ୍ୟବସ୍ଥା । ଏହା ପୁଣି ଗାଁ, ପଞ୍ଚାୟତ ଓ ରାଜ୍ୟ ସୀମା ଅତିକ୍ରମ କରି ବୃହତ୍ତର ଗୋଷ୍ଠୀ ମଧ୍ୟକୁ ବ୍ୟାପିଥାଏ । ତା' ପରେ ଥାଏ ଜମିବାଡ଼ି ବ୍ୟବସ୍ଥା । ଗାଁରେ ଥିବା ସାଧାରଣ ଜମିରୁ କିଛି ନା କିଛି ଦେବାକୁ ପଡ଼େ ଭୂମିହୀନ ରଇତମାନଙ୍କୁ । ଯଦି କାହାରି କିଛି ବଞ୍ଚିବାର ମାଧ୍ୟମ ନାହିଁ ବା ସେ ସାହୁକାରର ଗୋତି ହେବାକୁ ଚାହେଁନି, ସେ ସେହି ଗାଁରେ କାହାରି ଘରେ ସମ୍ମାନର ସହ ଗୋତି ରହେ ବା କାହା ଘରେ ଝିଅ ଥିଲେ ସେଠି କନ୍ୟା ଝୋଲା ବାବଦକୁ ପ୍ରଥମେ ଗୋତି ରହି ପରେ ଘରଜୁଆଁଇ ହୋଇ ଜମି ଦଖଲ କରେ । ଗାଁରେ ନାୟକ ଥାଏ ପ୍ରଶାସନିକ ମୁଖ୍ୟ । ବାହାରୁ ଯେ କୌଣସି ବିପଦ ଆସିଲେ ତାରି ଜରିଆରେ ତା'ର ମୁକାବିଲା କରାଯାଏ । ଜଙ୍ଗଲ ଅଧିକାରୀ ହୁଅନ୍ତୁ କି ରେଭିନିଉ ବା ପୁଲିସ୍, ପାରମ୍ପରିକ ଭାବେ ଘରୁ ଘରୁ ଚାନ୍ଦା ଉଠାଇ ତାଙ୍କୁ ସନ୍ତୋଷ କଲାଭଳି ବା ଦାବି ଅନୁଯାୟୀ ମାମୁଲି ଯୋଗାଇଦେଇ ନାୟକ ତାଙ୍କୁ ବିଦାକରେ । ଗୋପୀବାବୁଙ୍କ 'ପରଜା' ଓ 'ଅମୃତସନ୍ତାନ'ରେ ଏଭଳି ସନ୍ତୋଷ ବିଧାନ ଦୃଶ୍ୟର ସୁନ୍ଦର ବର୍ଣ୍ଣନା କରାଯାଇଛି । ରେଭିନିଉବାବୁ ଫେରିଲାବେଳେ କାଉଡ଼ିଆ କାନ୍ଧରେ ପୁଞ୍ଜା ପୁଞ୍ଜା କୁକୁଡ଼ା ଓହଳୁଥିବାର ଦୃଶ୍ୟ ସାଙ୍ଗକୁ ଛେଳିର ମେଁ ମେଁ ଦୃଶ୍ୟ ।

ଅନେକ ସ୍ଥଳରେ ଆଦିବାସୀ ଅଧିକାରୀ ଦେବତା ଓ ସାହେବ୍ ଦେବତାମାନଙ୍କୁ ପୂଜା କରିବାର ନଜିର ମଧ୍ୟ ରହିଛି । ତେବେ ପାପଡ଼ା ହାଣ୍ଡି ନିକଟସ୍ଥ ମଇଦଲପୁର ଜଙ୍ଗଲରେ ଥରେ ମକାଚାଷ କରୁଥିବା ଆଦିବାସୀଙ୍କୁ ଆମ୍‌ପାଣି (କଳାହାଣ୍ଡି) ଫରେଷ୍ଟର ପ୍ରଚୁର ମାମୁଲି ମାଗି ନିରାଶ ହେବାରୁ କିଛି ଲୋକଙ୍କୁ ଗିରଫ କରି ନେବାରୁ ତା' ବିରୋଧରେ ମଇଦଲପୁର ଫାଣ୍ଡିରେ ରିପୋର୍ଟ କରି ଆଦିବାସୀମାନେ ଫରେଷ୍ଟରଠୁ ଜୋରିମାନା ନେବା ସହ ନିଜ ଲୋକଙ୍କୁ ମୁକ୍ତ କରିଥିଲେ । "ଶଠେ ଶାଠ୍ୟମ ସମାଚରେତ୍"ର ବ୍ୟବହାରିକତାର ଏଭଳି ଦୃଷ୍ଟାନ୍ତ ଅନେକ । ସେହିପରି

ଗଇଲିଟାଙ୍ଗି(ମାଲ୍‌କାନଗିରି ବ୍ଲକ୍)ର କୟାମାନେ ନିଜର ଗ୍ରାମବାସୀମାନଙ୍କୁ ଦାରୁ କାଟିବା ଅପରାଧରେ ମାଥିଲି ଫରେଷ୍ଟର ଗିରଫ କରିଥିବା ବେଳେ, ନାୟକ ସହ ଅନ୍ୟମାନେ ଫରେଷ୍ଟର ଅଫିସ୍‌କୁ ଆସି କହିଲେ, "ଆମ ଲୋକଙ୍କୁ ଗିରଫ୍‌କଲ, ଠିକ୍‌ଅଛି, କିନ୍ତୁ ତା'ର ଛୋଟ ପୁଅ ମଧ୍ୟ ସେଠି ଥିଲା, ବାପକୁ ଗିରଫ କରି ତୁମେ ପୁଅକୁ ଜଙ୍ଗଲ ଭିତରେ ଛାଡ଼ିଦେଲ । ତାକୁ ବାଘ ଖାଇଲା କି ଦୁରୁକା ଖାଇଲା, ତାକୁ ତୁମେ ଫେରାଇ ଦିଅ ।" ବିଚରା ଫରେଷ୍ଟରର ବୁଦ୍ଧି ଗୁଡୁମ୍ । ବଡ଼ କଷ୍ଟରେ ସେଇ ଭୁଲ୍‌ପାଇଁ କିଛି କ୍ଷତି ପୂରଣ ଦେଇ ଓ ଗିରଫ ଲୋକକୁ ଖଲାସ୍ କରି ସେ ରଫାନାମା କରିଦେଲା । କଣ୍ଟକେ ନୈବ କଣ୍ଟକମ୍ । ଏଇ ଯେଉଁ ଛକାପଞ୍ଝା, ତାକୁ ନେଇ ଆଦିବାସୀ ସମାଜରେ କେତେ ନା କେତେ ଲୋକ କଥା । ବିଲୁଆ ଓ ବାଘ, ଭାଲୁ ଓ ମହୁମାଛି, ସିଂହ ଓ ଠେକୁଆ, ବିଲୁଆ ମଗର, ଚାଷୀ ଓ ବିଲୁଆ ଇତ୍ୟାଦି ଲୋକ କଥାରେ ଏହା ପ୍ରତୀକାତ୍ମକ ଭାବେ ବର୍ଣ୍ଣିତ । ଏ ସବୁରେ ସାହୁକାର ବା ଅଧିକାରୀମାନେ ଭାଲୁ, ବିଲୁଆ ବା କୁଲିଆ ଜରିଆରେ ପ୍ରତୀକିତ ହୋଇଥିବା ବେଳେ ଆଦିବାସୀ ବାଘ ବା କାଡ଼ା ବା ମହୁମାଛି ଜରିଆରେ ପ୍ରତୀକିତ ହୋଇଥାଏ ।

ଏଇ ସ୍ୱାୟତ୍ତଶାସନ ତଥା ସ୍ୱୟଂ ସଂପୂର୍ଣ୍ଣ ଅର୍ଥନୀତି ଉପରେ ବେପାରୀ ଜୁଲୁମ, ହାଟ ଅର୍ଥନୀତି ଓ ବଡ଼ବଡ଼ ଯୋଜନାର ବିଧିବଦ୍ଧ ଆକ୍ରମଣ ଚାଲୁ ଥିବାରୁ ଧୀରେଧୀରେ ତାହା ଖଣ୍ଡ ବିଖଣ୍ଡିତ ହେବାରେ ଲାଗିଛି । ସମ୍ବିଧାନକାରମାନେ ଯେଉଁ ଆଶଙ୍କା କରିଥିଲେ, ଯେ ୫ମ ଓ ୬ଷ୍ଠ ସିଡ୍ୟୁଲ ଜରିଆରେ ସେମାନଙ୍କୁ ଯଥେଷ୍ଟ ନିରାପତ୍ତା ଯୋଗାଇ ନ ଦେଲେ ତାହା ସାହୁକାର ଗୋଷ୍ଠୀଙ୍କ ଉପନିବେଶରେ ପରିଣତ ହେବ, ତାହା ହିଁ ବାସ୍ତବ କ୍ଷେତ୍ରରେ ଘଟି ଚାଲିଛି । ଯେତେ ଯୋଜନା, ସେତେ ଠିକାଦାର, ସେତେ ଅଣଆଦିବାସୀ କର୍ମଚାରୀ । ଏପରିକି ଶିକ୍ଷାର ବିସ୍ତାର ପାଇଁ ଖୋଲାଯାଇଥିବା ପ୍ରାଥମିକ ସ୍କୁଲ୍‌ର ଶିକ୍ଷକମାନଙ୍କ ମଧ୍ୟରୁ କେତେକ ଶୋଷକ ଗୋଷ୍ଠୀର ଅଂଶ ପାଲଟି ଯାଇ ଆଦିବାସୀର ଜମିଜାଗା ଦଖଲ କରିବସୁଛନ୍ତି । ତିରୋଟି ସମୟରେ ଧାନ ପାଇଁ ଲଗାଣି ଲଗାଇ ଦେଉଛନ୍ତି । ଅମଳ ସମୟରେ ୧୦୦/୨୦୦ଟଙ୍କା ବିନିମୟରେ ବସ୍ତାଏ ଧାନ ଆଦାୟ କରୁଛନ୍ତି । ସୁତରାଂ ଆଦିବାସୀର ପୁରୁଣା ମୂଲ୍ୟବୋଧ ଆଉ କାମ ଦେଉନି । ନିର୍ବାଚନ ଜରିଆରେ ନବ ନିର୍ବାଚିତ ସରପଞ୍ଚ ଓ ୱାର୍ଡ଼ମେମ୍ବରମାନେ ତଥା ଛୋଟବଡ଼ ଇସୁକୁ ନେଇ କାର୍ଯ୍ୟରତ ଏନ୍.ଜି.ଓ କର୍ମୀମାନେ ଆଉ ଏକ ସମାନ୍ତରାଳ ନେତୃତ୍ୱ ସୃଷ୍ଟିକରି ପାରମ୍ପାରିକ ନେତୃତ୍ୱକୁ ଚେଲେଞ୍ଜ କରୁଛନ୍ତି । ଏପରିକି

ସ୍ତ୍ରୀମାନଙ୍କ ସେଲ୍ଫ୍ ହେଲ୍ପ୍ ଗ୍ରୁପ୍ ଆଉ ଏକ ସମାନ୍ତରାଳ ସୁଧଖୋରି ବ୍ୟବସ୍ଥା ପ୍ରଚଳନ କରି ଦେଇଛି । ଶହେଟଙ୍କାରେ ମାସକୁ ସୁଧ ୪ବା ୫ଟଙ୍କା । ଅନାଦୟେ ଗାଈ ଗୋରୁ ନିଲାମ । ଏ ବାଟ ବତାଇଛନ୍ତି ଜାତୀୟ ବେଙ୍କ୍‌ର କର୍ମକର୍ତ୍ତାମାନେ । ଫଳରେ ସିଧାସଳଖ ନ ହେଲେ ମଧ ଚୁପ୍‌ଚାପ୍ ଏକ ଅନ୍ତର୍ଦ୍ୱନ୍ଦ୍ୱ ଏଇ ସମାଜରେ କାର୍ଯ୍ୟ କରି ଚାଲିଛି । ଆତ୍ମନିର୍ଭରଶୀଳ ଅର୍ଥନୀତି ଭୁଷୁଡ଼ି ପଡ଼ିବା ସଙ୍ଗେସଙ୍ଗେ ଜନ୍ମ ନେଉଚି ଅନେକ ନୂଆ ମୂଲ୍ୟବୋଧ, ପୁରୁଣା ପ୍ରତିକାର ବ୍ୟବସ୍ଥା ବହୁ ସ୍ଥଳରେ ଆଉ କାମ ଦେଉନି ।

**ଅରଣ୍ୟ ବା ଆଟବୀକ ସଂସ୍କୃତି:**

ଅରଣ୍ୟ ହେଉଚି ଆଦିବାସୀ ସଂସ୍କୃତିର ଧାତ୍ରୀ । ସଲପ ତା'ର ମା' କ୍ଷୀର, ମହୁଲ ଓ ସର୍ଗୀ ହେଉଚନ୍ତି ଦେବତା । ପାହାଡ଼ କୋୟାର ଗୋତ୍ର । ସେହିପରି ବାଘ, ଚିତାବାଘ(ବୁରୁଦା), ହେଟାବାଘ(ତୁର୍କା), ଭାଲୁ(ଖେମୁଡୁ), ମାଙ୍କଡ଼(ପ୍ରାସ୍କା), ମାଛ(ଗୁଣ୍ଡା), କାଡ଼ା ବା ଠେକୁଆ, ନାଗ, କୁଟ୍ରା ବା ମୁର୍ମୁ ତା'ର ଗୋତ୍ର । ଅର୍ଥାତ୍ ଭାଇବନ୍ଧୁ କୁଟୁମ୍ବ । ବାଉଁଶ ହେଉଚି ତା'ର ଆଶ୍ରୟ ଯିଏ ତା'ର ଧନୁତୀର, ବାଡ଼, ଘର ଓ ଅର୍ଥନୈତିକ ଜୀବନ ପାଇଁ ଉପାଦାନ ଯୋଗାଇ ଦିଏ । ଛତି ବା ଛତୁ, କନ୍ଦା ଓ କରଡ଼ି ବା ବାଉଁଶଗଜା ତା'ର ଖାଦ୍ୟ; ତେଣୁ ପ୍ରକୃତି ତା'ର ଦେବତା । ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ଜଙ୍ଗଲ, ଅରଣ୍ୟ, ଝରଣା, ଧାନକ୍ଷେତ ଓ ଗଛ ତା'ର ଦେବତା । ଜୀବଜନ୍ତୁମାନେ ତା'ର ଭାଇବନ୍ଧୁ କୁଟୁମ୍ବ । ଏଇମାନଙ୍କ ସକାଶେ ତା'ର ଜୀବନ ଓ ଜୀବିକା । ମଣିଷ ପ୍ରକୃତିର ଓ ପ୍ରକୃତି ମଣିଷର । ଆମେ ପୃଥିବୀର ଓ ପୃଥିବୀ ଆମର । ମଣିଷ ପୃଥିବୀର ଅଧିକାରୀ ନୁହଁ । ପୃଥିବୀ ମଣିଷର ଅଧିକାରୀ, ପ୍ରକୃତି ସର୍ବଶକ୍ତିମାନ । ତେଣୁ ଗଛକାଟିବା ବେଳେ ସେ କେବଳ ନିଜର ଆବଶ୍ୟକତା ଅନୁସାରେ କାଟେ । ଶୀତଦିନେ ଦାରୁ ହେଉଚି ତା'ର ଶୀତବସ୍ତ୍ର । ଶୁଖାଦାରୁକୁ ହିଁ ସେ କାଟେ । କେବେ କେମିତି ଘର ତିଆରି ପାଇଁ କଞ୍ଚାଦାରୁ କାଟିଥାଏ, ତେବେ ଜଙ୍ଗଲକୁ ସେ ବଂଚାଇ ରଖେ । ଜଙ୍ଗଲ ମାଫିଆମାନଙ୍କୁ ପ୍ରାଣପାତ କରି ବିରୋଧ କରିବାକୁ ପଛାଏନି । ଜଙ୍ଗଲକୁ ଜଗେ, ସାମାଜିକ ଜଙ୍ଗଲ ସୃଷ୍ଟିକରେ । ଏ ନେଇ ମାଲ୍‌କାନ୍‌ଗିରିରେ କୋୟା, ଡିଡୋୟୀ ଆଦିବାସୀମାନେ ବହୁ ବୀରତ୍ୱପୂର୍ଣ୍ଣ ଲଢ଼େଇ କରିଛନ୍ତି, ତୁଳସାପର୍ବତରେ, ପଦ୍ମଗିରି ଜଙ୍ଗଲରେ ଓ ବାଲିମେଳା ଜଙ୍ଗଲରେ । ସସ୍‌ପେଣ୍ଡ ବା ଦୋଷୀ ସାବ୍ୟସ୍ତ ହୋଇଛନ୍ତି ବହୁ ଫରେଷ୍ଟ କର୍ମଚାରୀ ଗାର୍ଡ଼ଠାରୁ

ଡି.ଏଫ୍ ଓ କଂଜରଭେଟର୍ ଯାଏ । କିନ୍ତୁ କମ୍ପାନୀ ତଥା ଜଙ୍ଗଲବିଭାଗ ଯେଉଁ ବୃକ୍ଷରୋପଣ କରନ୍ତି, ସେସବୁ କେବଳ କାରଖାନା ପାଇଁ କଞ୍ଚାମାଲ । ଆଦିବାସୀ ଚାହେଁ ଫଳଗଛ, ସର୍ଗୀ, କେନ୍ଦୁ ଓ ମହୁଲଗଛ । କିନ୍ତୁ ବନ୍ୟଜଙ୍ଗଲକୁ ନଷ୍ଟକରି ବ୍ୟବସାୟିକ ଜଙ୍ଗଲ ତିଆରି ତା'ର ଜୀବିକାକୁ ବିପନ୍ନ କରେ । ଅଥଚ ଆଇନ୍‌କୁ ଆଖିଠାର ମାରି କମ୍ପାନୀମାନେ ବିଭିନ୍ନ ଏନ୍.ଜି.ଓ. ଜରିଆରେ ତା'ର ଜମି ଲିଜ୍ ନେଇ ବ୍ୟବସାୟିକ ବୃକ୍ଷ ଚାଷର ଯୋଜନା କରନ୍ତି । ସେଥିପାଇଁ ଚାଷୀ ସହ ଇଂରାଜୀ ଭାଷାରେ ରାଜିନାମା ସ୍ୱାକ୍ଷରିତ ହୁଏ ଏବଂ ଥରେ ଜମି ଦେବାପରେ ତା' ଆଉ ଫେରେନା । ଏଥିପାଇଁ ବୈପାରୀଗୁଡ଼ା ଓ ରାମଗିରି ଅଞ୍ଚଳରେ ଆନ୍ଦୋଳନ ହୋଇ ଥଣ୍ଡା ପଡ଼ିଗଲାଣି । କଡ଼ାକଡ଼ି ଜଙ୍ଗଲ ଆଇନ୍ ଆଦିବାସୀଙ୍କୁ ଜଙ୍ଗଲଠାରୁ ଦୂରେଇ ଦେବାର ଚେଷ୍ଟାକରେ । ତା' ବିରୋଧରେ ମଧ୍ୟ ଆଦିବାସୀ ବିକ୍ଷୋଭ ଲାଗିରହେ । ଆଦିବାସୀର ଜଙ୍ଗଲ ଅଧିକାର କେବଳ କାଗଜପତ୍ରରେ ହିଁ ରହିଥାଏ । ଜଙ୍ଗଲ ଅଧିକାର ଆଇନର ଆଦିବାସୀମାନଙ୍କ ପ୍ରତି କରାଯାଇଥିବା ଐତିହାସିକ ଅନ୍ୟାୟକୁ ସରକାର ଯେ ସ୍ୱୀକାର କରିଛନ୍ତି, ତାହା ଯେପରି ହାସ୍ୟାସ୍ପଦ ସେପରି ଛଳନାତ୍ମକ । ଜମି ବଣ୍ଟନ ପ୍ରକ୍ରିୟାରୁ ହିଁ ତାହା ସ୍ପଷ୍ଟ । ସବୁ ପଟ୍ଟା ତଳେ ଗୋଟିଏ ଷ୍ଟାମ୍ପ - ଏହି ପଟ୍ଟା ଓଡ଼ିଶା ହାଇକୋର୍ଟରେ ଚାଲିଥିବା କେଶ୍ ସହ ଜଡ଼ିତ । ସୁତରାଂ ଏହା ଏକ ସର୍ତ୍ତମୂଳକ ଦଲିଲ ।

**ଫିଉଜ୍ ବ୍ୟବସ୍ଥା :**

ଦେଶିଆ ରଇତ ଅତୀତ କାଳରେ ଖୁବ୍ ଭୟାଳୁ ଥିଲା । ସାହୁକାର ଓ ଅଧିକାରୀମାନଙ୍କ କଥାରେ ତା'ର ଆଶଙ୍କା ଆସିଥାଏ । ସେ ଆଶଙ୍କାର ରୂପ ନଥାଏ କି ଆଭାସ ନ ଥାଏ । ସତେ କି ସେମାନେ ଗୋରୁ ଛେଳି, ଯେପରି ଇଚ୍ଛା ସେପରି ସେମାନଙ୍କୁ ଲୁଟିହେବ । ଯେଉଁଠୁ ଇଚ୍ଛା ସେଇଠୁ ଯେଉଁଠିକି ଇଚ୍ଛା ସେଇଠିକି ତଡ଼ି ଦେଇ ହେବ । ଏହା ବେଳେ ବେଳେ ଏପରି ଏକ ସାମାଜିକ ଆଶଙ୍କା ବା ଟେନ୍‌ସନ୍ ସୃଷ୍ଟିକରେ ଯେ ସେଥିରୁ ମୁକୁଳିବା ପାଇଁ ସେ ପ୍ରଚୁର ମଦ ଓ ସଲପର ଆଶ୍ରୟ ନିଏ । ସାଧାରଣ ଆଶଙ୍କାକୁ ଏହା କିଛି ସମୟ ପାଇଁ ଦୂରେଇ ଦିଏ । ଫିଉଜ୍ ଉଡ଼ିଯିବା ଭଳି ଏହା ସେମାନଙ୍କୁ କିଛି ବେଳ ପାଇଁ ପ୍ରଶାନ୍ତି ଆଣିଦିଏ । ସେ ନାଚେ, ଗାଏ, ଥଟ୍ଟା ତାମ୍‌ସା କରେ ଆଉ ଭୁଲିଯିବାକୁ ଚେଷ୍ଟାକରେ ଆସନ୍ନ ବିପଦକୁ । ଏଥିରୁ ମଧ୍ୟ ଫାଇଦା ଉଠାନ୍ତି ମଦ ବିକ୍ରେତା ସାହୁକାରମାନେ । କିନ୍ତୁ ଆଦିବାସୀମାନେ କିଛିକାଳ

ବଞ୍ଚିଯାଆନ୍ତି । ହୁଏତ ସର୍ବଶେଷ ସମାଧାନ ରୂପେ ସେମାନେ ଲଢ଼ନ୍ତି କିମ୍ବା ଗାଁ ଛାଡ଼ି ପଳାୟନ କରନ୍ତି – ଆହୁରି ଘଞ୍ଚ ଜଙ୍ଗଲକୁ । ନୂଆକରି ପୋଡୁ କରନ୍ତି । ନୂଆ ଜମି ଖୋଜନ୍ତି । କିନ୍ତୁ ଯେତେବେଳେ ଜଙ୍ଗଲ ଭିତରକୁ ଯିବା ଆଉ ସମ୍ଭବ ହୁଏନି କିମ୍ବା ନୂଆ ଜମି ମିଳେନି, ସେମାନେ ବାଧହୋଇ ବିକଳ୍ପ ନେତୃତ୍ୱ ଖୋଜନ୍ତି ଲଢ଼େଇପାଇଁ । ଏହି ଫିଉଜ୍ ବ୍ୟବସ୍ଥା ବ୍ୟକ୍ତିଗତ ଜୀବନର ଛୋଟ ଛୋଟ ବିପଦର ଟେନ୍‌ସନ୍‌କୁ ଟାଳିବା ପାଇଁ ବିଶେଷଭାବେ ଲାଗୁ ହୋଇଥାଏ । ତେବେ ସାମାଜିକ ଉତ୍ସବରେ ଓ ପରବରେ ଏହାର ବ୍ୟବହାର ଏକ ସାଂସ୍କୃତିକ ମହତ୍ତ୍ୱ ଆହରଣ କରିଥାଏ ।

**ସାମୂହିକତା ବା ଏକତ୍ୱ :**

ଆଦିବାସୀ ସଂସ୍କୃତିର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ସମୂହ ଭାବେ ଚିନ୍ତା କରିବା ଓ ବିପଦରୁ ମୁକୁଳିବା ପାଇଁ ବ୍ୟବସ୍ଥା କରିବା । ଏହି ସାମୂହିକତା ତାକୁ ବହୁ ବିପଦରୁ ମୁକ୍ତି ଦେଇଚି । ବହୁ ବଡ଼ବଡ଼ ଆନ୍ଦୋଳନର ଅଂଶୀଦାର କରିଛି । କୟାବୀର ତାମାଦୋରାଙ୍କ ଠାରୁ ଆରମ୍ଭକରି ଚକରା ବିଶୋଇ, ଆଲୁରି ସୀତରାମେୟା ରାଜୁ, ସିଦୁକାନୁ ଓ ବିର୍ସାମୁଣ୍ଡା ପରି ନେତୃତ୍ୱ ମଧ୍ୟ ଦେଖା ଦିଅନ୍ତି । ଆଦିବାସୀ ନିଜର ଜମିଜଙ୍ଗଲ, ସଂସ୍କୃତି ଓ ପରମ୍ପରାକୁ ରକ୍ଷା କରିବା ପାଇଁ ଧନୁତୀର ଧରି ଓହ୍ଲେଇ ପଡ଼େ । ସେ ପ୍ରବଳ ପ୍ରତାପୀ ବ୍ରିଟିଶ୍ ଶାସକ ହୁଅନ୍ତୁ କି ବର୍ତ୍ତମାନର ରାଷ୍ଟ୍ର ହେଉ । ଏଇ ସାମୂହିକତାର ଅନୁଭବ ଆଦିବାସୀ କ୍ଷେତ୍ରରେ ଅତି ତୀବ୍ର । କାହାର ମୃତ୍ୟୁ ହେଲେ ଗାଁଯାକ ଲୋକ ଚାରିଆଡ଼େ ଖେଦି ଯାଆନ୍ତି ସମ୍ବାଦ ଦେବାପାଇଁ, ଶବକୁ ନେଇ ତା'ର କ୍ରିୟାକର୍ମ କରିବା ପାଇଁ ପଟୁଆର ନେଇ ଆଗେଇ ଯାଆନ୍ତି । ଦଳେ ଯାଇ ଦାରୁ ସଂଗ୍ରହ କରି ଆଣନ୍ତି । ପିତାଭାତ ପାଇଁ ରୋଷେଇବାସ ଗାଁ ତରଫରୁ କରାଯାଏ । ଯାହାର ଯେତେ କ୍ଷମତା । ସେହିପରି ବିଭା ପୁଆଣି, ପର୍ବପର୍ବାଣିରେ ସଭିଙ୍କର ଯୋଗଦାନ ହୁଏ । ବେଣ୍ଟ ପରବରେ ତ ସମସ୍ତେ ଭାଗ ନେବାକୁ ବାଧ ହୁଅନ୍ତି । ଏହାହିଁ ତା'ର ସାମୂହିକତା, ସମୂହ ଭାବେ ସମସ୍ତ କାର୍ଯ୍ୟ ଉଠାଇବାର ପ୍ରବଣତା ।

ଆମେରିକାର ନିଗ୍ରୋମାନଙ୍କୁ ଦାସ ବ୍ୟବସ୍ଥାରୁ ମୁକ୍ତ କରିବା ପାଇଁ ୧୮୬୨ରୁ ୬୪ ଯେଉଁ ଗୃହଯୁଦ୍ଧ ହୋଇଥିଲା; ତାହା ସିନା ଏକ ଆଇନ୍ ତିଆରି କରିଦେଲା, କିନ୍ତୁ ପ୍ରକୃତ ଦାସ ମୁକ୍ତି ତତ୍‌ପରବର୍ତ୍ତୀ ୧୦୦ବର୍ଷ ପର୍ଯ୍ୟନ୍ତ ହୋଇପାରି ନଥିଲା । ଉତ୍ତର ଓ ଦକ୍ଷିଣର ଅନେକ ରାଜ୍ୟ ନିଜସ୍ୱ ଆଇନ୍‌ରେ ଦାସପ୍ରଥାକୁ କାଏମ୍ ରଖିଥିଲେ ।

ସେମାନଙ୍କୁ ଭୋଟ ଓ ସମ୍ପତ୍ତିର ଅଧିକାର ଦିଆଯାଇନଥିଲା । ନିଗ୍ରୋମାନଙ୍କୁ ଏହା ବିରୋଧରେ ୧୯୮୦ ପର୍ଯ୍ୟନ୍ତ ଆନ୍ଦୋଳନ ଚଳାଇବାକୁ ପଡ଼ିଥିଲା । ସେମାନଙ୍କୁ ସମ୍ପୂର୍ଣ୍ଣ ମୁକ୍ତ କରିବା ପାଇଁ ନିଗ୍ରୋନେତା ଜନ୍ ହୋପ୍ ଡାକରା ଦେଇଥିଲେ । "ଉଠ ଭାଇମାନେ, ଆମେ ଏଇ ଦେଶକୁ ଅଧିକାର କରିବା, ଆମ ଲହୁଲୁହରେ ନିର୍ମିତ ସମ୍ପତ୍ତିକୁ ଅଧିକାର କରିବା, ଅସନ୍ତୁଷ୍ଟ ହୁଅ, ଅସନ୍ତୋଷରେ ଫାଟିପଡ଼ । ଝଡ଼ପୂର୍ଣ୍ଣ ସମୁଦ୍ର ପରି ଅଶାନ୍ତ ହୁଅ, ଅସ୍ଥିର ହୁଅ, ସମସ୍ତ ଅନ୍ଧବିଶ୍ୱାସର କଠିନ ପ୍ରାଚୀରକୁ ଭାଙ୍ଗିରୁଜି ପର୍ବତ ଭଳି ଉତ୍ତାଳ ତରଙ୍ଗରେ ମାତିଉଠ ।" ଏବଂ ନିଗ୍ରୋମାନେ ମାତି ଉଠିଥିଲେ । ଫଳରେ ଦାସପ୍ରଥା ଆଜି ସମ୍ପୂର୍ଣ୍ଣ ରୂପେ ଲୋପ୍ ପାଇଛି । ସେମାନଙ୍କ ଗୋଷ୍ଠୀ ଓ ପରିବାରକୁ ବାରମ୍ବାର ଛିନ୍ନକରି ସେଇ ସଂସ୍କୃତିକୁ ମୃତ ବୋଲି ଘୋଷଣା କରିଥିବା ସାମ୍ରାଜ୍ୟବାଦୀ ଓ ତାଙ୍କର ପୋଷା ବୁଦ୍ଧିଜୀବୀମାନେ ଆଜି ଅବାକ୍ ହୋଇ ଦେଖୁଛନ୍ତି । ପୁଣିଥରେ ସେମାନଙ୍କ ସଂସ୍କୃତିର ସାମୂହିକତାବାଦୀ ଭିତ୍ତିଭୂମି ସେମାନଙ୍କୁ ଏକାଠି କରିଛି ଓ ପୁନରୁଦ୍ରେକର ଜୁଆର ଛୁଟେଇ ଦେଇଛି ।

ଠିକ୍ ସେହିପରି ଆଦିବାସୀମାନଙ୍କ କ୍ଷେତ୍ରରେ ଏହି ଅନୁଭବ ଯେ "ମୁଁ ଆଦିବାସୀ, ମୋ ଜାତି ଓ ମୁଁ ଏକାଠି ବିପଦଗ୍ରସ୍ତ, ମୋତେ ଉଠିବାକୁ ହେବ, ପ୍ରାଚୀର ଭାଙ୍ଗିବାକୁ ପଡ଼ିବ ।" "ଥାନ୍ତୁ ପଛେ ଜଣେ ଅଧେ ଲୋଚା ବେଇମାନ୍, କିନ୍ତୁ ମୋତେ ଓ ମୋର ଗୋଷ୍ଠୀକୁ ଆଗେଇ ଯିବାକୁ ପଡ଼ିବ ।" ସେତେବେଳେ ସବୁ ଶିକଳ ଝଣ୍‌ଝାଣ ହୋଇ ତୁଟିପଡ଼େ ।

**ବିସ୍ଥାପନ ଓ ଏହାର ପ୍ରଭାବ:**

ସ୍ୱାଧୀନତା ପରେ ପରେ ବିସ୍ଥାପନ ଯଦି ସବୁଠାରୁ ବେଶି କେଉଁ ଜନଗୋଷ୍ଠୀକୁ ପ୍ରଭାବିତ କରିଛି, ତାହା ହେଉଚି ଏଇ ଆଦିବାସୀ ଗୋଷ୍ଠୀକୁ । ପୂର୍ବତନ ଆଦିବାସୀ କମିଶନର ବି.ଡ଼ି.ଶର୍ମାଙ୍କ ମତରେ ୧୯୯୦ର ଜଗତୀକରଣ, ଘରୋଇକରଣ ଓ ନୂଆ ଅର୍ଥନୈତିକ ପଲିସି ପ୍ରବର୍ତ୍ତନ ପର୍ଯ୍ୟନ୍ତ ଆଦିବାସୀ ବିସ୍ଥାପନ ହୋଇଥିଲା ୨୦% । ବାକି ୮୦% ଗତ ୧୮ ବର୍ଷ ଧରି ବିସ୍ଥାପନ ଆଶଙ୍କାରେ ଆତଙ୍କିତ । ହୁଏତ ସେମାନେ ସଂଗ୍ରାମରତ ବା ନର୍ମଦା ଯୋଜନାର ବିସ୍ଥାପିତମାନଙ୍କ ଭଳି ଅଞ୍ଚଳ ଛାଡ଼ି ଚାଲିଗଲେଣି । ୫ମ ସିଡ୍ୟୁଲ୍ ଅଞ୍ଚଳକୁ ବିକାଶ ନାମରେ କରାଯାଇଥିବା ରେଲ / ରୋଡ଼ ନିର୍ମାଣର ମୂଳ ଲକ୍ଷ୍ୟ ହେଲା ପ୍ରକୃତରେ ଏଠାକାର ଖଣିଜସମ୍ପଦ ଲୁଣ୍ଠନ । ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ସମସ୍ତ ସରକାରୀ ପ୍ରଚେଷ୍ଟା ଅନାଗ୍ରହଦୁଷ୍ଟ, ସୁତରାଂ ବିଫଳ । ଆଦିବାସୀ

ନିରକ୍ଷରତା ପ୍ରାୟ ଯେଉଁଠି ଥିଲା ତା'ଠାରୁ ୧ କି ୨ ଭାଗ ହ୍ରାସ ପାଇଚି । ସ୍ୱାସ୍ଥ୍ୟସେବା ନାହିଁ କହିଲେ ଚଳେ । ଅସମ ଆଇନ୍, ଠକାମୀ ଓ ବଳ ପ୍ରୟୋଗକାରୀ ନ୍ୟସ୍ତସ୍ୱାର୍ଥର ବଳ ପ୍ରୟୋଗ ବଢ଼ି ଚାଲିବା ପରେ ଦେଶ ଭିତରେ ହିଁ ଗଢ଼ି ଉଠିଛି ଏକ ଉପନିବେଶ । ସୁତରାଂ ଆଦିବାସୀ ବିସ୍ଥାପନ, ଅସଙ୍ଗଠନ ଓ କାଙ୍ଗାଳୀକରଣ ଏକଦା ସମୃଦ୍ଧ ଆଦିବାସୀ ସଂସ୍କୃତିକୁ ଚାରିପଟୁ ପଙ୍ଗୁ କରିଦେବାକୁ ଚେଷ୍ଟା କରୁଚି । ସିଡ଼ିଉଲ୍ ଆଦିବାସୀ ଅଞ୍ଚଳର ଅନେକାଂଶ ନଦୀବନ୍ଧ ଯୋଜନାର ବୁଡ଼ି ଅଞ୍ଚଳ ତଳେ ବିଲୀନ । ବାଲିମେଳା ବନ୍ଧ ଯୋଜନାରେ କୋଣ୍ଡାକୋମାରୁର ସମୃଦ୍ଧ ୯୧ଟି ଆଦିବାସୀ ଗାଁ ଆଜି ଜଳମଗ୍ନ ତ ବାକି ୧୫୨ଖଣ୍ଡ ଗାଁ ସ୍ଥଳଭାଗରୁ ବିଚ୍ଛିନ୍ନ ହୋଇ ଟାପୁ ଅଞ୍ଚଳ ରୂପେ ଖ୍ୟାତ । ବିପନ୍ନ ଏଇ ୨୪୩ଟି ଗାଁର ବିନାଶରେ ଜଳସେଚିତ ହେଲା କେତେ ଜମି ? ମାଛକୁଣ୍ଡ ଯୋଜନାରେ ବିସ୍ଥାପିତ ଗାଁମାନଙ୍କର ସଠିକ୍ ହିସାବ ମଧ୍ୟ ଆଜିଯାଏଁ ହୋଇପାରି ନାହିଁ । ଠିକ୍ ହୀରାକୁଦ ଭଳି । ଲୋକ ମୁଖରୁ ଶୁଣାଯାଏ ଯେ ଏହାଦ୍ୱାରା ୪୦୦ରୁ ଅଧିକ ଗାଁ ବିସ୍ଥାପିତ ହୋଇଛନ୍ତି । ପାଟେରୁ ଯୋଜନାର ଅର୍ଥ ୩ଥର ବାଟମାରଣା ହୋଇସାରିବା ପରେ ଏବେ ମୂଳ ପ୍ରୋଜେକ୍ଟର ମାତ୍ର ୧୦% ଅଞ୍ଚଳ ଜଳସେଚିତ ହେଉଚି । ଆଉ ବିଦ୍ୟୁତ୍ ଉପରେ ବା ଆଦିବାସୀର ଭାଗ କାହିଁ ? ତାହା ତ ଶିଳ୍ପପତି ପାଇଁ ଉଦ୍ଦିଷ୍ଟ । ସେହିପରି ଇନ୍ଦ୍ରାବତୀ ଓ ଅଂଚଳର ପ୍ରାୟ ୨୦୦ଟି ଗାଁ ଓ ଉପର କୋଲାବର ୧୦୦ଟି ଗାଁ ଜଳମଗ୍ନ ବା ବିଚ୍ଛିନ୍ନ । ତା' ସାଥୀକୁ ରହିଚି ଧୂଆଁପତ୍ର ଚାଷ ପାଇଁ ବିଖ୍ୟାତ ପ୍ରାୟ ୧୫୦ଟି ସମୃଦ୍ଧ ଗାଁ, ଯାହାକୁ ନବରଙ୍ଗପୁର - ଦଶମନ୍ତପୁର ଅଞ୍ଚଳରେ ଇନ୍ଦ୍ରାବତୀ ବନ୍ଧ ନିର୍ମାଣ ପରେ କୁହାଯାଉଚି ଶୁଖାଅଞ୍ଚଳ । ଇନ୍ଦ୍ରାବତୀ, ମୁରାନ୍, କପୁର ଓ ପୋଡ଼ାଗଡ଼ର ତଳଭାଗରେ ଥିବା ଏହି ବ୍ୟାପକ ଶୁଖାଅଞ୍ଚଳ କଥା ବୁଡ଼ି ଅଞ୍ଚଳର ଆନ୍ଦୋଳନକାରୀ ଆଦିବାସୀମାନେ ୧୯୮୮-୯୧ ବେଳକୁ ବାରମ୍ବାର ଦର୍ଶାଇ ଦେଇଥିଲେ ମଧ୍ୟ କୌଣସି ଅମଲାତନ୍ତ୍ରୀ ଏଥିପ୍ରତି କର୍ଣ୍ଣପାତ କରିନଥିଲେ । ଆଜି ଶୁଖା ଅଞ୍ଚଳର ଅର୍ଥନୀତି ମଧ୍ୟ ଶୁଖା ପଡ଼ିଛି । ଲୋକେ ଧାଉଁଛନ୍ତି ଦାଦନ । ବିକାଶର ଶିକାରରେ ଆଦିବାସୀମାନଙ୍କୁ ବିଭିନ୍ନ ସବ୍‌ପ୍ଲାନ୍ ଅନ୍ତର୍ଗତ କରାଯାଇ ଅଷ୍ଟମ ଦଶକରେ ପୁଣିଥରେ ବିକାଶର ଅଂଶୀଦାର ହେବାପାଇଁ ଯେଉଁ ଚେଷ୍ଟା କରାଗଲା, କମିଶନରଙ୍କ ଭାଷାରେ, ତାହା ମଧ୍ୟ ବହିରାଗତ କର୍ମଚାରୀ, ଠିକାଦାର ଓ ଅଧିକାରୀମାନଙ୍କ ଦ୍ୱାରା ପୁଣିଥରେ ବ୍ୟର୍ଥ ପାଲଟି ଗଲା । କମ୍ପାନୀର ପ୍ରବେଶ, ପ୍ରାକୃତିକ ସମ୍ପଦର ଅପହରଣ ଓ ଖଣିଖାଦାନ ଖୋଲା ଯିବା ଫଳରେ ଆଦିବାସୀ

ସଂସ୍କୃତିର ଧାତ୍ରୀ ଯେଉଁ ବିପୁଳ ଅରଣ୍ୟ ଓ ପ୍ରକୃତି, ତାହା ଧ୍ୱଂସ ହେବାକୁ ଲାଗିଲା । ଅରଣ୍ୟ ବିହୀନ ଏକ ଆଟବୀକ ସଂସ୍କୃତିର ବିଳାପ କିଏ ବା କାହିଁକି ଶୁଣିବ ? ଛତିଶଗଡ଼ର ଜଣେ ସରକାରୀ କର୍ମକର୍ତ୍ତା ଘୋଷଣା କଲେ - "ଆଦିବାସୀମାନଙ୍କର କଣଟା ଅଛି ଯେ ସେମାନେ ହରାଇ ବସିବେ ?"

ତେଣୁ ତ ଆଦିବାସୀ ଆଜି ତା'ର କିନ୍ଦ୍ରି ଗୀତରେ ଗାଉଛି,

ବଲ୍ ବାଙ୍ ନୁନ୍ ଆମେ କି ଖାଇବୁ
ମାଣ୍ଡିଆ ପେଜ୍‌କେ ଖାଉ
ଆଦିବାସୀ ପିଲା କି ପାଠ ପଢ଼ିବ
କାମ୍ କର୍‌ବାକେ ଥାଉ
ଆସା ଆସାରେ ଚାଷୀ ମୂଲିଆ
କେତେକ୍ ଖୋଜି ଖାଉ କନ୍ଦା କୁରିଆ
ଆମେ ଏକଜୁଟ ବଞ୍ଚିବା ପାଇଁକି
ଲଢ଼େଇ କରୁ କାଇ କାଜେ ମିଶାଆ -

ନିଜ ଗାଁ ଭୂଇଁ ଗୋଷ୍ଠୀ ଓ ଜାତିଭାଇଙ୍କ ଠାରୁ ବିଚ୍ଛିନ୍ନ ହୋଇ ବହୁ ଦୂରରେ ଜମିହରା, ଭିଟାହରା ଓ ଗାଁ ହରାଇବାର ଅନୁଭବ ନେଇ ନୂଆ ଜାଗାରେ ଘର ବାନ୍ଧିବା ପରେ ପୁରୁଣା ନେତୃତ୍ୱ ସେଠି ପୂର୍ବଭଳି ଆଉ ଜାହିର୍ ହୋଇପାରେ ନାହିଁ । ସେହି ଅଞ୍ଚଳର ଭୂମି ପୁତ୍ରମାନଙ୍କ ଦୃଷ୍ଟିରେ ଏମାନେ ପାଲଟନ୍ତି ଆଉଏକ ଅନୁପ୍ରବେଶକାରୀ ଗୋଷ୍ଠୀ । ରାଇଘର ଅଞ୍ଚଳରେ ଭୋତରା ଓ ଗଣ୍ଡମାନଙ୍କ ସହ କଳାହାଣ୍ଡିର ବିସ୍ଥାପିତ କନ୍ଧମାନଙ୍କର ଗତ ଦଶକର ବିବାଦ ଏହାର ପ୍ରମାଣ । ଯେ କୌଣସି ଜାଗାରେ ସେଠାକାର ପୁରୁଣା ଆଦିବାସୀ ଗୋଷ୍ଠୀର ମୂଲ୍ୟବୋଧ ସହ ପ୍ରାଥମିକ ସଂଘର୍ଷ ପରେ ଅବଶ୍ୟ କିଛିଟା ଅପ୍ରକାଶ୍ୟ ବୁଝାମଣା ହୋଇଯାଏ । କିନ୍ତୁ ପୂର୍ବର ଆଧିପତ୍ୟ ଆଉ ଫେରିଆସେନି । କିଛିଟା ଗ୍ରହଣ ଓ ଅଗ୍ରହଣ ମଧ୍ୟରେ ପୁଣି ଚାଲୁ ହୁଏ ଆଉ କିଛି ମୂଲ୍ୟବୋଧର ସ୍ରୋତ, ଖୋଜାପଡ଼େ ନୂଆ ଉପାୟ । ବଞ୍ଚି ରହିବାର ନୂଆ ବାଟ । ବିକଳ୍ପ ।

## ଚେତନାର ବିକାଶ ପର୍ବ :

ଏଇଠୁ ଆରମ୍ଭହୁଏ ସଚେତନତାର କଥା, ଯାହାକୁ ପୂର୍ବରୁ ଛାଡ଼ି ଦିଆଯାଉଥିଲା ସମାଜ ବା ପ୍ରକୃତି ହାତରେ । ଏବକାର ନୂଆ ଆଦିବାସୀ ସମାଜ ତାକୁ ଗ୍ରହଣ କରେ ଏକ ଚେଲେଞ୍ଜ ରୂପେ । ବୁଝିବାକୁ ଚେଷ୍ଟାକରେ କାହିଁକି ତା'ର ଏ ଦୁର୍ବିପାକ ଓ ଦୁର୍ଭୋଗ ? ସୁତରାଂ ଚେତନାର ଏକ ପର୍ବ ଆରମ୍ଭ ହୁଏ । ପୂର୍ବେ ସବୁ ଆନ୍ଦୋଳନ ଥିଲା ସ୍ୱତଃସ୍ଫୂର୍ତ୍ତ । ଏବେ ତାହାହୁଏ ସୁସଂଗଠିତ । କିନ୍ତୁ ବର୍ତ୍ତମାନ ତା' ଆଗରେ ବାଧାର ଅନେକ ପ୍ରାଚୀର । ଗୋଟିଏ ପଟେ ଆହୁରି ନୂଆ ନୂଆ ଯୋଜନା, ସ୍ୱତନ୍ତ୍ର ଅର୍ଥନୈତିକ ଜୋନ୍, ସଂରକ୍ଷିତ ଜଙ୍ଗଲ ଓ ଜଙ୍ଗଲଜମିରୁ ବହିଷ୍କାର ଆଦେଶନାମା ଓ ଅନ୍ୟପଟେ ସରକାରୀ ପୃଷ୍ଠପୋଷକତାରେ ବିଛେଇ ହୋଇ ଯାଉଥିବା ତଥାକଥିତ ଲୋକ ପ୍ରତିନିଧି, ଆଦିବାସୀ ବିଦ୍ୱେଷୀ ଚାକିରିଆ ଓ ଏନ୍.ଜି.ଓ. କର୍ମକର୍ତ୍ତାମାନେ । କିଏ ଯୋଗେଇ ଦେବ ତାକୁ ବିକଳ୍ପ ନେତୃତ୍ୱ ? ସୁତରାଂ ସେଇ ଆଦିବାସୀ ସମାଜ ଭିତରୁ ଜନ୍ମ ନିଅନ୍ତି ନୂତନ ଚିନ୍ତାଧାରାର ନାୟକମାନେ । ଯେପରି ରାୟଗଡ଼ା ଜିଲ୍ଲାର ଦାସୁରାମ ମାଲେକା, ଯିଏ ସୃଷ୍ଟିକରିଥିଲେ ନୂଆ କୁଇଲିପି । ଆନ୍ଦୋଳନର ନୂଆ ନୂଆ ସଂଗୀତ । ଦଳଦଳ ଆଦିବାସୀ ଯୁବକ ଯୁବତୀ ଏବେ ତ ସଂସ୍କୃତିର ପୁନରୁଦ୍ରେକ ପାଇଁ ଲାଗି ପଡ଼ିଛନ୍ତି । ଗଜପତିରୁ ଫୁଲବାଣୀ, ମାଲ୍‌କାନ୍‌ଗିରିରୁ ରାୟଗଡ଼ା, ଛତିଶଗଡ଼ରୁ ଝାଡ଼ଖଣ୍ଡ - ଧୀରେ ଧୀରେ ତାହା ବିସ୍ତାରି ଯାଉଚି । ଜନ୍ମ ନେଉଚି ଶପଥବଦ୍ଧ ବିସ୍ଥାପନ ବିରୋଧୀ ସଂଘର୍ଷ । ପୁଣିଥରେ ଆଦିବାସୀ ଚେଷ୍ଟାକରୁଛି ତା'ର ଆତ୍ମନିର୍ଭରଶୀଳ ଅର୍ଥନୀତି ଓ ସ୍ୱାୟତ୍ତଶାସନକୁ ପୁନରୁଜ୍ଜୀବିତ କରି ଗଢ଼ିତୋଳିବା ପାଇଁ ଏକ ବିକଳ୍ପ । ନିର୍ମାଣ କରିବା ପାଇଁ ତା'ର ହୃତ ସ୍ୱାଭିମାନ ଓ ଅସ୍ମିତା ।

ଏଇ ପ୍ରସଙ୍ଗରେ ମନେପଡ଼େ ଏଟିଡ଼ିସି ତରଫରୁ ଲକ୍ଷ୍ମୀପୁରଠାରେ ଆୟୋଜିତ ଏକ ସଂପାନ କଥା । ସେଠାରେ ସ୍ଥାନୀୟ କିଛି ଆଦିବାସୀ ଯୁବକ ଯୁକ୍ତିକଲେ ଆମେ ଅଣଆଦିବାସୀମାନଙ୍କ ମୂଲ୍ୟବୋଧ ଶିକ୍ଷା କରିବୁ - ହେବୁ ମିଥ୍ୟାବାଦୀ, ଦୁର୍ନୀତିଗ୍ରସ୍ତ । ଲାଗୁ କରିବୁ ଶଠେ ଶାଠ୍ୟମ୍ ସମାଚରେତ୍ ନୀତି । ନୋଚେତ୍ ଆମର ମୁକ୍ତିନାହିଁ । ଆମ ପାଖରେ ଏହାର କିଛି ଉତ୍ତର ନଥିଲା । ବିଷ ଦ୍ୱାରା ସେମାନେ ଚାହାନ୍ତି ବିଷର ପ୍ରତିକାର । ଦଳିତ ଆନ୍ଦୋଳନରେ ତ ଏହା ପାଲଟି ଯାଇଚି ଏକ ମୁଖ୍ୟ ପ୍ରସଙ୍ଗ, ଯାହା ମାୟାବତୀଙ୍କ ବିଭିନ୍ନ ବକ୍ତବ୍ୟରୁ ବାରମ୍ବାର ସୂଚିତ ହେଉଚି । "ସୁବିଧାବାଦୀଙ୍କୁ ସୁବିଧାବାଦ ଦ୍ୱାରା ହିଁ ମୁକାବିଲା କର ।" ଏହା ବିଭିନ୍ନ ଜାଗାରେ ବାସ୍ତବ କ୍ଷେତ୍ରରେ

ମଧ୍ୟ ପ୍ରୟୋଗ କରାଯାଉଚି । ବର୍ତ୍ତମାନ ମୂଲ୍ୟବୋଧର ସଂଘାତ ପର୍ବ ତଥାପି ଚାଲିଛି । ସବୁକିଛି ଧୂମିଳ । ବିସ୍ଥାପନ ଯେଉଁ କ୍ଷତ ସୃଷ୍ଟି କରିଛି ସେଥିରୁ ପ୍ରତିକାର ପାଇଁ କିଛି ହେଲେ ବାସ୍ତବ ଯୋଜନା ସରକାରଙ୍କର ନାହିଁ । କାରଣ ସେଠି ନିଷ୍ଠା ନାହିଁ କିମ୍ବା କୌଣସି ପଲିସିକୁ ଲାଗୁ କରିବା ପାଇଁ ନାହାନ୍ତି ଆଦିବାସୀ ଦରଦୀ ଅଧିକାରୀ । ତେଣୁ ଆମକୁ ଖାଲି ଲକ୍ଷ୍ୟ କରିବାକୁ ପଡ଼ିବ ମୂଲ୍ୟବୋଧ କ୍ଷେତ୍ରରେ ଆସୁଥିବା ପରସ୍ପର ବରୋଧୀ ଚେତନାର ସଂଘର୍ଷକୁ ଏବଂ ହୁଏତ ଏକ ଅନାଗତ ବିସ୍ଫୋରଣକୁ ! କିମ୍ବା ସକ୍ରିୟ ଭାବେ ଆମକୁ ଯୋଗ ଦେବାକୁ ପଡ଼ିବ ଏଇ ସଂସ୍କୃତିର ଉଚ୍ଚ ମୂଲ୍ୟବୋଧ ସମ୍ବଳିତ ଐତିହ୍ୟକୁ ଫେରାଇ ଆଣିବା ପାଇଁ ଏକ ସଚେତନ ଓ ସଙ୍ଗଠିତ ପ୍ରତିରୋଧ ପ୍ରକ୍ରିୟାରେ ।



# ଢେମ୍ସା ଗୀତର ବ୍ୟାପ୍ତି ଓ ଦୀପ୍ତି

ଦେଶିଆ ସଂସ୍କୃତିରେ ଢେମ୍ସା ନାଚ ଓ ଗୀତ ହେଉଚି ସାର୍ବଜନୀନ ଓ ସାର୍ବକାଳୀନ । ନିଜର ଓ ନିଜର 'ମୁଁ' କାରକୁ ଭଲପାଉଥିବା ଅହମିକାଗ୍ରସ୍ତ ମଣିଷଟିଏ ଯେତେ ପ୍ରତିଭାଶାଳୀ ହୋଇଥାଉନା କାହିଁକି, ତା'ର ଆତ୍ମପ୍ରକାଶରେ ଭରି ରହିଥାଏ ନୀଚ୍ଚ ସ୍ୱାର୍ଥପରତା ଓ ଅନ୍ୟର କଥା ନ ଶୁଣି କେବଳ ନିଜକୁ ଶୁଣାଇ ଚାଲିବାର ବ୍ୟଗ୍ରତା । କିନ୍ତୁ ଗୋଷ୍ଠୀ ଜୀବନରେ ଅଭ୍ୟସ୍ତ ଆଦିବାସୀ ଯେତେବେଳେ ଢେମ୍ସା ନାଚୁନାଚୁ ନିଜକୁ ପ୍ରକାଶ କରେ, ସେଠି ଝରଣାର ଧାରା ଭଳି ଗୀତ ସହ ଫିଟି ପଡ଼େ ଅନ୍ୟ ପାଇଁ ନିଜକୁ ନିଃଶେଷ କରିଦେବାର ବ୍ୟଗ୍ରତା, ନିଷ୍କପଟ ଭାବେ ନିଜ ହୃଦୟର ଭାବକୁ ଅଜାଡ଼ି ଦେବାର ଆଗ୍ରହ ଓ ଗୋଷ୍ଠୀ ଜୀବନର ମୂଲ୍ୟବୋଧ ପ୍ରତି ଆପଣାର ଅଙ୍ଗୀକାରବଦ୍ଧତା ।

ତା'ର ବ୍ୟକ୍ତି ଜୀବନର ସ୍ୱପ୍ନ ଓ ସମ୍ଭାବନା ଗୋଷ୍ଠୀ ଜୀବନକୁ ବାଦ୍‌ଦେଇ କଳ୍ପନା କରାଯାଇପାରେନା । ଢେମ୍ସା ନାଚ ସମୟରେ ସେ ନିଜକୁ ସଭିଙ୍କ ସାମ୍ନାରେ ବାଢ଼ିଦିଏ ଓ ବ୍ୟକ୍ତି ଭାବନାକୁ ଗୋଷ୍ଠୀଗୀତର ଆଙ୍ଗିକ ମାଧ୍ୟମରେ ପେଶ୍ କରିଦେବା ପରେ ଧୀରେ ନିଜକୁ ଆଢୁଆଳକୁ ଓହରାଇ ନିଏ । ସେଥିରେ ତା' ନିଜର ବଟୁ ନଥାଏ । ଏହି ବାଟେ ହିଁ ଢେମ୍ସା ଗୀତ ସାର୍ବଜନୀନ ହୋଇଥାଏ । ଜଣକ ପରେ ଜଣେ ସେଥିରେ ପଦ ଯୋଡ଼ି ଚାଲନ୍ତି ଏବଂ ଏହିପରି ଗୀତର ପାରସ୍ପରିକ ପଦ ସଂଯୋଜନା ଯେଉଁଠି ଶେଷହୁଏ ସେଇଠି ଗୀତ ସରେ । ପୁଣି ଆରମ୍ଭହୁଏ ଆଉଜଣେ ଗୀତ୍‌କୁଡ଼ିଆ ବା ଗୀତ୍‌କୁଡ଼ିଆଣୀର ନୂଆଗୀତର ପ୍ରଥମ ପଦ । ଅନ୍ୟମାନେ ପୂର୍ବଭଳି ସେଥିରେ ପଦ ଯୋଡ଼ି ତିଆରି କରନ୍ତି ଆଉ ଏକ ଗୀତ । ଏଇ ପ୍ରକ୍ରିୟା ଢେମ୍ସାଗୀତକୁ ଦିଏ ନିତ୍ୟ ନୂତନତା ଏବଂ ଢେମ୍ସାନୃତ୍ୟକାରୀ ଆଦିବାସୀ ଧାଂଡ଼ା ଧାଂଡ଼ୀ ବା ଡୋକ୍ରା ଡୋକ୍ରୀଙ୍କଠାରୁ ଦାବିକରେ ଆଶୁ କବିତ୍ୱ ।

ହଁ, ଏଇ ଆଶୁ କବିତ୍ୱ ହିଁ ଢେମ୍‌ସାଗୀତର ପ୍ରଥମ ସର୍ତ୍ତ । କାରଣ ଆଦିବାସୀ ଗୀତ୍ କୁଡ଼ିଆ ବା ଗୀତ୍ କୁଡ଼ିଆନି ବ୍ୟକ୍ତିତ୍ୱର ମୋହର ମାରି କିଛି ଗୀତ ଲେଖେନି । କେବଳ ଯାହା ମୁହଁରେ ମୁହଁରେ । ଲେଖିବାକୁ ବସିଲେ ବି ଗୀତ ପଇଟେନି । ଶ୍ରମ ଭାର ଲାଘବ କରିବା ପାଇଁ ଢେମ୍‌ସା ହେଉଚି ଏକ ମହୌଷଧି । ଏହି ମହୌଷଧି ସେବନରେ ସେ କେବଳ ଗୋଷ୍ଠୀର ଜଣେ ସାମାନ୍ୟ ଏକକ ।

"ଏଇସବୁ ଗୋଟିମାନେ ଗାଇଛନ୍ତି ଗୀତ

ଆପଣାର ଶ୍ରମଭାର ଆପଣା ନର୍କକୁ

କରିବାକୁ ଟିକିଏ ହାଲୁକା ।" (ନିଜସ୍ୱ କବିତା)

ଏଇ ଶ୍ରମ ଲାଘବୀକରଣ ପ୍ରକ୍ରିୟା କିପରି ସଂଘଟିତ ହୁଏ ତାହା ଆମଭଳି ଅଣଆଦିବାସୀ ଅଣଶ୍ରମଜୀବୀ ଗୋଷ୍ଠୀ - ବୁଝିବା ଅତ୍ୟନ୍ତ ଜଟିଳ । ଏଠି ଦେହର ଦରଜ ମେଣ୍ଟେଇବା ପାଇଁ ରମାକାନ୍ତ ରଥଙ୍କ "ଶୁଣ୍ଠି ଓ ଗରମପାଣି" ଦରକାର ପଡ଼େନି । ଦରକାର ପଡ଼େ ଢେମ୍‌ସା । ସାରାଦିନର କୃଷି ଭିତ୍ତିକ ଶ୍ରମ ବା ରୋଡ୍ ରାସ୍ତାରେ କୁଲିକାମ ପରେ ଦେହର ଦରଜ, ଦେହର କ୍ଲାନ୍ତି ଢେମ୍‌ସା ନାଚି ଓ ଗାଇ କିପରି ତୁଟା ଯାଇପାରେ ? କିନ୍ତୁ ତାହା ହିଁ ସତ୍ୟ । ଅଧରାତି ଯାଏ, ଏପରିକି କେବେ କେବେ ପୁନିଜନ୍(ପୂର୍ଣ୍ଣମୀ) ରାତିଯାକ ନାଚ ଗୀତରେ କଟେଇ ପରଦିନ ସକାଳେ ପୁଣି ସେମାନେ କୁଲିକାମରେ ବାହାରି ଯାଆନ୍ତି । ବାହାରି ଯାଇପାରିବାର ଦମ୍ଭ ରଖନ୍ତି । ଏଇ ପ୍ରଚଣ୍ଡ ଶକ୍ତି ଓ ସ୍ଫୁର୍ତ୍ତିର ଅଧିକାରୀ ଆଦିବାସୀ ଗୋଷ୍ଠୀ କେବଳ ନିଜର ସମୃଦ୍ଧ ସଭ୍ୟତା ଓ ପରମ୍ପରା, ସାଂସ୍କୃତିକ ମୂଲ୍ୟବୋଧ ଓ ପ୍ରଚଣ୍ଡ ଜୀବନନାଦିତା ସକାଶେ ସମସ୍ତ ଦେଶୀ ବିଦେଶୀ ସାହୁକାରଙ୍କ ଆକ୍ରମଣ ସତ୍ତ୍ୱେ ଆଜିଯାକେ ବଞ୍ଚି ରହିଛନ୍ତି, ଯାହା କି ତଥାକଥିତ ନୃତତ୍ତ୍ୱବିଦ୍‌ମାନଙ୍କ ଆଗରେ ଛିଡ଼ାକରେ ଏକ ବିରାଟ ବିସ୍ମୟବାଚୀ !

ସେମାନଙ୍କ ଜୀବନଚର୍ଯ୍ୟାର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେଉଚି ଢେମ୍‌ସା । ଗୋଷ୍ଠୀର ସ୍ୱପ୍ନ ଓ ସମ୍ଭାବନା, ଭୟ ଓ ଆଶଙ୍କା, ଦୁଃଖ ଓ ସୁଖ, ଶୋକ ଓ କ୍ଷୋଭ, ପ୍ରତିବାଦ ଓ ପ୍ରତିରୋଧ ସବୁକିଛି ଏଇ ଢେମ୍‌ସା ନାଚ ଓ ଗୀତରେ ପ୍ରତିଫଳିତ ହୁଏ । ପାଠପଢ଼ି ନ ଥିଲେ ମଧ୍ୟ ସେମାନେ ମୂର୍ଖ ନୁହଁନ୍ତି । ସେମାନଙ୍କ ହେତୁବାଦିତାର

ଏକ ନିଆରା ଢଙ୍ଗ ରହିଛି । ଥାଇପାରେ ସେଠାରେ କିଛିଟା ଅନ୍ଧବିଶ୍ୱାସ । କିନ୍ତୁ ସେଥିପାଇଁ ଦାୟୀ ସେମାନଙ୍କର ଚରମ ଦାରିଦ୍ର୍ୟ । ଦିଶାରି / ପୂଜାରୀ / ଗୁରୁମାୟୀ/ ଓ୍ୱାଡ଼େ ଇତ୍ୟାଦିଙ୍କୁ ବିଶ୍ୱାସ ନ କଲେ ସେମାନେ ବଞ୍ଚିବେ କିପରି ? ଏପରି ତ ବିଜ୍ଞାନର ଅବାରିତ ଜୟଯାତ୍ରା ସତ୍ତ୍ୱେ ଆମେ ଶିକ୍ଷିତ ଧର୍ମାନ୍ଧ ବା ବର୍ଣ୍ଣାନ୍ଧମାନଙ୍କୁ ପ୍ରତି ଗାଁ ପ୍ରତି ସହରରେ, ଆମେରିକାଠୁ ଆରମ୍ଭକରି ମାଲୟେସିଆ ପର୍ଯ୍ୟନ୍ତ ସବୁ ଦେଶରେ ଦେଖିବାକୁ ପାଉଛୁ – ପ୍ରଭୂତ ପରିମାଣରେ । ସେଥିପାଇଁ କେତେ ନା କେତେ ଯୁଦ୍ଧ ଓ ରକ୍ତପାତ । ଘୃଣାକୁ ଆମେ ପ୍ରେମ ବୋଲି ଢକ୍‌କା ପିଟୁରୁ । ଆମ ମନରେ ଏପରି ଏକ ଭୁଲ୍ ଧାରଣା ବସା ବାନ୍ଧି ରହିଯାଇଛି ଯେ, ବୌଦ୍ଧିକତା ଓ ହେତୁବାଦିତା ବା ବୈଜ୍ଞାନିକ ହେତୁବାଦିତା ହାତ ଧରାଧରି ହୋଇ ଚାଲିଥାନ୍ତି । କିନ୍ତୁ ପ୍ରଚଣ୍ଡ ବୌଦ୍ଧିକତାବାଦୀ ବ୍ୟକ୍ତିଟିଏ ପାଇଁ ବି ସତ୍ୟ ହୋଇପାରେ ତା'ର ଧାର୍ମିକ ସତ୍ୟ ବା ଅନ୍ଧବିଶ୍ୱାସର ସତ୍ୟ । ଯେପରି ଥିଲେ ଲିଓ ଟଲ୍‌ଷ୍ଟୟ । ସତ୍ୟାନୁସନ୍ଧାନର ଶେଷ ପର୍ଯ୍ୟାୟରେ ହିଁ ସେ ଆପଣା ହେତୁବାଦିତାର ସିଡ଼ି ତଳକୁ ଫୋପାଡ଼ି ଦେଇ ଖ୍ରୀଷ୍ଟିୟାନ୍ ବା ବାଇବେଲ୍ ସତ୍ୟକୁ ହିଁ ସର୍ବଶେଷ ସତ୍ୟ ବୋଲି ମାନି ନିଅନ୍ତି । ସେହିପରି ଗଗଲ୍, ଦସ୍ତଭସ୍କି, କାମ୍ୟୁ, ଜର୍ଜ ଅର୍‌ୱେଲ୍ ଓ ଆହୁରି ଅନେକ ବିଶିଷ୍ଟ ଓ ପ୍ରତିଷ୍ଠିତ ଲେଖକ ଆପଣାର ଧର୍ମବିଶ୍ୱାସ ଓ ଜୀବନ ଦର୍ଶନ ପାଇଁ ହେତୁବାଦିତାକୁ ବିସର୍ଜନ କରିଛନ୍ତି – କେବେ ନା କେବେ, କେଉଁଠି ନା କେଉଁଠି । ଅନ୍ୟ ପକ୍ଷରେ ପ୍ରାୟ ସମସ୍ତ ଆଦିବାସୀ ଗୋଷ୍ଠୀ ସାର୍‌ନା ବା ପ୍ରକୃତିର ବିଭିନ୍ନ ଉପାଦାନକୁ ନିଜର ଦେବତା ରୂପେ ମାନିଚାଲେ ଓ ଯେଉଁ ଧର୍‌ତନୀ ବା ପ୍ରକୃତି ତା'ର ଜୀବିକା ଯୋଗାଇଦିଏ, ଯେଉଁ ଧର୍ମୁ ବା ସୂର୍ଯ୍ୟ ଦେବତା ଜୀବନକୁ ସରସ ସୁନ୍ଦର କରି ଗଢ଼ିତୋଳେ, ସେଇ ପ୍ରକୃତିକୁ କେନ୍ଦ୍ରକରି ସେ ତା'ର ହେତୁବାଦିତାର ଡେର୍ନା ବା ସିଡ଼ି ନିର୍ମାଣ କରିଚାଲେ । ଏହି ପରମ୍ପରାରେ ଅଗ୍ର ଭୂମିକା ଗ୍ରହଣ କରନ୍ତି ନାୟକ – ଦିଶାରି – ଗୁରୁମାୟୀ – ପୂଜାରି ଇତ୍ୟାଦି । ଗୋଷ୍ଠୀ ସେମାନଙ୍କର ବିଧାନ ଓ ପ୍ରତିବିଧାନ ଗ୍ରହଣ କରିନେଇ ଜୀବନର ପ୍ରତ୍ୟେକ ବିଭାବକୁ ଶୃଙ୍ଖଳିତ କରିବାର ଚେଷ୍ଟାକରେ । ସେ ବିବାହ ହେଉ କି ମୃତ୍ୟୁ, ପିଲା ଜନ୍ମ ହେଉ କି ନାଁ ଦିଆ, ଚଇତିପରବ ହେଉ କି ପୁଷ୍ ପରବ – ଗୋଷ୍ଠୀ ସେଥିପାଇଁ କିଛି ବିଧାନ ବାନ୍ଧିଦିଏ, ବୃହତ୍ତର ସମାଜର ମଙ୍ଗଳ ପାଇଁ । କ୍ରମେ ଏହା ଏକ ପରମ୍ପରାରେ ପରିଣତ ହୁଏ ଓ ଏହି କ୍ରମରେ ତିଆରି ହୋଇଯାଏ ଏକ ନିଆରା ସଂସ୍କୃତି, ଯାହା ଅଙ୍ଗାଙ୍ଗୀ ଭାବେ ସ୍ଥାନୀୟ ଉତ୍ପାଦନ ପଦ୍ଧତି ସହ ଜଡ଼ିତ ।

ଗୋପୀବାବୁଙ୍କ ଟଡ଼୍ପା ଗପରେ ସହରୀବାବୁମାନେ ଲାଞ୍ଜିଆସଉରା ଧାଂଡ଼ାକୁ ପ୍ରଶ୍ନ କରିଛନ୍ତି, "ତୁମେ କ'ଣ ତୁମ ସ୍ତ୍ରୀର କୋଡ଼ରେ ବସ ? ଏ କଥା କ'ଣ ସତ ?" ଟଡ଼୍ପା ଅବଲୀଳା କ୍ରମେ ଉତ୍ତର ଦିଏ, "ହଁ ତ, ଆମେ ଜନ୍ମ ହେଲାପରେ ମାଆ କୋଡ଼ରେ ବସୁ । ବାହାହେଲା ପରେ ଆମ ଧାଂଡ଼ୀର କୋଡ଼ରେ ବସୁ, ଆଉ ମରିଗଲେ ଧରତନୀ ମାଆର କୋଡ଼ରେ ଆଶ୍ରୟ ନେଉ । ଧାଂଡ଼ୀ ବି ତ ସେଇ ମାଆ ଜାତି କି ନା ?" ସହରୀବାବୁମାନେ ଚୁପ୍ । ଏଇ ବକ୍ତବ୍ୟର ସାରବତ୍ତା ଓ ଦାର୍ଶନିକତା କାହାକୁ ମୁଗ୍ଧ ନ କରେ ? ଏଇଭଳି ପ୍ରକୃତିର ପ୍ରତି ବିଭାବ ଉପରେ ଆଦିବାସୀର ନିଜସ୍ୱ ଦୃଷ୍ଟିଭଙ୍ଗୀ ରହିଛି । ଆଉ ଢେମ୍‌ସା ନାଚ ହେଉଚି ଏଭଳି ଏକ ନାଚ ଯାହା ଏ ସମସ୍ତ ଦୃଷ୍ଟିଭଙ୍ଗୀକୁ ପ୍ରତିଫଳିତ କରେ । ବିନା ଗୀତରେ ଢେମ୍‌ସା ନାଚ ନାହିଁ ଏବଂ ଏହିସବୁ ଗୀତର ପରିସର ଏତେ ପରିବ୍ୟାପ୍ତ ଯେ, ତହିଁରେ ରହିଯାଇଛି ଆଦିବାସୀର ସମଗ୍ର ଜୀବନଚର୍ଯ୍ୟା ।

ଅବିଭକ୍ତ କୋରାପୁଟ ଜିଲ୍ଲାରେ ଆଦିବାସୀ ପୁରୁଷ ସ୍ତ୍ରୀମାନେ ଧୁମ୍‌ସା ବା ଢେମ୍‌ସା ବାଦ୍ୟ ସହ ନାଚୁଥିବା ଏକ ସାଧାରଣ ଲୋକପ୍ରିୟ ନୃତ୍ୟ ହେଉଚି ଢେମ୍‌ସା । ଯେ କୌଣସି ଅବସରରେ, ସୁଖରେ ଦୁଃଖରେ, ପରବରେ, ଯାତ୍ରାରେ ଏହି ଢେମ୍‌ସା ନାଚ ନଚା ଯାଇଥାଏ । ଧୁମ୍‌ସା ବା ଢେମ୍‌ସା ଶବ୍ଦରୁ ଏହି ନାଚର ଏଭଳି ନାମକରଣ ହୋଇଚି । ଢେମ୍‌ସା ସହ ମହୁରୀ ହେଉଚି ଏହାର ଅପରିହାର୍ଯ୍ୟ ବାଦ୍ୟ । ଏହା ବ୍ୟତୀତ ଏଥିସହ ସାମିଲ୍ ହୁଏ ଟାମକ୍, ଢୋଲ, ତିଡ଼ିବିଡ଼ି ଓ ବଂଶୀ ଆଦି ବାଦ୍ୟଯନ୍ତ୍ର । ପୁରୁଷ ଓ ସ୍ତ୍ରୀ ହାତ ଧରାଧରି ହୋଇ ୪/୫ରୁ ଆରମ୍ଭକରି ଏକକାଳୀନ ୨୦୦ଜଣ ପର୍ଯ୍ୟନ୍ତ ବ୍ୟକ୍ତି ଏଥିରେ ସାମିଲ୍ ହୋଇଥାଆନ୍ତି । ଏଥିରେ ଆଗରେ ଥିବା ଜଣେ ନାରୀ ବା ପୁରୁଷ ହାତରେ ମୟୂରପୁଚ୍ଛ ଧରି ଏହି ନାଚକୁ ନେତୃତ୍ୱ ଦିଅନ୍ତି । ତାଙ୍କୁ କୁହାଯାଏ ବାଟକଢ଼ା । ମୟୂରପୁଚ୍ଛ ବଦଳରେ ବା ଅଭାବରେ ହାତରେ ଗାମୁଛା ବା ବାଡ଼ିଖଣ୍ଡେ ମଧ୍ୟ ସେ ଧରି ପାରନ୍ତି ।

ଏହା ବାସ୍ତବରେ ଏକ ଗଣନୃତ୍ୟ । ଏଥିରେ ବୟସ ବା ଲିଙ୍ଗର ବାଛବିଚାର ନ ଥାଏ । ଅଣ୍ଟା ପଛପଟେ ହାତ ବେଢ଼ାଇ ଓ ଅପର ହାତରେ ହାତଛନ୍ଦି ଗୋଲାକାର ବା ଅର୍ଦ୍ଧଗୋଲାକାର ବା ସର୍ପ ଭଳି ଅଙ୍କାବଙ୍କା ଧାଡ଼ିରେ ବାଦ୍ୟର ତାଳେ ତାଳେ ଧାଂଡ଼ା ଧାଂଡ଼ୀ ଡୋକ୍ରାଡୋକ୍ରୀ ସମସ୍ତେ ନାଚ କରିଥାଆନ୍ତି ଓ ପ୍ରଶ୍ନୋତ୍ତର ଛଳରେ

ଗୀତ ଗାଇଥାନ୍ତି । ସେମାନଙ୍କ ପଦପାତର ଦ୍ରୁତ ଓ ଧିମାଗତି ସକାଶେ ଢେମ୍‌ସା ନୃତ୍ୟକୁ ନିମ୍ନ ନୃତ୍ୟଶୈଳୀର ନାମାନୁସାରେ ବର୍ଗୀକରଣ କରାଯାଇଛି । ସେସବୁ ହେଉଛି -

୧. ଦୌଡ଼ାଣୀ ବା ଦଉଡ଼ାନି ଢେମ୍‌ସା - ଧାଇଁ ଧାଇଁ ନୃତ୍ୟ କରିବା । ଏଥିରେ ପଦପାତ ଖୁବ୍ କ୍ଷିପ୍ର ।

୨. ଖୁନ୍ଦା ଢେମ୍‌ସା - ଅଣ୍ଟା ନୁଆଁଇ ବସିବା ଭଳି ଭଙ୍ଗୀ ଦେଖାଇ ନୃତ୍ୟ କରିବା ।

୩. ମାଣ୍ଡି ଲଚ୍‌କାନୀ ଢେମ୍‌ସା - ଆଗକୁ ଧାଡ଼ି ହୋଇ ପାଦ ପକେଇ ପଛକୁ ସେତିକି ପାଦ ଫେରି ନୃତ୍ୟ କରିବା ।

୪. ଆଂଟାଝୁଲାନୀ ଢେମ୍‌ସା - ତିନିପାଦ ଆଗକୁ ଯାଇ ଗୋଟିଏ ପାଦରେ ଅଣ୍ଟାକୁ ପଛକୁ ଝୁଲାଇ ନୃତ୍ୟ କରିବା ।

୫. ଗୁଡ଼ିବେଟାନୀ ଢେମ୍‌ସା - ଦଳର ସମସ୍ତେ ନଇଁ ନଇଁ ଆଗକୁ ଚାରିପାଦ ଓ ପଛକୁ ଚାରିପାଦ ଫେରି ନୃତ୍ୟ କରିବା ।

୬. ଲୁହୁରାମରା ଢେମ୍‌ସା - ବାମପାଦ ଡାହାଣହାତ କହୁଣୀ ଏବଂ ଡାହାଣପାଦ ବାମହାତ କହୁଣୀ ମାରି ନୃତ୍ୟ କରିବା । ଏହି ନୃତ୍ୟରେ ଲୁହୁରା ବା କମାରମାନଙ୍କ ହାତୁଡ଼ି ମାରିବା ଶୈଳୀ ଦେଖାଯାଇଥାଏ ।

୭. ସାଧା ଢେମ୍‌ସା ବା ହିଣ୍ଡାଣୀ ଢେମ୍‌ସା - ଚାଲିବା ଭଳି ଧୀର ନୃତ୍ୟ, ଯାହା କି ଢେମ୍‌ସାର ପ୍ରଥମ ପର୍ଯ୍ୟାୟ ।

୮. ରିଞ୍ଜୋଡ଼ି - ଏହା ପରଜାମାନଙ୍କର ଏକ ନୃତ୍ୟଶୈଳୀ, ଯେଉଁଥିରେ ବିଭିନ୍ନ ଛନ୍ଦ ଓ ଭଙ୍ଗୀ ଦେଖା ଦେଇଥାଏ ।

୯. ଶିରା ଢେମ୍‌ସା - ଏହା ଏକ ଦେବନୃତ୍ୟ, ଏଥିରେ କାଳିସୀ ବା ଶିରା ଲାଗିଲା ଭଳି ନୃତ୍ୟ କରାଯାଏ ।

୧୦. ବଣ୍ଡା ଢେମ୍‌ସା - ଏହା ବଣ୍ଡାମାନଙ୍କର ନୃତ୍ୟଶୈଳୀ, ଦୁଇପାଦ ମିଶାଇ ଡାହାଣ ଓ ବାମକୁ ଡେଇଁ ଏ ନୃତ୍ୟ କରାଯାଏ ।

୧୧. ଅକ୍‌ସେଗୁଣ୍ଡାର୍ ଢେମ୍‌ସା - ଏହି ନୃତ୍ୟ ଗାଦବା ସଂପ୍ରଦାୟର, ଏଥିରେ ମହୁରୀ ଓ ଖିରିଡ଼ି ବାଦ୍ୟର ମନୋମୁଗ୍ଧକର ଧ୍ୱନି ଅତ୍ୟନ୍ତ ଉପଭୋଗ୍ୟ ।

୧୨. ବାଗ୍ ଢେମ୍‌ସା ବା ବେଣ୍ଟ୍ ଢେମ୍‌ସା - ଏଥିରେ ସାଧାରଣତଃ ବାଘ ଶିକାରର ନାଟ କରାଯାଏ ।

ଆଦିବାସୀ ମୁଖ୍ୟତଃ ଶ୍ରମଜୀବୀ । ସେ ଯେଉଁ ଉତ୍ପାଦନ ପଦ୍ଧତି ସହ ଜଡ଼ିତ ତାହା ଅରଣ୍ୟରୁ ଶିକାର (ଯଦିଓ ଗତ ଦଶକରେ ଶୀକାର ଲକ୍ଷଣୀୟ ଭାବେ ସଂକୁଚିତ ହୋଇଛି ।) ଖାଦ୍ୟ ସଂଗ୍ରହ ଓ କୃଷିକର୍ମ ସହ ଜଡ଼ିତ । ତେଣୁ ତା'ର ନାଚରେ ଓ ଗୀତରେ ଆମେ ଅରଣ୍ୟର ଜୀବଜନ୍ତୁର ବିଚିତ୍ର ଗତି, ଶିକାରୀର ଛଳ, କୌଶଳ ଓ ଦ୍ରୁତତା, ନଦୀ ଝରଣାର ଝଲକ, ଜମିରେ ନାଚୁଥିବା ଫସଲର ବାସ୍ନା ଓ ଛନ୍ଦ, ଛନ୍ଦମୟ ସାମୂହିକ ଶ୍ରମର ଝଙ୍କାର, ବର୍ଷାର ଆର୍ଦ୍ରତା ଓ ଜହ୍ନକିରଣର ଶୀତଳ ସ୍ପର୍ଶ ପ୍ରତିଫଳିତ ହୋଇଥିବାର ଅନୁଭବ କରୁ । ତେବେ ଏଇସବୁ ନାଟ ଓ ଗୀତର ବ୍ୟବହାରିକତା ଏସବୁକୁ କେବଳ ଆମୋଦ ପ୍ରମୋଦ ବା ପର୍ବବିଧି ପାଇଁ ଉଦ୍ଦିଷ୍ଟ ନ କରି, ଉତ୍ପାଦନ କ୍ରିୟା ପାଇଁ ମଧ୍ୟ ଉଦ୍ଦିଷ୍ଟ କରିଥାଏ । ବିଶେଷକରି ତା'ର ଗୀତରେ ଆମେ ଛୁଇଁଯାଉ ଜୀବନର ପ୍ରାୟତଃ ସବୁ ମୁଖ୍ୟ ବିଭାବ ।

୧.ପ୍ରେମ, ବିରହ ଓ ମିଳନ, ୨.ଶ୍ରମ, କାମଦାମ, ୩.ଶୀକାର ବା ବେଣ୍ଟ, ୪.ଖେଳ ଓ ବ୍ୟଙ୍ଗ, ୫. ଶୋକ, ୬.ଦାର୍ଶନିକତା, ୭.ଦୁଃଖ, ଦୁର୍ଦ୍ଦଶା ଓ ବିସ୍ଥାପନ, ୮. ସଂଗ୍ରାମ ଓ ଉଦ୍ଦୀପନା ।

ଏଥିରୁ ଅନେକ ଆସେ ସ୍ୱତଃସ୍ଫୂର୍ତ୍ତ ଭାବେ । ବିଶେଷକରି ସେଇସବୁ ଗୀତ, ଯାହା ଜୈବଧର୍ମ ଓ ଉତ୍ପାଦନ ପ୍ରକ୍ରିୟା ସହିତ ଜଡ଼ିତ । ବିଭାଗୀକରଣର ପ୍ରଥମ ୬ଟି ନୁକ୍ତା ଏହି ପର୍ଯ୍ୟାୟର । କିନ୍ତୁ ଶେଷ ୨ଟି ବିଷୟ ଗୋଷ୍ଠୀନାୟକ ବା ସାମାଜିକ ରାଜନୈତିକ ନେତୃତ୍ୱ ସହ ଜଡ଼ିତ । ପୂର୍ବରୁ କହିଥିବା ଭଳି, ଏମାନେ ହେଉଛନ୍ତି ସେହିସବୁ ଗୋଷ୍ଠୀ ବା ସମାଜ ନାୟକ, ଯେଉଁମାନେ ବାହାର ଦୁନିଆ ସହ ଆନ୍ତଃ ପ୍ରକ୍ରିୟାକୁ ଠିକ୍ ବୁଝିବା ଲାଗି କିଛି ନା କିଛି ଯୁକ୍ତି ବା ହେତୁବାଦିତାର ସିଡ଼ି ନିର୍ମାଣ କରନ୍ତି । ବାହ୍ୟ ପ୍ରଭାବ ବା ଆକ୍ରମଣକୁ ସାମ୍ନା କରିବା ପାଇଁ ଗୋଷ୍ଠୀ କିଛି ପନ୍ଥା ତ ଖୋଜିବ ! ଏଥିରେ ବିପଦ ରହିଛି । ପୁଣି ଏହାକୁ ସାମ୍ନା ନ କରି ମୁଣ୍ଡ ନୁଆଁଇ ଦେଲେ ଗୋଷ୍ଠୀ ତା'ର ପରିଚିତି ବା ଅସ୍ମିତା ହରାଇବାର ଆଶଙ୍କା ବା ଭୟ ମଧ୍ୟ

ରହିଛି । ଅରଣ୍ୟ ବିସ୍ତୀର୍ଣ୍ଣ ଥିବା ସମୟରେ ଜୀବନଧାରା ଥିଲା ଗୋଟିଏ ପ୍ରକାରର । କିନ୍ତୁ ଅରଣ୍ୟ ସଙ୍କୁଚିତ ହୋଇଯିବା ଫଳରେ ଏବଂ ଜଙ୍ଗଲ ଆଇନ୍ ତଥା ଜୀବଜନ୍ତୁ ସୁରକ୍ଷା ଆଇନ୍ ଅତ୍ୟନ୍ତ କଠୋର ହୋଇଯିବା ଫଳରେ ଦଖଲରେ ଥିବା ଜମି ହୋଇଛି ତା'ର ମୁଖ୍ୟ ଉତ୍ପାଦନ ମାଧ୍ୟମ । ପୂର୍ବଭଳି ଜଟାଜଟିରେ ଅର୍ଥାତ୍ ପ୍ରତାରିତ ହୋଇ ଜମି ହରାଇବା ପାଇଁ ଆଦିବାସୀ ଆଜି ପ୍ରସ୍ତୁତ ନୁହେଁ । କାରଣ ପୃଷ୍ଠଭଙ୍ଗ ଦେବାପାଇଁ ଆଉ କିଛି ପଶ୍ଚାତ୍ ଭୂମି ନାହିଁ । ପଛକୁ ହଟିଯିବା ପାଇଁ ଡଙ୍ଗର ନାହିଁ । ଏଣୁ ଗୋଷ୍ଠୀର ଚେତନା ପାଇଁ ତାକୁ ଗାଇବାକୁ ପଡ଼ିଲାଣି ଦୁଃଖ, ଦୁର୍ଦ୍ଦଶା ଓ ବିସ୍ଥାପନର ଗୀତ ଏବଂ ନିଜର ଅଧିକାର ଜାହିର କରିବା ପାଇଁ, ଶୋଷଣ ଜାଲରେ ପଡ଼ି ତିନି ଫୋଲିଆରେ ହରାଇ ଥିବା ଆନି ଦାଦିର ଜମି ଛଡ଼ାଇ ଆଣିବା ପାଇଁ ତାକୁ ଗାଇବାକୁ ପଡ଼ିଲାଣି ସଂଗ୍ରାମ ଓ ଉଦ୍ଦୀପନାର ଗୀତ । ସୁତରାଂ ଢେମ୍‌ସା ଗୀତର ପୂର୍ବ ବ୍ୟାପ୍ତି ବଢ଼ିଲାଣ, ଦୀପ୍ତି ପ୍ରଖରତର ହେଲାଣି । ପାରଂପରିକ ଚଇତିଗୀତର ବିବାହ, ପ୍ରେମ ଓ ବିରହ ମିଳନର ବିଷୟ ସବୁକୁ ଏହା କେତେଦିନୁ ଅତିକ୍ରମ କରିଗଲାଣି ।

**୧. ପ୍ରେମ, ବିରହ ଓ ମିଳନ :**

ପ୍ରେମ କ୍ଷେତ୍ରରେ ଆଦିବାସୀ ଅତ୍ୟନ୍ତ ବାସ୍ତବବାଦୀ । ଗୋଷ୍ଠୀଗତ ଭାବେ ଏଥିପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଇଥାଏ । ଜଣେ ନିଜର ସାଥୀ ଖୋଜି ନେବା ପାଇଁ ଉପଯୁକ୍ତ ପରିବେଶ(ଧାଂଡ଼ା ବା ଧାଂଡ଼ୀବସା) ଗୋଷ୍ଠୀ ଯୋଗାଇ ଦେଇଥାଏ ତା'ର ତରୁଣୀ - ତରୁଣ ପିଢ଼ିକୁ । ଆଧୁନିକତାର ସ୍ପର୍ଶ ଫଳରେ ଯେଉଁସବୁ ଗାଁରେ ଏଭଳି ବସା ନ ଥାଏ, ସେଠି ମଧ୍ୟ ଧାଂଡ଼ା ଧାଂଡ଼ୀ ମିଳିତ ହେବାର ଯଥେଷ୍ଟ ସାମାଜିକ ଅନୁଷ୍ଠାନ, ମହଜୁଦ୍ ରହିଥାଏ । ଯେପରିକି ସାପ୍ତାହିକ ହାଟ, ପର୍ବପର୍ବାଣୀ, ବିଭାକାର୍ଯ୍ୟ, ଦଶାକାର୍ଯ୍ୟ, ଗତିଆ ଗତାଗତ, (ବନ୍ଧୁ ଘରକୁ ଯିବା ଆସିବା), ନାଟ୍ ଦେଖା, ପରବ ଓ ଯାତ୍ରା ଦେଖା ଇତ୍ୟାଦି । କିଛି ସଙ୍କୋଚ ବା 'ଟାବୁ' ନ ରଖି ଧାଂଡ଼ା ଧାଂଡ଼ୀମାନେ ଟିକେ ବଙ୍କେଇ ବୁଲେଇ ନିଜର ଭାବକୁ ଗୀତ ମାଧ୍ୟମରେ ପ୍ରକାଶ କରିଥାନ୍ତି, ଯାହାକୁ ଆମେ କହୁଁ ଛଳ ଭାଷା, ଚଟୁଳତା, କାବ୍ୟିକତା ବା ରସିକତା । ଏଠି ଧାଂଡ଼ା ଯଦି ଧାଂଡ଼ୀକୁ ସୁନ୍ଦରୀ ଡାକେ, ଧାଂଡ଼ୀ ମଧ୍ୟ ଧାଂଡ଼ାକୁ ସୁନ୍ଦର ଡାକିବାରେ ଦ୍ୱିଧା ବୋଧ କରେନି । ସେହିପରି ଧାଂଡ଼ା ଯେତେବେଳେ ଧାଂଡ଼ୀକୁ ରିଂଜୋଡ଼ି ବା କାଜୋଡ଼ି ବୋଲି ସ୍ନେହ ସଂବୋଧନ କରିବାକୁ ଫୁଲ, ପାଚିଲାଧାନ, କଅଁଳ ଛନଛନ ଘାସ,

କଦଳୀଭଣ୍ଡା, କୁନ୍ଦୁରି ଲତା, ଜୁଲୁଜୁଲିଆ ପୋକ, ସରୁବାଲି, କାକୁଡ଼ି, ପଣସ, କାଳିଆ ବା କାଳିଆ, ଗଳାର ହାର, ଡୁମ୍ବନି ଆମ୍ବ, ତୁରୁଞ୍ଜା ମାଛ, ଖଟାଲେମ୍ବୁ, ପିଠା କଲରା, ହାଟ ପସରା, ଛୋଟପିଲା, ମଉଳି ମଦରଜୁମା, ସୁନ୍ଦରିଆ ଚଢ଼େଇ ସହ ତୁଳନା କରିଥାଏ, ଧାଂଡ଼ୀ ମଧ୍ୟ ଧାଂଡ଼ାକୁ ଛଂଚାଣ, ପତ୍ରହୀନ ବୃକ୍ଷ, ପୁନିଜନ୍, ଡୁର୍କା(ଗଧିଆ), କାଉ, ପାଇକ, ପାକଲା ବୋଲି ଡାକିଥାଏ । ପ୍ରେମଗୀତରେ ବ୍ୟଙ୍ଗ, ପ୍ରଶ୍ନୋତ୍ତର, ବୁଦ୍ଧିପରୀକ୍ଷା ଓ ବଳ ପରୀକ୍ଷା ପାଇଁ ମଧ୍ୟ ଆହ୍ୱାନ ଦିଆଯାଇଥାଏ । ଉଭୟ ଧାଂଡ଼ା ଧାଂଡ଼ୀ ସମଭୂମିରେ ଛିଡ଼ାହୋଇ ପରସ୍ପରକୁ ପ୍ରେମ ନିବେଦନ କରନ୍ତି । ଅସତୀ, ବିଧବା, କୁଳଟା, ବେଶ୍ୟା ଇତ୍ୟାଦି ଶବ୍ଦ ପ୍ରୟୋଗକରି ଏଠି ନାରୀର ଅପମାନ, ସ୍ୱାଧୀନତା ହରଣ ବା ଗତିରୋଧ କରିବାର ଚେଷ୍ଟା କରାଯାଏ ନାହିଁ । କୌଣସି ପ୍ରକାର ଚାପ ମଧ୍ୟ ପ୍ରୟୋଗ କରାଯାଏ ନାହିଁ । 'ଗଡ଼ିଆ' ବା ଅଣଆଦିବାସୀ ସମାଜର ଯୌନ ବିକାରଗ୍ରସ୍ତତା ନ ଥିବାରୁ ଆଦିବାସୀ ସମାଜରେ ବାସ୍ତବ ପ୍ରେମ ସମ୍ଭବ ହୁଏ । ସର୍ବୋପରି ନାରୀ ଏଠି ବିବାହ ପରେ ମଧ୍ୟ ଶ୍ରମ କରି ସ୍ୱାମୀର ସହାୟିକା ହୁଏ, ଭାର ହୁଏନି । ସେଥିପାଇଁ ପଶୁଧନ, ଧାନ ଓ ଅର୍ଥ ଝୋଲାଦେଇ ଧାଂଡ଼ା ତା'ର ଧାଂଡ଼ୀକୁ ଆପଣା ଘରକୁ ନିଏ । ଧାଂଡ଼ା କେବେ ଯୌତୁକ ମାଗି ପାରେନି । ସୁତରାଂ ସ୍ୱଚ୍ଛନ୍ଦ ପ୍ରେମ ପ୍ରକାଶରେ ଆଦିବାସୀ ଧାଂଡ଼ା ଧାଂଡ଼ୀ ଆଗରେ କିଛି ବାଧା ବା ବାରଣ ନ ଥାଏ । ତେଣୁ ନିର୍ଦ୍ୱନ୍ଦ୍ୱରେ ଧାଂଡ଼ୀ ଗାଏ –

ଉଚ୍ଚ ବାଲିପଟା କମ୍‌ଲାତଟା ଖୁଜି ଆମଗଚ ଡେଂକି
ପନତ ପକାଇ ମାନ ମାଗୁଛି ତର ବୁଦିମନ୍ତ ଦେଖି
(ତୁ ଏତେ ବୁଦ୍ଧିମାନ୍ ଯେ, ମୁଁ ପଣତ ପାତି ତୋର ପ୍ରଣୟ ଭିକ୍ଷା କରୁଛି ।)
– ବାଆଁଟା ବାଆଁଟା ପିତଲ ବାଆଁଟା ବାଆଁଟା ଉପରେ ମଡ଼ା
ଟଣ୍ଡ ମୁଣ୍ଡ ସବୁ ଚପରା ଲାଗିଲା ଦୁଙ୍ଗିଆ କଣ୍ଡେକ୍ ଦିଆ
(ତୁଣ୍ଡ ପିଠା ଲାଗିଲାଣି, ଟିକେ ଧୁଙ୍ଗିଆ ଦିଅ ।)

ଧାଂଡ଼ା ଉତ୍ତର ଫେରାଏ –

– ଏସୁର ବରଷା ବଡ଼ ବରଷା ଦୁଙ୍ଗିଆ ପାଚିଲା ନାଇଁ
ଗୋଟେ ପତରକେ ଚାରିଆନା ଡାବୁ ତକେ ଦେଲେ ମକେ ନାଇଁ ।

(ଏ ବର୍ଷ ଏତେ ବର୍ଷା ହେଲା ଯେ ଧୁଙ୍ଗିଆ ଖୁବ୍ କମ୍ ହେଲା । ଗୋଟିଏ ପତ୍ର ଋରିଅଣାରେ ବିକ୍ରି ହେଲାଣି । ତୋତେ ଦେଲେ ମୋତେ ନାହିଁ ।) (ଚଇତି ପରବ ଗୀତ)

ଧାଂଡୀ - ଖାଡ଼ା ପାଲାଇଲା ଆଡ଼ିକି ବିଡ଼ିକି କିଆ ପାଲାଇଲା ଠିଆ
ଗୋଟେକ୍ ପତରକେ ଋରିଆନା ଡାବୁ କଣ୍ଡେକ୍ ଟିପ୍ ଛିଡ଼ାଇ ଦିଆ
ଧାଂଡ଼ା - ରୁପାକେ ଟାଙ୍ଗ୍ନା ସୁନାକେ ଜାଉ ଅଲପ୍ ପତରିଆ ସାଉ
ନଇଲା ବେଲର୍ ପଡ଼େକ୍ ଚାଉଲ୍ ବାଣ୍ଟା ବିର୍ଜା କରିଥାଉ ।
(ଖାଡ଼ା-ଠେକୁଆ, କିଆ-ଟିଆ, ସାଉ-ସାହୁକାର)
ଧାଂଡ଼ୀ - ଆସିଥିଲି ଗରେ ନଥିଲୁ ଗରେ କରଂଜ୍ ଦାଂତୁନ୍ କରେ
ଆଣ୍ଡିର୍ ପେଜ୍‌କେ ସାର୍‌ସି ବଲି କସ୍‌ରି ଦେଲାସ୍ ଦିରେ
ସୁକ୍‌ନା ସୁକାଇଲି ଲାଟି ଲାମାଇଲି ସା'ରେ କୁକୁଡ଼ା ସା'
ଆଣ୍ଡିର୍ ପେଜ୍‌କେ ସର୍‌ପି ଦେବି କେତେକ୍ ଖାଇସା ଖା !

(ତୋ ଘରକୁ ଆସିଥିଲି ଯେ ତୁ ଘରେ ନଥିଲୁ । ମୁଁ କରଂଜ ଦାଂତକାଠି ଘଷିବା ବେଳେ ମୁଁ କାଳେ ତୋ ପେଜ୍ ସାରିଦେବି ବୋଲି ତୁ ଥିରିକିନା ଖସିଗଲୁ । ମୁଁ ତୋର ଧାନ ଶୁଖାଇଲି, କୁକୁଡ଼ା ଖେଦେଇଲି । ଆରେ ତୁ ଏମିତି ଡରି ଯାଆନା । ମୋତେ ତୋ ଘରର ଘରଣୀ କରିନେଲେ ହାଣ୍ଡିଯାକର ପେଜ୍ ତୋତେ ଦେଇଦେବି ।

**ଗୀତ - ମରାମରି ବା ପ୍ରଶ୍ନୋତ୍ତର :**

ପୁ. - ଏକାତା ସତ / ବୁଡି ଦାନର୍ ବାତ, ପୁରୁଣା ମାଣ୍ଡିଆ କତ
ଜାନିବା ଗରର୍ ଜିଅ ବଲାଇଲୁସ୍ ଇନ୍ଦ୍ରାବତୀ କେତେ ଆତ ?
ସ୍ତ୍ରୀ - ଇନ୍ଦ୍ରାବତୀ ବାଦ୍‌ଲା ବେଳେ ନା ରଇଲୁସ ଲୁଲୁର୍ ମୁଣ୍ଡି
ଛକଡ଼ି ନ କଡ଼ି ତିନିବାର କଡ଼ି ଦୁଇତା ଦୁଇଆନା କେତେ ?
ଏତିର୍ ଅରତ୍ ବତାଇ ଦେଲେ ପଣ୍ଡିତ୍ ବଲ୍‌ବି ତତେ ।

ସ୍ତ୍ରୀ -   କାକ୍‌ଡ଼ି କାଇଲେ ମାଙ୍କଡ଼ ରାଶି
ଉଚ୍ଚ ପାକ୍‌ନା (ପଥର)ରେ ବସି
ଗୀତ୍ କୁଡ଼ିଆ ନାନାକେ ପାଚାରି ଦେକା
ଅଲ୍‌ମା(ଉଇ) ଚରାଇତେ ରଇସି ।

ପୁ -   ବାଡ଼୍ କୁଡ଼୍ କୁଡ଼୍ ପିଆଲ୍ ମାନି ଗାଇଗାଲା ଲେଂଜ୍ ବିଚି
ତର୍‌ପାରା ଗୀତ୍ କୁଡ଼ିଆ ନିକେ କାପାଲେ ଚିମ୍‌କିଲି ଆଚି ।
(ତୋପରି ଗୀତ୍ କୁଡ଼ିଆନିର କପାଳରେ ଚୁମାଦେବା କଥା)

ପୁ -   କାଲିଆପାରା ଦୁଇଡିଆ ଦୁଆର୍ ନୁନି ଆତେ ସରା ଶାଙ୍କା
ମୁଁଆଁସ୍(ପ୍ରୀତି) ବସାଇ ଗଡ଼ି ବାରିଗଲେ ବିଷ୍ ଦେଇ ମାରି ପାକା ।
(ବିଲୁଆ ଭଳି ତୋର ଦୁଇଟି ଦୁଆର । ଗୋଟିକୁ ଜଗିଲେ ଆର ବାଟେ ବାହାରିଯିବୁ ବୋଲି ଭୟ ଲାଗେ । ତା'ଠାରୁ ଭଲ, ମୋତେ ବିଷ ଦେଇ ମାରିଦେ ।)

ସ୍ତ୍ରୀ -   ବାଟେ ବାଟେ ଗାଲା ବାୟା ବାମନ ଖମନେ ବୁନିଲି ଦାନ
ତୁମେ ଆମେ ବାବୁ ଗୋଟେ ରଇଲେ ଡୁମୁରି ଫୁଲ୍ ସମାନ ।
(ତୁମେ ଓ ମୁଁ ଏକାଠି ହେବାଟା ଡୁମୁରିଫୁଲ ଭଳିଆ ଅର୍ଥାତ୍ ସଂପୂର୍ଣ୍ଣ ଅସମ୍ଭବ କଥା ।)

**ବିରହ / ବିଚ୍ଛେଦ / ମିଳନ**

ସେହିପରି ବିରହ ଓ ମିଳନର କଥା । ବିବାହ ପରେ ଧାଂଡ଼ା ହୁଏ ତ ଦାଦନ ଯାଇଛି, ଘରକୁ ତାବୁ ପଠାଉନି, କି କଷ୍ଟ ପୂରିଗଲେ ମଧ୍ୟ ଫେରି-ଆସିପାରୁନି । ଆଉ ବି କେଉଁଠି ଧାଂଡ଼ୀକୁ ଠକିଦେଇ ଧାଂଡ଼ା ପଳାଇ ଯାଇଚି । ତା'ର ଠିକଣା ମିଳୁନି । ଏଇଠି ଆସେ ବିରହର ଗୀତ । ଅବଶ୍ୟ ଆଦିବାସୀ ସମାଜରେ ଧାଂଡ଼ା ଯଦି ଘରେ କହି ବୋଲି ଆଉଗୋଟେ ଧାଂଡ଼ୀ ଆଣିଲା ସେଥିରେ କିଛି ବାଧା ନଥାଏ । ପୂର୍ବ ଧାଂଡ଼ୀକୁ 'ବଡ଼ଲୀ' ବୋଲି ଡକା ହୁଏ । ସେ ମଧ୍ୟ ନିଜ ଅଧିକାର ଜାହିର କରେ । କିନ୍ତୁ ଠକିଦେଇ ଅନ୍ୟ ଜାଗାରେ ଘର କରି ଅନ୍ୟ ନାରୀ ବିଭାହେଲେ

ଧାଂଡ଼ୀ ତାକୁ କ୍ଷମା ଦିଏନି । ସିଏ ମଧ୍ୟ ପସନ୍ଦ ହେଲେ ଅନ୍ୟ ଧାଂଡ଼ା ପାଖକୁ ଯିବାରେ ଲଜ୍ଜାବୋଧ କରେନି । ସେଇ ବିଷୟକୁ ନେଇ ବିରହିଣୀ ଧାଂଡ଼ୀ ଗୀତ ଗାଏ :

- ଏ ମୋର ପୁନିଜନ୍ କେନ୍ତା ଆଜି ମୁନୁଷ୍ ମନ୍
ପରଦେଶ୍ ଗଲା କାଜକରି ଆସେ ନାହିଁ ଏତୁକରି (ମନେ ପକାଇ)
ଡାବୁ ନାଇଁ କି କାସୁନାଇଁ କଡ୍ରେକ୍ ପିଲାକେ ଦରି
କଇ ଦେକ୍‌ନି ପୁନିଜନ୍ ଚଲ୍‌ବି କେନ୍ତା କରି ?
ବାବୁ ଆମର୍ ପାଠୁଆ ପିଲା, ଏମ୍ତି ମିଶା ଦିନ୍‌ରେଲା
ନାଇଁ ଦେକ୍‌ଲେ ଛନେକ୍ ମକେ, ନାଇଁ କାଇବାର୍ ରେବାର୍‌ଭୁକେ ।
କଇ ଦେକ୍‌ନି ପୁନିଜନ୍....

(ଏମିତି ଦିନ ଥିଲା, ଯେତେବେଳେ ମୋତେ ନ ଦେଖିଲା ଯାଏଁ ଆମବାବୁ ଖାଉ ନଥିଲେ । ଏବେ କିନ୍ତୁ ପରଦେଶରୁ ସେ ଫେରୁ ନାହାନ୍ତି କି ଟଙ୍କାପଇସା ପଠାଉ ନାହାନ୍ତି । କୋଡ଼ ପିଲାକୁ ଧରି ମୁଁ ପଡ଼ି ରହିଛି ।

- ପାକ୍‌ଲା ପାକ୍‌ଲା ସାଙ୍ଗ ପାକ୍‌ଲା
ତମେ ଛାଡ଼ିଗଲେ ଆମେ ଏକ୍‌ଲା, ଏ କାତା ଯାଉଛି ବାରି !
ବହୁତ୍ ଦିନଟୁ ଆଜି ଦେଖାଦେଖି ନୟନ ଦେଉଛ ଠାରି
କି ପାଇଁ ପାକ୍‌ଲା ଯାଉଛ ଝୁରି ନଡ଼ିଆ କଦଲୀ ଧରି ।

- ଧାନ୍ ବୁନିଗଲି ଜଲିକେ ଜଲି ଖାଇ ଖାଇ ଗଲି ଖଜୁରି କୋଲି
ସେ ଦିନେ ସେ ହାଟେ ଗଲି
ତମର୍ ବିବା ବେଲେ ସାନ୍‌ଟା ରେଲି
ଏବେ ହେଲି ତମର୍ ଜୁଲି
ଅଣ୍ଟିର୍ ଧୁଙ୍ଗିଆ ଛିଡ଼ାଇ ଦେଲି ବଲେ ବଲେ କାତା କଲି ।

(ତମେ ମୋଠୁଁ ବହୁତ ବଡ଼, ତମ ବିଭାବେଳେ ମୁଁ ସାନ ଥିଲି, କିନ୍ତୁ ଏବେ ମୁଁ ତୁମ ସମାନ ହେଲିଣି । ତୁମ ସାନଲୀ ହେବାକୁ ମୁଁ ସ୍ପର୍ଦ୍ଧା ରଖୁଚି ।)

- ପାନି ମାରିଗାଲା ଜିମିଟି ଝାଇଁ, ଅକାରିଲା କାଙ୍ଗୁଗଇ (ଗୋଧିସାପର ଫୁତ୍କାର ଛାଡୁଛି)

  ଆଗେ କରି ରଲେସ୍ ଗଲାର ହାର୍ ଏବେ ନାହିଁ କଲେ ନଏଁ ।

- ଆମ ବାଡ଼ି ଆଡ଼େ ଡୁମ୍‌ନି ଆମ୍, ପାଇକ ମାରେ କାବଡ୍

  କାକୁଡ଼ି ଖାଇବାର ତର୍ ମନ୍ ଥିଲେ ଆମର୍ ପାଖେ ଦବଡ୍ ।

  (ଆମ ବାଡ଼ିରେ ସୁନ୍ଦର ଆମ୍ବ ଫଳିଛି । ଶକ୍ତିଶାଳୀ ପାଇକ ଫାପଡ଼ ମାରି ଆମ୍ବ ବିଛଉଚି । ତୁମର ଯଦି ଆମ୍ବ ଖାଇବାର ମନ ଅଛି, ଆମ ବାଡ଼ି ଆଡ଼େ ଆସ । ପ୍ରେମର ଇଙ୍ଗିତ ।)

- କି ପାଇଁ ପାକଲା ବିରସ ମନ ହସି କହ ତର ବଚନ ।

- ବାଟର ରାଉଲି ବରଡ଼୍‌ମାରେ ଜିଲ୍‌ର୍ (ଝରଣାର) ମାଙ୍ଗୁର୍ ଗୁରେ

  ଦିନେ କଇଥିଲି ପାନି ଘାଟରେ ଦୁଇଦିନ କଇଲି ଗରେ

  ଡାବୁ ଦେଲା ପରା କେତେକ୍ କଇଲାଗ୍‌ବାର୍ ଲାଜ୍ ଲାଗିଗଲା ମକେ

  ପଲାସ୍ ବଦଲି ବୁଟାର ଛାଇଁ - ବନ୍ଧୁ, ନିରିଦିୟା ତୁଇ !

  (ପାଣି ଘାଟରେ ଦିନେ କହିଥିଲି, ଦୁଇଦିନ ତୋ ଘରେ କହିଲି, ଟଙ୍କା କରଜ ଦେଇ ମାଗିହେଲା ଭଳି କେତେଥର ଆଉ କହିବି ? ମୋତେ ତ ଲାଜ ଲାଗିଲାଣି, ତୁ କ'ଣ ସତେ ଏତେ ନିଷ୍ଠୁର ?) (ବଦ୍‌ଲୀ - ପଲାଶ)

- ବାଟେ ବାଟେ ଗାଲା ବାଟା ଦାମ୍‌ନା ପାଆରେ ପଶିଲା ଉମା

  ତକେ ଭୂତ୍ ଧାରେ ନାଇଁ ଦେଉ ଧାରେ ନାଇଁ ମହୁଲ୍ ମଦର ଜୁମା

  ତର୍‌ପାରା ନନି ମୋର୍ ଘରେ ତିଲେ ଦୁଇଗାଲେ ଦେଇତିକ୍ ଚୁମା !

  (ଦାମ୍‌ନା - ଢେମଣା ସାପ, ପାଆର୍ - ଗୁଂଫା, ଉମା - ବଡ଼ପେଟା, ଦେଉ - ଦେବତା)

- କାକେ କୁମ୍ଭ ଘେନି କୁରଙ୍ଗୀ ନୟନୀ ଶୁଣ୍ ତୁମୋ ପ୍ରାଣ ସଇ

  ଫୁଟି ଯଉବନ ମୂଳେ ଦୁଶୁନାଇଁ ମାଙ୍ଗିଲେ ଦେବୁକି ତୁଇ ?

ଆମ ବାଡ଼ିଆଡ଼େ ପିଆଲ ମାଛି ଗାଇ ପକାଇଲା ବାଛି,(ବାଛୁରୀ)

ମଲିଫୁଲ ପାରା ବାସ ମାରୁଛି ଦେବାକୁ ଭଲ ଲାଗୁଛି ।

ପାଚିଲା ପଣସ କାଉ କଲା ନାଶ, ଆମ ଦାଣ୍ଡ ବାଟେ ନିତି ନ ଆସ

ତମର୍ ଲାଗି ବଇରସ

ହଲେ ବଇରସ ବଲେ ବଇରସ, ତମର ଲାଗି ହେବି ନାଶ !

(ପାଚିଲା ପଣସକୁ ତ କାଉ ନାଶ କଲାଣି । ଆଉ କାହିଁକି ଆମ ଦାଣ୍ଡ ବାଟେ ଆସୁଚ ? ତମ ଲାଗି ମୁଁ ସଂସାର ପ୍ରତି ବିରାଗୀ ହେଲିଣି । ଏବେ ନାଶ ହୋଇଯିବି ।)

ଶୁଖିଲା କୁଟରେ ବସିଲା ଶାରୀ, କାର୍ ଘର ଝିଅ କାର୍ ବୁଆରି

କଥାଟା କହୁଛ ନୟନ୍ ଠାରି, କକିଲ ବାସିଲା ପରି

ନୂଆ ପାଟେଇ ପିନ୍ଧି ମଲକ୍‌ତେ ଆଇଲୁସ୍, ଡିଣ୍ଡା କି ପର ଦୁଆରି ?

(ଅଭିଆଡ଼ୀ ଅଛୁ କି ପରଦୁଆରୀ ହେଲୁଣି ?)

(ବୁଆରି - ବୋହୂ, କୁଟ - ଡାଳ, ପାଟେଇ - ଲୁଗା)

- ବାଲିଆ ପାଲିଗୁଡ଼ା ଚନ୍ଦର୍ ପାଡା, ମନ୍ଧ ଗାଏଁ ବସେ ବାଲି

ମୁହିଁ ତେନେ ରହିଲି ଦୁଲି ଚାଲି

ତୁମରି ତଣ୍ଡର ବଚନ୍ ଶୁଣି, ବେଶରା ଛିଡ଼ା ଛିଡ଼ିଲି

ଢେଲା ମାରି ଚାଲା ବୁଜିତେ ରେଲାସ୍, କର କି ଶୀତଲ୍ ବଲି ।

(ବିଭିନ୍ନ ଜାଗାରେ ମୁଁ ବୁଲି ବୁଲି ରହିଲି, ବାଲି ବସିଲି । କିନ୍ତୁ ତୁମ କଥା ଶୁଣି ତୁମ ପ୍ରତି ଆକୃଷ୍ଟ ହେବା ପରେ ଛଂଚାଣ୍ ଭଳି ଲମ୍ଫ ମାରି ତୁମକୁ ପରୀକ୍ଷା କରିବାରେ ଲାଗିଗଲି, ତୁମେ ଗରମ୍ ନା ଶୀତଳ ?)

୨. ଶ୍ରମ : କାମଦାମ

ପାହାଡ଼ ଉଠାଣି ରାସ୍ତାରେ ହାଟ ଓ ଦୂର ବାଟ ଯିବାବେଳେ, ବେଡ଼ାରେ ମାଣ୍ଡିଆ, ଅଲ୍‌ସୀ ଧାନ ଓ ରାଶି କାଟିବା, ରୋଇବା ବା ଅମଳ କରିବା ବେଳେ, ମାଟି

ବା ପଥର ବୋହିବା ବେଳେ, କନ୍ଦା ଖୋଳିବା ବେଳେ, ସିଛିବୁଟାରୁ ସିଛିକାଡ଼ା ସଂଗ୍ରହ ବେଳେ, ପତର ତୋଳିବା ବା ଦାରୁ ସଂଗ୍ରହ କରିବା ବେଳେ ସ୍ୱର ମେଲାଇ ଦଳଦଳ ଆଦିବାସୀ ରମଣୀ ସୁନ୍ଦର ଗୀତ ଗାଉଥିବା ବେଳେ ପଦଚଲା ବାଟୋଇର କାନରେ ତାହା ପଡ଼ିଥାଏ । ଢେମ୍‌ସା ନାଟରେ ମଧ୍ୟ ଏଇସବୁ ଶ୍ରମ ସଂଗୀତ ସ୍ଥାନ ପାଇଥାଏ । କାମ କରୁକରୁ ମଝିରେ କାମଛାଡ଼ି କିଛି ସମୟ ସେମାନେ ନାଚି ନେବାର ମଧ୍ୟ ଦେଖାଯାଏ । ଏସବୁ ଭିତରୁ ପରଜାମାନଙ୍କ ମାଣ୍ଡିଆମାରା ଗୀତ, କନ୍ଧମାନଙ୍କ ଧାନକଟା ଗୀତ ଏବଂ ମୁଣ୍ଡାମାନଙ୍କର ଇଟା ଯୋଡ଼ିବା ଓ ଧାନ ରୋଇବା ଗୀତ ବେଶ୍ ଜନପ୍ରିୟ । କଠିନ ପରିଶ୍ରମ ବେଳେ ଏକକାଳୀନ ସାମୂହିକ ବଳ ପ୍ରୟୋଗ ପାଇଁ ପୁରୁଷମାନେ ମଧ୍ୟ ଗୀତ ବୋଲିଥାନ୍ତି । ଠିକ୍ ଆମ ମାନଙ୍କର ରଥଟଣା ଗୀତ କିମ୍ବା ଖୁଣ୍ଟ ବା ପାଇପ୍ ପୋତା ବେଳର ହୋ ମେରାଭାଇରେ ଗୀତ ଭଳି । କେତୋଟି ଏଭଳି ସଂଗୀତର ଦୃଷ୍ଟାନ୍ତ ଦେଖାଯାଇପାରେ ।

- ଏସୁର ମାଣ୍ଡିଆମାଡ଼ା, ଦଶରା ମାଣ୍ଡିଆମାଡ଼ା
  ପରୁର ମାଣ୍ଡିଆ ମାଡ଼ା, ମାଡା ରିଞ୍ଜୁଡ଼ି ମାଡ଼ା କାଜୋଡ଼ି
  ମାଡ଼ାରେ ମାଡ଼ାରେ ମାଡ଼ା
  (ଆଷାଢ଼ ଆସିଛି ଆସ ଧାନ ରୋଇବା, ଧାନ କୁଟି ମିଠା ଜାଉଭାତ ଆମେ ଖାଇବା, ଆମ ପିଲାଙ୍କୁ ଦେବା, ଆଷାଢ଼ ଆସିଛି ଆସ ଧାନ ରୋଇବା ।)
- ସର୍‌ଗୀ ଜିଉନା ଭତ୍ରା ଜୀଉନା ସାହୁକାର ଜିଉନା ସୁଖେ
  ଆମ ଅରଜନ ସବୁ ନେଇତି ରଇଲେ
  ଆମେ କମେଇ ଦେଲେ ସିଏ ବଡ଼ଲୋକ
  ଆମ୍‌କେ ନା ଛାଡ଼େ ଭୁକ
  କାମ୍ କରି କରି କେତେକ୍ ସଇବୁ ପିଲାମାଇଜୀର ଦୁଃଖ
  ଆମର୍ ଦୁଃଖ୍ ସୁଖ ଦଇବ ଜାନେ କାଦ୍ ବୁଟ୍ ବୁଟା ଟାନେ
  ସର୍‌ଗୀ ଜୀଉନା ଉତ୍ର ଜୀଉନା....

୩. ଶିକାର ବା ବେଣ୍ଟ

ଚଇତି ପରବର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେଉଛି ବେଣ୍ଟ୍, ପୁଲ ବେଣ୍ଟ୍ ବା ଶିକାର । ସେଇଥିପାଇଁ ଏହି ପରବର ଅନ୍ୟନାମ ବେଣ୍ଟ୍ ପରବ । ବାସ୍ତବରେ ଶିକାର ଗୀତ ହେଉଛି କୃଷିକର୍ମର ଶ୍ରମଗୀତଠାରୁ ପ୍ରାଚୀନତର । ସେଥିପାଇଁ ଢେମ୍‌ସାର ନୃତ୍ୟରୂପ ବିଭିନ୍ନ ଜୀବଜନ୍ତୁଙ୍କ ଶିକାର ତଥା ଗତିକୁ ଅନୁସରଣ ଓ ଅନୁକରଣ କରି ନିର୍ମିତ ହୋଇଛି । ଯେପରିକି ବାଘ୍ ଢେମ୍‌ସା, ସାପ ଢେମ୍‌ସା । ସଂଗୃହୀତ ମୃତ ଶୀକାର ଜନ୍ତୁର ଚାରିପଟେ ବେଢ଼ିଯାଇ ଢେମ୍‌ସା ନାଚିବା ସବୁ ଗୋଷ୍ଠୀରେ ସାଧାରଣ କଥା ହୋଇଥାଏ । ତେବେ ଏହି ଗୀତ ସଙ୍ଗେସଙ୍ଗେ ବୁଦ୍ଧି ପରୀକ୍ଷା ପାଇଁ ଗୀତ୍ ମରାମରି ଓ ସାଥୀ ଖୋଜା ବି ଚାଲିଥାଏ । ବେଣ୍ଟ୍‌କୁ ନ ଯାଇ ଘରେ ଲୁଚିଥିବା ବା ଗାଁରେ ଅଟକି ଯାଇଥିବା ପୁରୁଷମାନଙ୍କୁ ଜଙ୍ଗଲକୁ ଘଉଡ଼େଇବା ପାଇଁ ନାରୀମାନେ ଗୋଷ୍ଠୀ ନୃତ୍ୟକରି ଏକ ଗୀତ ଗାଆନ୍ତି ଯାହାକୁ କୁହାଯାଏ 'ତଅଡ଼େ' । ଏହା ମଧ୍ୟ ଶିକାର ଗୀତର ଅଂଶବିଶେଷ ଓ ପ୍ରାୟତଃ ଅଶ୍ଳୀଳ । ଗୀତ ଗାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ କାଦୁଅ ମଧ୍ୟ ଫୋପାଡ଼ନ୍ତି ।

- ଏଠି ତଅଡ଼େ ତଅଡ଼େ ସେଠି ତଅଡ଼େ
  ବେଣ୍ଟ୍ ସାରିଗାଲେ ପୁଦିକି ଲୋଡ଼େ
  ପୁଦି ପାଲାଇଲା କୋଟ୍ ପାଡ଼ ଆଡ଼େ ।
- ମନାକିନା ସୁଡ଼ାମା କଇ ଚପୁର୍‌ବାଲି
  ବେନାକିନା ବେନାମା ନିରଟା ବାଲି
  କଇଡାଲିଆ କସା ରଏ କଇ ଚପୁରବାଲି
  ବେଣୀପୁଡ଼ା ଗବାରଏ ନିରଟା ବାଲି(ପରଜା ଗୀତ)
- କନ୍‌ତି ଗେଲାସ୍‌ନି ଗୀତ୍‌ମାରାନି ନିନିମନ୍
  ବେଣ୍ଟ୍‌କେ ଯୁ ବେଣ୍ଟ୍‌କେ ଯୁ

୪. ଖେଳ ଓ ବ୍ୟଙ୍ଗ :

ସମସ୍ତ ଆଦିବାସୀ ଗୋଷ୍ଠୀରେ ଖେଳଗୀତ ବା କ୍ରୀଡ଼ାଗୀତ ଓ ବ୍ୟଙ୍ଗ ଗୀତ ଏକ ଅବାଧାରିତ ପରମ୍ପରା । ଏଥିରେ ମୁଖ୍ୟ ହେଉଛି ସାଇଲୋଡ଼ି ଓ ପୁନିଆ ଜୁନିଆ ଗୀତ ।

- "ଖେଲୁ ଖେଲୁ ଖେଲୁରେ ଗିର୍ଲିଆ

ଇମଝାଦାଣ୍ଡେ ଖେଲୁ ।

ଖେଲବା ତାନେ ଭଉଁରୀଗୁଲି

ବେଡୁ ତେନେ ହାଲି ଝୁଲିରେ ଗିର୍ଲିଆ... ।" କିମ୍ବା

- ପାନିଆ ଜୁନିଆ ଆମର ସାଇକେ ଆସା କିନା

ଆସ୍‌ଲେ ଆସା ନଇଲେ ନାଇଁ, ମୁଠିଏ ଚାଉଳ ଦିଆକିନା,

ଦେଲେ ଦିଆ ନା ଦେଲେ ନାହିଁ

ଘରିଅନା ଡାବୁ ଦିଆସ୍‌ନା, ବେଶୀଉଗାଡ଼ା....

ଏହି ସବୁ ଗୀତ ଆଦିବାସୀ ପଲ୍ଲୀମାନଙ୍କରେ ସାଧାରଣ ଘଟଣା । ପାନିଆ ଜୁନିଆ ଗାଇ ଗାଇ ଘରେ ଘରେ ବୁଲି ମାଗଣ କରିବା ପୁଷ୍ପରବ ବେଳେ ହୋଇଥାଏ ।

**୫.ଶୋକ :**

ଶୋକଗ୍ରସ୍ତ ହେଲେ ଆଦିବାସୀ ଖୁବ୍ କମ୍ ଗୀତ ଗାଇଥାଏ, ପ୍ରିୟ ବ୍ୟକ୍ତିର ମୃତ୍ୟୁରେ ଶୋକଗ୍ରସ୍ତ ପରିବାରରେ ଲୋକମାନେ ଚିତ୍କାର କରି କାନ୍ଦନ୍ତି ଏବଂ ନିଜର ମୁହଁ ଓ ଛାତିକୁ ରାମ୍ପୁପୁଡ଼ି ବିଦାରି ପକାନ୍ତି । କିନ୍ତୁ ଶୁଦ୍ଧିକ୍ରିୟା ସମୟରେ ଯେଉଁ ନାଚ ହୁଏ ସେଥିରେ କିଛି ଶୋକଗୀତ ଗାନ କରାଯାଇଥାଏ । ହେଲେ ତାହା ସାର୍ବଜନୀନ ହୋଇପାରି ନାହିଁ । କନ୍ଧ ସମାଜରେ କିଛି କିଛି ଶୋକଗୀତି ଦେଖିବାକୁ ମିଳେ । ଏଥିରେ ମୁଖ୍ୟତଃ ମୃତବ୍ୟକ୍ତିର ଗୁଣ କୀର୍ତ୍ତନ କରାଯାଇଥାଏ । ସାନ୍ତାଳ ଓ ହୋ ମାନଙ୍କର ଶୋକଗୀତ ଯେପରି ଜନପ୍ରିୟ, କୋରାପୁଟୀ ଆଦିବାସୀ ଗୋଷ୍ଠୀରେ ସେପରି ଗୀତର ପ୍ରଚଳନ ଖୁବ୍ କମ୍ । ତେବେ ଦୁଃଖ ଓ ଦୁର୍ଦ୍ଦଶାର ଗୀତ ଯଥେଷ୍ଟ ଦେଖିବାକୁ ମିଳେ ।

- ଏ ପ୍ରାଣ କ'ଣ ଯେ ? ପବନ !

ଏ ଦେହ କ'ଣ ଯେ ? ମାଟି !

ଏ ଜୀବନ କ'ଣ ଯେ ? ସାରୁପତ୍ରର ପାଣି !

ସକାଳର କାକର ମାତ୍ର ଅଳ୍ପ ସମୟର ! (ସାନ୍ତାଳୀ ଶୋକଗୀତି)

୬. ଦୁଃଖ ଦୁର୍ଦ୍ଦଶା ବିସ୍ଥାପନ :

ଆଦିବାସୀର ଦୁଃଖ ଦୁର୍ଦ୍ଦଶା ଓ ବିସ୍ଥାପନର ପ୍ରଳୟଙ୍କରୀ ପ୍ରଭାବ ବିଷୟରେ ସବୁଦିନେ ଫର୍ଦ୍ଦ ଫର୍ଦ୍ଦ ତଥ୍ୟ ପ୍ରକାଶ ପାଉଛି । ଦାରିଦ୍ର୍ୟ ଜନିତ ଦୁର୍ଦ୍ଦଶା, ଶୋଷଣଜନିତ ଦାରିଦ୍ର୍ୟ ଓ ବିସ୍ଥାପନ ଜନିତ ବିଘଟନ ଏବଂ ଦାଦନ ଜନିତ ସ୍ଥାନାନ୍ତରୀକରଣ, ବହୁ ଆଦିବାସୀ ଗୋଷ୍ଠୀ ଓ ସମାଜକୁ କେଉଁଠି କେଉଁଠି ନେଇ ଫୋପାଡ଼ିଛି ତା'ର ହିସାବ ନାହିଁ । ଅବିଭକ୍ତ କୋରାପୁଟରେ ଚାରିଚାରିଟି ବୃହତ୍ ନଦୀବନ୍ଧ ଯୋଜନାର ବୋଝ ବହିଛି । ଫଳରେ ବିସ୍ତୀର୍ଣ୍ଣ ଅରଣ୍ୟ ଓ ଆଦିବାସୀ ପଲ୍ଲୀ, ହଜାର ହଜାର ଗୁଡ଼ିଘର ବା ଗୁଡ଼େମ୍(ସମାଧି) ବୁଡ଼ି ଅଞ୍ଚଳରେ ଜଳ ସମାଧି ଲାଭ କରିଛି । ମାଲ୍‌କାନ୍‌ଗିରିରେ କୋଣ୍ଡା କାମେରୁ ଭଳି ଅମାନତ ଗୋଟିଏ ସଭ୍ୟତା ଜଳମଗ୍ନ ହୋଇଛି ବାଲିମେଳା ବନ୍ଧ ଯୋଜନାରେ । କିନ୍ତୁ ତଥାପି ଭଙ୍ଗା ଅଣ୍ଟାକୁ ସଜାଡ଼ି ଆଦିବାସୀ ଠିଆ ହୋଇଛି । ଆଉ ତା'ର ଜମି ଛାଡ଼ି ନ ଦେବାପାଇଁ ପଣ କରିଛି । ତା'ର ସଦ୍ୟତମ ଉଦାହରଣ ହେଉଛି ଇନ୍ଦ୍ରାବତୀ, କଳିଙ୍ଗ ନଗର ଓ ପୋସ୍କୋ । ସେଇ ସବୁ ଦୁଃଖ ଦୁର୍ଦ୍ଦଶା ଓ ବିସ୍ଥାପନର କ୍ଷୋଭ ଢେମ୍‌ସା ଗୀତରେ କିପରି ପ୍ରକାଶ ପାଇଛି ତା'ର କିଛି ଦୃଷ୍ଟାନ୍ତ ।

- ରାଜାର ଦେଶ୍ ପରଜାର ମାଟି, ଆଜି ଆମେ ବଡ଼େ ଜାଟି
  ପରଜେଟ୍ ବୋଲି ଆଇଲା ବାବୁ, ଦେଲା ଆମ୍‌କେ ଖାସୁ ଡାବୁ
  ସବ୍‌କେ ଛାଡ଼ି ଆଇଲୁ ଉଠି, ଡଙ୍ଗର୍ ପାଆର୍ ଜାଗା ମାଟି
  ଘର୍ କଲୁ ଆମେ ଝାଟିମାଟି, ତଲେ ଆସି ଆମେ ବଡ଼େଜାଟି ।

ଇନ୍ଦ୍ରାବତୀ ଅଞ୍ଚଳର ଏଇ ଗୀତ ସହ ଝାଡ଼ଖଣ୍ଡ ସାନ୍ତାଳ ଓ ହୋ ମାନଙ୍କର ନିମ୍ନ ଗୀତକୁ ତୁଳନା କରାଯାଉ, ଯାହା ସୁବର୍ଣ୍ଣରେଖା ବିସ୍ଥାପିତମାନେ ଗାଉଥିଲେ :

- "ଆମେ ଜାଣୁ । ତୁମେ କାହିଁକି ଆମକୁ ନିକାଲି ଦେଉଛ
  ଆମେ ଜାଣୁ । ତୁମେ କାହିଁକି ଆମ ଜମିଘର ବାଡ଼ି ବୁଡ଼ାଇ ଦେଉଛ
  ଆମେ ଜାଣୁ । ତୁମେ କାହିଁକି ଆମ ଧରତନୀ ଛଡ଼ାଇ ନେଉଛ
  କାହିଁକି ନା । ତୁମ ସହର ବଜାରରେ ଶସ୍ତା ଶ୍ରମ ଲୋଡ଼ା
  ତୁମ ଶ୍ରମ ବଜାରରେ ରସଦର ଅଭାବ ।
  ମା' ସୁବର୍ଣ୍ଣରେଖା ଆମକୁ ବିଦାୟ ଦେ ।"

ଏପରିକି ଏଥିସହ ଆଫ୍ରିକୀୟ ଲୋକ କବିର ଗୀତ ବି ତୁଳନୀୟ ।

"ହେ ସୂର୍ଯ୍ୟ, ତୁ ଏଠି ଥା ମୁଁ ବାହାରି ଯାଉଛି
ହେ ସୂର୍ଯ୍ୟ, ତୁ ଏଠି ଥା ମୁଁ ଚାଲିଯାଉଛି
ବିଦାୟ ଦେ, ମୋ ପାଇଁ ଦୁଃଖ କର୍‌ନା
କାରଣ ତୁ ଏଠି ଥିବୁ ଆଉ ମୁଁ ନ ଥିବି ।"

ସେହିପରି ଗୋତିର ଜୀବନ ଉପରେ ମାଲ୍‌କାନ୍‌ଗିରି ପରଜା ଗୀତ ଗାଏ – "ନିତି କାଲା କାନ୍ଧା ନିତି ମାଚଦାରା, ପଡ଼ିଲି ଦୁଃଖୀର ଘରେ / ନ ଯିବା ଜୀବନ୍‌କେ ବଲେ ବାନ୍ଧି ଦେଲି ସାଉକାରର ଦୁଆରେ / କି କରି ମରିବି କରମ ହୀନ / କାନ୍ଦିଲେ ନା ସାରେ ଦିନ !"

**୭. ଦାର୍ଶନିକତା :**

ଆଦିବାସୀର ଜୀବନଦର୍ଶନ ପ୍ରତିଫଳିତ ହୋଇଥିବା ବହୁ ଢେମ୍‌ସାଗୀତ ଆମେ ଶୁଣିବାକୁ ପାଉ । ପ୍ରକୃତି ପ୍ରତି, ଜୀବନ ପ୍ରତି, ଶ୍ରମ ପ୍ରତି, ମୃତ୍ୟୁ ପ୍ରତି ଓ ଡୁମା ପ୍ରତି ନିଜର ଦୃଷ୍ଟିଭଙ୍ଗୀ କମନୀୟ ଭାବରେ ତା'ର ଗୀତରେ ରୂପ ପାଇଛି । କେଉଁଠି ଗଣ୍ଡ ବୁଢ଼ାଟିଏ ମୃତ୍ୟୁ ପୂର୍ବରୁ ତା'ର ବୋହୂକୁ ଲୁଗାଖଣ୍ଡେ ମାଗି ବିଦାୟ ନେଉଛି ତ କେଉଁଠି ପ୍ରେମିକ ତା'ର ପ୍ରେମିକାକୁ ଜୀବନର ଅସାରତା କଥା କହି ମିଳନର ଦିନକୁ ଆଉ ନ ଗଡ଼ାଇବାକୁ କହୁଛି । ଆଉ ବା କେଉଁଠି ଜୀବନର ବିଶ୍ଳେଷଣ କରି ସେ କେତେ ନା କେତେ ଗୀତ ଗାଇଛି । ଏପରିକି ମୃତ୍ୟୁକୁ ସେ ଜୀବନର ଏକ ଅବସ୍ଥା ରୂପେ ଗ୍ରହଣ କରିନେଇଛି ଏବଂ ମୃତାତ୍ମାମାନଙ୍କୁ ମଧ୍ୟ ନିଜର ସାଥୀ ସହୋଦର ରୂପେ ମାନିନେଇ ପତ୍ରଟିଏ ଖାଦି ବା ଠୋଲାଏ ସଲପ / ମହୁଲି – ବାଢ଼ି ଦେଇଛି । ନଈଧାରରେ ବସି କାନ୍ଦୁଥିବା ଯୁବକକୁ ସେ କହେ, "କାନ୍ଦୁଛୁ କାହିଁକି ? ହଳ ନେଇ କ୍ଷେତକୁ ଯା', ସୁନାଫଳା ।" ଏଇସବୁ ପ୍ରତି ବେଦନ ତା'ର ବିଭିନ୍ନ ଢେମ୍‌ସା ଗୀତରେ ଦେଖା ଯାଇପାରେ;

"ଦେଶୀଆ ପିଲା ବଲ୍‌ଲା ଦାଦା ଦୁଇ ହାତ ଯଡ଼ି କରି
ତିନ୍ ଫଲିଆ ଚୁର୍‌ଚାଏ ମାଲିଆ ପୂର୍ତ୍ତିଲଗେ ମରାପିଟା ହୁଡ଼ାହୁଡ଼ି
ଏତୁ କରି ଦେଖ୍ ଆଇଲୁସ୍ ନଙ୍ଗ୍‌ଲା ଯିବୁସ୍ ନଙ୍ଗ୍‌ଲା ହୋଇ

ଚୁର୍‌ଚାଇମାଲିଆ ସାଙ୍ଗି ବୁଲ୍‌ବୁସ୍, ମରନୁକେ ବଡ଼ ନାଇଁ ।”

(ତିନ୍ ଫଲିଆ - ତୁଚ୍ଛାଟାରେ, ପୂର୍ତ୍ତିଲଗେ - ପୃଥିବୀରେ)

“ଏତାଇ ଦେଖ୍‌ନି ମନୁଷ୍ ଭାଇ

ଇ ପୂର୍ତ୍ତିଲଗେ କେ ସାନ୍‌ବଡ୍ ନାଇଁ ।”

“ମାଲୋ ମୁଁ ତୋର୍ ପୂଜାରୀ

ତତେ ମୁଁ ଦୁଧ୍ ଦେଉଛି କୁକୁଡ଼ା ଦେଉଛି

ଦୁଃଖ କର୍‌ନା ସବୁ ଖା

ମୋ ଗାଁରୁ ଅଡ଼େଇ ଦେ ବାଘଭାଲୁ ସାପ

ମୋ ଗାଁରୁ ଅଡ଼େଇ ଦେ ବାଘଭାଲୁ ସାପ

ମୋ ଗାଁରୁ ଅଡ଼େଇ ଦେ ଯେତେ ଯେତେ ପିଲାଙ୍କ ରୋଗ

ମୋ ଗାଁର ଗୁରୁଗାଈ ମୋ ଗାଁର ମଣିଷଙ୍କୁ ଭଲରେ ରଖିଥା ।(ବଣ୍ଡାଗୀତ)

୮. ସଂଗ୍ରାମ / ଉଦ୍ଦୀପନା :

ପୂର୍ବରୁ କହିଛି, ଆଦିବାସୀ ନାୟକମାନେ, ସେ ଲକ୍ଷ୍ମଣ ନାୟକ ହୁଅନ୍ତୁ କି ତାମା ଦୋରା, ଗୋଷ୍ଠୀର ସଙ୍କଟ, କାଳରେ ସେମାନଙ୍କୁ ଲଢ଼େଇର ମନ୍ତ୍ର ଶିଖେଇ ଆସିଛନ୍ତି । ଜନତାକୁ ସଚେତନ କରିବା ପାଇଁ ପ୍ରଥମେ ସେମାନଙ୍କ ଦୁଃଖଦୁର୍ଦ୍ଦଶା ପ୍ରତି ଇଙ୍ଗିତ କରିଛନ୍ତି ଏବଂ ପରେପରେ ସଂଗ୍ରାମରେ ଯୋଗ ଦେବାପାଇଁ ଐକ୍ୟବଦ୍ଧ ହେବାପାଇଁ ଉଦ୍ଦୀପନା ଯୋଗାଇ ଦେଇଛନ୍ତି । ଅବଶ୍ୟ ଆଜିର ନାୟକମାନେ ଲକ୍ଷ୍ମଣନାୟକ / ତାମାଦୋରାଙ୍କ ଉଚ୍ଚତା ପାଇପାରି ନାହାନ୍ତି । କିନ୍ତୁ ଓଡ଼ିଶାର ସବୁ ଆଦିବାସୀ ଅଧ୍ୟୁଷିତ ଜିଲ୍ଲାରେ ଜଗତୀକରଣ ପରିପ୍ରେକ୍ଷୀରେ ଆଦିବାସୀ ଗୀତରେ ସଂଗ୍ରାମର ସ୍ୱର ଶୁଣିବାକୁ ମିଳୁଛି । ରାୟଗଡ଼ାର ଦାସୁରାମ ମାଲେକା ଗୀତ ଗାଇଗାଇ ସୁବାରାଓ ପାଣିଗ୍ରାହୀଙ୍କ ଭଳି ସହିଦ ହୋଇଯାଇଛନ୍ତି । କୁଚେଇ ପଦରର ଭଗବାନ ମାଝୀ ଆଜି ବି ଗାଉଚି -

“ଏ ଜମି ଛାଡ଼ିବା ନାହିଁ ଏ ଡଙ୍ଗର ଛାଡ଼ିବା ନାହିଁ ।

ଆମେ ମାଟିର ପୋକ । ମାଟି ଛାଡ଼ିଲେ କେମିତି ବଞ୍ଚିବା ?”

- ରୂପାକେ ଟାଙ୍‌ନା ଜାଉ
  ଅଲପ୍ ପତରିଆ ସାଉ / ରାଣ୍ଡର୍ ସାଉକାର୍ ମନ୍ ବଡ଼ ଗେଂଜ୍‌ଗେଂଜା
  ଦେଉ ଦେଉ ନେଉ ନେଉ । ଦେଲି ଦଶମାନ୍ ନେଲୁ ଦଶମାନ୍
  ଗୁମାସ୍ତା ପାଖରେ ଲେଖାଇ ନେଲୁ / ତିରିଶ୍ ମାନ୍ ହୋଇଲା ଦେଇ ଦେଇ କରି
  ଧାନ୍ ସବୁ ସାରାଇଲୁ / ସାଉକାର୍ ରନ ସୁଝି ସୁଝି କରି ଉପବାସେ ଦିନ ନେଲୁ ।"
- "ଅଡ଼ାରେ ମାପିଲି ଲଙ୍କାମରିଚ / ବଡ଼ାରେ ମାପିଲି ଘିଅ
  ବିଦେଶୀ କମ୍ପାନୀ ଆସି କଇଲାନି, ତମର୍ ଜମିବାଡ଼ ଦିଆ
  ଯେତେକ୍ କଇଲେ ସେତେକ୍ ଦେବୁ / ତମର ଜଙ୍ଗଲ୍ ଡଙ୍ଗର ନେବୁଁ
  କାରଖାନାଟାନେ ଚାକ୍‌ରି ଦେବୁ ସାଉକାର୍ କରାଇ ଦେବୁ
  ଆମର୍ ସଙ୍ଗେ ତମେ ରଇଲେ ସରି ଟାଙ୍ଗ୍‌ଡ଼ା ଟାଙ୍ଗ୍‌ଡ଼ା ଡାବୁ ।"

ଏଇ ସବୁ ସଂଗ୍ରାମ ସଂଗୀତର କିଛିଟା ପ୍ରତିବେଦନ ଏଠାରେ ପରିବେଷିତ ହୋଇଛି । ଢେମ୍‌ସା ଗୀତର ଏଇ ବ୍ୟାପ୍ତି ଓ ଦୀପ୍ତି ପ୍ରତି ସଜାଗ ରହିଲେ ଢେମ୍‌ସା ନାଚରେ ଆମେ କିଛିଟା ସକାରାତ୍ମକ ପରିବର୍ତ୍ତନ ଆଣିପାରିବା ଯାହା ଆଦିବାସୀ ସମାଜ ଦ୍ୱାରା ଗ୍ରହଣୀୟ ହେବ ଏବଂ ସେ ସମାଜକୁ ପ୍ରଗତି ପଥରେ, ସଂଗ୍ରାମ ପଥରେ ଓ ପ୍ରତିରୋଧ ପଥରେ ଆଗେଇ ନେଇ ପାରିବ ।



# ଆଦିବାସୀ ଲୋକଗୀତରେ ପ୍ରେମ ପ୍ରସଙ୍ଗ :
# ଅଣଆଦିବାସୀ ସମାଜର ପ୍ରେମ ସହ ଏକ ତୁଳନାତ୍ମକ ଅଧ୍ୟୟନ

ଭାରତୀୟ ଧର୍ମ ଓ ଦର୍ଶନ ଶାସ୍ତ୍ରମାନଙ୍କରେ ପ୍ରେମ ସଂପର୍କରେ ବହୁ ପ୍ରକାରର ତର୍ଜମା ଦେଖାଯାଏ । କିନ୍ତୁ ସେ ସବୁ ହୁଏତ ବିଦେହୀ ଓ ସେଥିପାଇଁ ବସ୍ତୁ ଜଗତର ଊର୍ଦ୍ଧ୍ୱରେ କିମ୍ବା ବାତ୍ସାୟନ ଓ ରଜନୀଶଙ୍କ ପ୍ରତିବେଦନ ଭଳି ବିକୃତି ଭରା । ଏ ସବୁରେ ପ୍ରେମକୁ ବସ୍ତୁଜଗତଠାରୁ ଓ ସାମାଜିକ ଆବଶ୍ୟକତାଠାରୁ ବିଛିନ୍ନ କରି ଦେଖା ଯାଇଥାଏ । ନୋଚେତ୍ ପ୍ରେମକୁ ନିଛକ ଦାୟିତ୍ୱହୀନ ଯୌନତାରେ ପରିଣତ କରାଯାଇଥାଏ । ସୁତରାଂ ଏହାର ଭିତ୍ତି ହେତୁବାଦୀ ନ ହୋଇ ହୋଇଥାଏ ଆଧିଭୌତିକ । ପୁଅଟିଏ ଯେତେବେଳେ ଗୋଟିଏ ଝିଅକୁ ଭଲପାଏ, ବସ୍ତୁବାଦୀ ଦୃଷ୍ଟିରୁ ପୁଅଟି ସେ ଝିଅକୁ ନିଜ ସନ୍ତାନର ମାଆ ବା ଗର୍ଭଧାରିଣୀ ରୂପେ ଦେଖିବାକୁ ଚାହେଁ । କିନ୍ତୁ ଅଣଆଦିବାସୀ ସମାଜରେ ବହୁ ବଡ଼ବଡ଼ ବକ୍‌ବାଜୀ କରାଯାଇଥାଏ । ସେମାନେ ଖ୍ରୀଷ୍ଟିଆନ ହୁଅନ୍ତୁ କି ହିନ୍ଦୁ, ମୁସଲିମ୍ ହୁଅନ୍ତୁ କି ଇହୁଦୀ, ସବୁ ଧର୍ମର ନାରୀମାନେ ପୁରୁଷ ସହ ଏକ ଅସମ ଭୂମିରେ ଥାଇ ଯେଉଁ ଯୌନପ୍ରେମର ଅଭିଜ୍ଞତା କରନ୍ତି, ତାକୁ ସ୍ୱର୍ଗୀୟତାର ପୁଟ ଲଗାଇ ଏବଂ ସତୀତ୍ୱ ଓ ପାତିବ୍ରତ୍ୟ ଇତ୍ୟାଦି ମୂଲ୍ୟବୋଧର ଧୂମ କୁଣ୍ଡଳୀ ବେଢ଼ାଇ ସ୍ୱାଭାବିକତା ଠାରୁ ଅନେକ ଦୂର ଦୂରାଇ ଦିଆଯାଏ । ଅଥଚ ଏହାର ଏକମାତ୍ର ଉଦ୍ଦେଶ୍ୟ ଥାଏ ନାରୀ ଗର୍ଭର 'ପବିତ୍ରତା'କୁ ବଜାୟ ରଖିବା ଅର୍ଥାତ୍ ସନ୍ତାନର ପିତୃତ୍ୱକୁ ସୁନିଶ୍ଚିତ କରିବା ଅର୍ଥାତ୍ ସଂପତ୍ତିର ଉତ୍ତରାଧିକାରୀକୁ ଆପଣାର ବଂଶଧର ରୂପେ ଚିହ୍ନଟ କରିବା । ଫଳରେ ପ୍ରଣୟର ସ୍ୱାଭାବିକ ଓ ସ୍ୱତଃସ୍ଫୂର୍ତ୍ତ ସ୍ଫୁରଣ ଏଠି ଏକ କ୍ୱଚିତ ଘଟୁଥିବା କ୍ଷଣଜୀବୀ ଘଟଣାରେ ପରିଣତ ହୋଇଥାଏ ।

ହିନ୍ଦୁଧର୍ମରେ ଶଙ୍କରାଚାର୍ଯ୍ୟ ନାରୀକୁ ନରକର ଦ୍ୱାର ବୋଲି ଘୋଷଣା କରିଥିବା ବେଳେ ଲାଟିନ୍ ଧର୍ମଯାଜକ ଟାର୍‌ଟୁଲିଆନ୍ ଘୋଷଣା କରି ଯାଇଛନ୍ତି, "Thou art the Devil's gate". ପୁଣି ସେଣ୍ଟ ଅଗଷ୍ଟିନ୍ ଶିଷ୍ୟମଣ୍ଡଳୀକୁ ଶିକ୍ଷା ଦେଉଥିଲେ - "ଜନନୀ ହେଉ ଅଥବା ଭଗ୍ନୀ, ପ୍ରତ୍ୟେକ ନାରୀ ଭିତରେ ଥିବା ଇଭ୍ ଚରିତ୍ର ପ୍ରତି ଆମକୁ ସତର୍କ ରହିବାକୁ ହେବ ।" ପୁଣି - "ତମେ ହିଁ ସଇତାନ ପାଇଁ ରାସ୍ତା ଉନ୍ମୁକ୍ତ କରିଛ । ନିଷିଦ୍ଧ ଫଳ ଭକ୍ଷଣ ପାଇଁ ତମେ ହିଁ ଦାୟୀ । ସର୍ବପ୍ରଥମେ ସ୍ୱର୍ଗୀୟ ବିଧାନକୁ ତୁମେ ହିଁ ଲଂଘନ କରିଛ ।" ଅର୍ଥାତ୍ ପୁରୁଷ ନିର୍ଦ୍ଦୋଷ, କାରଣ ନାରୀ ତାକୁ ପ୍ରଲୁବ୍ଧ କରିଛି । ଏପରିକି ଆଉ ଜଣେ ସେଣ୍ଟ (ସେଣ୍ଟ ବର୍ଣ୍ଣାଡ଼୍) ନିଜ ମାଆଙ୍କୁ ଚିଠି ଲେଖିଥିଲେ - "ତୁମକୁ ନେଇ ମୁଁ କ'ଣ କରିବି ? ପାପ ଓ ଯନ୍ତ୍ରଣା ଛଡ଼ା କ'ଣ ବା ଆଉ ତମ ପାଖରୁ ମୁଁ ପାଇଛି ? ତୁମେ ମୋତେ ଏଇ ଯନ୍ତ୍ରଣାମୟ ସଂସାରକୁ ଆଣିଛ, ସେତିକି ଯଥେଷ୍ଟ ନୁହେଁ କି ? ତମେ ପାପୀ ଓ ସେହି ପାପରୁ ମୋର ସୃଷ୍ଟି ।" ମନୁସଂହିତାରେ ମଧ୍ୟ ଏହିସବୁ ଦୋହରାଯାଇଛି, ଏହି ଏକା ମୂଲ୍ୟବୋଧର ଉଚ୍ଚାରଣ କରାଯାଇଛି । "ସେ ଝିଅ ହେଉକି ମାଆ କି ଭଉଣୀ, କୌଣସି ନାରୀସହ ଏକତ୍ର ଏକ କକ୍ଷରେ ଶୋଇବା ବର୍ଜନୀୟ ।" ପିତାର କଥା ଅବମାନନା ବା ସ୍ୱାମୀ ପ୍ରତି ବିଶ୍ୱାସଘାତକତା ଅପରାଧରେ ରମଣୀକୁ ନଦୀକୁ ବା କୂପକୁ ନିକ୍ଷେପ କରିବା ପାଇଁ ବା ପର୍ବତ ଉପରୁ ତଳକୁ ପକାଇ ଦେବାପାଇଁ କେଉଁ ଶାସ୍ତ୍ରରେ କୁହାଯାଇଛି ତ ଆଉ କେଉଁଠି ଟେକା ମାରି ମାରି ବା ନିଆଁରେ ପୋଡ଼ି ବା ଲିଂଚିଂ(Lynching)ଦ୍ୱାରା ପ୍ରାଣଦଣ୍ଡର ବ୍ୟବସ୍ଥା କରାଯାଇଛି । ଇସ୍‌ଲାମ୍ ଧର୍ମରେ ତ ପୁରୁଷର ଅଧିକାର ଆକାଶସ୍ପର୍ଶୀ । ସ୍ତ୍ରୀକୁ ତ୍ୟାଗ କରିବା ପାଇଁ ସ୍ୱାମୀର ତିନିଥର 'ତଲାକ' ଉଚ୍ଚାରଣ ହିଁ ଯଥେଷ୍ଟ । ସବୁ ଧର୍ମରେ ନାରୀ ହେଉଛି ପୁରୁଷର ସଂପତ୍ତି ଓ ଦାସୀ ଏବଂ ସନ୍ତାନ ତଥା ଯୌନସୁଖ ଦେଇ ନ ପାରିଲେ ସଂପୂର୍ଣ୍ଣ ମୂଲ୍ୟହୀନା, ସୁତରାଂ ବର୍ଜନୀୟା । ଏପରିକି ନାରୀକୁ, ଆତ୍ମାହୀନା ଓ ଶିକ୍ଷାର ଅଯୋଗ୍ୟା ବୋଲି ଅନେକ ଶାସ୍ତ୍ରରେ ଘୋଷଣା କରାଯାଇଛି । ତେଣୁ ନାରୀର ସମ୍ମତି ବୋଲି କିଛିନାହିଁ । ଏପରିକି ନିଜର ମନ ଓ ଦେହ ଉପରେ ମଧ୍ୟ ଅଧିକାର ନାହିଁ ।

ସୁତରାଂ ପ୍ରେମହୀନ ବିବାହ ଅଣଆଦିବାସୀ ସମାଜରେ ଶତକଡ଼ା ଅନେଶତ କ୍ଷେତ୍ରରେ ଦେଖାଯାଏ । ବିଶ୍ୱାସଯୋଗ୍ୟ ପରିସଂଖ୍ୟକର ଅଭାବ ସକାଶେ ଏହି ଏକଭାଗ ମାର୍ଜିନ୍ ଦେବାକୁ ହେଉଛି । ଯେଉଁ କେତୋଟି ପ୍ରେମବିବାହ ସଂଘଟିତ ହୁଏ ସେଥିରୁ

ଅଧିକାଂଶ, ବିବାହ ପରେପରେ ହିଁ ପ୍ରେମହୀନତାର ଶଗଡ଼ ଗୁଳାରେ ପଡ଼ିଯାଏ । ଆଉ ତଥାପି ଯଦି କିଛି ପ୍ରେମ ବଂଚିରହେ, ସେ ସବୁ ଅଳ୍ପକିଛି କ୍ଷଣଜୀବୀ ଅଘଟଣ ମାତ୍ର । କାରଣ ପରସ୍ପର ଦେହ, ମନ ଓ ଆତ୍ମା ପ୍ରତି ସମ୍ମାନ ନ ଥିଲେ ଏବଂ ଏତେ ବେଶି ଅସମତା ଥିଲେ ଆଉ କିଛି ସମ୍ଭବ ହୋଇପାରେ । କିନ୍ତୁ ପ୍ରେମ ନୁହେଁ ।

ଆଦିବାସୀ ସମାଜରେ ପ୍ରେମର ଅର୍ଥ କୌଣସି ସ୍ୱର୍ଗୀୟ ପ୍ରେମ ନୁହେଁ, ନାରୀ ପୁରୁଷର ବ୍ୟକ୍ତିଗତ ପାରସ୍ପରିକ ଯୌନପ୍ରେମ । ଅର୍ଥାତ୍ ଉଭୟଙ୍କ ସମ୍ମତି ଓ ସହମତିରେ ଏହା ଅର୍ଥାତ୍ ପରସ୍ପରର ମିଳନ ଘଟିଥାଏ । ଆଦିବାସୀର ପାରମ୍ପରିକ ମୂଲ୍ୟବୋଧ ଅନୁସାରେ ଏହା ଆଦୌ ଘୃଣ୍ୟ ନୁହେଁ । ବରଂ ସର୍ବଥା ଓ ସର୍ବଦା ସ୍ୱାଗତଯୋଗ୍ୟ । କାରଣ ଏହା ହିଁ ସୃଷ୍ଟିର ବୀଜମନ୍ତ୍ର, ଯାହା ଗୋଷ୍ଠୀକୁ ତଥା ସମାଜକୁ ବଂଚାଇ ରଖେ । ଶ୍ରମ ପ୍ରକ୍ରିୟାର ସ୍ୱଚ୍ଛନ୍ଦ ପ୍ରବାହକୁ ଅବାରିତ ଓ ଅବ୍ୟାହତ ରଖିବା ପାଇଁ ଏହା ମୁଖ୍ୟ ଭୂମିକା ନେଇଥାଏ । ଏଥିରେ ଲଜ୍ଜା ନାହିଁ କି ଅନିଚ୍ଛା ନାହିଁ, ପାପ ନାହିଁ କି ଅପରାଧ ବୋଧ ନାହିଁ ବରଂ ଅଛି ଶ୍ରଦ୍ଧା ଏବଂ ପରମ ଆଗ୍ରହ । ଗୋଟିଏ ବାକ୍ୟରେ କହିବାକୁ ଗଲେ ଆଦିବାସୀମାନେ ହେଉଛନ୍ତି ଏକ ଶ୍ରମଜୀବୀ ଜନଜାତି । ଏଠାରେ ଉଭୟ ନାରୀ ଓ ପୁରୁଷ ସମାନ ସାମାଜିକ ଓ ଅର୍ଥନୈତିକ ଭୂମିରେ ଛିଡ଼ାହୋଇ ପରସ୍ପରକୁ ପ୍ରେମ ନିବେଦନ କରନ୍ତି । ଏଠି ଲାମ୍ପଟ୍ୟର ସ୍ଥାନ ନାହିଁ । ନାରୀର ଦେହ ଓ ଆତ୍ମା ଉପରେ ଅଧିକାର କେବଳ ତା'ର । ଆଉ କେହି ଏହି ଅଧିକାରକୁ ଛଡ଼େଇ ନେବାର ଚେଷ୍ଟା ବା ଆସ୍ଫାଳନ କଲେ ତ୍ରାହି ପାଇପାରନ୍ତି ନାହିଁ । ଆଜି ଯେତେବେଳେ ନାରୀ ମୁକ୍ତି ଆନ୍ଦୋଳନର ପ୍ରବକ୍ତାମାନେ ନାରୀକୁ ଯୌନ ଉପଭୋଗର ବସ୍ତୁ ନ ହୋଇ ନିଜର ଯୌନାବେଗର ଭୋକ୍ତା ରୂପେ ପ୍ରକାଶ ଓ ପ୍ରୟୋଗ କରିବା ଲାଗି ଯୁକ୍ତି ବାଢୁଛନ୍ତି, ସେତେବେଳେ ଆଦିବାସୀ ସମାଜରେ ଏହା ଏକ ସାମାନ୍ୟ ଘଟଣା । ସ୍ୱାଭାବିକ ଭାବେ ନାରୀ ଏଠି ନିସଂକୋଚରେ ନିଜର ଯୌନାବେଗ ପ୍ରକାଶ କରିଥାଏ । ଏ କ୍ଷେତ୍ରରେ ପୁରୁଷ ତୁଳନାରେ ସେ ଆଦୌ ପଛୁଆ ନୁହେଁ । ସେଥିଲାଗି କେହି ତାକୁ ଅଲାଜୁକି ବା ଅଣ୍ଡିରାଚଣ୍ଡୀ କହେନି କିମ୍ବା ତାକୁ ଯୋଗିନୀର ଯୁକ୍ତି ଦେବାକୁ ପଡ଼େନି ।

ଯୌବନ ଆସିବା ସଂଗେ ସଂଗେ ଉଭୟ ପକ୍ଷରୁ ସମାନ ସମ୍ବେଗ ଓ ଉଦଗ୍ରତା ନେଇ ବ୍ୟକ୍ତିଗତ ଯୌନପ୍ରେମର ପ୍ରକାଶ ଘଟେ । ଏହି ପ୍ରେମପଥରେ ସମାଜ ଆଦୌ ବାଧକ ହୁଏନାହିଁ । ବରଂ ତାକୁ ଅବାଧ, ସ୍ୱଚ୍ଛନ୍ଦ ଓ ସାବଲୀଳ କରିବା ପାଇଁ ଯଥାଯଥ

ବିଧିବ୍ୟବସ୍ଥା ବି କରିଥାଏ । ଧାଙ୍ଗଡ଼ା, ଧାଙ୍ଗଡ଼ୀଙ୍କ ଅବାଧ ମିଳାମିଶା ଘରେ ବାହାରେ, ବଣରେ ବେଢ଼ାରେ, ଧାଙ୍ଗିଡ଼ି ବସାରେ ସେଲାନି ଡିଙ୍ଗରେ ସବୁଆଡ଼େ ଘଟିଥାଏ । ଶ୍ରମର ତାଳେ ତାଳେ, ବର୍ଷାରେ ଭିଜୁ ଭିଜୁ, ଡଙ୍ଗର ଚଢୁ ଚଢୁ ଝୋଲା ବା ଝରଣା ଡେଉଁ ଡେଉଁ, ପାହାଡ଼ ପର୍ବତ ଡେଗାଉ ଡେଗାଉ କପାଳରୁ ଝରି ଆସୁଥିବା ସ୍ୱେଦ ଓ ହୃଦ୍‌ସ୍ପନ୍ଦନର ତାଳେ ତାଳେ ଧାଙ୍ଗଡ଼ା ଓ ଧାଙ୍ଗଡ଼ୀମାନେ ଦଳବଦ୍ଧ ଛନ୍ଦରେ ଗୀତ ଗାଇଉଠନ୍ତି । ଗୀତରେ ଗୀତରେ କିଏ କାହାକୁ ଧୁଙ୍ଗିଆ ମାଗେ ଅର୍ଥାତ୍ ପ୍ରେମ ନିବେଦନ କରେ ତ କିଏ ସଲପ ପାଇଁ ନିମନ୍ତ୍ରଣ ଜଣାଏ; କିଏ ମାମୁଲି ମୁଦିଟିଏ କିମ୍ବା ରୂପା କାନଫୁଲଟିଏ ଦେବାର ୱାଦା କରେ ତ ଆଉ କିଏ ଯାଚେ ତୁଚ୍ଛ କୁରେଇ ଫୁଲ । ନାରୀ ପୁରୁଷ ସଂପର୍କୀୟ ମୂଲ୍ୟବୋଧର ସମଭୂମିକତା ହିଁ ଏଭଳି ଆବେଗିକ ସ୍ୱଚ୍ଛ ପ୍ରଣୟ ପାଇଁ ସୁନ୍ଦର ଭିତ୍ତି ଓ ପୃଷ୍ଠଭୂମିଟିଏ ନିର୍ମାଣ କରିଥାଏ । ତେଣୁ ଏହି ଭାବ ପ୍ରକାଶରେ କିଛି ରୁଗ୍ଣ ମାନସିକତା ଅର୍ଥାତ୍ Inferiority ବା Superiority Complex ରହି ନ ଥାଏ । ନିଜ ନିଜର ମନ ପସନ୍ଦ ସାଥୀଟିକୁ ବାଛିବା ପାଇଁ ଧାଙ୍ଗିଡ଼ି ଯେପରି ଧାଙ୍ଗଡ଼ାର ବଳବୁଦ୍ଧି ପରୀକ୍ଷା କରେ, ଧାଙ୍ଗଡ଼ା ମଧ୍ୟ ସେହିପରି ଧାଙ୍ଗିଡ଼ୀର ତନିମା ଓ ସୌନ୍ଦର୍ଯ୍ୟର ବୀକ୍ଷା କରିବା ସଂଗେ ସଂଗେ ଶକ୍ତି ଓ ବୁଦ୍ଧିର ପରୀକ୍ଷା କରିଥାଏ । କେତେବେଳେ ଏହା ଖଣି କ୍ଷେତ ରୋଡ୍ କାମର ଶ୍ରମ ସଂଗୀତରେ ହୋଇଥାଏ ତ କେତେବେଳେ ଚଇତିଗୀତର ଗୀତ୍ ମରାମରିରେ । ଜଣେ ବିଭା ହୋଇ ସାରିଥିବା ପୁରୁଷର ପ୍ରେମ ନିବେଦନ ଶୁଣି ବିବାହିତା ଧାଙ୍ଗଡ଼ି ଗାଇଉଠେ –

"କାଲିଆ କାଙ୍କଡ଼ା ଚେପଟା ଦାଡ଼ା, ଫୁଲ ଫୁଟେ ଗାଡ଼ା ଗାଡ଼ା
ମୁଏଁ ମେଶ ନାହିଁ ଟିଟଡ଼ା ଗୋଡ଼ା
ସଗରତା ମାଇଜି ଲୋଡ଼ା ।"

ଅର୍ଥାତ୍ ମୁଁ ହେଉଛି କଳାକଙ୍କଡ଼ା, ମୋର ଧାରୁଆ ଗୋଡ଼କୁ ଦେଖୁଛୁ ତ । ଚାରିଆଡ଼େ ପେନ୍ଥ ପେନ୍ଥା ଫୁଲ ଫୁଟିଛି । (ଅର୍ଥାତ୍ ଝିଅମାନେ ଦଳଦଳ ହୋଇ ନାଚ କରୁଛନ୍ତି ।) ଆରେ ଶୁଖିଲା ଗୋଡ଼ିଆ ଟୋକା, ତୋ ଗୋଡ଼ରେ ବଳନାହିଁ କି ମୁହଁରେ ନିଶ ନାହିଁ । (ଅର୍ଥାତ୍ ପୌରୁଷ ନାହିଁ ।) ତୁ ପୁଣି ସଗରତା ମାଇଜି ଖୋଜୁଛୁ (ଅର୍ଥାତ୍ ଅଧିକ ଯୌନ ଅଭିଜ୍ଞା ବିବାହିତା ସ୍ତ୍ରୀକୁ ଲୋଡ କରୁଛୁ ।)

ପୁଣି ନାରୀ ଯେତେବେଳେ ପୁରୁଷର ପୌରୁଷରେ ମୁଗ୍ଧ ହୋଇ ସଂପୂର୍ଣ୍ଣ ତରଳି ଯାଏ ଏବଂ ତାକୁ ନିଜର ଭାବି ସନ୍ତାନର ଜନକ ରୂପେ କଳ୍ପନା କରି ତା' ପାଖେ ନିଜକୁ ସମର୍ପଣ କରିଦିଏ, ସେତେବେଳେ ସେ କିନ୍ଦିରି ଗାଇଉଠେ –

"ଉଛ ବାଟିପଟା କମ୍ଲା ତଟା ଖୁଜି ଆମ ଗଚ ଡେଂକି
ପନତ ପକାଇ ମାନ ମାଗୁଛି, ତୋର ବୁଦ୍ଧିମନ୍ତ ଦେକି ।"

ପୁଣି "ବାଆଁଟା ବାଆଁଟା ପିଉଲ ବାଆଁଟା
ବାଆଁଟା ଉପରେ ମଡ଼ା
ଟଣ୍ଡ ମୁଣ୍ଡସବୁ ଚପରା ଲାଗିଲା
ଦୁଙ୍ଗିଆ କଣ୍ଡେକ ଦିଆ ।"

ସେଇଠୁ ପୁରୁଷ ଉତ୍ତର ଦେଉଛି -

"ଏସୁର ବରଷା ବଡ଼ ବରଷା
ଦୁଙ୍ଗିଆ ପାଚିଲା ନାହିଁ
ଗଟେ ପତରକେ ଚାରିଅନା ଡାବୁ
ତୋକେ ଦେଲେ ମକେ ନାଇଁ ।"

କିନ୍ତୁ ଇପ୍‌ସିତ ପୁରୁଷକୁ ଛାଡ଼ିବା ପାଇଁ ନାରୀ ନାରାଜ । ସେ ଜବାବ୍ ଦେଉଚି -

"ଖାଡ଼ା (ଠେକୁଆ)ପାଲାଇଲା ଆଡ଼ିକି ବିଡ଼ିକି
କିଆ (ଟିଆ ଚଢ଼େଇ)ପାଲାଇଲା ଠିଆ
ଗୋଟେକ୍ ପତର୍‌କେ ଚାରିଅନା ଡାବୁ
କଣ୍ଡେକ୍ ଟିପ୍ ଛିଡ଼ାଇ ଦିଆ ।

"ରୂପାକେ ଟାଙ୍ଗନା ସୁନାକେ ଜାଉ
ଅଲପ ପତରିଆ ସାଉ (ଅଳପ ଧୁଙ୍ଗିଆ ଥିବା ସାହୁକାର)
ନଇଲା ବେଳର ପଡ଼େକ୍ ଚାଉଲ
ବାଟା ବିଜା କରି ଖାଉ ।"

(ତୁ ଅଛଟିକେ ଧୁଙ୍ଗିଆ ଛିଡ଼େଇକି ଦେ । ସେଥିରେ ଚଳିବା । ତୁ ଗରିବ ମୁଁ ଜାଣେ । ତେବେ ପଡ଼ିଏ ଚାଉଳକୁ ବି ଭାଗବାଣ୍ଟି ଖାଇବା ।)

ଜଣେ ପୁରୁଷର ପୌରୁଷରେ ମୁଗ୍ଧ ହେବା ପରେ ପଇସା ମୁଣ୍ଡି ବିଡ଼ା ହେଲେ ମଧ୍ୟ ଧାଙ୍ଗଡ଼ିର ଆପତ୍ତି ନଥାଏ । ଅର୍ଥାତ୍ ବିନା ନିମନ୍ତ୍ରଣରେ ଯାଇ ପୁରୁଷ

ଘରେ ବସା ବାନ୍ଧି ସେ ତା'ର ପାଇଟି କରିଥିଲେ । ଏପରିକି ସେ ତା'ଠାରୁ ସାନ୍‌ଲି ହେବା ପାଇଁ ବି ସଂକୋଚ କରେନାହିଁ । ହିନ୍ଦୁ ଓ ଖ୍ରୀଷ୍ଟଧର୍ମରେ ଥିବା ଛଳନାତ୍ମକ(ହିପୋକ୍ରିସି) 'ଏକ ପତି ପତ୍ନୀବ୍ରତ'କୁ ନାତ୍ ମାରି, ପସନ୍ଦ ନ ହେଲା ସ୍ୱାମୀଠାରୁ ସେ ଅବଲୀଳା କ୍ରମେ ଦୂରେଇ ଯାଏ ଏବଂ କୌଣସି ପାପବୋଧ ନ ଥାଇ ଦ୍ୱିତୀୟ ବା ତୃତୀୟ ସ୍ୱାମୀ ମଧ୍ୟ ଗ୍ରହଣ କରେ । ଏହାକୁ ସମାଜ କହେ ସଗର୍ତା । ଯୁକ୍ତିଯୁକ୍ତ ଛାଡ଼ପତ୍ର ଓ ପୁନର୍ବିବାହ ଏଠି ଯେପରି ସହଜ, ବିଧବା ବିବାହ ମଧ୍ୟ ମାମୁଲି ଘଟଣା । ଜଣେ ଧର୍ଷିତା ଏଠି ନିସଂକୋଚରେ ଧର୍ଷକ ପ୍ରତି ଆଙ୍ଗୁଳି ଇଙ୍ଗିତ କରି ନ୍ୟାୟ ମାଗିପାରେ । ପୁଣି ଧର୍ଷିତାକୁ ସମାଜ କେବେହେଲେ ଘୃଣା ବା ଦୟନୀୟ ଦୃଷ୍ଟିରେ ଦେଖେନାହିଁ । ତା' ଅଣ୍ଡରା ବା ସାତ୍ରା(ଶାଶୁ) ଏଥିପାଇଁ ତାକୁ ଉଲୁଗୁଣା ଦିଅନ୍ତି ନାହିଁ । ଡିଣ୍ଡା ହୋଇଥିଲେ ଏହି କାରଣରୁ ତା'ର ବିବାହରେ ମଧ୍ୟ ସମସ୍ୟା ହୁଏନାହିଁ । ଏପରିକି ପ୍ରତାରକ ପୁରୁଷର ପିଲାଟିଏ ନେଇ ମଧ୍ୟ ଜଣେ ଝିଅ ଆଉ ଜଣକ ସହ ସହଜରେ ଘର ବସାଇ ପାରେ । କାରଣ ଇଚ୍ଛା ବା ଅନିଚ୍ଛାରେ କୌଣସି ପୁରୁଷ ସହ ସଂପର୍କ ହେଲେ ସତୀତ୍ୱ ବୋଲି କିଛି ଦ୍ରବ୍ୟ ନାରୀ ଏଠି ହରାଇ ବସେନି । ସେହିପରି ଜନ୍ମିତ ଶିଶୁର ପିତୃତ୍ୱ ପ୍ରଶ୍ନକୁ ନେଇ ଗୋଷ୍ଠୀ କାହାକୁ ହେଲେ ବଦ୍‌ନାମ କରେନାହିଁ ।

ଥରେ ମନୋନୀତ ପୁରୁଷକୁ ପସନ୍ଦ କରିନେବା ପରେ ଧାଙ୍ଗିଡ଼ି ସେହି ପୁରୁଷର ସମସ୍ତ ଦାରିଦ୍ର୍ୟକୁ ମଧ୍ୟ ବରି ନେବାପାଇଁ ସମ୍ମତି ଜଣାଇଦିଏ । ସେଥିପାଇଁ ଆବଶ୍ୟକ ହଜାରେ ଶ୍ରମର କଷ୍ଟକୁ ସହିନେବା ପାଇଁ ଇଙ୍ଗିତ ଦେଇ ପୁରୁଷକୁ ଛାଡ଼ି ନ ଯିବା ପାଇଁ ଆକୁତି କରେ -

"ଆସିତିଲି ଗରେ ନ ଥିଲୁ ଗରେ କରଂଜ ଦାତୁନ୍ କରେ,
ଆଣ୍ଡିର୍ ପେଜ୍‌କେ ସାର୍‌ସି ବଲି କସ୍‌ରି ଦେଲାସ୍ ଦିରେ,
ସୁକୁନା ସୁକାଇଲି ଲାଟି ଲାମାଇଲି
ସାଆରେ କୁକୁଡ଼ା ସାଆ,
ଆଣ୍ଡିର ପେଜ୍‌କେ ସର୍‌ପି ଦେବି
କେତେକ୍ ଖାଇସା ଖାଆ ।"

(ଅର୍ଥାତ୍ ତୋ ଘରକୁ ଆସିଥିଲା ବେଳେ ତୁ ନଥିଲୁ ବାହାରକୁ ଯାଇଥିଲୁ ।

ମୁଁ କରଞ୍ଜ କାଠିରେ ଦାନ୍ତ ଘଷିଲା ବେଳେ ତୁ ଆସିଲୁ ଓ ମୋତେ ଦେଖିଦେଇ ମୁଁ କାଳେ ହାଣ୍ଡିର ପେଜ ସାରିଦେବି ଭାବି କୁଆଡ଼େ ଚୁପ୍‌କିନା ଚାଲିଗଲୁ । ମୁଁ ମାଣ୍ଡିଆ ଶୁଖାଇଲି ଓ ବାଡ଼ି ବୁଲାଇ କୁକୁଡ଼ା ଘୋଉଡ଼ାଇଲି । ମୋତେ ତୁ ଘରକୁ ନେଇଗଲେ ତୁ ଯେତେ ପେଜ ଚାହିଁବୁ ହାଣ୍ଡି ସହିତ ସମର୍ପି ଦେବି ! ଥରେ ନେଇ ଦେଖେ ।) ସେହିପରି ଆଉ ଏକ ଗୀତ -

"ଆମର ଲଖଣ ପୁରେ ଦଇମିତି ମୁଣ୍ଡ ଦମକି ଦମକି ଇଣ୍ଡା
ମାଙ୍ଗ୍‌ଲା ଆଚତ୍‌ବାବୁ ନିଅତ୍ ନାଇତା
ତମରଲାଗି ଆଚୁ ଡିଣ୍ଡା ।"

ଆଉ କେବେ ବୁଦ୍ଧିର ପରୀକ୍ଷା କରିବାକୁ ଯାଇ ପୁରୁଷର ପଦେକୁ ସ୍ତ୍ରୀର ପଦେ ଗୀତ ଚାଲେ ।

**ଧାଙ୍ଗ୍‌ଡ଼ା ଗାଏ -**

"ଏକାତା ସତ / ବୁଡି ଦାନର୍‌ବାତ
ପୁରୁଣା ମାଣ୍ଡିଆ କତ
ଜାଣିବା ଗରର ଜିଅ ବଲାଇଲୁସ୍ / ଇନ୍ଦ୍ରାବତୀ କେତେ ଆତ ?"

**ଧାଙ୍ଗଡ଼ୀ -** ଇନ୍ଦ୍ରାବତୀ ବାନ୍ଦ୍‌ଲାବେଳେ ନ ରଇଲୁସ୍ ଲୁଲୁର୍‌ମୁଣ୍ଡି,
ଛକଡ଼ି ନ କଡ଼ି ତିନି ବାରକଡ଼ି,
ଦୁଇତା ଦୁଇ ଅନା କେତେ ?
ଏତିର୍ ଅରତ୍ ବତାଇ ଦେଲେ
ପଣ୍ଡିତ୍ ବୋଲିବି ତତେ ।"

ଗୀତ କୁଡ଼ିଆନି -"କାକ୍‌ଡ଼ି କାଇଲେ ମାକଡ଼ ରାଶି
ଉଚ୍ଚ ପାକନାରେ ବସି
ଗୀତ କୁଡ଼ିଆ ନୁନାକେ ପାଚାରି ଦେକା
ଅଲ୍‌ମା(ଉଇ) ଚଗାଇତେ ରଇସି ।

ଗୀତ କୁଡ଼ିଆ- "ବାଢ଼ କୁଢ଼ କୁଢ଼ ପିଆଲ ମାଚି
ଗାଈଗଲା ଲେଞ୍ଜା ବିଚି
ତର୍‌ପାରା ଗୀତ୍ କୁଡ଼ିଆନିକେ
କାପାଲେ ଚିମକ୍‌ଲି ଆଚି ।"(କପାଳରେ ଚୁମା ଦିଅନ୍ତି)

ଗୀତ କୁଡ଼ିଆନି - "ସରେନ୍ଦୀ କାନ୍ଦା କି ବରେନ୍ଦା କାନ୍ଦା
ବନ୍ଦ ଟିପେ ଅଏ ରାନ୍ଦା, (ବନ୍ଧ କଡ଼ରେ ରନ୍ଧା ହୁଏ)
ଉଡ଼ିଯିବା ଜନ୍ତୁ ପକ୍ଷୀ ଗନି ଦେଲି
ତର୍‌କାଇ ଜାଲା ପାନ୍ଦା ।"

ଗୀତ କୁଡ଼ିଆ - "କଲିଆ ପାର ଦୁଇଡିଆ ଦୁଆର୍ ନୁନି
ଆତେ ସରୁ ଶାଙ୍କା
ମୁଆଁସ ବସାଇ ଗଡ଼ି ବାରିଗଲେ
ବିଷ୍ ଦେଇ ମାରିପାକା ।"

ଗୀତ କୁଡ଼ିଆନି - "ବାଟେ ବାଟେ ଗାଲା ବାୟା ବାମନ
ଖମନେ ବୁନିଲି ଦାନ
ତମେ ଆମେ ବାବୁ ଗଟେକ୍ ରଇଲେ
ଡୁମୁରି ଫୁଲ ସମାନ ।"

(ଡୁମୁର୍ ଗଛରେ ଫୁଲ ଫୁଟୁ ନ ଥିବାରୁ ଏହାର ଭିତିରି ଅର୍ଥ ହେଉଛି ତମେ ଆମେ ମିଶିବା ଅସମ୍ଭବ ।)

ନିଜର ଯୌବନକୁ ଆମ୍ବ ଓ କାକୁଡ଼ି ସହ ତୁଳନା କରି ଧାଙ୍ଗଡ଼ାକୁ ପ୍ରଲୁବ୍ଧ କରିବାକୁ ଧାଙ୍ଗ୍‌ଡୀ ଗାଏ -

"ଆମ ବାଡ଼ି ଆଡ଼େ ଡୁମୁନି ଆମ୍
ପାଇକ ମାରେ କାବଡ଼
କାକୁଡ଼ି କାଇବାର୍ ତର୍ ମନ୍ ତିଲେ
ଆମର ପାଖେ ଦବଡ଼

ପୁଣି କେବେ ଧାଙ୍ଗିଡ଼ି କହେ ତତେ ଗୋଡ଼େଇଗଲେ ତୁ ଅଧିକ ଫୁଲି ଯାଉଛୁ -

"ବାଉଁଶ ମାରିଲି ଜୁଲିକି ଜୁଲି
କୁଂଜବନେ ବୁଲିବୁଲି
ସଂଗ ଲୋକ ବୋଲି ଗଡ଼େଇତେ ରଇଲେ
ଅଦିକ ଯାଉଚ ଫୁଲି ।"

ସେହିପରି ଅମଙ୍ଗ ଧାଙ୍ଗଡ଼ି ପାଖ ନ ଭିଡ଼ିବାରୁ ଅଭିମାନ କରି ଧାଙ୍ଗଡ଼ା ଗାଏ -

"ବାଟର ରାଉଲି ବରଡ଼ ମାରେ ଜଲର ମାଙ୍ଗୁର ଗୁରେ
ଦିନେ କଇତିଲି ପାନି ଘାଟରେ ଦିଦିନ୍ କଇଲି ଘରେ !
ଡାବୁ ଦେଲା ପରା କେତେକ୍ କଇଲାଗ୍‌ବାର୍
ଲାଜ ଲାଗିଗାଲା ମକେ ।
ଫଲାସ ବଦଲି ବାଟର ଚାଇ(ଛାଇ)
ବନ୍ଧୁ ନିରିଦୟା ତୁଇ ।"

ପୁଣି -"ବାଟେ ବାଟେ ଗାଲା ବାଟା ଦାମନା(ଢମଣା)
ପାଆରେ (ଗୁମ୍ଫାରେ) ପଶିଲା ଉମା(ବଡ଼ପେଟା)
ତତେ ଭୂତ ଦାରେ ନାଇଁ ଦେଉ ଦାରେ ନାଇଁ(ଦେବତା ମାଡ଼େନାହିଁ)
ମଉଲ ମଦର ଜୁମା (ତୁ ମହୁଲି ମଦର ନିଶା)
ତର୍‌ପାରା ନନି ମୋର ଗରେ ତିଲେ
ଦୁଇ ଗାଲେ ଦେଇତିକ୍ ଚୁମା ।"

ପୁଅର ଯୌନ ଆବେଦନ କେବେ କେବେ ଜନ୍ ଡନ୍‌ଙ୍କ Metaphysical କବିତାର ଉଚ୍ଚତା ମଧ୍ୟ ଛୁଇଁ ଯାଇଛି । ଯେପରିକି -

"ପୁରନା ପତର ଟଲ୍‌ମଲୁଛି
ତକେ ଦେକି ମର ଦେହ ଜଲୁଚି
ପୀରତି କରିବା ଥରେ !
ପିରତି କାତାକୁ ଡରି ମରୁଚ

ମଲେ କି ନେବୁ ସଂସାରେ ?"

ଆଉ କେବେ ମିଥିର ପ୍ରୟୋଗ କରି ଧାଙ୍ଗଡ଼ା ଗାଉଛି -

"ସିରିଲ୍ ନାଙ୍ଗର ସାତର ବର
ବୁନ୍ଦେ ଉତରିଲା ପାର
ତୁଇ ଅଇତିଲେ ଦ୍ରୁପତି କନିଆ
ମୁଇଁ ଲାକବିନ୍ଧା ବର
ଯଦି ମୁଣ୍ଡ ପରେ ଶର ମୁଁ ଚାଡ଼ିବି
ମୁଁ ଅଟେ ଜାରା ଶବର !"

ଆଦିବାସୀର ଏଇ ପ୍ରେମଗୀତ ପାତ୍ର ଅପାତ୍ର ବିଚାର କରେ ସତ, କିନ୍ତୁ ଖାଲି ଅବିବାହିତ ପୁଅଝିଅଙ୍କ କ୍ଷେତ୍ରରେ ଯେ ଏକଥା ଘଟେ ତା' ନୁହେଁ । ଅନେକ ସମୟରେ ବିବାହିତା ନାରୀ ପ୍ରତି ଅବିବାହିତ ପୁରୁଷର ଓ ବିବାହିତ ପୁରୁଷ ପ୍ରତି ଅବିବାହିତା ନାରୀର ପ୍ରେମ ପ୍ରକାଶ କିମ୍ବା ବିବାହିତ - ବିବାହିତା ମଧ୍ୟରେ ପରକୀୟା ପ୍ରେମ ପ୍ରକାଶ କୌଣସି ବାଡ଼ ବନ୍ଧ ମାନେ ନାହିଁ । ସେଭଳି କେତୋଟି ଗୀତର ନମୁନା -

୧. "ଦାନ ବୁନିଗଲି ଜୁଲିକେ ଜୁଲି
କାଇ କାଇ ଗଲି କଜୁରୀ କଲି
ସେ ଦିନେ ସେ ଆଟେ ଗଲି
ତମର ବିବା ବେଲେ ସାନ୍‌ଟା ରେଲି
ଏବେ ଏଲି ତମର ଜୁଲି
ଅଣ୍ଟିର ଦୁଙ୍ଗିଆ ଛିଡ଼ାଇ ଦେଲି
ବଲେ ବଲେ କାତା କଲି !"

୨. ଶାଳୀ ପ୍ରତି ପ୍ରେମ ନିବେଦନ -

"ଗଉଡ଼ ଗରର ମଇଁଷି ଗିଅ
ଇରାଖଣ୍ଡ ପରି ଦରିଚୁ ଦେଅ
ମୁଅଁଟା ଯାଇଚି ଜକି / ତର ସଂଗେ ନିନି ପୀରତି କର୍‌ତି
ବଉର୍ ବଉନି ଟକି !"

୩. ସିଧାସଳଖ ଭାଉଜ ପ୍ରତି ଦିଅରର ପ୍ରେମ ନିବେଦନ -

"ବଉବଉ ବୋଲି ଡାକିଲି କେତେ
କିଛି ହେଲେ ଦୟା ନକଲୁ ମତେ
ସାନଟା ଦେଅର ବୋଲି,
ଦାଦା ସଂଗେ କିନା ରସ କିଆଲି
ମୁଇଁ ଦେକି ଦେକି ଜୁରି ଗଲି
ଦାଦା କାଜେ କିନା କଂଚା ମାଉଁସ
ମୁଇଁ କାଇ ଦୋଷ କଲି ?"(ବୋଉ-ଭାଉଜ)

ଭୁଲ୍ ଜାଗାରେ ପ୍ରୀତି ସମ୍ଭାଷଣ -

"ଧାନ କାଟିଗଲି ଚେର୍‌କ୍ ଚାରକ୍
କଡ଼ପେ ରକିଲି ଇଲା (କଳେଇ ଉପରେ ଦାଆ)
ଡିଣ୍ଡା ଟକି ବୋଲି ଜପଟି ଗଲି
କାକରେ ଜାକିଚି ପିଲା ।"

ଅଧିକାଂଶ ସମୟରେ ଏଇ ଆଦିବାସୀ ପ୍ରେମ ଆକ୍ରମଣାତ୍ମକ । ନାରୀ ସ୍ୱାଭାବିକ ଭାବେ ଆମ୍ବ, କୋଳି, କାକୁଡ଼ି ଓ ମାଉଁସ ସହ ନିଜକୁ ତୁଳନା କଲାବେଳେ ପୁରୁଷ ନିଜକୁ ଶିକାରୀ, ଗ୍ରାହକ କିମ୍ବା ଶିକାରୀ ପଶୁ ସହ ତୁଳନା କରେ -

"ବାଲିଆ ପାଲିଗୁଡ଼ା ଚନ୍ଦର ପାଡ଼ା, ମନ୍ଦ ଗାଏଁ ବସେ ବାଲି,
ମୁଇଁ ତେନେ ରଇଲି ଜୁଲି ଚାଲି
ତମର ଟଣ୍ଡର ବଚନ ଶୁନି ବେସରା ଛିଡ଼ା ଛାଡ଼ିଲି
ଡେଲା ମାରି କରି ଚାଲା ବୁଜ୍‌ତେ ରଇଲାସ୍
କର କି ଶୀତଲ ବୋଲି ।"

(ମୁଁ ଯେତେବେଳେ ଶିକାରୀ ବେସରା ପକ୍ଷୀ ପରି ଝାମ୍ପ ମାରିଲି ସେତେବେଳେ ତମେ ଶବ୍ଦ ବାରି ଦେଖୁଥିଲ ମୁଁ ଗରମ କି ଥଣ୍ଡା ବୋଲି ।)

ଆଦିବାସୀ ନିତିଦିନିଆ ଯୌନ ଜୀବନରେ ମଧ୍ୟ ଏପରି ଆକ୍ରମଣକାରୀ ଢଙ୍ଗର ରାଜୁତି ରହିଥାଏ । ଅଣଆଦିବାସୀ ଲେଖକମାନେ ଧାଙ୍ଗ୍‌ଡ଼ିକୁ ଅଧିକ କ୍ରିୟାଶୀଳ ବୋଲି ଯାହା ବର୍ଣ୍ଣନା କରିଥାନ୍ତି, ତାହା ଭୁଲ୍ ତଥ୍ୟ ଓ କଳ୍ପନା ଉପରେ ଆଧାରିତ ।

ଧାଙ୍ଗ୍‌ଡ଼ି ଧାଙ୍ଗ୍‌ଡ଼ାର ଥାଳିଆରେ ଆହାର ରୂପେ ନିଜକୁ ଥୋଇଦିଏ ଏବଂ ଆଶାକରେ ବ୍ୟାଘ୍ର ଭଳି ଧାଙ୍ଗ୍‌ଡ଼ା ତାକୁ ଆହାର କରିବ । ଆଉ ତା' ଯଦି ନ ହୁଏ, ତେବେ ବାଘୁଣୀ ବାଘକୁ ଥାବା ମାରିବା ପରି ଧାଙ୍ଗ୍‌ଡ଼ି ତାକୁ ଥାବା ମାରେ, ଆହତ କରେ । ଆଜି ବି ବାଟିଗୁଡ଼ା ଗାଆଁରେ ସେହି କୋୟା ଡକ୍ରିର ଗୀତ ମୋତେ ଅଭିଭୂତ କରେ ! ଯିଏ ଥାବା ମାରି ଗାଇଥିଲା, "ଆରେ ଧାଙ୍ଗଡ଼ାମାନେ – ଗୀତ ଓ ନାଟର ପ୍ରତି ପଦରେ, ପ୍ରତି ପଦ ପାତରେ ତୁମେମାନେ ଆଜି ହାରିଯାଉଚ କାହିଁକି ? ତୁମେ କ'ଣ ପୁରୁଷ ନୁହଁ ? ଏହି ଦେଖ ମୋତେ ! ଲୋକେ କହୁଛନ୍ତି ଶୁକ୍ରି ଡକ୍ରି ହେଲାଣି । ତଥାପି ଆଲାଜୁକି ନାଚୁଛି । କିନ୍ତୁ ମୁଁ ଜବାବ ଦେଇ କୁହେଁ, ହଁ ମୁଁ ନାଚୁଛି । ଖାଲି ଆଜି କାହିଁକି ? ତମେ ଦେଖିବ ଦିନେ ମୁଁ ଗୀତ ଗାଇ ନାଚୁ ନାଚୁ ମରିଯିବି । ମଲା ବେଳେ ବି ଗାଉଥିବି, ନାଚୁଥିବି ।" ଆଉ ସାଧାରଣ ଜୀବନରେ ତ ଏ ଦୃଶ୍ୟ ଅନେକ । କେଉଁଠି ଘରକୁ ଯିବାକୁ ଦି ଦିନ ଡେରି କରି ଦେଇଥିବା ହଳଦି କୁଣ୍ଡର କୋୟା ଧାଙ୍ଗଡ଼ାକୁ ଟାଙ୍ଗିଆ ଧରି ତା' ଧାଙ୍ଗଡ଼ି ଖେଦି ନେଲାଣି ଓ ତା'ର ଧାଙ୍ଗଡ଼ା ଗୋଟାପଣେ ତାକୁ ଶୂନ୍ୟକୁ ଉଠାଇ ଫୋପାଡ଼ି ଦେଲାଣି – ଦୁହେଁଯାକ ରକ୍ତାକ୍ତ – ତ, ଆଉ କେଉଁଠି ନୂଆକରି ବିଭା ହୋଇଥିବା ଧାଙ୍ଗଡ଼ିକୁ ବାପାଘର 'ଆଣ୍ଡି ବାଉଡ଼ାଣି' ପାଇଁ ଛାଡ଼ିବାକୁ ନାରାଜ, ଧାଙ୍ଗଡ଼ା ଜବାଗଡ଼ ବସ୍ ଷ୍ଟପ୍‌ରେ ବସ୍ ଭିତରକୁ ଉଠୁଥିବା ବେଳେ ମାଆ ଖୁଡ଼ୀଙ୍କ ମେଳରୁ ତାକୁ ଝିକି ଆଣିଲାଣି ଓ କୁଣ୍ଢେଇ ଧରି "ତକେ ନା ଛାଡ଼େ ନାଛାଡ଼େ" କହି ଉଦ୍ଦଣ୍ଡ ନାଚ ନାଚିଲାଣି । ନିଜର ଭାବାବେଗକୁ ସଭ୍ୟତାର ପୋଷାକ ପିନ୍ଧାଇ ଉଦ୍ରେଚିତ କରିବାର ଗଳଦ୍ ଘର୍ମ ଉଦ୍ୟମ ଏଠି ନାହିଁ । ଏପରିକି ନିଜର୍ ଯତ୍ କିଂଚିତ୍ ଲୁକ୍କାୟିତ ଅବଦମିତ ଭାବାବେଗକୁ ପ୍ରକାଶ କରିବା ପାଇଁ ଚଇତିପର୍ବର ବେଣ୍ଟ ସମୟରେ 'ତଅଡ଼େ' ବୋଲି ଏକପ୍ରକାର ଗୀତ ସବୁ ଜନଜାତି ଗୋଷ୍ଠୀରେ ପ୍ରଚଳିତ ହୁଏ । ଶିକାରକୁ ନ ଯାଇ ଘରେ ଲୁଚିଥିବା ପୁରୁଷମାନଙ୍କ ଉପରକୁ ଗୋବର ଫିଙ୍ଗି ଫିଙ୍ଗି ଏ ଗୀତ ଝିଅମାନଙ୍କ ଦ୍ୱାରା ଗାନ କରାଯାଏ । ପୁରୁଷମାନେ ମଧ୍ୟ ଉତ୍ତର ଫେରାନ୍ତି । ଏସବୁ ଏକାନ୍ତ ଅଶ୍ଳୀଳ ହୋଇଥିଲେ ମଧ୍ୟ ତାହାକୁ ଗାଇବାରେ କାହାର କିଛି ବିକାର ବା ଅପମାନବୋଧ ନ ଥାଏ ।

"ଆଜି ତଡ଼େ ତଡ଼େ କାଲିକି ତଡ଼େ

ପରବ ସରିଲେ ଚଟ୍‌ଲି·ଲଅଡ଼େ ।" ଇତ୍ୟାଦି (ଚଟଲି-ନାରୀର ଯୌନାଙ୍ଗ)

ଆଦିବାସୀ ନାରୀ ପୁରୁଷଙ୍କର ଏହି ମୁକ୍ତ ଯୌନାବେଗ ପ୍ରକାଶ ଓ ପ୍ରେମ ନିବେଦନକୁ ଅଣଆଦିବାସୀଙ୍କ ସାମାଜିକ ମୂଲ୍ୟବୋଧର ଚଷମା ଦେଇ ଦେଖିଲେ ମନେହୁଏ ଏ ସବୁ ଗୀତ ଓଡ଼ିଆ ରୀତିଯୁଗ କବିମାନଙ୍କ କବିତା ସହ ସମାନ । କିନ୍ତୁ ବିଷୟବସ୍ତୁଗତ ସମାନତା ସତ୍ତ୍ୱେ ଦୃଷ୍ଟିଭଙ୍ଗୀର ଅସମାନତା ସକାଶେ ଏହା ତୁଳନା ଯୋଗ୍ୟ ହିଁ ନୁହେଁ । କାରଣ ରୀତିଯୁଗର କାବ୍ୟକାରମାନେ ଥିଲେ ବିଳାସୀ। ଶ୍ରମଜୀବୀ ଜୀବନ ସହ ସେମାନଙ୍କ ସଂପର୍କ ନ ଥିଲା । ନାରୀ ସେଠାରେ ପୁରୁଷର ବାସରକକ୍ଷରେ ଶୃଙ୍ଗାରମୟୀ ଶରୀରଟିଏ । ପୁରୁଷ ନିର୍ଦ୍ଦେଶରେ ସେ ଉଠ୍‌ବସ୍ ହେବାକୁ ବାଧ୍ୟ । ଅନ୍ୟପକ୍ଷରେ ଆଦିବାସୀର ଜୀବନ ବିଳାସପୂର୍ଣ୍ଣ ନୁହେଁ । ବରଂ ଠିକ୍ ତା'ର ଓଲଟା । ବଡ଼ ଆୟାସପୂର୍ଣ୍ଣ ସେ ଜୀବନ । ସେଠି ଭୋକ ଉପାସ ଓ ମୃତ୍ୟୁର ରାଜୁତି । ପୁଣି ନାରୀ ସେଠି ସମଭୂମିରେ ଠିଆ ହୋଇଥିବା ବ୍ୟକ୍ତିଟିଏ । ଉଭୟେ କଠିନ ଶ୍ରମକରି ଭୋକଉପାସ ଓ ମୃତ୍ୟୁକୁ ଅତିକ୍ରମ କରିବାକୁ ଚେଷ୍ଟା କରନ୍ତି । ଆଉ ତାରି ଭିତରେ ମଧ୍ୟ ଆଜୀବନ ପ୍ରେମର ଉଲ୍ଲାସକୁ ବଜାୟ ରଖିପାରୁଥାନ୍ତି । ସୁତରାଂ ନିଶ୍ଚିତଭାବେ ରୀତିଯୁଗର ପ୍ରେମ କବିତାଠାରୁ ଏମାନଙ୍କ 'କିନ୍ଦିରି' ଅନେକ ଉଚ୍ଚରେ । ଏହା ପ୍ରଚଣ୍ଡ ଜୀବନବାଦୀ, ମୃତ୍ୟୁଂଜୟୀ ଓ କାଳଜୟୀ ।

ଅନ୍ୟପକ୍ଷରେ ଆମ ସମାଜରେ ନାରୀର ଅବମୂଲ୍ୟାୟନ ଆରମ୍ଭ ହୋଇଛି ଶ୍ରମର ଅବମୂଲ୍ୟାୟନ ପାଖରୁ । ଘରେ ହଜାରେ ଶ୍ରମ କଲେ ବି ସ୍ତ୍ରୀ ଶ୍ରମର ହିସାବ ବା ମୂଲ୍ୟ ନିର୍ଦ୍ଧାରଣ କେବେ କରାଯାଏ ନାହିଁ । ଅଥଚ ପୁରୁଷ ଶ୍ରମର ଟିକିନିଖି ହିସାବ ହୁଏ । ସେଇଥିରୁ ଆସେ ତା'ର ଆଧିପତ୍ୟ ଜାହିର କରିବାର ଭିତ୍ତି । ସେ ହୁଏ ସକଳ ସମ୍ପତ୍ତିର ମାଲିକ ଓ ନାରୀ ହୁଏ ଦାସୀ । ଏଙ୍ଗେଲସ୍‌ଙ୍କ ଭାଷାରେ "ଶ୍ରମର ଅବମୂଲ୍ୟାୟନ ପ୍ରକ୍ରିୟା ସହ ଜଡ଼ିତ ହୋଇ ରହିଛି ନାରୀର ଦାସୀ ଭୂମିକା ଅବତରଣ ଘଟଣା ।" କେବଳ ସେଇଥିପାଇଁ ସମଗ୍ର ପୃଥିବୀରେ ଯେତେ ଶ୍ରମ କରାଯାଏ ତା'ର ୬୫% ନାରୀମାନେ କରନ୍ତି । ଅଥଚ ଏଭଳି ଶ୍ରମରୁ ଉତ୍ପନ୍ନ ଆୟର ମାତ୍ର ୧୦% ଯାଏ ନାରୀମାନଙ୍କ ପାଖକୁ । (୧୯୯୯ ଜାତିସଂଘର ବେଜିଂରେ ଅନୁଷ୍ଠିତ ବିଶ୍ୱନାରୀ ସମ୍ମିଳନୀର ତଥ୍ୟ) । ଆଉ ଭାରତବର୍ଷର କଥା ତା'ଠାରୁ ନିଆରା । ଏଠି ନାରୀକୁ ଖାଲି ଦାସୀ ଭୂମିକାକୁ ମଧ୍ୟକୁ ଠେଲିଦେଇ ପୁରୁଷ ଶାନ୍ତ ହୁଏନି । ସେ ତା' ପ୍ରତି

ପ୍ରଚଣ୍ଡ ହିଂସା ଆଚରଣ କରେ । କେବଳ ଅହମଦାବାଦ ସହରରେ ବର୍ଷକୁ ତିରିଶ ହଜାର କନ୍ୟା ଭ୍ରୁଣହତ୍ୟା ହୁଏ ଏବଂ ଭାରତବର୍ଷରେ ବର୍ଷକୁ ଜନ୍ମ ହେଉଥିବା ୧ କୋଟି ୨୦ଲକ୍ଷ ଝିଅଙ୍କ ମଧ୍ୟରୁ ଆପଣାର ପଞ୍ଚଦଶତମ ଜନ୍ମତିଥି ଦର୍ଶନ କରନ୍ତି ମାତ୍ର ତିରିଶଲକ୍ଷ । ଏପରିକି ଏଠି ଝିଅଟିଏ ନିଖୋଜ ହେଲେ ତାକୁ ଖୋଜା ଲୋଡ଼ା କରାଯାଏନି । ଆଉ ହଜିଲା ଝିଅଟି ଯଦି ଫେରିଆସେ, ତାକୁ ସମାଜ ବାହାରକୁ ଠେଲି ଦିଆଯାଏ । ସେ ଆତ୍ମହତ୍ୟା କରେ ବା ବେଶ୍ୟାର ଜୀବନ କାଟେ । ଏଭଳି ଖାଲି ୨୦୦୧ ମସିହା ଜନଗଣନା ତଥ୍ୟ ଅନୁସାରେ ଦେଶର ୩କୋଟି ୫୦ଲକ୍ଷ ମହିଳା ହଜି ଯାଇଛନ୍ତି (ତଥ୍ୟ-ବିଶ୍ୱସ୍ୱାସ୍ଥ୍ୟ ସଂଗଠନ) । ଏଠି ପୁଣି ଶହକେ ପଚାଶ ଝିଅଙ୍କୁ କୌଣସି ନା କୌଣସି ପ୍ରକାରର ଯୌନ ନିର୍ଯାତନା ସହିବାକୁ ପଡ଼େ ଏବଂ ଘଣ୍ଟାକୁ ୬୮ଜଣ ନବବଧୂଙ୍କୁ ଯୌତୁକ ଜୁଇରେ ପୋଡ଼ିଜାଳି ମାରି ଦିଆଯାଏ ।

ଏଭଳି ଏକ ସମାଜରେ ନାରୀ ପ୍ରତି ଥିବା ଏହି ହିଂସାତ୍ମକ ସାମନ୍ତବାଦୀ ମାନସିକତା ପ୍ରତି ଇଙ୍ଗିତ କରି ଅମୃତା ପ୍ରୀତମ୍ ଲେଖିଛନ୍ତି – "It was a sin for a woman to be poet" ଅର୍ଥାତ୍ ଏଠି ନାରୀଟିଏ କବି ହେବା ପାପ । ଆଉ ପାକିସ୍ଥାନୀ ନାରୀକବି ସାରା ସଗୁଫ୍‌ତା ତ ଆଉ ପାଦେ ଆଗେଇଯାଇ ଗାଇଛନ୍ତି –

"ହେ ଜାରଜ ପୁରୁଷ !
ତୁ ସବୁ ସୀମାର ଶେଷ !
ତୋ ପାଇଁ ନାରୀ ଖାଲି ଆପଣା ଯୌନ ପୀଡ଼ାରୁ ମୁକ୍ତି !
ମୁଁ ଜାଣେ, ମୁଁ କେବେ ସ୍ତ୍ରୀ ନ ଥିଲି କି ନ ଥିଲି ପ୍ରେମିକା,
ଥିଲି ଜଣେ ସାମାନ୍ୟ ରକ୍ଷିତା !
ଏବଂ ତୋର ସମସ୍ତ ମିଠା ମିଠା କଥା
ଥିଲା ଜଣେ ନାରୀ
ମାଂସ ଦଲାଲର ଓ୍ୱାଦା ।" (ଅନୁବାଦ : ଲେଖକ)

ଖାସ୍ ଏଇଥିପାଇଁ ଅଣଆଦିବାସୀ ସମାଜରେ ପ୍ରକୃତି ପ୍ରେମ ସମ୍ଭବ ହୋଇପାରେନା । ଦାସୀ ବା ରକ୍ଷିତାକୁ କ'ଣ ପ୍ରେମ କରାଯାଇପାରେ ? ସେଇଥିପାଇଁ ପ୍ରେମ ଏଠି ଏତେ କ୍ଷଣସ୍ଥାୟୀ । ପ୍ରେମ ସଂପର୍କରେ ନିଜର ଏହି ତିକ୍ତ ଅନୁଭବକୁ ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକ ଭାରି ନିଖୁଣ ଭାବେ ତୋଳି ଧରିଛନ୍ତି "ଅନାଗତ ଫାଲ୍‌ଗୁନ"ରେ –

"ଊର୍ଣ୍ଣନାଭ ଭଳି ଅତି ସୂକ୍ଷ୍ମ ଓ ଭଙ୍ଗୁର ଏଇ ଭଲପାଇବା – ତାକୁ କେନ୍ଦ୍ରକରି ବିଶେଷ ଅନୁଶୀଳନ ନ କରିବାଟା ବିଜ୍ଞତା ।

ତାକୁ ଅନୁଶୀଳନ କରି କେହି କିଛି ପାଇନାହିଁ । ଯାଦୁକର ପାଟିରୁ ହରରଙ୍ଗୀ କାଗଜ ଟାଣିଲା ପରି ସମସ୍ତେ ଟାଣି ଟାଣି କ୍ଳାନ୍ତ ହୋଇଯାଇଛନ୍ତି । କିନ୍ତୁ ପାଇଛନ୍ତି କ'ଣ ? ରୂପ କଥାର ଅସୁରୁଣୀବୁଢ଼ୀର ସୂତା ବିଣ୍ଡା ପଛରେ ଦୌଡ଼ିଛନ୍ତି ଅସଂଖ୍ୟ ରାଜକୁମାର । ମୃତ ପ୍ରିୟାର ଶବକୁ କାନ୍ଧରେ ପକାଇ ଘୂରି ଘୂରି ପାଗଳ ହୋଇଯାଇଛନ୍ତି । ନୀଳ ନୀରା ଯମୁନାର ଶଯ୍ୟା ଉପରେ ଗଢ଼ିଉଠିଛି ଭଲପାଇବାର ଏକ ଅପୂର୍ବ ସମାଧି – ତାଜମହଲ । ଭଲପାଇବାର ଦ୍ୟୁତକ୍ରୀଡ଼ାରେ କିଙ୍ଗ୍ ଏଡ୍‌ୱାର୍ଡ଼ ହାରିଯାଇଛନ୍ତି ବ୍ରିଟିଶ୍ ସାମ୍ରାଜ୍ୟ । କିନ୍ତୁ କେହି କ'ଣ ଜାଣିଛି କି ଭଲପାଇବାର ସଂଜ୍ଞା ??"

ମୋର ଉତ୍ତର ହେଉଛି, ହଁ ଜାଣିଛି । ଜାଣିଛି ଏଇ ଆଦିବାସୀ ସମାଜ । ନାରୀର ସଂପତ୍ତି ଅଧିକାର ଏଠି ସମାଜ ସ୍ୱୀକୃତ । ପ୍ରେମ କରିବା ପାଇଁ ଏଠି ଅଛି ସମାନ ଭୂମି, ସମାନ ଶ୍ରେଣୀ, ସମାନ ଦୁଃଖ, ସମାନ ଦୁର୍ଭୋଗ, ସମାନ ଶୋଷଣ, ସମାନ ନିର୍ଯାତନା । ତେଣୁ ଏଠି ଦେହକୁ ମୁକ୍ତିର ବାଧକ ବୋଲି ଧରା ନ ଯାଇ ବାହକ ବୋଲି ଧରାଯାଏ । ଦେହର ଆୟୁଷକୁ ପ୍ରେମର ଆୟୁଷ ଅତିକ୍ରମ କରିବା ସମ୍ଭବ ନୁହେଁ, ତେଣୁ ପ୍ରେମ ସେତିକି ସ୍ଥାୟୀ, ଯେତିକି ଦୀର୍ଘ ମଣିଷର ଜୀବନ । ହଜାରେ ତାଜମହଲ ଗଢ଼ିଲେ ସୁଦ୍ଧା ସେ ସବୁ ଚିରନ୍ତନ ନ ହୋଇ ହୁଅନ୍ତି ସମାଧି ମାତ୍ର । ପ୍ରେମ କେବେ ବି ଦେହର ଓ ମନର ଅତୀତ ନୁହେଁ, ଜମାରୁ ସ୍ୱର୍ଗୀୟ ନୁହେଁ, ନୁହେଁ ବି ପ୍ଲାଟୋନିକ୍ । ସେପରି ଭାବିବା ଲୋକ ପାଗଳ ହେବ ହିଁ ହେବ । ସେଇଥିପାଇଁ ଆମ ସମାଜରେ ଏତେ ପାଗଳ, ଅବଦମିତ ଯୌନ କାମନାର ଏତେ ବିକୃତ ମସ୍ତିଷ୍କ ମଣିଷ । ଏତେ ଦୁର୍ବୋଧ କବିତା ।

ଅଥଚ କେଡ଼େ ସ୍ୱଚ୍ଛନ୍ଦରେ ନିଜ କିନ୍ଦିରିରେ ଉଭୟ ଆଦିବାସୀ ନାରୀ, ପୁରୁଷ ପରସ୍ପରର ଲଗ୍ନ ଦେହର ସୌନ୍ଦର୍ଯ୍ୟର ଗାନ କରିପାରନ୍ତି । କେତେ ସହଜରେ ଯୌନ ପ୍ରତୀକ ରୂପେ ବ୍ୟବହାର କରିପାରନ୍ତି 'ମଜାର ଝୋଲା' ବା ମଝିରେ ବୋହି ଯାଉଥିବା ଝରଣା, 'ଟେଣ୍ଡକା' ବା ଏଣ୍ଡୁଅ, ସିନ୍ଧିବୁଟା ବା ଛୋଟ ଛୋଟ ଏକ ପ୍ରକାରର ଖଜୁରୀ ଶ୍ରେଣୀୟ ବୁଟା ଓ ଡୁର୍କା ବା ହେଟାବାଘ ଇତ୍ୟାଦି ପ୍ରତୀକ । ଏସବୁ ମାଧ୍ୟମରେ କେଡ଼େ ସଳଖ ଭାବେ ନିଜ ଯୌନ ଲିପ୍‌ସାକୁ ପ୍ରକାଶ କରିପାରନ୍ତି

ସେମାନେ । ଏସବୁ ସହ ତଥା ଏହି ଲେଖାରେ ଉଦ୍ଧୃତ ଅନ୍ୟାନ୍ୟ କିନ୍ଦିରିର ପ୍ରତୀକମାନଙ୍କ ସହ ତୁଳନା କରିବା ଚାଲନ୍ତୁ ରମା ରଥଙ୍କ ପ୍ରତୀକମାନଙ୍କୁ -

"ତରଳି ଯାଇ ବ୍ରହ୍ମାଣ୍ଡ ଉପରେ ବୋହି ଗଲି ଯେପରି ମୁଁ
ସଦ୍ୟମୁକ୍ତ ହୋଇଥିବା ଚନ୍ଦ୍ରର କିରଣ ।" (ଶ୍ରୀରାଧା)

କିମ୍ବା ବୀଣାପାଣି ପଣ୍ଡାଙ୍କ -

"ମୁଁ କେବଳ ××× ପ୍ରାଣଭରି ଅନୁଭବ କରିବାକୁ ଋହେଁ
ମୁକ୍ତା ଧାରଣ ପାଇଁ ଶାମୁକାର ଆକୁଳତା ।"

ଏ ସବୁରେ ଯୌନତା ରହିଛି, କିନ୍ତୁ ମଧ୍ୟବିତ୍ତୀୟ କପଟତାରୁ ଏହା ମୁକ୍ତ ନୁହେଁ । ଯେ କୌଣସି ସଭ୍ୟତାରେ ନାରୀ ପୁରୁଷର ସମ ଭୂମିକା ହିଁ ପ୍ରକୃତ ପ୍ରେମକୁ ସମ୍ଭବ କରିଥାଏ । ବାଘ ପିଠିରେ ବସି ସୁନାର ତରାଜୁରେ ହୃଦୟ ଓଜନ କରି କେହି କାହାକୁ ପ୍ରେମ କରେନା । ଆମ ସମାଜରେ ଏହା ହିଁ ଘଟେ । ପୁରୁଷର ରୋଜଗାର ଓ ସଂପତ୍ତିକୁ ଦେଖି ଋହିଁ ହିସାବ କରି ଝିଅମାନଙ୍କ ବିବାହ ସ୍ଥିର ହୁଏ । ମଧ୍ୟବିତ୍ତୀୟ ବା ଅର୍ଥନୈତିକ ଭାବେ ସ୍ୱାଧୀନ ନାରୀମାନେ ବି ସେହିଭଳି ହିସାବ କିତାବରୁ ପ୍ରେମର ଆରମ୍ଭ କରନ୍ତି । ଆଜିର ସାମ୍ରାଜ୍ୟବାଦୀ ଯୁଗରେ ଜଗତୀକରଣର ଆବହାଓ୍ୱା ଭିତରେ ନାରୀର ଅବମୂଲ୍ୟାୟନ ଏତେ ବେଶି ବୃଦ୍ଧି ପାଇଛି ଯେ ସେ ଆନ୍ତର୍ଜାତିକ ବଜାରର ପଣ୍ୟ ବା ଦ୍ରବ୍ୟ ପାଲଟି ଯାଇଛି । ପ୍ରତି ପଣ୍ୟ ସହ ଯୋଡ଼ାହୋଇ ସେ ନିଜର ଦେହର ସୌନ୍ଦର୍ଯ୍ୟ ବିକି ବଞ୍ଚୁଛି । ସେଇଥିରେ ସେ ଗର୍ବିତା । ପ୍ରେମକରି ସେ ପାଇବ କ'ଣ ? ଏପରି କି ପ୍ରେମକରି ଯେ ବଞ୍ଚାଯାଇ ପାରେ, ଏକଥା ସେ କ୍ରମେ ଭୁଲିଯିବାକୁ ବସିଛି । ଯେଉଁ ଜଣେଅଧେ ପ୍ରକୃତ ଭଲପାଇ ବସୁଛନ୍ତି, ଘାତକ ପିତାମାତାଙ୍କ ହାତରେ କେତେନା କେତେ ଜାଗାରେ ସେମାନଙ୍କୁ ପ୍ରାଣ ହାରିବାକୁ ପଡୁଛି । ମୂଲ୍ୟବୋଧର ଏହି ବିରାଟ ଆଁକରା ଫାଙ୍କ ବା ଫରକ ଆଗରେ ଆଦିବାସୀ ସମାଜ ପାଖରେ ଆମର ଅଣଆଦିବାସୀ ସମାଜ ସତରେ କେଡ଼େ ନ୍ୟୂନ ।

(ଉମରକୋଟର ଧଡ଼ରାଠାରେ ଗତ ତା.୦୮.୦୨.୨୦୦୪ରେ "ଅବିଭକ୍ତ କୋରାପୁଟ ଆଦିବାସୀ ଭାଷା ସଂସ୍କୃତି ଗବେଷଣା ମଞ୍ଚ" ତରଫରୁ ଆୟୋଜିତ ସଂପାନରେ ଉପସ୍ଥାପିତ ।)



# ଦେଶିଆମାନଙ୍କ ବାଉଁଶ କାରିଗରୀ

ଅବିଭକ୍ତ କୋରାପୁଟ ଜିଲ୍ଲାରେ ବାସ କରୁଥିବା ବିଭିନ୍ନ ଆଦିବାସୀ ସମ୍ପ୍ରଦାୟକୁ ସାମଗ୍ରିକ ଭାବେ ଦେଶିଆ ବୋଲି ଅଭିହିତ କରାଯାଏ । ଆମ ଆଦିବାସୀ ସମ୍ପ୍ରଦାୟର ଲୋକଙ୍କୁ କୁହାଯାଏ 'ଗଡ଼ିଆ' । ଅବଶ୍ୟ ସାମାନ୍ୟ ତାଚ୍ଛଲ୍ୟ ସହକାରେ ଏ ଶବ୍ଦ ବ୍ୟବହାର କରିଥାନ୍ତି ସେହି ଆଦିବାସୀମାନେ । ଦେଶିଆମାନେ ଯେଉଁ ଆବଶ୍ୟକ ପରିବେଶ ଓ ସଂସ୍କୃତି ଭିତରେ ବଢ଼ି ଆସିଛନ୍ତି, ସେଥିରେ ସ୍ୱାଭାବିକ ଭାବେ ସୃଷ୍ଟି ବା ପ୍ରକୃତି ଅର୍ଥାତ୍ ପ୍ରକୃତିର ପ୍ରତିଟି ଉପାଦାନ ବିଶେଷଭାବେ ବୃକ୍ଷ ହେଉଛି ଦେବତା । ପୁଣି ଯେଉଁ ବୃକ୍ଷ ବା ଗଛ ଯେତେ ଉପକାରୀ, ସଂସ୍କୃତିଗତ ଭାବେ ସେ ଗଛର ସ୍ଥାନ ସେତେ ଉପରେ । ସୁତରାଂ ମହୁଲ, ସର୍ଗୀ, ସଲପ ଓ ଆମ୍ବ ଇତ୍ୟାଦିର ସ୍ଥାନ ସ୍ୱତନ୍ତ୍ର । କିନ୍ତୁ ଦୈନନ୍ଦିନ ଜୀବନର ବ୍ୟବହାର ଉପଯୋଗିତା ଓ ଅର୍ଥନୈତିକ ଭୂମିକା ଯୋଗୁଁ ବାଉଁଶ ବା ବେଦୁର୍ ହେଉଚି ଆଦିବାସୀର ଜୀବନ । ଉଦ୍ଭିଦ୍ ବିଜ୍ଞାନୀ ଦୃଷ୍ଟିରେ ଏହା ସାମାନ୍ୟ ତୃଣ ପରିବାରର ଅନ୍ତର୍ଭୁକ୍ତ । କାଗଜ ଓ ପ୍ଲାଇଉଡ଼୍‌ର ଶିଳ୍ପପତି ତଥା ଏସବୁକୁ ଲିଜ୍ ଦେଉଥିବା ସରକାରଙ୍କ ଦୃଷ୍ଟିରେ ଏହା ମୁନାଫା ଓ ରୟାଲ୍‌ଟି ଆଣି ପାରୁଥିବା ଏକ ଲଘୁ ବନଜାତ କଞ୍ଚାମାଲ । ଗଡ଼ିଆ ଲୋକମାନଙ୍କ ପାଇଁ ଘର ଓ ବାଡ଼ ତିଆରି ଲାଗି ଏହା ଏକ ବଢ଼ିଆ ସାମଗ୍ରୀ ଓ ଗୃହୋପକରଣ କଂଚାମାଲ । ଅଥଚ ଆଦିବାସୀ ପାଇଁ ଏହା ଦେଉଚି ସତରେ ଜୀବନ, ତେଣୁ ଦେବତା । ପ୍ରତି ୩ବର୍ଷରେ ଥରେ ଅନୁଷ୍ଠିତ ହେଉଥିବା ବଡ଼ ପରବ ସମୟରେ ଏବଂ ପ୍ରତି ବର୍ଷ ଦଶରା ସମୟରେ ଗୋଟିଏ ବଡ଼ ବାଉଁଶର ଦଣ୍ଡ ବା ଲାଠିକୁ ଦେବତା ରୂପେ ନୀତି ନିୟମରେ ପୂଜାକରି ବିଭିନ୍ନ ଅଞ୍ଚଳରୁ ମାନେମ୍ କୋଣ୍ଡା ତଥା ଜୟପୁରକୁ ନିଆଯାଇଥାଏ । କିଛି ହେଲେ ଖୁଣ ନ ଥିବା ଲମ୍ବା ମୋଟ ବାଉଁଶଟିଏ ଏଥିପାଇଁ ନିର୍ବାଚନ କରାଯାଏ । ତା'ପରେ ସେଥିରେ ବିଭିନ୍ନ ପ୍ରକାରର ବାନା ଖଞ୍ଜି ଓ ମନ୍ତ୍ର ପଢ଼ି ଦିଶାରି, ନାୟକ ଓ ଗୁରୁମାଇମାନେ

ତାହାକୁ ଜୀବନ୍ୟାସ ଦେଇ ଦେବତାରେ ପରିଣତ କରିଥାନ୍ତି । ଗାଁ ତଥା ଅଞ୍ଚଳଯାକର ଲୋକ ପାରମ୍ପରିକ ବାଦ୍ୟର ତାଳେ ତାଳେ ନାଚଗୀତ ମଧ୍ୟରେ ଏହି ବାଉଁଶକୁ ଜୟପୁର ମାନମ୍ କୋଣ୍ଡା, ମାଲକାନ୍‌ଗିରି ତଥା ମାରିବେଡ଼ା (ମାଉଲିମା' ମନ୍ଦିର)କୁ ବୋହି ନେଇଥାନ୍ତି । ମାଲକାନ୍‌ଗିରିର ଚେଡ଼େଙ୍ଗା ଏହି ବାଉଁଶ ଯୋଗାଇଥାଏ । ଅଞ୍ଚଳର ସବୁଠାରୁ ବଡ଼ଲାଠି ଓ ସେଥିଲାଗି ବିଶେଷ ମର୍ଯ୍ୟାଦାର ଅଧିକାରୀ ହୁଅନ୍ତି ସେ ଗାଁର ଲୋକେ । ଆଉ ତାହା ମଧ୍ୟ ଏଇଥିପାଇଁ ଯେ ଐତିହାସିକ ଭାବେ ଚେଡ଼େଙ୍ଗାର ବାଉଁଶ ଜଙ୍ଗଲ ହେଉଚି ସବୁଠାରୁ ପୁରୁଣା ଓ ବଡ଼ ବାଉଁଶ ଜଙ୍ଗଲ । ତାକୁ ନେଇ ଅନେକ ଅନେକ ଲୋକକଥା ଓ ପ୍ରବାଦ କାଳକ୍ରମେ ଗଢ଼ି ଉଠିଛି । ଆଉ ମଧ୍ୟ ଏହି ବାଉଁଶ ନାମକୁ ଆଶ୍ରୟକରି ଗଢ଼ି ଉଠିଛି କେତେ ଗାଁ-ବାଉଁଶ ବାହାଲ, ବେଦୁରପାଲି ଇତ୍ୟାଦି ।

ଏହାର ମୂଳ କାରଣ ହେଉଚି ଆଦିବାସୀ ଜୀବନରେ ବାଉଁଶର ଉପଯୋଗିତା । ବ୍ୟବହାର ଉପଯୋଗୀ କରିବା ପାଇଁ ହେଲେ ବାଉଁଶ ଉପରେ ଯେଉଁ କାରିଗରୀ କରିବାକୁ ପଡ଼େ, ସେଥିରେ ଦକ୍ଷତାରେ ପ୍ରଥମ ହେଉଛନ୍ତି କନ୍ଧ । ତାପରେ କୋୟା, ଭୂମିୟା, ପରଜା ଏବଂ ଅନ୍ୟ ସମସ୍ତ ସମ୍ପ୍ରଦାୟ । ଏପରିକି ଡମ ସମ୍ପ୍ରଦାୟ (ଦଳିତ ଗୋଷ୍ଠୀର) ମଧ୍ୟ ଏଥିରେ ଯଥେଷ୍ଟ ପାରଙ୍ଗମ । ନବରଙ୍ଗପୁର ଓ କଳାହାଣ୍ଡି ସୀମାରେଖାରେ ଅବସ୍ଥିତ ପ୍ରାୟ ୪୦ଖଣ୍ଡ ଜଙ୍ଗଲ ଗାଁ ଅର୍ଥାତ୍ କୌଣସି ଜଙ୍ଗଲରେ ବସତି ସ୍ଥାପନ କରି ଜଙ୍ଗଲବାସୀ ଗାଁର ମାନ୍ୟତା ପାଇଥିବା ଗାଁଗୁଡ଼ିକର ଅଧିବାସୀମାନେ ହେଉଛନ୍ତି ମୁଖ୍ୟତଃ କନ୍ଧ । ମଇଦଲପୁରରେ ଆମ୍ ପାଣି ଘାଟି ମଧ୍ୟରେ ଅବସ୍ଥିତ ଏହିସବୁ ଗାଁର କନ୍ଧମାନେ ମାତ୍ର ୨ରୁ ୩ଏକର ଜଙ୍ଗଲଜମି ଚାଷକରି ୪/୫ମାସର ଖୋରାକ ସଂଗ୍ରହ କରିଥାନ୍ତି । ବାକି ଆଠମାସ ସେମାନେ ଏଇ ବାଉଁଶ କାରିଗରୀ ଦ୍ୱାରା ହିଁ ଜୀବିକାନିର୍ବାହ କରିଥାନ୍ତି। ଯେକୌଣସି କନ୍ଧ ଗାଁର କାହାରି ଘରକୁ ଗଲେ ଜଣେ ଦେଖିବ ବୁଢ଼ାମାନେ କାଟରା ବା ଛୁରୀରେ ବାଉଁଶକୁ ସରୁସରୁ କରି ଚାଞ୍ଛି ବିଭିନ୍ନ ଓସାର ବିଶିଷ୍ଟ ପାତିଆ ତିଆରି କରିବାରେ ବ୍ୟସ୍ତ । ହାତରେ ଥିବା ଏହି ଛୋଟ ସାଇଜ୍‌ର ଧାରୁଆ ଛୁରୀକୁ ଏତେ କୁଶଳଭାବେ ସେମାନେ ବ୍ୟବହାର କରନ୍ତି ଯେ ଯେପରି କି ତାହା ତାଙ୍କର ଦେହର ଅଙ୍ଗ । ଠିକ୍ ବାଲେଶ୍ୱରରେ ଗୋଲା ବା କେଉଟ ସମ୍ପ୍ରଦାୟ ଦିନରାତି ଜାଲ ବୁଣିବା ଭଳି । କଥା କହୁଥିବେ ହାତ ଚାଲିଥିବ । ମୟୂରଭଞ୍ଜ, କେନ୍ଦୁଝର ଅଞ୍ଚଳର ମୁଣ୍ଡା ଓ ସାନ୍ତାଳମାନଙ୍କ ଶାଳପତ୍ର ସିଲାଇ ମଧ୍ୟ

ଏହିପରି ଅବଲୀଳା କ୍ରମେ ଚାଲିଥାଏ । ଏହିସବୁ ବାଉଁଶପାତିଆରୁ କମ୍ ବୟସର ଅନ୍ୟ ପରିବାର ସଦସ୍ୟମାନେ ବିଶେଷକରି ସ୍ତ୍ରୀମାନେ ବିଭିନ୍ନ ପ୍ରକାର ଉପକରଣ ତିଆରି କରିଥାନ୍ତି । ବିକ୍ରି ଯୋଗ୍ୟ ହେବା ଭଳି ଜିନିଷ ଭିତରେ ମୁଖ୍ୟ ହେଉଛି ଆଦିବାସୀ ସମାଜରେ ବ୍ୟବହାର ଉପଯୋଗୀ କୃଷି ଉପକରଣ, ଗୃହୋପକରଣ, ମାଛଧରା ଉପକରଣ, କ୍ରୀଡ଼ା ଉପକରଣ ଇତ୍ୟାଦି । ମଇଦଲପୁରର ସାପ୍ତାହିକ ରବିବାର ହାଟରେ ଏସବୁ ଉପଲବ୍ଧ ହୁଏ ।

ଖାଲି ଏଇ ଗୋଟିଏ ଅଞ୍ଚଳରେ ଯେ ଏହି ବାଉଁଶ ସ୍ଥାନୀୟ ଆଦିବାସୀମାନଙ୍କୁ ଅଧା ବର୍ଷର ଅର୍ଥନୈତିକ ସହଯୋଗ ଯୋଗାଇଥାଏ, ତାହା ନୁହେଁ, ଅବିଭକ୍ତ କୋରାପୁଟ ଜିଲ୍ଲାଯାକ ଏଇ ଦୃଶ୍ୟ । କୋୟା ଗାଁ ମାନଙ୍କରେ ସବୁ ଡୋକ୍ରା କୁଜ କାଢ଼ି ବସିଥିବେ ଖଣ୍ଡିଏ ଲେଖା ଲେଙ୍ଗୁଟି ପିନ୍ଧି ଓ ବାଉଁଶ ଛୁଞ୍ଚି ଚାଲିଥିବେ । ଭୂମିୟା ପରିବାରରେ ମଧ୍ୟ ବିଭିନ୍ନ ଉପକରଣ ଆବଶ୍ୟକତା ଅନୁଯାୟୀ ତିଆରି ହୋଇଥାଏ । ଯେପରିକି ଶସ୍ୟ ଅମଳ - ଆଦାୟ ସମୟରେ ତିଆରି ହୁଏ ଜିଗାଡ଼ି ଓ କାଉଡ଼ି ବା ବାଉଁଶ ବୁଣା କରେଇ ବା ଅମାର କିମ୍ବା କଲ୍‌କି ବା ଡୁଡ଼ି । ଗୋଟିଏ ବାଉଁଶକୁ ୬/୭ଫାଳ କରି ଏହି ଅମାର ତିଆରି ହୁଏ । ବଜାରରୁ ଏହା କିଣି ନେବା ପରେ ଘରେ ମାଟି ଓ ଗୋବର ଦ୍ୱାରା ଏହାର ଫାଙ୍କମାନଙ୍କୁ ଲେପି ପୂରଣ କରାଯାଇଥାଏ । ଏଥିରେ ୩୦ଫୌଟିରୁ ଉର୍ଦ୍ଧ୍ୱ ଧାନ ରହିପାରେ । କଲକି ବା ଡୁଡି ଅମାର ଠାରୁ ଛୋଟ ଯେଉଁଥିରେ ପ୍ରାୟ ୬ରୁ ୮ପୌଟି ଧାନ ଧରିଥାଏ । ଏହା ଆଉ ଟିକିଏ ପତଳା ପାତିଆରେ ତିଆରି ହୁଏ । ଧାନ ରଖି ସାରିବା ପରେ ତାରି ଉପର ଅଂଶକୁ 'ପିରି' ବା ପାଳ ବା ଜଙ୍ଗଲ ଘାସ ଦ୍ୱାରା ନିବୁଜ କରି ମାଟି ଓ ଗୋବର ଦ୍ୱାରା ଲିପି ଦିଆଯାଏ । ଏସବୁ ଠାରୁ ଛୋଟ ଆଉ ଏକପ୍ରକାର ଡାଲା ତିଆରି ହୋଇ ହାଟ ବଜାରକୁ ଆସେ ଯାହାକୁ କୁହାଯାଏ 'କରଲି', ଯେଉଁଥିରେ ୨୫ରୁ ୩୦କେ.ଜି. ପର୍ଯ୍ୟନ୍ତ ଧାନ କରିଥାଏ । ମୂଲିଆ ମଜୁରିଆ ଶ୍ରେଣୀର କେତେକ ପରିବାର ତଥା ଛୋଟ ଚାଷୀମାନେ ଏହା ବ୍ୟବହାର କରିଥାନ୍ତି ।

ବର୍ଷାଦିନେ ବଜାରକୁ ଆସେ ଚାତଡ଼ି ଓ ଛାତୋଡ଼ି । ସରୁସରୁ ବାଉଁଶପାତିଆରୁ ଏହା ଟୋପି ଆକାରରେ ତିଆରି ହୁଏ । ଚାତଡ଼ିର ସାଇଜ୍ ଟିକିଏ ଛୋଟ । ଛାତୋଡ଼ି ସାମାନ୍ୟ ବଡ଼ - ଛତା ଭଳି ମୁଣ୍ଡ ଉପରେ ରହିପାରେ ଓ ଗୋଟିଏ ରଶି ଦ୍ୱାରା ବେକ ସହ ସଂଯୁକ୍ତ ହୋଇଥାଏ । ଏହି ଛାତୋଡ଼ି ସହ କେତେକ ସ୍ଥାନରେ ସର୍ଗୀ(ଶାଳ) ବା

ସିଆଡ଼ି ପତ୍ର ସିଲାଇ କରାଯାଇଥାଏ । ପୁଣି ଏହି ବର୍ଷାଦିନେ ବିଭିନ୍ନ ମାଛଧରା ଉପକରଣ ମଧ୍ୟ ପ୍ରସ୍ତୁତ ହୋଇଥାଏ । ଯେପରିକି ଡୁଟି ବା ମାଛଧରା ଖାଳେଇ, ମୁଣ୍ଡି କରଲି ଯେଉଁଥିରେ ପାଣି ବାହି ଛୋଟଛୋଟ ଖାତଖଣା ବା କିଆରୀରୁ ପାଣି ଶୁଖାଯାଏ, ଦାନ୍ଦର୍ ବା ଏକ ପ୍ରକାରରେ ଖଇଁଚି, ବିସର୍ ବା ସରୁସରୁ ଲମ୍ବା ବାଉଁଶକାଠି ଓ ରଶି ଦ୍ୱାରା ପ୍ରସ୍ତୁତ ମାଛଧରା ପଟା । ବିସରର ଲମ୍ବା ୧୦ରୁ ୧୫ଫୁଟ୍ ପର୍ଯ୍ୟନ୍ତ ହୋଇଥାଏ ଏବଂ ନଦୀ ବା ଝୋଲା ବା ଗାଡ଼ରୁ ଛୋଟବଡ଼ ମାଛ ଧରିବା ପାଇଁ ପାଣି ସୁଅରେ ଏହାକୁ ବସାଇ ରଖାଯାଏ । ସ୍ଥଳବିଶେଷରେ ବଡ଼ ନଦୀର ଓସାର ଅନୁଯାୟୀ ୫/୬ଟି ବିସର ଯୋଡ଼ାଯାଇ ମାଛ ଧରାଯାଏ । ଦାନ୍ଦର୍ ମଧ୍ୟ ବିଭିନ୍ନ ପ୍ରକାରର ହୋଇଥାଏ। ଗୋଲ୍ ହୋଇ ଲମ୍ବା, ମୁହଁ ପଟ ଖୋଲା ଓ ପଛପଟ ସରୁ – ମଝିରେ ଥାଏ ଶିଙ୍ଗା ବ୍ଲା କବାଟ ଠିକ୍ ଖଇଞ୍ଚି ଭଳି । ଅନ୍ୟଟି ଚାରିକୋଣିଆ । ଏଇଭଳି ଦୁଇ ପ୍ରକାରର ଦାନ୍ଦର ଏଠାରେ ପ୍ରଚଳିତ ହୁଏ ।

ବାକି ବର୍ଷ ଯାକ ଯେଉଁସବୁ ବାଉଁଶ ତିଆରି ଜିନିଷ ତିଆରି ଓ ବିକ୍ରି ହୁଏ, ସେସବୁ ହେଉଛି ଛପା ବା ପାତାଳା ବାଉଁଶ ପାତିଆ ପ୍ରସ୍ତୁତ ମସିଣା । ଏହାର ଆଦର ସବୁଠୁ ବେଶି । ବାଉଁଶ ଖଟିଆ ଉପରେ ପଡ଼ିବା ଉଦ୍ଦେଶ୍ୟରେ ଏହା ବିଭିନ୍ନ ସାଇଜ୍‌ର ହୋଇଥାଏ । ଏହା ଆଦିବାସୀ ପଲ୍ଲୀର ଘରେ ଘରେ ବସାଉଠା ଓ ଶୋଇବା ପାଇଁ ତଥା ଅତିଥି ଅଭ୍ୟାଗତମାନଙ୍କ ପାଇଁ ବ୍ୟବହାର ହୋଇଥାଏ । ଦ୍ୱିତୀୟରେ ଚାଙ୍ଗଡ଼ା, ଯାହାକି ଗୋଟିଏ ପ୍ରକାର ଛୋଟ ଡାଲା । ଏହା ପାତିଆରୁ ପ୍ରସ୍ତୁତ ହୋଇଥାଏ । ପୁଣି ଆଉ ପ୍ରକାର ଡାଲା ସରୁକାଠି ଦ୍ୱାରା ମଧ୍ୟ ପ୍ରସ୍ତୁତ ହୋଇଥାଏ । ଚାଉଳ ପତ୍ର ଧୋଇବା ପାଇଁ ଗୋଟିଏ ପ୍ରକାର ଛୋଟ ଚାଙ୍ଗଡ଼ା ତିଆରି ହୁଏ ଯାହାକୁ କୁହାଯାଏ ଚୁର୍କି । ଚୁଡ଼ା ଓ ମୁଢ଼ି ଖାଇବା ଲାଗି ଏହାକୁ ଆଉ ଟିକିଏ ସାନକରି ମଧ୍ୟ ତିଆରି କରାଯାଏ । ବର୍ଷଯାକ ମିଳୁଥିବା ୩ୟ ପ୍ରକାର ଗୃହୋପକରଣ ହେଉଛି ଚାଟ୍‌ନା ବା ଝୁଡ଼ି । ଏହା ୫/୬ ପ୍ରକାର ଓ ବିଭିନ୍ନ ଆକାରର ହୋଇଥାଏ ଏବଂ ତିଆରି ହୋଇଥାଏ ଟିକିଏ ମୋଟା ବାଉଁଶ ପାତିଆରେ । ଗୋବର ଚାଟ୍‌ନା (ଗୋବର ଉଠାଇବା ପାଇଁ), ମାଟି ଉଠା ଚାଟ୍‌ନା, ପୁଣି ପନିପରିବା ତୋଳିବା ଓ ବିକିବା ପାଇଁ ପରିବା ଚାଟ୍‌ନା ତିଆରି ହୋଇଥାଏ । ଜଙ୍ଗଲରୁ ଦାରୁ ବା କାଠ ଆଣିବା ପାଇଁ ଅନ୍ୟପ୍ରକାର ଚାଟ୍‌ନା ବା ଯେଉଁ ଝୁଡ଼ି ବ୍ୟବହାର ହୁଏ, ତାହାକୁ କୁହାଯାଏ ଜିଗାଡ଼ି । କେଉଁଠି କେଉଁଠି ଏହାକୁ ଜିଗାଡ଼ି କାଉଡ଼ି ମଧ୍ୟ କୁହାଯାଇଥାଏ ।

୪ର୍ଥ ପ୍ରକାର ଉପକରଣ ହେଉଛି ଚାଲ୍‌ନି ବା ବିଭିନ୍ନ ପ୍ରକାରର ଚାଲୁଣି । ଶସ୍ୟରୁ ଗୋଡ଼ି, ବାଲି ବାହାର କରିବା ପାଇଁ ଛୋଟ ଚାଲ୍‌ନି ଏବଂ ଧାନରୁ ଗୋଡ଼ି ବାଲି ବାହାର କରିବା ପାଇଁ ବଡ଼ ଚାଲ୍‌ନି ।

୫ମରେ ହେଉଚି ପାଛୁଡ଼ା ପାଛୁଡ଼ି କାମରେ ଆସୁଥିବା କୁଲା ଓ କୁଲେଇ । ୬ଷ୍ଠରେ ବାଡ଼ନି ବା ଝାଡୁ ଯାହା ଖୁବ୍ ସରୁ ବାଉଁଶକାଠିରୁ ତିଆରି ହୋଇଥାଏ । ୭ମରେ ବିଂଚନା ବା ବିଂଚଣା । ଏସବୁକୁ ଛାଡ଼ି ଆଦିବାସୀର ସବୁ ଦିନିଆ କାମରେ ଲାଗୁଥିବା ଅଥଚ ବଜାରରେ ମିଳି ପାରୁ ନଥିବା କିଛି ଜିନିଷ ତିଆରି ହୁଏ ଯାହାକି ବ୍ୟକ୍ତିଗତ ଭାବେ ଲୋକେ ବଡ଼ ସଉକରେ ତିଆରି କରିଥାନ୍ତି । ଏଥିରୁ ମୁଖ୍ୟ ହେଉଚି ଦୁନୁ ବା ଧନୁ ଯାହା ତିଆରି ହୁଏ ପାକଳ, ନିଦା ଜଙ୍ଗଲ ବାଉଁଶରୁ । ପାକଳ ପାଣି ବାଉଁଶରୁ ତିଆରି ହୁଏ ତୀର, ଯାହାକୁ କୁହାଯାଏ କାଣ୍ଡଶର । ପୁଣି ପନ୍ତି ବା ଧନୁର ଗୁଣ, ଯାହା ଡଙ୍ଗର ବାଉଁଶ ଓ ରଶି ଦ୍ୱାରା ତିଆରି ହୁଏ । ପୁଣି ତିଆରି ହୁଏ ବିଟା ବା ଡୁଇଲ ନାମକ, ବାଉଁଶ ଠିପି ଯାହା ତୀର ଅଗ୍ରଭାଗରେ ଖଞ୍ଜାହେବା ପାଇଁ ତିଆରି ହୁଏ ଓ ପକ୍ଷୀ ଶିକାରରେ ବ୍ୟବହାର ହୁଏ । ମିରିଗୁଲି ବା ବାଉଁଶ ତିଆରି ପାଣି ବାହିବା ଯନ୍ତ୍ର ବଡ଼ ଚାଙ୍ଗ୍‌ଡ଼ା ସାଇଜର ହୋଇଥାଏ ଓ ତାହାର ଦୁଇପଟେ ଚାରୋଟି ରଶି ଲାଗିଥାଏ । ଗିରା ବା ଡଙ୍ଗା ସାଇଜର ନିର୍ମିତ ବାଉଁଶ କାଠି ଓ ରଶିର ବଡ଼ ବିସର୍ ମଧ୍ୟ ତିଆରି କରାଯାଏ । ଗିରି ଗୁଲିରେ ପାଣି ବାହିଦେବା ପରେ ଏହି ଗିରା ଦ୍ୱାରା ବେଡ଼ାରୁ ମାଛ ମରାଯାଇଥାଏ । ଶିରା ହେଉଛି ସଲପ ପାରିବା ବାଉଁଶ ଯାହା ପାକଳ, ମୋଟା ତଥା ଶାଖା ପ୍ରଶାଖା ଯୁକ୍ତ ହୋଇଥାଏ । ଉପରକୁ ଉଠି ପାରିବା ଭଳି ଶାଖା ରଖି ଏହାକୁ ପ୍ରସ୍ତୁତ କରାଯାଏ । ସୁରୁଡ଼ି ବା ଆଡ଼ବଂଶୀ ହେଉଚି କନ୍ଧ ସମାଜରେ ବ୍ୟବହୃତ ବିଶେଷଧରଣର ବଂଶୀ । ଅନେକଥର ବୁଢ଼ାବୁଢ଼ୀ ଲୋକ ଅଭିଯୋଗ କରିଥାନ୍ତି ଯେ ଭଲ ସୁରୁଡ଼ିଟିଏ ତିଆରି କରିବା ପାଇଁ ଉପଯୁକ୍ତ ପାକଳ ବାଉଁଶ ଆଉ ମିଳୁନାହିଁ । ସେଥିପାଇଁ ଅନେକ ସ୍ଥାନରେ ବହୁ ପୁରୁଣା ସୁରୁଡ଼ିକୁ ସୂତାଗୁଡ଼ି ହୋଇ ବ୍ୟବହାର ହେବାର ଦେଖାଯାଏ । ଏପରିକି ଫାଟି ଯାଇଥିଲେ ମଧ୍ୟ ତାକୁ କନା ଗୁଡ଼ାଇ ବାଦକମାନେ ବ୍ୟବହାର କରିବା ଦେଖାଯାଇଥାଏ ।

ଜାପିପେଡ଼ି ହେଉଚି ସରୁ ବାଉଁଶରେ ଘଞ୍ଚ ବୁଣେଇ ହୋଇଥିବା ଏକ ପ୍ରକାର ବାକ୍ସ ଯାହା ପଇସାପତ୍ର ତଥା ଅନ୍ୟାନ୍ୟ ମୂଲ୍ୟବାନ୍ ଜିନିଷ ରଖିବା ପାଇଁ ବ୍ୟବହାର କରାଯାଇଥାଏ । ଏଥିରେ ଦାମୀ ଲୁଗାପଟା ଓ ଅଳଙ୍କାର ପତ୍ର ମଧ୍ୟ ରଖାଯାଏ ।

ତେବେ ଏହାର ପ୍ରଚଳନ ଧୀରେଧୀରେ କମିଯାଉଛି । ଜୁଲ୍‌ନି ବା ଝୁଲଣା ହେଉଚି ଆଦିବାସୀ ବାଉଁଶ କାରିଗରୀର ଆଉ ଏକ ସୁନ୍ଦର ନମୁନା । ଏହା ବିଭିନ୍ନ ପ୍ରକାରର ହୋଇଥାଏ ଓ ଆଦିବାସୀ କଳାକାରର ସୃଜନଶୀଳତାକୁ ସୁନ୍ଦରଭାବେ ପ୍ରକାଶ କରିଥାଏ । ସେହିପରି ପେଣ୍ଡମ୍ ତିଆରି ଶକ୍‌ଲା ସ୍ୱତନ୍ତ୍ର ଭାବେ ତିଆରି ହୁଏ ବାଉଁଶ ପାତିଆରୁ । ଏହା ୪ଫୁଟ୍‌ରେ ୪ଫୁଟ୍ ଚାରିକୋଣିଆ ଅଳ୍ପ ଫାନ୍ଦ ଥିବା ଏକ ଡାଲା ଯେଉଁଥିରେ ମାଣ୍ଡିଆ ବା ଚାଉଳ ପେଣ୍ଡମ୍ ଶୁଖାଯାଏ । କେହିକେହି ଏଥିରେ ଧାନ ମଧ ଶୁଖାଇଥାନ୍ତି । ପୁଣି ତିଆରି ହୁଏ ଡେଗ୍‌ନା ଶିଡ଼ି, ଯାହା ସଲପ ଗଛ ଉପରକୁ ଚଢ଼ିବା ପାଇଁ ବ୍ୟବହାର ହୁଏ ।

ସର୍ବଶେଷ ପଦାର୍ଥଟି ହେଉଛି ମୃତ୍ୟୁ ପରେ ବ୍ୟବହୃତ କୋକେଇ ବା ଡାଣ୍ଡିଆ । ପ୍ରାୟ ୧୦ଫୁଟ୍ ଲମ୍ବରେ ଦୁଇଟି ବାଉଁଶକୁ ନେଇ ସମାନ୍ତର ଭାବେ ରଖି ସିଡ଼ି ଭଳି ତାହା ମଝିରେ ବାଉଁଶ ଫାଳ ଖଞ୍ଜାଯାଇ ବାନ୍ଧି ଦିଆଯାଏ । ଏହା ଶବ ବୋହିବା ପାଇଁ ବ୍ୟବହାର କରାଯାଏ ଓ ଥରେ ବ୍ୟବହାର ହେଲା ପରେ ମଶନ୍‌ରେ ଫୋପାଡ଼ି ଦିଆଯାଏ । ଏହିପରି ବୁଲନିଠାରୁ ଡାଣ୍ଡିଆ ପର୍ଯ୍ୟନ୍ତ ଅର୍ଥାତ୍ ଆଦିବାସୀର ଜନ୍ମଠାରୁ ମୃତ୍ୟୁ ଯାଏ ବାଉଁଶର ଆବଶ୍ୟକତା ଅବ୍ୟାହତ ଓ ଅବାରିତ ।

ବାଉଁଶ ବୁଣେଇର ଏହି ଲୋକପ୍ରିୟ ଶିଳ୍ପ କ୍ରମେ କମିକମି ଯିବାରେ ଲାଗିଛି । କାରଣ ବାଉଁଶ ସମ୍ପଦ ବିଭିନ୍ନ କାରଣରୁ ଧୀରେଧୀରେ ଲୋପ ହେବାକୁ ବସିଛି । ବିଶେଷକରି ଫରେଷ୍ଟ କର୍ପୋରେସନ୍ ତଥା ଓଡ଼ିଶା ସରକାରଙ୍କ ବାଉଁଶ ଲିଜ୍ ନୀତି ଫଳରେ ବିଭିନ୍ନ କାଗଜକଳ ଓ ଟିମ୍ବର କମ୍ପାନୀମାନେ ମନଇଚ୍ଛା ବାଉଁଶ କଟିଂ କରିବା ଦ୍ୱାରା ଏବଂ ଠିକ୍ ଭାବେ ବାଉଁଶ ରୋପଣ ନ କରିବା ଦ୍ୱାରା ଏହି ପରିସ୍ଥିତି ଦେଖା ଦେଇଛି । ସାମାଜିକ, ଅର୍ଥନୈତିକ, ରାଜନୈତିକ ଏବଂ କଳାତ୍ମକ ଦିଗରେ ବାଉଁଶ ଉପରେ ନିର୍ଭରଶୀଳ ଆଦିବାସୀ ବାଉଁଶ ପାଇଁ ଅନେକ ସଂଗ୍ରାମ ବି କରିଛି ଓ କରୁଛି । କାରଣ ଏହା ତା'ପାଇଁ କେବଳ ଏକ ଶିଳ୍ପ ବା କଳାର ପ୍ରଶ୍ନ ନୁହେଁ, ଜୀବନ ଓ ଜୀବିକାର ପ୍ରଶ୍ନ । ଆଉ ଯେଉଁଠି ଯେଉଁଠି କଳାର ସାମାଜିକ ଉପଯୋଗିତା ଯେତେ ଅଧିକ, ସେଠି ସେହି କଳାର ବିକାଶ ମଧ ସେତେ ଦୀର୍ଘସ୍ଥାୟୀ । ସୁତରାଂ ଆଦିବାସୀର ବାଉଁଶ ବୁଣେଇ ପ୍ରସଙ୍ଗ ଆଲୋଚିତ ହେଲାବେଳେ ଏହା ଉପରେ ଆଦିବାସୀର ଅଧିକାର ଯେ ଏକାନ୍ତ ପ୍ରାଥମିକ, ଏହା ଆମକୁ ମାନି ନେବାକୁ ପଡ଼ିବ ।



# ହାଲ୍‌ବା ଜନଜାତିର ତିନୋଟି ଗୀତ

ଅବିଭକ୍ତ କୋରାପୁଟ ଜିଲ୍ଲାରେ ଥିବା ବିଭିନ୍ନ ଆଦିବାସୀ ସଂପ୍ରଦାୟ ମଧ୍ୟରେ ହାଲ୍‌ବା ଅନ୍ୟତମ । ହାଲ୍‌ବାମାନେ ମୁଖ୍ୟତଃ କୋରାପୁଟ, ନବରଙ୍ଗପୁର, ମାଲ୍‌କାନ୍‌ଗିରି ଓ ଅବିଭକ୍ତ କଳାହାଣ୍ଡି ଜିଲ୍ଲାର ଛତିଶଗଡ଼ ସୀମାକୁ ଲାଗି ରହିଥିବା ବ୍ୟାପକ ଅଞ୍ଚଳର ବେଶ୍ କିଛି ଗ୍ରାମରେ ନିଜର ବସତି ସ୍ଥାପନ କରି ବସବାସ କରି ଆସୁଛନ୍ତି । ହେଲୋ ବା ହଳ ଶବ୍ଦରୁ ହାଲ୍‌ବା ଶବ୍ଦର ସୃଷ୍ଟି ହୋଇଥିବା ଅନୁମେୟ । ହାଲ୍‌ବାମାନେ ମଧ୍ୟ ଏକଥା ବିଶ୍ୱାସ କରନ୍ତି । ସେମାନେ ଯେ ମୁଖ୍ୟତଃ ଚାଷୀ ସଂପ୍ରଦାୟର, ଏକଥା ବାସ୍ତବ କ୍ଷେତ୍ରରେ ମଧ୍ୟ ପ୍ରମାଣିତ । ଏହିସବୁ ହାଲ୍‌ବା ଗାଁର ଲୋକମାନେ ମୁଖ୍ୟତଃ ମିଶ୍ରିତ ଗୋଷ୍ଠୀର ଅର୍ଥାତ୍ ହାଲବାମାନଙ୍କ ସହ ଅନ୍ୟାନ୍ୟ ସଂପ୍ରଦାୟ ଲୋକେ ମଧ୍ୟ ମିଳିମିଶି ରହିଥାନ୍ତି । ଅନ୍ୟମାନଙ୍କ ସହ ମିଳିମିଶି ବସବାସ କରିବାରେ ହଲ୍‌ବାମାନେ ପାରମ୍ପରିକ ଭାବେ ବେଶ୍ ଅଭ୍ୟସ୍ତ । ମାଲ୍‌କାନ୍‌ଗିରି ଜିଲ୍ଲାର ମାତିଲି, କୋରକୋଣ୍ଡା ଓ ମାଲ୍‌କାନ୍‌ଗିରି ବ୍ଲକ୍, କୋରାପୁଟ ଜିଲ୍ଲାର କୋଟପାଡ଼, କୁନ୍ଦୁରା ଓ ବୋରିଗୁମ୍ମା ବ୍ଲକ୍ ଏବଂ ନବରଙ୍ଗପୁର ଜିଲ୍ଲାର ଉମରକୋଟ ଓ ରାଇଘର ବ୍ଲକ୍‌ରେ ହଲ୍‌ବା ଗାଁମାନ ଦେଖିବାକୁ ମିଳେ । ଏମାନେ ଯେଉଁ ଭାଷା ବ୍ୟବହାର କରନ୍ତି ତାହା ହେଉଛି ହଲ୍‌ବୀ ବା ହାଲ୍‌ବୀ । ହାଲ୍‌ବୀ ଭାଷା ଉପରେ ଦେଶିଆ ତଥା ଛତିଶଗଡ଼ୀ ଭାଷାର ପ୍ରଭାବ ସୁସ୍ପଷ୍ଟ । କିନ୍ତୁ ଏହା ଯେ ଏକ ସ୍ୱତନ୍ତ ଭାଷାର ମାନ୍ୟତା ଲାଭ କରିବା ପାଇଁ ହକ୍‌ଦାର୍, ଏଥିରେ ସନ୍ଦେହ ନାହିଁ । ଅବଶ୍ୟ ଏହାର ଲିଖିତ ଲିପି ନାହିଁ । ହେଲେ ଏହାର ସ୍ୱତନ୍ତତା ସହଜରେ ବାରି ହୋଇଯାଏ । ଛତିଶଗଡ଼ୀ ଓ କୟା ଭାଷାର ଏହା ଉପରେ ପଡ଼ିଥିବା ପ୍ରଭାବ ଲକ୍ଷଣୀୟ ।

ହଲ୍‌ବୀ ଭାଷା ଯେ ଖାଲି ହଲ୍‌ବାମାନେ ବ୍ୟବହାର କରିଥାନ୍ତି, ତା' ନୁହେଁ, ସେମାନଙ୍କ ସହ ମିଳିମିଶି ଚଳୁଥିବା ସେହି ଅଞ୍ଚଳର ଅଣହଲ୍‌ବା ଲୋକମାନେ ଯେପରିକି ଡମ, ଗୌଡ଼, ଧାକଡ଼ ଓ ଗଣ୍ଡିଆମାନେ ମଧ୍ୟ ଏହି ଭାଷାରେ କଥା ହୁଅନ୍ତି । ବିଶେଷକରି ଏହି ସୀମାନ୍ତବର୍ତ୍ତୀ ଅଞ୍ଚଳର ହାଟବାଟର ଭାଷା ହେଉଛି ହାଲ୍‌ବୀ । ଏହି ଭାଷା ବା ଭାଷାଭାଷୀ ଲୋକଙ୍କ ଉପରେ ଖୁବ୍ କମ୍ ଅଧ୍ୟୟନ ହୋଇଥିବା ଦୃଷ୍ଟିରୁ ଏହାର ଭାଷାତାତ୍ତ୍ୱିକ ଦିଗ ଏବେ ବି ସ୍ପଷ୍ଟ ପ୍ରତିଷ୍ଠିତ ନୁହେଁ । ଏଠାରେ କେବଳ ଏହି ଭାଷାର ସମୃଦ୍ଧ ପରମ୍ପରା ଓ ସଂସ୍କୃତି ବିଷୟରେ ସାମାନ୍ୟ ସୂଚନା ଦେବାପାଇଁ ଭିନ୍ନଭିନ୍ନ ବିଷୟକ ୩ଟି ଜନପ୍ରିୟ ଗୀତର ଅବତାରଣା ଓ ପର୍ଯ୍ୟାଲୋଚନା କରାଯାଇଛି । ଏହି ଭାଷାର ବ୍ୟାକରଣ, ଶବ୍ଦ ସମ୍ପଦ ଓ ଭାଷାତାତ୍ତ୍ୱିକ ଦିଗ ସମ୍ପର୍କରେ ଯେ ଅନେକ ଗବେଷଣା କରାଯିବା ଆବଶ୍ୟକ ସେ କଥା ଦର୍ଶାଇ ଦେବା ହିଁ ଏହି ପ୍ରବନ୍ଧର ଉଦ୍ଦେଶ୍ୟ । ଏଥିପାଇଁ ତଥ୍ୟଗତ ସହଯୋଗ ଯୋଗାଇ ଦେଇଛନ୍ତି ସର୍ଗୀଗୁଡ଼ା ଗାଁର କମଳସାଇ ମାଝୀ ।

ଗ୍ରାମପୁଞ୍ଜ : ମାଲ୍‌କାନ୍‌ଗିରି ଜିଲ୍ଲାର ମାଥିଲି ବ୍ଲକ୍‌ରେ ଥିବା ହଲ୍‌ବା ଗାଁ ସବୁ ହେଉଛି କିଆଂ, ସାଲ୍‌ମୀ, ଡଙ୍ଗାରାଶି, ଟେମୁରପାଲି, କଂସାରିପୁଟ, ସର୍ଗିଗୁଡ଼ା, ଧାକଡ଼ରାଶି, କମ୍‌ରାବେଡ଼ା, ବରପୁଞ୍ଜାଗୁଡ଼ା, ସେର୍‌ପାଲି ଓ ପୁଜାରିଗୁଡ଼ା, କୋର୍‌କୋଣ୍ଡା ବ୍ଲକ୍‌ର ଚାଲାଣ ଗୁଡ଼ା, ଟଣ୍ଡକୀ, ଡଙ୍ଗାଗୁଡ଼ା ଓ ବୁଦୁଗୁଡ଼ା ତଥା ମାଲ୍‌କାନ୍‌ଗିରି ବ୍ଲକ୍‌ର ଗଉଡ଼ଗୁଡ଼ା ହେଉଛି ହଲ୍‌ବା ଅଧ୍ୟୁଷିତ ଗାଁ ।

ପ୍ରବାଦ : ଲୋକ ପ୍ରବାଦ ଅନୁଯାୟୀ ଓଡ଼ିଶା ଛତିଶଗଡ଼ ସୀମାରେ ଅବସ୍ଥିତ ଏହି ସବୁ ଗାଁରେ ଥିବା ହାଲ୍‌ବାମାନେ ଛତିଶଗଡ଼ ଅଞ୍ଚଳରୁ ହିଁ ଆସିଥିଲେ । ଏମାନଙ୍କର ପୂର୍ବପୁରୁଷ ଲିଡ଼୍‌ଞ୍ଜା ମାଝୀ ଥିଲେ ସେମାନଙ୍କର ନାୟକ । ଏହି ଲିଡ଼ଞ୍ଜା ମାଝୀ ଓ ତାଙ୍କ ଭାଇ ସୋମନାଥ ମାଝୀ ବହୁ ବର୍ଷ ପୂର୍ବେ ଛତିଶଗଡ଼ ରାଜାଙ୍କ ବିରୋଧରେ ବିଦ୍ରୋହ କରି ନିଜର ବିଦ୍ରୋହୀ ସେନା ଓ ଅନୁସରଣକାରୀମାନଙ୍କ ସହ ଜୀବନ ବଞ୍ଚାଇବା ପାଇଁ ଓଡ଼ିଶା ଚାଲି ଆସିଥିଲେ । ଓଡ଼ିଶାରେ ସେମାନେ ପ୍ରଥମେ ସାଲମୀ, କିଆଂ, ସର୍ଗିଗୁଡ଼ା ଓ ଟେମୁର୍‌ପାଲିଠାରେ ହିଁ ବସବାସ କରିବାକୁ ଲାଗିଲେ । ସେତେବେଳେ ଏହି କିଆଂ ସମେତ ମେକା, ଦାମାପଡ଼ା, ବିଜା ପଦର ଓ ମେଣ୍ଡକୁଲି ଏହି ପାଞ୍ଚପଡ଼ାର ରାଜା ଥିଲେ ଜଣେ ଡମ । ତାଙ୍କର ଗଡ଼ ଥିଲା ଚେଡେଙ୍ଗା ପାହାଡ଼

ଉପରେ । ସେହି ଡମ ରାଜା ଥିଲେ ଭୀଷଣ ମାୟାବୀ ଅର୍ଥାତ୍ ତନ୍ତ୍ରବିଦ୍ୟାରେ ମାହିର୍ । ତାଙ୍କୁ ସମସ୍ତେ ଭୟ କରୁଥିଲେ । ଜୟପୁର ରାଜା ମଧ୍ୟ ତାଙ୍କ ପାଖରେ ସଂତ୍ରସ୍ତ ଥିଲେ । ଡମ୍‌ରାଜା ମଧ୍ୟ ଜୟପୁର ରାଜାଙ୍କୁ କିଛି ହେଲେ ମାନ୍ୟ ବା ପାଉଣା ଦେଉ ନଥିଲେ । ପାଞ୍ଚପଡ଼ାର ସମସ୍ତ ପ୍ରଜା ଥିଲେ ଡମରାଜାଙ୍କ ଦାଦନକାରିଆ । ଲିଡ଼୍‌ଙ୍ଗା ମାଝୀ ଓ ସୋମନାଥ ମାଝୀ ଓଡ଼ିଶାରେ ପାଦତଳ ଭୂମି ଟାଣ କରିନେବା ପରେ ଏହି ପାଞ୍ଚପଡ଼ା ପ୍ରଜାମାନଙ୍କର ସର୍ଦ୍ଦାର ବନିବାର ଚେଷ୍ଟାକଲେ । ଏହି ପାଂଚପଡ଼ାର ମୁଖ୍ୟ ଗ୍ରାମ ଥିଲା କିଆଂ । ଡମରାଜାଙ୍କ ଗଡ଼ରେ କାମ କରିବା ପାଇଁ ମାସର ବିଭିନ୍ନ ସମୟରେ ବିଭିନ୍ନ ପଡ଼ାର ଦାଦନକାରିଆମାନଙ୍କର କାମ ପଡୁଥିଲା । କିଆଂ କରିଆମାନଙ୍କର ପାଳି ପଡ଼ିବା ସମୟରେ ଲିଡ଼୍‌ଙ୍ଗା ଡମରାଜାଙ୍କ ସାତରାଣୀ ଭିତରୁ ଜଣକୁ ହାତକରି ପାରିଥିଲେ । ସେ ରାଣୀ ହିଁ ତାଙ୍କୁ ଦିନେ ଗୋଟିଏ କୁକୁରକୁ ଦେଖାଇ ଦେଇ କହିଥିଲେ ଯେ ସେହି ହେଉଛି ଡମରାଜା । ବାସ୍ତବରେ ଡମରାଜା କାହାକୁ ଦେଖା ଦେଉ ନଥିଲେ । ସବୁଦିନେ ବିଭିନ୍ନ ଜୀବଜନ୍ତୁଙ୍କ ରୂପନେଇ ସେ ପ୍ରଜାମାନଙ୍କୁ ପରୋକ୍ଷରେ ଶାସନ କରୁଥିଲେ । ରାଣୀଙ୍କ ଦ୍ୱାରା ଡମରାଜାଙ୍କୁ ଚିହ୍ନି ଦେବାପରେ ଲିଡ଼ଙ୍ଗା ମାଝୀ ସେହି କୁକୁରକୁ ଦୁଇଗଡ଼ କରି କାଟି ଦେଲେ । ମୁଣ୍ଡଟା ପାହାଡ଼ ଉପରେ ରହିଗଲା ଓ ଗଣ୍ଡିଟା ତଳକୁ ଗଳି ପଡ଼ିଲା ।

ଚେଡ଼େଙ୍ଗା ପାଖରେ ବହିଯାଉଛି କୋଲାବ୍(ବା ସାବେରୀ) ନଦୀ । କିନ୍ତୁ ସେତେବେଳେ କୋଲାବ ଆଜି ଭଳି ଏତେ ଓସାରିଆ ନ ଥିଲା, ଥିଲା ଖୁବ୍ ସଂକୀର୍ଣ୍ଣ । ଚେଡ଼େଙ୍ଗା ଗଡ଼ ପାଖ କୋଲାବ୍ ନଦୀର ଦୁଇପାଖରେ ଥିଲା ଦୁଇଟି ଝଙ୍କାଳିଆ ବାଉଁଶବୁଦା । ଏପଟୁ ସେ ପଟକୁ ଯିବାପାଇଁ ଗୋଟିଏ କାଠପଟା ପଡ଼ିଥିଲା । ଏଇ ବାଟ ଦେଇ ପାଞ୍ଚପଡ଼ାର କାରିଆମାନେ ଯିବା ଆସିବା କରୁଥିଲେ । କୁକୁରୀ ରୂପୀ ଡମରାଜାଙ୍କ ହତ୍ୟା ପରେ ରାଣୀମାନେ ଏଇ ବାଟେ ପଳାୟନ କରିବାର ଚେଷ୍ଟା କରିବା ବେଳକୁ ସେଠାରେ ପଡ଼ିଥିବା ପଟାପୋଲ ମେଳିଆମାନେ ପୂର୍ବରୁ ଉଠାଇ ଦେଇଥିଲେ । ତେଣୁ ସେମାନେ ଚେଡ଼େଙ୍ଗା ପାହାଡ଼ ଉପରୁ ତଳେଥିବା ଦୁଡୁମାକୁ ଜଣକ ପରେ ଜଣେ ଡେଇଁ ପଡ଼ିଲେ । ସେଇଦିନୁ ସେ ଦୁଡୁମାର ନାମ ରାଣୀଧାରା । ଡମରାଜାଙ୍କ କୁକୁର ମୁଣ୍ଡ ଏବେବି ଚେଡେଙ୍ଗା ପାହାଡ଼ି ଉପରେ ପଥର ପାଲଟି ରହିଛି ଓ ପୂଜା ପାଉଛି । ଏହି ବିଦ୍ରୋହ ପରେ ପରେ ଜୟପୁର ରାଜା ମାଝୀ ଭାଇମାନଙ୍କୁ ପୁରସ୍କୃତ କଲେ ଓ ପାଞ୍ଚପଡ଼ାର ଶାସନ ଦାୟିତ୍ୱ ପ୍ରତ୍ୟକ୍ଷ ଭାବେ ନିଜେ

ଗ୍ରହଣ କରିନେଲେ । ଅଡ଼ୱା ମାଝୀ ଓ ସୋମନାଥ ମାଝୀ ପୁରସ୍କାର ରୂପେ କ'ଣ ପାଇଥିଲେ, ସେ ବିଷୟରେ ବିଶେଷ ତଥ୍ୟ ମିଳୁ ନ ଥିଲେ ମଧ୍ୟ ଏହି ପାଞ୍ଚପଡ଼ାର ପାନୁସଂଗ୍ରହ ଦାୟିତ୍ୱ ସେମାନଙ୍କୁ ଦିଆଯାଇଥିବା କଥା ଲୋକ ମୁଖରୁ ଶୁଣାଯାଏ ।

ଏହି ପ୍ରବାଦର ଐତିହାସିକ ସତ୍ୟତା ଯାହା ହେଉନା କାହିଁକି, ମାଲ୍‌କାନ୍‌ଗିରିର ଭୂମିପୁତ୍ର କୋୟା, ବଣ୍ଡା ଓ ଡିଡୋୟୀମାନଙ୍କ ମେଳରେ ହଲ୍‌ବାମାନେ ଯେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ, କିଛି ରାଜନୈତିକ ଆଶୀର୍ବାଦ ବିନା ଏହା ହୋଇପାରିବା ଅସମ୍ଭବ ମନେହୁଏ । ପୁଣି ଗୋଟିଏ ନୂଆ ସ୍ଥାନରେ ନିଜକୁ ଖାପ୍‌ଖୁଆଇ ଚଳାଇ ନେବାର ଅସୀମ କ୍ଷମତା ଏମାନଙ୍କ ପାଖରେ ଦେଖାଯାଏ । ତେଣୁ ନବରଙ୍ଗପୁରର ଗଣ୍ଡ ଓ ଭୋତ୍ରା ତଥା କୋରାପୁଟ୍‌ର କନ୍ଧ ଓ ପରଜାମାନଙ୍କ ସହ ମଧ୍ୟ ତା' ମେଳ ରକ୍ଷାକରି ଏମାନେ ନିଜକୁ ଜାହିର୍ କରିପାରିଛନ୍ତି । ମାଲ୍‌କାନ୍‌ଗିରିର ହଲ୍‌ବାମାନେ ନିଜର ବସ୍ତିମାନଙ୍କରେ ସାଧାରଣତଃ ଅନ୍ୟାନ୍ୟ ସମ୍ପ୍ରଦାୟର ଆଦିବାସୀ, ଗଉଡ଼ ଓ ଡମମାନଙ୍କୁ ସ୍ଥାନ ଦେଇଥାନ୍ତି । ପ୍ରତି ଗାଁରେ ନିଜର ଗ୍ରାମ୍ୟ ଜଙ୍ଗଲ ଉପରେ ଏମାନେ ଗୁରୁତ୍ୱ ଦେଇଥାନ୍ତି ଓ ସାମୂହିକ ଭାବେ ଏହାର ଦେଖ୍‌ବାହାଲ୍ କରିଥାନ୍ତି । ଗୋରୁଗାଈ ଓ ପୋଢ଼ ମଇଁଷି ବହୁ ସଂଖ୍ୟାରେ ଏସବୁ ଗାଁରେ ପାଳିତ ହୁଅନ୍ତି । ତାରା ମାଝୀ, ବୀରା ମାଝୀ ଓ ଲାଗଡ଼ା ମାଝୀ ହେଉଛନ୍ତି ଏମାନଙ୍କର ଦେବତା । ଯାହା ଜଣାଯାଏ, ଏମାନେ ସମସ୍ତେ ଥିଲେ ଲିଡ଼ଙ୍ଗା ଓ ସୋମନାଥଙ୍କ ପୂର୍ବପୁରୁଷ । ଆଦିବାସୀ ସଂସ୍କୃତିରେ ପୂର୍ବପୁରୁଷମାନେ ହିଁ ଦେବତା ହୋଇଯାଆନ୍ତି । ତାରାମାଝୀଙ୍କ ଗୁଡ଼ିଘର ଏବେ ବି ରହିଛି ସାଲ୍‌ମୀଠାରେ । ହଲ୍‌ବୀମାନଙ୍କ ପରମ୍ପରା ଏହିଥିରୁ ହିଁ ପ୍ରମାଣିତ ହୁଏ । ପୁଣି ତନ୍ତ୍ରଦର୍ଶନ ଦ୍ୱାରା ପ୍ରଭାବିତ ଦେବୀ ବା ମାତୃ ସଂସ୍କୃତି ଅନ୍ୟାନ୍ୟ ଆଦିବାସୀ ସଂପ୍ରଦାୟରେ ଜନପ୍ରିୟ ହୋଇଥିବା ବେଳେ ହାଲ୍‌ବାମାନେ ଦେବତା ସଂସ୍କୃତିର ପୃଷ୍ଠପୋଷକ । ଅବଶ୍ୟ ଅନ୍ୟାନ୍ୟ ସଂପ୍ରଦାୟର ଦେବଦେବୀମାନଙ୍କ ପ୍ରତି ମଧ୍ୟ ଏମାନେ ଯଥେଷ୍ଟ ଭକ୍ତି ଓ ଶ୍ରଦ୍ଧା ଦେଖାଇଥାନ୍ତି ।

ହାଲ୍‌ବାମାନଙ୍କ ସାମାଜିକ ସାଂସ୍କୃତିକ ଜୀବନ ଉପରେ ଅଧିକ ଚର୍ଚ୍ଚା ନ କରି ଏଠାରେ ସେମାନଙ୍କର କେତୋଟି ଗୀତ ଉପସ୍ଥାପିତ କରୁଛି । ଏହିସବୁ ଢେମ୍‌ସାଗୀତ ତିନୋଟି ଭିନ୍ନଭିନ୍ନ ଅବସରରେ ଗାନ କରାଯାଇଥାଏ : ଚଇତି ପରବ ଅବସରରେ ଲେଜା ଗୀତ, ପୁଷପରବ ସମୟରେ ପୁଷ୍‌ପୁନିଗୀତ ଓ ବିଭାଘର ଅବସରରେ ବିଭାଗୀତି ।

ଲେଜା ଗୀତ -

ଲେଜା ଲେଜା ଲେଜା ପାପା ଲେଜା ବାକଟି

ଡେଲା କୁଡ଼ା ବାଟେ ନାଯା ପାପା ଆସେ ଆପ୍‌ଟି

ଶିରିବେଲ, ଏଇ ଟରା ଡେଲ

ଚକଡ଼୍ ଚକଡ଼ାୟ କରି କିଡ଼ିଡେଲ ଚ

ମଟରଗାଡ଼ି ସହରେ ଚଲ

ବକାନି ସହରେ ବିଜୁଲିବରେ ସାନସୁରୁ ବଡ଼େ ଘରେ

ଘରେ ତେଲ ନାଇଁ ଘରେ ଫୁଲ ନାଇଁ

ଗାଗୁଆୟ ଟରେ ଟରେ

ବନ୍ଦ ଶିରିବେଲ କିଡ଼ି ଡେଲଚ

ମଟରଗାଡ଼ି ସହରେ ଚଲ

ଆସୁତା ଡଙ୍ଗରେ ବାସୁତା ପୁଟେ ଦାଣ୍ଡରେ କୁକୁର ବୁକେ (ଭୁକୁଥାଏ)

ସାତ ଜନମ୍ ରଲି ଆଠ ଜନମ୍ ରଲି ସାଙ୍ଗୁନ୍ ରଲେ ତୁକେ

ଆଠ ବଜୁନ୍‌ଜାକ ସୁର୍‌ତା କରଲେ

ପାସେ ସଲେ ଭୁକେ

ନନ୍ଦୀକାୟ ସାଙ୍ଗୁ ଆଁୟତୁକେ

ଧକାନାଦେ ମକେ

ବନ୍ଦ ଶିରିବେଲ ଏଇ ଟରାଡେଲ

ଚକର୍ ଚକ୍ ଡାୟକର ଜିଡ଼ି ଡେଲଚ ମଟରଗାଡ଼ି

ସହରେ ଚଲ

ଆଟା ଲାଟକାନି ଢେମ୍‌ସା ନାଟ ସମୟରେ ହାଲ୍‌ବିମାନେ ଏହି ଲେଜାଗୀତ ଗାନ କରିଥାନ୍ତି । ଲେଜାର ଆକ୍ଷରିକ ଅର୍ଥ ନେଇଯାରେ ନେଇଯା, ଦେଶିଆରେ

ଏହାର ଅର୍ଥ - ବିଦାୟ, କିନ୍ତୁ କମର ଦୋହଲାଇ ଗୃହକର୍ମ ବା କୃଷିକର୍ମ କରୁଥିବା ଭଙ୍ଗୀରେ କରାଯାଉଥିବା ଏହି ନୃତ୍ୟରେ ଜୀବନର ସରଳ ଓ ଜଟିଳ - ସବୁପ୍ରକାର ଅନୁଭବକୁ ମାର୍ମିକ ଭାବେ ପ୍ରକାଶ କରାଯାଇଥାଏ । ଦେଶିଆ ତଥା ଅନ୍ୟାନ୍ୟ ଆଦିବାସୀ ଗୋଷ୍ଠୀରେ ମଧ୍ୟ ଏହି ଲୋକାଗୀତ ପ୍ରଚଳିତ ଥିବାରୁ ଲୋକ ଧାର୍ମିକତା ଦୃଷ୍ଟିରୁ ଏହା ସାର୍ବଜନୀନ ।

ହାଲ୍‌ବା ଭାଷାରେ ଉଲ୍ଲେଖିତ ଗୀତଟିର ନିମ୍ନ ଅର୍ଥ ନରାଯାଇପାରେ :

ଆରେ ଛୁଆ ଅଙ୍କାବଙ୍କା ରାସ୍ତାରେ ତୁ ଯାଆନା । ବଡ଼ବଡ଼ ମାଟିପଥର ପଡ଼ିଥିବା ରାସ୍ତାରେ ଯାଆନା, ତଳେ ପଡ଼ିଯିବୁ । ବତି କିପରି ଜାଳିବି ? ଘରେ ତ ଟୋଲତେଲ ଠୋପାଏ ବି ନାହିଁ । ଚାଲ୍ ତୋତେ ସହର ବୁଲାଇ ନେବି । ଗନ୍ଧ ତେଲରେ (ପେଟ୍ରୋଲ୍‌ରେ) ଚାଲୁଥିବା ଓ ଚକଡ଼ ଚକଡ଼ାୟ ଶବ୍ଦ କରୁଥିବା ମଟରଗାଡ଼ିରେ ଆମେ ସହର ବୁଲିଯିବା । ଦେଖ୍, ସହରରେ ବଡ଼ବଡ଼ ଘରେ ବିଜୁଳିବତି ଜଳୁଛି । ଘରେ ଆମର ତେଲ ନାହିଁକି ଫୁଲ ନାହିଁ । ଧନ ମୋର, ଗନ୍ଧିଆ ତେଲରେ ଚାଲୁଥିବା ମଟରଗାଡ଼ିରେ ଚାଲ୍ ସହର ଯିବା । ଆଉ କାନ୍ଦ ନାହିଁ । ଆଗରେ ଥିବା ଜଙ୍ଗଲରେ ଫୁଲ ଫୁଟିଛି । ଦାଣ୍ଡରେ କୁକୁର ଭୁକୁଚି । ତୋତେ କହିଥିଲି ସାତ, ଆଠ ଜନ୍ମଧରି ସବୁଦିନେ ସାଙ୍ଗରେ ରହିବା । ଆଠଟା ବାଜିବା ଯାକେ ଏ କଥା ହେତୁ କରିଥିଲି, ତାପରେ ମୁଁ ଭୋକରେ ନିଦେଇ ଗଲି । ନନୀ, ତୋତେ ଆଉ କ'ଣ ବା କହିବି ? ଧନ ମୋର, ତୁ ମୋର ଟୋଲାତେଲ, ମୋତେ ଧୋକା ଦେନା, ଶବ୍ଦକର ଆବାଜ୍ ଦେ । ଚାଲ୍ ତୋତେ ସହର ବୁଲେଇ ଆଣିବି ।

ସହରୀ ସଭ୍ୟତାର ସଂସ୍ପର୍ଶରେ ଆସିବା ପରେ ହାଲ୍‌ବା ଯୁବକ ନିଜର ଅଭାବ, ଦାରିଦ୍ର୍ୟ, ଭୋକ ଓ କଷ୍ଟକର ପରିବେଶ ସମ୍ପର୍କରେ ଖୁବ୍‌ବେଶି ସଚେତନ ହୋଇଉଠିଛି । ତା' ପାଇଁ ସହର ପାଲଟିଛି ପ୍ରାଚୁର୍ଯ୍ୟର ପ୍ରତୀକ । ସେଠି ମଟରଗାଡ଼ି, କୋଠାଘର ଓ ବିଜୁଳିବତୀ - ବଞ୍ଚିବାଟା ଆରାମଦାୟକ । ଅଥଚ ଏଠି ଡଙ୍ଗର, ଉଁଚା ଉଁଚା ବେଡ଼ା, କରଡ଼ି, ଶାଗ, ସାଙ୍ଗକୁ ଟୋଲାତେଲ । ପେଟର ଭୋକ ଏଠି ଧାଙ୍ଗଡ଼ାକୁ ଭୁଲାଇ ଦିଏ ତା'ର ପ୍ରତିଶ୍ରୁତି - ଯେ ଜନ୍ମ ଜନ୍ମଧରି ଆମେ ସାଙ୍ଗରେ ରହିବା - ତଥାପି ଧାଙ୍ଗଡ଼ା ମନରେ ଦୁଃଖ ନାହିଁ - ସେ ନାଚେ, ଗୀତ ଗାଏ ନିଜର ପିଲାମାନଙ୍କ ପାଇଁ - ଗୀତରେ ଗୀତରେ ସେମାନଙ୍କୁ ସହର ବୁଲାଇ ନେବାର ସ୍ୱପ୍ନ ଦେଖାଏ ।

ତା' ସହ ତୁଳନା କରାଯାଇପାରେ ଦେଶିଆ ଲେଜା ଗୀତ:-

ଲେଜା ଲେଜା ଲେଜା ଘୋଟୁଲ୍ ଗୁଡ୍‌ଚେ ଚୁନ
ମତେ ରାଜା ପରାଉନ୍ ଗେଲେ ଖଟିଆ ପଡ଼ିଲା ସୁନ୍ ।
ତଲେ ମାତା ଗୁଡ଼ି ଉପରେ କେସର ପାଲ୍
ପିଲା ହାଥିକେ ଚେଘୁନ୍ ଗେଲ୍
ରାଜା ଚେବେଟ୍ ଲା ଲା...
ଲେଜା ଲେଜା ଲେଜା...

ହାଲ୍‌ବୀ ଲେଜା ଗୀତରେ ବ୍ୟବହୃତ ବିଭିନ୍ନ ହାଲ୍‌ବୀ ଶବ୍ଦର ଅର୍ଥ :

ବାକୁଟି - ବାଙ୍ଗ୍‌ଟି ବା ବଙ୍କା, ଡେଲାକୁଡ଼ା - ବଡ଼ ବଡ଼ ମାଟି ଟେକା
ପାପା - ଛୁଆ, ଟରାତେଲ - ଟୋଲା ତେଲ, ଆସେ ଅପ୍‌ଟି - ପଡ଼ିଯିବୁ
କିଡ଼ି ତେଲ - ଗନ୍ଧିଆ ତେଲ, ବକାନି - ଦେଖ, ଗାଗୁଆୟ - କାନ୍ଦିବା
ଦନ୍ଦ - ଧନ, ବାସୁତା - କରଡ଼ି, ସାଙ୍ଗୁନ୍ ତୁକେ - ତୋତେ କହିଥିଲି
କାନର ସାଙ୍ଗୁଆନ୍ ତୁକେ - ତୋତେ ଆଉ କ'ଣ କହିବି ?
ଆଠବଜୁନ୍ - ଆଠଟା ଯାକେ

**ପୁସ୍‌ପୁନି ଗୀତ**

ସେର୍ ସେରଟା ସେର୍‌ଟି, ପିକଡ୍ ପାନ୍‌ଚ ଡ଼େଟି
ଚିରିକ୍ ଚାରକ୍ ମନ୍ଦ ବିକେଶେ, ଜାତ୍ କରି ଆନ୍‌ଚ ବେଟି
ମାୟ ଚନାଁ ହିତେ ହିତେ, ବେଟି ଚନାଁ ହିତେ
ଜହିତେ ପାନ୍ ଟଡୁକେ, ଲକ୍‌ଟି ଡଙ୍ଗର୍ ଟିପେ
ନକ୍ ନକ୍‌ଟା ବେଣ୍ଡାଜର, ନକ୍‌ଟା ନାଚେ କର୍ କର୍
ଉଟ୍ ନକ୍‌ଟି ଦିଆବାର୍, ନକ୍‌ଟା ଇଲ୍‌ବେରା

ସେର୍ ସେର୍ଟା ସେର୍ଟି.... ବାଡ଼ିନେ ବସେ ଟେରା
ବାଡ଼ିନେ ବସେ ଟେରା ଟେରା, କୁଟ୍‌ନେ ବସେ ଟେରା
ଦେଟେ ଦିଆ ଯାଟେ ଯାଉନ୍ଦେ, ହଲି ପେଜ୍ ବେରା
ନାନୀ ଟେଙ୍ଗିଆ ଗାଇ ଗାଇ, ବଡ଼େ ଟେଙ୍ଗିଆ ଗାଇ
ଦେୟ ଦେବେ ଦେୟ ଦେବେ, ଜିଟିରି ମୁଣ୍ଡିବାଇ
ନକ୍‌ଟା ସେର୍ ସେର୍, ସେର୍ ସେର୍ଟା ସେର୍ଟି
ପିକଡ଼ ପାନ୍‌ଚ ଡେଟି
ସେର୍ ସେରାକି ବେର୍‌ବେରା
ହଲି ପେଜ୍ ବେରା
ମଣ୍ଡିଆ ପେଜ୍ ସଙ୍ଗେ କାନ୍ଦୁଲ
ଚାକ୍‌ନା କାବେ ଟର୍ ଟରା, ସେର୍ ସେର୍ଟା ସେର୍ଟା...

ପୁଷ୍ ପୁନେଇ ସମୟରେ ପୁଷପରବ ପାଳନ ଅବସରରେ ହାଲ୍‌ବିମାନେ ଅନ୍ୟ ସଂପ୍ରଦାୟର ଆଦିବାସୀମାନଙ୍କ ଭଳି ଏହି ଛେର୍‌ଛେରା ଗୀତ ଗାଇ ମାଗୁଣି କରିଥାଆନ୍ତି । ଘରଘର ବୁଲି ଏହି ନାଚ ଓ ଗୀତ କରାଯାଇଥାଏ । ପ୍ରତି ଘରୁ ଚାଉଳ, ମାଣ୍ଡିଆ, ଡାଲି କି ଟଙ୍କାପଇସା ମାଗଣ କରି ସଞ୍ଜବେଳେ ନାଚ କରୁଥିବା ଧାଙ୍ଗଡ଼ା ଓ ଧାଙ୍ଗଡ଼ୀ ଓ ପିଲାଛୁଆମାନେ ଗୋଟିଏ ଜାଗାରେ ଭୋଜିଭାତ କରି ଖାଇ ଥାଆନ୍ତି । ନାଚ ସମୟରେ ବିଭିନ୍ନ କଉତୁକିଆ ପୋଷାକ ମଧ୍ୟ ପରିଧାନ କରାଯାଇଥାଏ । ଏଥିରେ ପରିହାସ ଓ ଥଟ୍ଟାଟାପରାର ଉପାଦାନ ଯଥେଷ୍ଟ ଲକ୍ଷଣୀୟ ।

**ଉପରଲିଖିତ ଗୀତର ଅର୍ଥ ହେଉଚି :**

ଅଶ୍ୱତ୍‌ଥ ପତ୍ରର ଲମ୍ବା ଡେମ୍ଫ । ବଡ଼ଘରର ଝିଅ ମଦ ବିକୁଛି । ମାଆର ନାମ ହିତେ ତ ଝିଅର ନାମ ମଧ୍ୟ ହିତେ । ଦୁଇଜଣ ଯାକ ହିତେ, ଚାଲ ଲକ୍‌ଟି ଡଙ୍ଗର ଉପରକୁ ପତ୍ର ତୋଳିବା ପାଇଁ ଯିବା । ଭେଣ୍ଡା ଝୋଲ ଖାଇ ନାଚିବା । ଲୋକମାନେ କର୍‌କର୍ କରି ନାଚୁଛନ୍ତି । ଛେର୍ ଛେରା ଆସିଲାଣି, ଉଠ୍ ଡୋକ୍ରି, ଦୀପ ଜଳା । ବାଡ଼ିରେ ଥୁଣ୍ଟାଗଛ ଉପରେ ଶୁଆ ପକ୍ଷୀମାନେ ବସିଛନ୍ତି । ଛେର୍‌ଛେରା

ଚାଉଲ୍ ଶୀଘ୍ର ଦିଅ । ପେଜ୍ ବେଳା ହେଲାଣି ଆମେ ଏଥର ଯିବୁ । ଛୋଟ ଟାଙ୍ଗିଆରେ ଗଛର ଡାଳିଆ କାଟିବା ସହଜ ହେବ । ତୋ ବାଳ ଅଲଗା ହେଲାଣି, ଶୀଘ୍ର ଆମକୁ ବିଦାକର । ପେଜ୍‌ବେଳା ହେଲାଣି ଆମେ ଯିବୁ । ମାଣ୍ଡିଆ ପେଜ୍ ସହ କାନ୍ଦୁଲ ମିଶାଇ ଆମଟ୍ ଚାଖିନା କରିବୁ । ଛେର୍‌ଛେରା ଛେର୍‌ଛେରା । ଏହା ସହ ଦେଶିଆ ଛେର୍‌ଛେରା ଗୀତ ତୁଳନୀୟ:

ଛେର୍‌ଛେରା ଦିନେ ମାଇଲି ଖୁଣ୍ଟି
ଓଲ୍‌ଟି ଦେଶରେ କାବ୍‌ରୀ ପେଟି
ଛେର୍ ଛେରରା ଛେର୍ ଛେର୍‌ରା
ମର୍ ମାଇଜୀ ଦୁମୁଣ୍ଡା(ଲଙ୍ଗଳା)
ଛାତି ଉପରେ କୁମୁଣ୍ଡା(କଖାରୁ)
ଛେର୍ ଛେର୍ ଅଇଁ ଅଇଁ
ପାନିଆ ଜୁନିଆଁ
ଚାଉର୍ ମୁଟେକ୍ ଦିଆକିନା
ଦେଲେଦିଆ ନ ଦେଲେ ନାଦିଆ
କପାଟ୍ ଉଗାଡ଼ା
ଆମର୍ ସାଇକେ ଆସା କିନା
ଛେର୍ ଛେରା ଛେରା ଅଇଁ ଅଇଁ

ମୁଖ୍ୟତଃ ଏହା ଖୁସିବାସି ଓ ହସେଇବାର ଗୀତ । ହାତରେ ଝାଡୁ ବା ମୟୂର ପୁଛ ଧରି ଏହି ନାଟ କରାଯାଇଥାଏ । ହାଲ୍‌ବୀ ପୁଷ୍‌ପୁନି ଗୀତରେ ବ୍ୟବହୃତ ଶବ୍ଦର ଅର୍ଥ :

ପିକଡ୍ ପାନ୍‌ଚ ଡେଟି - ଲମ୍ୱା ଡେଙ୍ଗାଥିବା ଅଶ୍ୱତ୍ଥ ପତ୍ର

ମନ୍ଦ ବିକେସେ - ମଦ ବିକୁଥିବା, ଜାତ୍ କରିଆନ୍‌ଚ ବେଟୀ - ବଡ଼ଘର ଝିଅ

ପାନ୍ ଟଡୁକେ - ପତ୍ର ତୋଳିବା ପାଇଁ, ଲକ୍‌ଟି ଡଙ୍ଗର ଟିପେ - ଲକ୍‌ଟି ଡଙ୍ଗର ଉପରକୁ

ନକ୍‌ନକ୍‌ଟା - ନାଚିବା ଲୋକ, ବେଣ୍ଡାଜର୍ - ଭେଣ୍ଡା ଝୋଳ (ଖଟା ଭେଣ୍ଡିରେ ଝୋଳ)

ଦିଆବାର୍ - ଦୀପଲଗା, ଟେରା - ଶୁଆ, କୁଟ୍‌ନେ - ଥୁଣ୍ଟା ଗଛରେ

ନାନୀ - ଛୋଟ, ଜିତିରି - ଅଲରା

ବିଆଗୀତ୍ ବା ବିଭାଗୀତ : ହାଲ୍‌ବୀ ଭାଷାର ଏଇ ବିଭାଗୀତଟି ମୁଖ୍ୟତଃ ବର ଓ କନ୍ୟା ପକ୍ଷର ପ୍ରଶ୍ନୋତ୍ତର ଢଙ୍ଗରେ ପରିବେଷିତ ହୋଇଚି । ସମସ୍ତ ଆଦିବାସୀ ଭାଷାରେ ଏହିଭଳି ଗୀତର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । ଦେଶିଆ ଭାଷାର ଗୀତ ମରାମରି ତୁଳନୀୟ ।

- "କାଆଁଚ କସେଲା ବାଜେବାଜେ, ପିତଲ୍ କସେଲା ବାଜେ

କାଚୁନ୍ ଧଉନ୍ ସାଙ୍ଗନ୍ ରଲୁ, ସାଲିମି ଗଡ଼ିଆ କାଜେ"

- "ପତରି ପତରି ତିନି ପତରି, କାନେ ନାହିଁ ମୟ ମୁତୁରି

ତୁଚ୍ ବେଟି ନିକ ଆସେକି, ଆଡ଼୍‌ରା ଆସେ ଦକାନି କଟେନ୍ ମୁତରି ।"

- "ଗାୟ ଗବର୍ କି ଭଇଁଷା ଗବର୍, ଉନାକେ ବଲୁଆତ୍ ସେନା

ଟେମର୍ ପାଲ୍ ଲକ୍ ବୁଲାଉକେ ଆନ୍‌ଲୁ, ସାଲିମି ଗଡ଼ିଆ ଗେନା ।"

- "ଇନ୍ଦ୍ରାବତୀ ନନ୍ଦୀ ବିଚଲ କଣ୍ଡି, ଲେଟି ଫୁଟାଲି ତାଣ୍ଡି

ମୁଣ୍ଡେ ହାତ୍ ଦେଉନ ଗାଗୁକେ ବସ୍‌ଲେ, କାପାରେ ପାଉ ଆୟ ମାଣ୍ଡି"

- "ମାୟ୍ ଚ ନାଁ ଇଚେ ଇଚେ ବେଟୀ ନୋ ଇଚେ, ପାନ୍ ଟଡୁକେ ଜକାୟଇଚେ

ତୁଲ୍‌ସୀ ଡଙ୍ଗର ଟିପେ,

"କାୟ କାଜେ ଯାମା ଆୟା

ଲାଗେସେ ମକେ ଭୂକ୍,

"ମୁନ୍‌ସା ରୁଚ ମୁହଁକେ ନା ଦେକ୍‌ଲେ

"ତୁୟ କାୟ କାଜେ କରସିତ ଦୁଖ୍ ?"

ଅର୍ଥାତ୍ "କାଚର ଢାଳ ବାଜୁଚି, ପିତଳ ଢାଳ ବାଜୁଚି, ଝିଅ ମୋର ବଡ଼ ହେଲା ଯେ, ତାକୁ ସାଲ୍‌ମୀର ବଡ଼ଲୋକ ପାଇଁ ସାଇତି ରଖିଛୁ ।" "ସେ ଝିଅର ମାୟା କ'ଣ ଜଣାନାହିଁ । ତୋ ଝିଅ ନିକ ଅଛି କି ଖରାପ ଅଛି ଆମକୁ ଜଣାନାହିଁ । କିନ୍ତୁ ଶୁଣା ଗଲାଣି ଯେ ସେ ଧାନକୁଟିବା ଜାଗାରେ ମୁତୁଛି ।" "ସେ ଗାଈର ଗୋବର କିମ୍ବା ମଇଁଷିର ଗୋବର ତାହାରି ପାଖରୁ ଶୁଣିନିଅ । ଆମେ ଟେମରପାଲି ଲୋକମାନେ ତାକୁ ବୁଝାଇ ଆଣିଛୁ । ସାଲ୍‌ମୀର ଅଣ ଆଦିବାସୀ ଲୋକେ, ତାକୁ କିଣ ।"

ଇନ୍ଦ୍ରାବତୀ ନଦୀର ଧାର ବା ତଡ଼ା ବଡ଼ ଖସରା । ପାଣି ଆଣିଗଲା ବେଳେ ତୁମ ଝିଅ ପଡ଼ିଯାଇ କାନ୍ଦିବାକୁ ବସିଲେ କପାଳରେ ଆଣ୍ଠୁ ବାଜିବ ।"

"ମାଆର ନାମ ରଚେ ତ ଝିଅର ନାମ ମଧ ଇଚେ । ମାଆ ଓ ଝିଅ ଚାଲ ତୁଳସୀ ଡଙ୍ଗର ଯିବା ପତର ତୋଳିବାକୁ ।"

"କାହିଁକି ସେଠାକୁ ଯିବି ମାଆ, ମୋତେ ଭୋକ ଲାଗୁଛି ।"

"ଆରେ ପୁରୁଷ ପିଲାର ମୁହଁ ନ ଦେଖି ଅଯଥାରେ କାହିଁକି ଦୁଃଖ କରୁଛୁ ?"



# ଆନ୍ଧି ଝରଣ : କିଛି କ୍ଷୋଭ, କିଛି ସନ୍ଦେଶ

ନବରଙ୍ଗପୁର ଜିଲ୍ଲାର ମଇଦଲପୁର ଗେଟ୍ ପାଖରୁ ୮କି.ମି. ଯିବା ପରେ ଆରମ୍ଭହୁଏ କଳାହାଣ୍ଡିର ସୀମା । ଆମ୍ ପାଣିଘାଟର ମଝାମଝିରେ ଥିବା ଏକ ବନ୍ୟ ଝରଣା ହେଉଛି ମୁଖ୍ୟ ସଡ଼କ ଉପରେ ଦୁଇ ଜିଲ୍ଲାର ସୀମାରେଖା । ଆଜିକି ୨୩ବର୍ଷ ତଳର କଥା । ସେତେବେଳେ ଜିଲ୍ଲା ବିଭାଜନ ହୋଇନଥିଲା । ଅବିଭକ୍ତ କଳାହାଣ୍ଡିର ସୀମାରେ ଥିବା ପ୍ରାୟ ୨୦ଟି କୋରାପୁଟୀ ଜଙ୍ଗଲି ଗାଁରେ ସଂଗଠନ କରୁଥିବା ସମୟରେ କିଛି ଆଦିବାସୀକର୍ମୀଙ୍କଠାରୁ ପ୍ରସ୍ତାବ ଆସିଲା ଆମେ କ'ଣ ଖାଲି କୋରାପୁଟ ଗାଁମାନଙ୍କୁ ନେଇ ସଂଘ କରିବା ? କଳାହାଣ୍ଡି ସୀମା ଡେଇଁବାନି ? ସେଠାରେ ତ ଆମର ଆଦିବାସୀ ଭାଇମାନେ ରହୁଛନ୍ତି । ପୁଣି ସେମାନଙ୍କୁ ଇମିତି ଡରେଇ ମରେଇ ରଖାଯାଉଛି ଯେ ଆମଭଳି ପ୍ରତିବାଦ ବି ସେମାନେ କରିପାରୁ ନାହାନ୍ତି । ଜଣେ ସିପିଏମ୍ କର୍ମୀ ଥିଲା ଯେ, ଗାଁକୁ ଗାଁ ଘୂରି ବୁଲୁଥିଲା, ଏବେ ତା'ର ପତ୍ତା ନାହିଁ । ଲୋକେ ନେତୃତ୍ୱ ନ ପାଇ ବଡ଼ ନିରାଶ ଅବସ୍ଥାରେ ଅଛନ୍ତି । ଆମେ ଅତିକମ୍‌ରେ ସୀମାନ୍ତ ଗାଁମାନଙ୍କୁ ସଂଘରେ ସାମିଲ୍ କରିବା ଉଚିତ ହେବ । ମୁଁ ମଧ୍ୟ ଭାବିଲି, ସତେତ ! ସରକାର ସିନା ପ୍ରଶାସନର ସୁବିଧା ଦୃଷ୍ଟିରୁ ସୀମା ଟାଣିଦେଇ ଖଣ୍ଡ, ଉପଖଣ୍ଡ, ତହସିଲ ଓ ଜିଲ୍ଲା ତିଆରି କରିଛନ୍ତି, ଆମେ ଯେଉଁମାନେ ଜନଆନ୍ଦୋଳନ ଜରିଆରେ ଏକ ଆମୂଳଚୂଳ ପରିବର୍ତ୍ତନ କଥା ଚିନ୍ତା କରୁଁ, ଆମପାଇଁ ଏଭଳି ସୀମାରେଖାର ବା ମହତ୍ତ୍ୱ କ'ଣ ? କିଛି ପ୍ରଶାସନିକ ସମସ୍ୟା ଆସିପାରେ, ସେତେବେଳକୁ ଦେଖାଯିବନି ? ସଦସ୍ୟ କର୍ମୀମାନଙ୍କ କଥାରେ ରାଜିହୋଇ ସୀମାନ୍ତ ଗାଁମାନଙ୍କୁ ସଂଗଠନ କାମରେ ଯିବାଲାଗି ସିଦ୍ଧାନ୍ତ କଲି ।

ଏଇଠି ଏକଥା ବନ୍ଦ ରଖି ଟିକିଏ ପଛକୁ ଫେରିବା । ୧୯୮୬-୮୭ ମସିହାର କଥା । କଳାହାଣ୍ଡିର ପ୍ରଖ୍ୟାତ କଥାକାର ଉତ୍ତମ ପ୍ରଧାନ ବାଲେଶ୍ୱରରେ ଅବସ୍ଥାପିତ ହୋଇଥାନ୍ତି । ଅଭିଯାତ୍ରୀ ସଂପାଦନା ସୂତ୍ରରେ ଅଧିକାଂଶ ସନ୍ଧ୍ୟାରେ ବ୍ରଜବାବୁଙ୍କ ବିଶ୍ୱଶ୍ରୀ ପ୍ରେସ୍‌ରେ ଆମ୍ଭମାନଙ୍କର ଆସର ବସୁଥିଲା । ଉତ୍ତମଙ୍କ ସହ ଏହିଠାରେ ହିଁ ପରିଚୟ ହୋଇଥିଲା । ତା'ର ବହୁ ପୂର୍ବରୁ ତାଙ୍କର ଖଣ୍ଡିଏ ବହି 'ନଚିକେତାର ହାତ' ପଢ଼ିବାର ସୁଯୋଗ ପାଇଥିଲି । ସେତେବେଳେ ଲେଖକ ଜଗତ୍ ସହ ସେ ସେତେଟା ପରିଚିତ ନଥିଲେ । କିନ୍ତୁ ତାଙ୍କର କଥନ ଶୈଳୀ, ଆଦିବାସୀ ଜୀବନ ପ୍ରତି ଅନୁରକ୍ତି ଓ ଜୀବନବୋଧ ମୋତେ ଚମତ୍କୃତ କରିଥିଲା । ମୁଁ ଲେଖକ ମହଲରୁ ଜାଣିବା ପାଇଁ ଚେଷ୍ଟା କରୁଥିଲି, ଏ ଲୋକଟି କିଏ, କ'ଣ ଏହାଙ୍କର ଜୀବନର ଆଭିମୁଖ୍ୟ ଇତ୍ୟାଦି । ଅଭିଯାତ୍ରୀର ସଂପାଦନାମଣ୍ଡଳୀରେ ଥିବା ଦୃଷ୍ଟିରୁ ଏଭଳି ଲେଖକମାନଙ୍କ ସହ ସଂପର୍କ ସ୍ଥାପନକୁ ମଧ୍ୟ ମୁଁ ଏକ ନୈତିକ ଦାୟିତ୍ୱ ରୂପେ ଗ୍ରହଣ କରି ନେଇଥିଲି । ଏତିକିବେଳେ ତାଙ୍କ ସହ ଆକସ୍ମିକ ପରିଚୟ ମୋତେ ଅଭିଭୂତ କରିଥିଲା । ତାଙ୍କର ଅନ୍ୟ ବହିମାନ ପଢ଼ିବା ସଂଗେସଂଗେ ତାଙ୍କ ଜୀବନଦର୍ଶନ ସହ ମଧ୍ୟ ପରିଚିତ ହେଲି । ଯଦିଓ ଏକ ଗୌନ୍ତିଆ(ଜମିଦାର) ପରିବାରରୁ ସେ ଆସିଥାନ୍ତି ଓ OFS ଅଫିସର୍ ରୂପେ ଏକ ପ୍ରଶାସନିକ ପଦବିରେ ରହି ଅମଲାତାନ୍ତ୍ରିକ ଜୀବନଧାରା ସହ ଓତଃପ୍ରୋତଃ ଭାବେ ଜଡ଼ିତ ହୋଇଥାନ୍ତି, କଲମ ଧରିଲେ ହିଁ ସେ ଅନ୍ୟଜଣେ ମଣିଷ ପାଲଟି ଯାଆନ୍ତି । କଲମ ପ୍ରତି ଏଭଳି ନିଷ୍ଠା, ମୁଁ ଓଡ଼ିଶାରେ ଅନ୍ତତଃ କ୍ୱଚିତ୍ ଲେଖକଙ୍କ ଠାରେ ଦେଖିଛି । ଏଇଠି ମାର୍କ୍ସଙ୍କ କଥା ମନେପଡ଼େ । ଜଣେ ସଚ୍ଚା ଲେଖକ ଯେତେବେଳେ କଲମ୍ ଧରେ, ସେ ନିଜ ଶ୍ରେଣୀ ଚେତନାରୁ ଉର୍ଦ୍ଧ୍ୱକୁ ଉଠି ସାହିତ୍ୟ ରଚନା କରେ, ଅର୍ଥାତ୍ ସାମାଜିକ ସତ୍ୟର ପ୍ରତିଷ୍ଠା କରେ । ଏ ସଂକ୍ରାନ୍ତରେ ମାର୍କ୍ସ ସେକ୍ସପିଅରଙ୍କ ଉଦାହରଣ ଦେଇଥିଲା ବେଳେ ଲେନିନ୍ ଦେଇଥିଲେ ଟଲଷ୍ଟୟ ଓ ଚେକଭ୍‌ଙ୍କ ଉଦାହରଣ । ଏ ସମସ୍ତ ଲେଖକ ଶାସକଶ୍ରେଣୀର ଅଂଶବିଶେଷ ହୋଇଥିଲେ ହେଁ, କଲମ ଧରିଲେ ନିଜ ଶ୍ରେଣୀର ଉର୍ଦ୍ଧ୍ୱକୁ ଯାଇ ସତ୍ୟ ନ୍ୟାୟ ଓ ମଙ୍ଗଳର କଥା ହିଁ କହିଛନ୍ତି । ଏହା ହିଁ ଥିଲା ଆମ ବନ୍ଧୁତ୍ୱର ଭିତ୍ତି । ଆଲୋଚନା ବେଳେ ତାଙ୍କ ସହ ଯୁକ୍ତିତର୍କର ଝଡ଼ ଉଠୁଥାଏ । ଆମମାନଙ୍କୁ(ମୁଁ, ସମରେନ୍ଦ୍ର ଓ ବ୍ରଜରଥ) ମଧ୍ୟ ସେ ନିକଟରୁ ଜାଣିବାକୁ ଚେଷ୍ଟା କରୁଥାନ୍ତି । କମ୍ ବିଷୟରେ ଆମେ ଏକମତ ହେଉ, ଅଧିକ୍ ବିଷୟରେ ଅମତ, ତଥାପି ବଂଧୁତ୍ୱ ବଜାୟ ରହିଥାଏ ।

ଜଣେ ରସେଲିଆନ୍ ଦୃଷ୍ଟିକୋଣରୁ ସେସବୁ କିଛି ସାମାଜିକ ସମସ୍ୟାର ସମାଧାନ ଦେବାକୁ ଚେଷ୍ଟା କରୁଥାନ୍ତି, ଯାହାକୁ ଆମେମାନେ କହୁଥାଉ ୟୁଟୋପିଆନ୍ । ସେ ଯାହା ହେଉ, କଳାହାଣ୍ଡି ବିଷୟରେ ଆମେ ତାଙ୍କୁ ଏକ ଅଥରିଟି ହିସାବରେ ମାନି ନେଇଥାଉଁ । ଆଉ କଳାହାଣ୍ଡି ଉପରେ ଘଣ୍ଟା ଘଣ୍ଟା ଧରି ଗପି ପାରିବାର ଅପୂର୍ବ କ୍ଷମତା ତାଙ୍କର ଥିଲା, ଯାହାର ଫଳଶ୍ରୁତି ହେଉଛି ତାଙ୍କର ସମସ୍ତ ଗଳ୍ପସଂକଳନ - 'ନଚିକେତାର ହାତ', 'କଳାହାଣ୍ଡିର କଥାକାର' ଓ 'ବୁଢ଼ିଆଣୀ ଓ ବୃଦ୍ଧ ପ୍ରଜାପତି' ଇତ୍ୟାଦି । ତାଙ୍କ ସହ ଥରେ ପ୍ରସ୍ତାବ ହୋଇଥିଲା ଯେ, ସେ ଆମକୁ କଳାହାଣ୍ଡି ବୁଲେଇ ନେଇଯିବେ ଏବଂ ସେଠାକାର ଜନଜୀବନ ସହ ପରିଚିତ କରାଇଦେବେ ।

ଏ ଭିତରେ ତାଙ୍କର ବଦଳି ହେଲା ଭୁବନେଶ୍ୱର । ମୁଁ ମଧ୍ୟ ଚାଲିଆସିଲି କୋରାପୁଟ୍ । ତେଣୁ କଳାହାଣ୍ଡିର ଗାଁ ମାନଙ୍କୁ ଯିବାବେଳେ କଳାହାଣ୍ଡିର କଥାକାର ତ ମନେପଡ଼ିବା ସ୍ୱାଭାବିକ । ତାଙ୍କ ବିନା ଏକା ଏକା ଆଦିବାସୀମାନଙ୍କ ସହ କଳାହାଣ୍ଡି ଦେଖିବାରେ ଥିଲା ଆଉଏକ ରକମର ଗୌରବ ଓ ଅସ୍ମିତାବୋଧ । ତେବେ ତାଙ୍କ ଲେଖାରେ ସିନା, ଲୋକ ଜୀବନର ଛନ୍ଦ ଓ ସଂଗୀତ ପ୍ରତିଫଳିତ ହୋଇଥିଲା । କିନ୍ତୁ ଲଢ଼େଇ ପ୍ରସଙ୍ଗରେ ତାଙ୍କ ବହି ସବୁ ମୋତେ କେତେଦୂର ସାହାଯ୍ୟ କରିବେ, ସେ ନେଇ ସଂଶୟ ରହିଥାଏ । କଳାହାଣ୍ଡିର ଗାଁମାନଙ୍କୁ ଯିବା ରାସ୍ତାରେ ମୋ ସାଥୀରେ ଥିବା ଆଠଜଣ ଆଦିବାସୀକର୍ମୀ ମଧ୍ୟରୁ ହଠାତ୍ ଦୁଇଜଣ କହିଉଠିଲେ, ଏଇ ତ ! ଆମେ କଳାହାଣ୍ଡି ଭିତରକୁ ଆସିଗଲୁଁ । ଅନେଇ ଦେଖିଲି, ଦଶହାତ ଓସାରର ଅରମା ଘାସ୍ ଘାସୁଆ ଏକ ଖଣ୍ଡି ଜଂଗଲ ଲମ୍ବିଯାଇଛି । କୋରାପୁଟ୍‌ର ଜଙ୍ଗଲ ମଧ୍ୟ ସେଇଠି ଶେଷ । ସରକାରୀ ନଥିର ରେଭିନିଉ ସୀମା । ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ନ ଜାଣିବା ବାଟୋଇ କେବେ ବି ଜାଣିପାରିବ ନାହିଁ, ସେ ପଶୁଚି ଏପରି ଏକ ଜିଲ୍ଲାକୁ ଯାହା ସର୍ବଭାରତୀୟ ସ୍ତରରେ 'କ୍ଷୁଧା' ଓ 'ହତାଶା'ର ପ୍ରତୀକ ହୋଇ ଠିଆ ହୋଇଚି । ମନେମନେ ଭାବିଲି, ଆମେ ବୁଦ୍ଧିଜୀବୀମାନେ ଓ 'ମାନବବାଦୀ'ମାନେ ବଡ଼ବଡ଼ ଶବ୍ଦର ଜାଲ ଭିତରେ ଗୋଟିଏ ଜିଲ୍ଲାକୁ ଛନ୍ଦି ଦେଇଛୁ ଓ ବ୍ୟକ୍ତିଗତ ଫାଇଦା ଉଠାଉଛୁ । ମରୁଡ଼ି, କ୍ଷୁଧା ବା କ୍ଷୁଧା ଜ୍ୱାଳାରେ ସନ୍ତାନ ବିକ୍ରି - ଏସବୁ ବା ଓଡ଼ିଶାର କେଉଁ ଜିଲ୍ଲାରେ ଅଳ୍ପେବହୁତେ ନ ରହିଛି ? ଖୋଦ୍ ଭୁବନେଶ୍ୱରର ବସ୍ତିମାନଙ୍କରେ ତୁମେ କ'ଣ କ୍ଷୁଧାର ଛାଇକୁ ଦେଖିନାହଁ ?

ସେତେବେଳେ ଭାଦ୍ରମାସ । ଦୁଇପାଖରେ ଧାନକ୍ଷେତ । ମଝିରେ ମଝିରେ ମକା । ବୁଦୁବୁଦିଆ ପତର ଜଙ୍ଗଲ ବି ଖଣ୍ଡେଖଣ୍ଡେ ଦେଖିବାକୁ ମିଳୁଥାଏ । ଛୋଟ ଛୋଟ ଝରଣା, ଢାଲୁ ଢ଼ିପ, ଅସୁରିଆ ଘାସର ଜଙ୍ଗଲ, ଏସବୁକୁ ଡେଇଁଡେଇଁ ଯାଉଁଯାଉଁ ହଠାତ୍ ଆମ ଆଗରେ ଉଭା ହୋଇଗଲା ଗୋଟିଏ ବିରାଟ ଗାଁ । ସାଥୀମାନେ କହିଲେ "ଆନ୍ଧି ଝରଣ୍" ।

କେଉଁଠି କେଉଁ ଝରଣା ଅନ୍ଧ ହୋଇଯିବା ପରେ ଆନ୍ଧି ଝରଣ ସୃଷ୍ଟି ହୋଇଛି, ଜାଣି ପାରିଲିନି ସତ, କିନ୍ତୁ ଅତିକ୍ରମ କରି ଆସିଥିବା ଛୋଟ ଛୋଟ ଝରଣା ସବୁ ସେତେବେଳକୁ ନାପତ୍ତା ହୋଇସାରିଥିଲେ । କୋରାପୁଟ୍‌ର ଶହଶହ ଆଦିବାସୀପଲ୍ଲୀ ପରି ଏ ମଧ ଥିଲା ବିଶେଷତ୍ୱବିହୀନ ଏକ ଆଦିବାସୀ ଗାଁ । ଏଠାକାର ଆଦିବାସୀମାନେ ମୁଖ୍ୟତଃ କନ୍ଧ ଓ ପରଜା ସଂପ୍ରଦାୟର । କୁଡ଼ିଆର ଚାରିପାଖେ ବାଉଁଶ ବା ଗଛଡାଳର ବାଡ଼ । ଘରସବୁ 'ପିରି'ରେ ଛାଆଣ ହୋଇଚି । କିଛିକିଛି ଘର ଜଙ୍ଗଲି ଘାସ, ପତରରେ ଛପର ହୋଇଛି । ବଡ଼ ବଡ଼ ଗାଁଦାଣ୍ଡ । ସାରି ସାରି ଘର । ଗାଁ ଦାଣ୍ଡରେ ବାଉଁଶ ବୁଣା ଖଟିଆ ଓ ବାଉଁଶ 'ଛାପ'(ସପ) ପକାଯାଇ ଫାଳକରା ଟୋଲ ଶୁଖାଯାଇଛି । ମାଆ କୁକୁଡ଼ାମାନେ ତାଙ୍କ ଛୁଆପିଲାଙ୍କୁ ଧରି ପୋକ ସାଉଁଟି ଖାଉଛନ୍ତି । ବାଟରେ ପଡ଼ିଛି ଗାଈ ଓ ଘୁଷୁରି ଗୋବର - ଛେଳି ଲଣ୍ଡି । ଗାଁ ମଝିରେ ସ୍କୁଲ୍ ଓ ଅଙ୍ଗନୱାଡ଼ି କେନ୍ଦ୍ର । ଗାଁ ସ୍କୁଲ୍‌ରେ ଗତ ମାସେ ହେବ ମାଷ୍ଟର ନାହାନ୍ତି । ସେ କୁଆଡ଼େ ଗ୍ରୀଷ୍ମଛୁଟି ପରେ ଥରେ ଆସିଥିଲେ ଓ କହିଯାଇଛନ୍ତି ଚାଷକାମ ସଇଲେ ଆସିବେ । ଆମେ ଯାଉଁଯାଉଁ ଜଣଙ୍କ ଗୁହାଳଘରେ ଖଟିଆ ପଡ଼ିଗଲା, ପାଣିଢାଳ ଆସିଗଲା । ପିକା ଓ ସୁଟା ଯଚାଯଚି ହେଲା । ଖଣ୍ଡିଆ କାଠଗଡ଼ରେ ସେବେବି 'ଜଇ' ଜଳୁଥାଏ । ଆଦିବାସୀ ସାଥୀମାନେ ସେଇ ଜଇରୁ ପିକାରେ ନିଆଁ ଧରାଇଲେ ତା'ପରେ ଜଣେ ଜଣେ ଲୋକ ଜମା ହେଲେ । କଥା ପଡ଼ିଲା ।

ଏ ଗାଆଁର ସୀମାକୁ ଲାଗି ରହିଥିବା 'ବିରି ମୁହାଣ' ଓ ଆନ୍ଧିଝରଣର ଲୋକମାନେ ପୂର୍ବେ ରହୁଥିଲେ 'ଦୁଲେନ୍‌ବର'ରେ । ସେଠାରେ ଜମିଜାଗାର ଅଭାବ ହେବାରୁ ପିଣ୍ଡାପଦର ଜଙ୍ଗଲକୁ ଯାଇ ସେଠାରେ ଗାଁ ବସାଇବାର ଚେଷ୍ଟାକଲେ । ସେଠାରେ ବଡ଼ବଡ଼ ଗଛସବୁ କାଠ ଠିକାଦାରମାନଙ୍କ ପେଟରେ ଯାଇ ସାରିଥାଏ । କିନ୍ତୁ ସରକାର ଜଙ୍ଗଲ ଲଗାଇବା ବାହାନାରେ କୌଣସି ଆଦିବାସୀକୁ ସେଠାରେ ଜମି

ଦଖଲ କରିବାକୁ ଦେଉନଥାନ୍ତି । ଏହା ହେଉଛି ୧୯୫୫ ମସିହାର କଥା । ଜଣେ ଫରେଷ୍ଟ ରେଂଜର ବା ରେଂଜ ଅଫିସର୍ ଏ ସମସ୍ତଙ୍କୁ ଗିରଫ କରିନେଇ ନିଜ ଅଫିସ୍‌ରେ ବସେଇ ଶୁଣାଣି କଲେ । ସମସ୍ତଙ୍କ କଥା ଶୁଣି ସାରିବା ପରେ ୧୯୫୧ ମସିହା ରାଷ୍ଟ୍ରୀୟ ବନନୀତି ଆଇନ୍ ବଳରେ ସେ କିଛି ଜଙ୍ଗଲ ଜଗୁଆଳି ଗାଁ ବସାଇବାର ଯୋଜନା କଲେ । କିନ୍ତୁ ଲୋକଙ୍କୁ ତାଗିଦା କରାଗଲା - ତିନିଏକରରୁ ଅଧିକ ଜମି କେହି ମାରିପାରିବେ ନାହିଁ । ପରେ ପରେ ସେମାନଙ୍କୁ ଆମ୍ବପାଣି ଘାଟୀ ଅଂଚଳକୁ ଆଣି ଏହିସବୁ ଜାଗା ଦେଖାଇ ଦିଆଗଲା । ଖାଲି ସେତିକି ନୁହେଁ, ଜଙ୍ଗଲବିଭାଗ ତରଫରୁ ବୁଲଡୋଜର ଯୋଗେ ଏହିସବୁ ଜାଗାକୁ ସମତଳ କରି ଦୁଇଟି ଗାଁ ବସାଯିବା ଭଳି ଜମି କରାଗଲା ଓ ପ୍ରତ୍ୟେକଙ୍କୁ ଘର ଓ ଚାଷଜମି ଚିହ୍ନଟ କରିଦିଆଗଲା । କିନ୍ତୁ ଜମିପାଇଁ କୌଣସି ରେକର୍ଡ଼ପତ୍ର ଦିଆଗଲା ନାହିଁ । ତେବେ ଏହି ଦୁଇଟିଯାକ ଗାଁକୁ କ୍ରମେ ରାସ୍ତା ଆସିଲା, ବୋରିଂ ବସିଲା (ଟିଉବ୍‌ୱେଲ୍), ସ୍କୁଲ୍ ଖୋଲାଗଲା, ଭୋଟର ତାଲିକାରେ ଏ ଗାଁର ନାଁ ବି ଚଢ଼ିଲା । କିନ୍ତୁ ସମସ୍ତେ ସେଇଦିନୁ ପାଲଟି ଗଲେ ଜଙ୍ଗଲ ବିଭାଗର ଅଘୋଷିତ ପ୍ରଜା । ପ୍ରତିବର୍ଷ ଏମାନେ ଯାହା ବି ଚାଷ କରିବେ ସେଥିରୁ କିଛିଅଂଶ ଜଂଗଲବିଭାଗ କର୍ମଚାରୀମାନଙ୍କର ପ୍ରାପ୍ୟ ରୂପେ ସେମାନଙ୍କୁ ଦେବାକୁ ହେବ - ତାକୁ ଖଜଣା କୁହକି ମାମୁଲି କୁହ - ଏହା ହିଁ ଏଠାକାର ଅଲିଖିତ ନିୟମ । ନୂଆ ପିଢ଼ିର ପିଲାମାନେ ଆଉ ପୁରୁଣା ଗାଁ ବସିବା ଦିନର କଥାକୁ ମନେରଖି ନାହାନ୍ତି । ବୁଢ଼ାବୁଢ଼ୀମାନଙ୍କ ମୁହଁରୁ 'ଦୁଲେନ୍‌ବର୍' କଥା ଶୁଣିବାକୁ ମିଳେ । ସେ ଅଂଚଳର ଭାଇବନ୍ଧୁକୁଟୁମ୍ବ ଏ ଗାଁକୁ ଗତିଆ ଆସନ୍ତି । କେବେ କେମିତି ଏଠିକାର ଝିଅ ସେଠିକି ବାହାହୋଇ ବୁଆରୀ ହୋଇଯାଏ ତ ସେଠାକାର ଝିଅ ଆସେ ଏ ଗାଁକୁ । ତେବେ ସେଭଳି ସଂପର୍କ ମଧ୍ୟ କମି ଆସିଲାଣି ।

ଶୂନ୍ୟରୁ ଛଞ୍ଚାଣ କିମ୍ବା ମଂଜୁରଶୂଳିଆ ଓହ୍ଲାଇବା ଭଳି ହଠାତ୍ ଓହ୍ଲାଇ ଆସିଲା ଦୁର୍ଭୋଗ । ସେ ପୁଣି ଗାଁ ବସାଇଥିବା ଜଙ୍ଗଲବିଭାଗ ତରଫରୁ । ୧୯୯୦ ମସିହାର ପହିଲି ଆଷାଢ଼ ଆସୁ ନ ଆସୁଣୁ ନୂଆ ରେଂଜର ଘୋଷଣା କଲେ - ଆନ୍ଧିଝରଣ ଓ ଏଭଳି ସମସ୍ତ ଜଙ୍ଗଲ ଜଗୁଆଳି ଗାଁରେ ଘରଡ଼ିହ ଓ ଅଳ୍ପଟିକିଏ ଘରପାଖ ଜମିକୁ ଛାଡ଼ିଦେଇ ବାକି ସମସ୍ତ ଜମିରେ ଗଛ ରୋପାଯିବ । ଘୋଷଣା ସରୁସରୁ ସର୍ଭେକାମ ଆରମ୍ଭ ହୋଇଗଲା ଓ ଏ ଗାଁର ୫୦ଏକର ଡଙ୍ଗର ଜମି ଚିହ୍ନଟ କରାଗଲା । ସେତେବେଳକୁ ସେ ସମସ୍ତ ଜମିରେ ମକାବୁଣା ସରିଥିଲା । ଜମି ଭିତରେ ମନ୍ଦା

କରାଯାଇ ଶିଶୁ, ଗମ୍ଭାରୀ, ଶାଗୁଆନ ଆଦି ଗଛ ରୋପି ଦିଆଗଲା । ଲୋକେ ପଚାରିଲେ, ଗାଁରେ ସିନା ରହିବୁ, ଖାଇବୁ କ'ଣ ? ସରକାର ଉତ୍ତର ଦେଲେ ଉପଗ୍ରହ ବା 'ସେଟ୍‌ଲିଟ୍‌'(Satellite)ରୁ ଫୋଟ ଉଠିଛି, ଜାତିସଂଘରୁ ଓ ବିଶ୍ୱବ୍ୟାଙ୍କରୁ ଭାରତସରକାରଙ୍କ ପାଖକୁ ଚିଠି ଆସିଛି; ଏସବୁ ଡଙ୍ଗର ଜମିରେ ଗଛ ଲଗାଇବାକୁ ହେବ । ତୁମେ କ'ଣ କରିବ ନ କରିବ ଆମେ କେମିତି କହିବୁ ? ଜଙ୍ଗଲର ଜମି ଜଙ୍ଗଲକୁ ଫେରିଆସିଲା ।

୧୯୫୫ରୁ ୧୯୯୦ - ଏ ୩୫ବର୍ଷର ଜମିଦଖଲି ସ୍ୱପ୍ନ ପବନରେ ପବନରେ ଉଡ଼ିଗଲା । ଆଦିବାସୀ ଜମି ଚଷୁଥିଲା ସତ, କିନ୍ତୁ ତା'ର ପଟା ନଥିଲା । ଜଙ୍ଗଲବିଭାଗର ଦୟାରେ ସେ ଏଠି ଥିଲା । ଏବେ କିନ୍ତୁ ନୂଆ ଆଇନ୍ ହୋଇଛି । ଜଙ୍ଗଲ ଛାଡ଼ିବାକୁ ହେବ । କୁଆଡ଼େ ଯିବ, କ'ଣ ଖାଇବ, କିଏ କହିବ ? ଜମି ନ ଛାଡ଼ିଲେ ଏରେଷ୍ଟ ହେବ, ଜେଲ୍‌କୁ ଯିବ । କଳାହାଣ୍ଡିର ଆଦିବାସୀ ଡରିଗଲା । ଜମିସବୁ ଗଛ ରୋପିବା ପାଇଁ ଛାଡ଼ିଦେଲା । ମକାଗଛ ସୁରୁକୁଟା ହେବାକୁ ଲାଗିଲା । ରାସାୟନିକ ସାର ପାଇ ବଢ଼ିବାକୁ ଲାଗିଲେ ଶିଶୁ, ଗମ୍ଭାରୀ, ଶାଗୁଆନ । ଆନ୍ଧିଝରଣ ଗାଁର ଜଣେ ପରଜାବୁଢ଼ା ଆମକୁ ନିଜ ଗାଁର ଏଇସବୁ କାହାଣୀ ଶୁଣେଇସାରି ନିଜ ବେଢ଼ା ଆଡ଼କୁ ଟାଣିନେଲା । ବୁଢ଼ାର ଡଗଡଗ ଚାଲି ସହ ଆମେ ପାଦ ମିଳାଇ ପାରୁନଥାଉଁ । ପାଏ ଖଣ୍ଡେ ବାଟ ଯିବାପରେ ତା'ର ଜନାକ୍ଷେତ ପଡ଼ିଲା । ଚାହିଁ ଦେଖିଲୁ ଜନାକ୍ଷେତ ଭିତରେ ପ୍ରାୟ ୫୦ ସରିକି ମନ୍ଦା ଖୋଳା ହୋଇ ଜଙ୍ଗଲବିଭାଗର ଗଛ ରୋପା ହୋଇଛି । ମକାଗଛମାନଙ୍କର ସବୁଜିମା ଚୋରିକରି ଏଇସବୁ ଗଛ ଅଧିକରୁ ଅଧିକ ସବୁଜ ହୋଇଉଠୁଛନ୍ତି । ପଚାରି ବୁଝିଲି, ପ୍ରାୟ ଦୁଇମାସ ହେଲାଣି ଏ ଗଛସବୁ ରୋପା ହୋଇଛି । ମୁଁ ପ୍ରଶ୍ନକଲି - ଚଷିଲା ଜମିରେ ସେମାନେ ଗଛ ଲଗାଇ ଦେଲେ, ଆଉ ତୁମେ ଛାଡ଼ିଦେଲ ? ଉପାଡ଼ି ଦେଲନି ?

ବଡ଼ ନିରୀହଭାବେ ପରଜାବୁଢ଼ା ଉତ୍ତର ଦେଲା 'କେମିତିକା ଉପାଡ଼ି ଥାନ୍ତୁ । ସେମାନେ କହିଲେ, ଏ ବର୍ଷ ପାଖଜମି ସବୁ ଛାଡ଼ି ଦେଇଛୁ । ଚଷି ଖାଅ । କିନ୍ତୁ ଏ ପାଲାରେ ହାତଦେଲେ ମାମୁଁଘର ଦେଖିବ ।' ଏ କଥା କହୁଥିବା ବେଳେ ପରଜାବୁଢ଼ାର ଆଖିରେ ଟୋପାଏ ଲୁହ ନଥିଲା କି ନଥିଲା କ୍ରୋଧର ସ୍ଫୁଲିଙ୍ଗ । ମୁଁ ରାଗିଯାଇ କହିଲି, "ଆଉ ତୁମେସବୁ ଚୁପ୍ ରହିଗଲ ? ପଇଁତ୍ରିଶ ବର୍ଷ ଧରି ନିଜ ଦଖଲରେ ଥିବା ଜମି ଛାଡ଼ିଦେଲ ?" ସମବେତ କନ୍ଧ ଓ ପରଜାମାନେ ଧୀରେ ଉତ୍ତର ଦେଲେ, 'କ'ଣ

କରିଥାନ୍ତୁ ? ରେଂଜର କହିଲା, ଯିଏବି ଜମି ଦେଉ, ପଟ୍ଟା ନାହିଁ ତ ଜମି ନାହିଁ । ଯିଏ ଜମି ପାଖକୁ ଆସିବ ହାତକଡ଼ି ପକାଇଦେବୁ ।' ମୁଁ ଗର୍ଜନ କରି କହିଲି - 'ଫାଶୀ ତ ଦେଇ ଦେବେନି । ତୁମର ଭାତଥାଳି ମାରିନେବେ, ତୁମେ ଚୁପ୍‌ଚାପ୍ ଦେଇଦେବ ? କୋରାପୁଟୀ ଚାଷୀଙ୍କୁ ଦେଖ ! ସେତ ଡରିଯାଇନି ! ତା' ଜମିର ବି ପଟ୍ଟା ନାହିଁ । ପଟ୍ଟା ତ ପଟ୍ଟା, ତା' ଗାଁର ନାଁ ବି ସରକାରୀ ଖାତାକୁ ଉଠିନି । କିନ୍ତୁ ସେତ ପୁଣି ଚଷୁଚି, ଖାଉଚି, ଲଢୁଚି, ଜେଲ ଯାଉଛି, ମାଡ଼ ଦେଉଛି, ମାଡ଼ ଖାଉଛି । କିନ୍ତୁ ସେ ତ ଜମି ଛାଡ଼ି ଦେଉନି । ତୁମେ ସବୁ ଏତିକି ଡରୁଆ ? ଲଢ଼େଇକରି ଚାଲିଥିଲେ ସିନା ଜମି ଉପରେ ଅଧିକାର କାଏମ୍ ରହିବ !"

କେଉଁଠି ଥିଲା ଜଣେ ଆଦିବାସୀ ପରଜାବୁଢ଼ା, ମୋ କଥାରେ ଉତ୍ତର ନ ଦେଇ ବିଡ଼ିବିଡ଼ି ହୋଇ ସ୍ୱପ୍ନାବିଷ୍ଟ ସିରା(କାଳେସୀ) ପରି କଥା ମଝିରେ କହିଉଠିଲା, "ସତ୍ କହୁଚି, ସେଇ ଦିନୁ, ସେଇଦିନୁ କଷ୍ଟନା ନେବା ତ ଦୂରର କଥା, ଜମିର ମୁଖ୍‌ଡ଼ା ବି ମୁଁ ଦେଖିନାହିଁ ।" ତା'ର ଉତ୍ତର ଶୁଣି ମୁଁ ନିର୍ବାକ ପାଲଟିଗଲି ।

ହତଭମ୍ବ ମୁଁ । ପଛକୁ ଘୂରିପଡ଼ି ତାକୁ ଅନାଇ ଦେଲି । ଅନଉଁ ଅନଉଁ ତା'ର ଲୁହହୀନ ମଇଳା ମୁହଁକୁ, ଝଲିସି ଉଠିଲା ବିଜୁଳି ଏବଂ ସେଇ ବିଜୁଳିରେ ଅଚାନକ ଦୃଶ୍ୟ ହେଲା 'କଳାହାଣ୍ଡି' ମୋତେ । ମଣିଷର ରୂପନେଇ ମୋ ଆଗରେ ଉଭା ଏ ଯେ କଳାହାଣ୍ଡି ନିଜେ !

କୁହ ଉତ୍ତମ !

'ଆତ୍ମକଷଣ'ର / କଳାହାଣ୍ଡି କ'ଣ ଆଉ ଏକ ନାମ ?

ଲଢ଼େଇର ମନ୍ତ୍ର ଭୁଲି

ନିଜର ପ୍ରତିବିନ୍ଦୁ ରକ୍ତକୁ

ଲୁଟେରା ପାଇଁ ନିଗାଡ଼ି ଦେଇ

ନିଜେ ଯିଏ ସହେ ଭୋକ, ବିକେ ଶିଶୁ, ମୃତ୍ୟୁ ବରିନିଏ ?

ଅନ୍ୟର ଭୋଗ ପାଇଁ ଦାନ ଦେଇ ଆପଣା ଯୌବନ

ଅକାଳରେ ବରି ସିଏ ନେଇପାରେ ଜରା ?

ଜୟ ନୁହେଁ କି ନୁହେଁ ପରାଜୟ / ଉଲ୍ଲାସ ନୁହେଁ କି ନୁହେଁ ଅବସାଦ,

କଳାହାଣ୍ଡି କି ନିର୍ବେଦତା ନିଜେ ?

ନା ନିର୍ବେଦତାର ଜୟ ଜୟକାର ?'

ଜୀଜିବିଷା ନୁହେଁ / କି ମୃତ୍ୟୁର କାମନା ନୁହେଁ

'କଳାହାଣ୍ଡି' କି ଜଡ଼ତାର ନୀରବ ପୁକାର ?

(ନିଜ ରଚିତ 'କଳାହାଣ୍ଡି' କବିତାର ଶେଷାଂଶ । ଆନ୍ଧିଝରଣ ଅଭିଯାନରୁ ଫେରିବାର ପ୍ରାୟ ଦୁଇମାସ ପରେ ମୁଁ ଏ କବିତା ଲେଖିଥିଲି । ତା'ର ଶୈଳୀ ଥିଲା ବନ୍ଧୁ ଉତ୍ତମ ପ୍ରଧାନଙ୍କୁ ଚିଠି ଲେଖିବାର ଶୈଳୀ ।)

କଳାହାଣ୍ଡି ସଂପର୍କରେ ମୋର ଏଇ ଉପଲବ୍ଧିକୁ ବିଶ୍ୱ ଜନୀନ କୁହାଯାଇ ପାରିବ ନାହିଁ । ଏହା ଏକ କ୍ଷୋଭର ପ୍ରକାଶ । କଳହାଣ୍ଡି ଆଦିବାସୀମାନଙ୍କର ଐତିହ୍ୟ ଯେପରି ଦୁର୍ବଳ, ବର୍ତ୍ତମାନ ମଧ୍ୟ ସେହିପରି ଅସ୍ପଷ୍ଟ । ଜଙ୍ଗଲବିଭାଗ କର୍ମଚାରୀମାନେ ଏହି ଜିଲ୍ଲାର କେତେକ ଜଂଗଲ ଜଗୁଆଳି ଗାଁକୁ ପୋଡ଼ି ଦେଇଥିବା ଖବର ମଧ୍ୟ ଆମେ ପାଇଲୁ । ସେ ସମସ୍ତ ଅଭିଯୋଗ ଆଦିବାସୀ କମିଶନ ଜରିଆରେ ସୁପ୍ରିମ୍‌କୋର୍ଟକୁ ପଠାଇଲୁ । କିନ୍ତୁ ଏ ସବୁ ବିରୋଧରେ ଲୋକ ପ୍ରତିବାଦ ଅତି କ୍ଷୀଣ । ଜନଗଣଙ୍କର ନେତୃତ୍ୱ ବିହୀନତା ନିଶ୍ଚିତଭାବେ ଏହାର ଅନ୍ୟତମ ମୁଖ୍ୟ କାରଣ । (ମନେପକାନ୍ତୁ ଭୂପେନ୍ ହାଜାରିକାଙ୍କର ସେଇ ବିଖ୍ୟାତ କବିତା – 'ଓ ଗଙ୍ଗା ତୁମି ବଇଛୋ କେନୋ ?') ତେବେ ତା' ସହ ରହିଛି ଶହଶହ ବର୍ଷ ବ୍ୟାପୀ ସାମନ୍ତବାଦୀ ଉତ୍ପୀଡ଼ନ ଓ ଶୋଷଣର ପ୍ରଭାବ । ସେଦିନର ସେଇ କଥାବାର୍ତ୍ତା ବୈଠକ ଓ ପରବର୍ତ୍ତୀ ଦିନମାନଙ୍କରେ ଆଉ କେତେଟା ଗାଁ ବୁଲିବା ପରେ କୋରାପୁଟ୍‌ର ସାଥୀମାନେ ହିଁ ଜମି ଲଢ଼େଇରେ ମୁଖ୍ୟ ଭୂମିକା ନେଇଥିଲେ ଓ କଳାହାଣ୍ଡିର ରଇତମାନେ ତାଙ୍କର ଅପହୃତ ଜମି ଫେରସ୍ତ ପାଇଥିଲେ । କିନ୍ତୁ ସେ ଜମି ଦଖଲ ପାଇବା ପରେ କଳାହାଣ୍ଡିର ଭାଇମାନେ କ୍ରମଶଃ ସଂଗଠନ ଠାରୁ ଦୂରେଇ ଗଲେ । ସେଠାକାର ପ୍ରଶାସନ ମଧ୍ୟ ସେମାନଙ୍କୁ ମିଠାକଥା କହି କାବୁ କରିନେଲେ ଓ ଆମଠାରୁ ଦୂରେଇ ନେଲେ । ଏସବୁର ଉର୍ଦ୍ଧ୍ୱରେ ଆଉ ଏକ ସମସ୍ୟା ରହିଛି ଯାହାକି କଳାହାଣ୍ଡି ଆଦିବାସୀମାନଙ୍କର ଚେତନାକୁ ମ୍ଳାନ କରି ରଖିଛି – ତା' ହେଉଛି ସେଠାରେ ଚାଲିଥିବା ଶହଶହ

ଏନ୍.ଜି.ଓ.ର ରିଲିଫ କାର୍ଯ୍ୟ । ଗୋଟିଏ ଅଂଚଳର ତମାମ ଜନଗୋଷ୍ଠୀର ସାମଗ୍ରିକ ଚେତନାକୁ ଏହିସବୁ ରିଲିଫ୍ ସଂସ୍ଥା ସଂପୂର୍ଣ୍ଣ ରୂପେ ପରନିର୍ଭରଶୀଳ କରାଇଛି ଓ ନିଜସ୍ୱ ଆତ୍ମବିଶ୍ୱାସକୁ ଭାଙ୍ଗିରୁଜି ଚୁର୍‌ମାର୍ କରିଦେଇଛି । ଯେକୌଣସି ସଂଗ୍ରାମ ପାଇଁ ଏହା ତିଆରି କରିଛି ପ୍ରଚଣ୍ଡ ପ୍ରତିକୂଳ ପରିବେଶ । ଏହି ପ୍ରତିକୂଳତାକୁ ଭାଙ୍ଗିବା ପାଇଁ ଯେଉଁ ପରିମାଣରେ ରାଜନୈତିକ ସାଂଗଠନିକ ଉଦ୍‌ଯୋଗ ଓ ଅଭିକ୍ରମ ଦରକାର, ତାହା ଦୃଶ୍ୟମାନ ହେଉନାହିଁ । ମୋ ଜାଣିବାରେ ଅନ୍ତତଃ ଏପରି କୌଣସି ରାଜନୈତିକ ସଂଗଠନ ଓଡ଼ିଶାରେ ନାହିଁ, ଯେକି ଏଭଳି ଏକ ପ୍ରତିକୂଳ ଅଂଚଳ ଓ ଉଷର ଭୂମିରେ ଆପଣା ଶକ୍ତି ବିନିଯୋଗ ପାଇଁ ଆଗ୍ରହୀ ହୋଇଛନ୍ତି ।

ଜଂଗଲ ଭିତରେ କାହିଁ କେଉଁ ଆଦିମକାଳରୁ ଆଦିବାସୀ ରହିଆସିଛି । ତା'ର ଐତିହାସିକ ତଥ୍ୟ ସଭ୍ୟଜଗତ ପାଖରେ ନାହିଁ । ପ୍ରଥମେ ବ୍ରିଟିଶ୍ ଏସବୁ ଅଂଚଳକୁ ଶାସନ ବିସ୍ତାର କରିବା ପାଇଁ ନାରାଜ ଥିଲା । କିନ୍ତୁ ରେଲୱେ ଲାଇନ୍ ପାଇଁ ଦରକାର ପଡୁଥିବା ଟିମ୍ବର ସଂପଦ ଲାଗି ଏସବୁ ଅଂଚଳ ଉପରେ ସେମାନଙ୍କର ଶ୍ୱେନଦୃଷ୍ଟି ପଡ଼ିଲା । ସେଥିପାଇଁ ୧୮୬୫ ମସିହାରେ ବ୍ରିଟିଶ୍ ଇଣ୍ଡିଆର ଶାସକମାନେ ପ୍ରଣୟନ କଲେ ସରକାରୀ ବନ ଅଧିନିୟମ ଓ ପରେପରେ ୧୮୭୮ରେ ଭାରତ ବନଅଧିନିୟମ । ଏହା ବଳରେ ରାଜା, ଇନାମ୍‌ଦାର ଓ ଜମିଦାରମାନେ ଚାଷଜମିର ମାଲିକ ହେଲେ । କିନ୍ତୁ ଜଙ୍ଗଲ ଓ ଜଙ୍ଗଲଜମିର ମାଲିକ ହେଲା ରାଷ୍ଟ୍ର । ଫଳରେ ନଦୀପଥ ଦେଇ ପ୍ରଚୁର ପରିମାଣରେ ଟିମ୍ବର ଅଣାଗଲା ବିଶାଖାପାଟଣା ବନ୍ଦରକୁ ଓ ସେଠାରୁ ପଠାଗଲା ସିଧାସଳଖ ବିଲାତ । କୋରାପୁଟ-କଳାହାଣ୍ଡି ଅଂଚଳର ଟିମ୍ବର ୧୯୦୦ ମସିହା ବେଳକୁ ଆନ୍ତର୍ଜାତିକ ବଜାରରେ ବିକ୍ରି ହେବାକୁ ଲାଗିଲାଣି । ସେଥିପାଇଁ କେବଳ ରୋଡ଼, ରେଳଲାଇନ୍ ନିର୍ମାଣ କରାଗଲା । ଏ ସବୁ ଜଙ୍ଗଲ ଆଇନ ବିଷୟରେ ଆଦିବାସୀ କିଛିହେଲେ ଜାଣିବା ପୂର୍ବରୁ ତା' ଜମିରୁ ତାକୁ ତଡ଼ି ଦିଆଗଲା ପର୍ବତ ଉପରକୁ । ଜମିକୁ ମାଡ଼ିବସିଲେ ବହିରାଗତ ଜମିମାଲିକ । ତା' ଜଙ୍ଗଲ ପଦା ହେଲା । ଗାଁ ଉଜୁଡ଼ି ଗଲା । ମୁଖ୍ୟତଃ ଏହାରି ବିରୁଦ୍ଧରେ ହିଁ ୧୮୫୦ରୁ ୧୯୨୫ ଭିତରେ କେବଳ ବସ୍ତର – କୋରାପୁଟ-ବିଶାଖାପାଟଣା ଅଂଚଳରେ ୭ଟି ବଡ଼ବଡ଼ ବିଦ୍ରୋହ ବା ଫିତୁରି ସଂଘଟିତ ହୋଇଛି । ଏହାକୁ ଛାଡ଼ି ରହିଛି ଛୋଟଛୋଟ ପ୍ରାୟ ୧୦୦ଟି ଫିତୁରି । ଏହାର ଶେଷ ଫିତୁରିର ନେତା ଥିଲେ ଆଲୁରି ସୀତାରାମାୟା

ରାଜୁ । ସେହିପରି ବିହାରରେ ସିଦୁକାନୁ ଓ ବିରସା ମୁଣ୍ଡାଙ୍କ ବିଦ୍ରୋହ ବା କେନ୍ଦୁଝରର ଭୂୟାଁମେଳି ଓ କଳାହାଣ୍ଡିର କନ୍ଧମେଳି । କିନ୍ତୁ ଏସବୁ ଫତୁରି ବା ମେଳି ପ୍ରତି କଂଗ୍ରେସପାର୍ଟିର ଦୃଷ୍ଟିଭଙ୍ଗୀ ଥିଲା ଅତ୍ୟନ୍ତ ନକାରାତ୍ମକ । ତେଣୁ ବ୍ରିଟିଶ୍ ଶାସକମାନେ ଏହାର ସୁଯୋଗ ନେଇ ସମସ୍ତ ବିଦ୍ରୋହୀଙ୍କୁ ନିର୍ମମ ଭାବେ ହତ୍ୟା କରିଥିଲେ । ଯାହାର ପ୍ରତିବାଦ କଂଗ୍ରେସ ବାଲା କରିନଥିଲେ । ପରେପରେ ଆସିଲା ତଥାକଥିତ ସ୍ୱାଧୀନତା । ତିଆରି ହେଲା ଆହୁରି କଳା ଜଙ୍ଗଲ ଆଇନ । ଯୋଜନାବଦ୍ଧ ଭାବେ ସମସ୍ତ ଜଙ୍ଗଲରୁ ଯୁଗଯୁଗର ପୁରୁଣା ଟିମ୍ବର ସଂଗୃହୀତ ହେଲା । ଚୋରାରେ, ଖୋଲାରେ, ଆଇନ ଅନୁସାରେ, ବେଆଇନ୍‌ରେ ଲକ୍ଷଲକ୍ଷ ଏକର ଜମିରୁ ଗଛ କଟାଗଲା । ଏଇଭଳି ଭାରତର ପ୍ରାୟ ୭୦% ଜଙ୍ଗଲସଂପଦ ନଷ୍ଟ ହୋଇଗଲା । ଏତେ ସତ୍ତ୍ୱେ ମଧ୍ୟ ଏ ପ୍ରକ୍ରିୟା ଆଜିସୁଦ୍ଧା ଚାଲୁ ରହିଛି । କଳାହାଣ୍ଡି ସିନା ଧ୍ୱଂସ ପାଇଛି, ଅଛି କୋରାପୁଟ, ଅଛି ମାଲକାନଗିରି । ଏବେବି ପ୍ରତିଦିନ ଜୟପୁର ଗେଟ୍ ଦେଇ ଓ ଚିତ୍ରାକୁଣ୍ଡା ଗେଟ୍ ଦେଇ ବେଶ୍ କିଛି ଟିମ୍ବର ଓ ତତୋଧିକ ବାଉଁଶ ଚାଲାଣ ହେଉଛି । ଲୋକେ ଏହା ବିରୁଦ୍ଧରେ ଆନ୍ଦୋଳନ କଲେ ପୁଲିସ୍, ଗୁଣ୍ଡା, କୋର୍ଟ କଚିରି ସମସ୍ତେ ଆଦିବାସୀ ଉପରକୁ ଝାମ୍ପି ପଡୁଛନ୍ତି । ଅଥଚ ଏଣେ ଦେଶର ବୁଦ୍ଧିଜୀବୀ ଓ ସାଧାରଣ ଲୋକଙ୍କ ପାଖରେ ପ୍ରଚାର କରାଯାଉଚି – ଆଦିବାସୀ ପୋଡୁଚାଷ କରି ଜଙ୍ଗଲ ଧ୍ୱଂସ କରିଦେଉଚି । ସେଇଥିପାଇଁ ମରୁଡ଼ି ପଡୁଛି । ବର୍ଷା ହେଉନି ଇତ୍ୟାଦି । ଶହଶହ ସଂଖ୍ୟାରେ ପୋଡୁ କେଶ୍ କରି ଆଦିବାସୀଙ୍କୁ ଗିରଫ କରାଯାଉଛି, ଆଦିବାସୀର ଚାଷଜମି ଦଖଲକରି ଗଛ ରୋପା ଯାଉଛି । ଆଉ ଆମେ ସଭ୍ୟ ଲୋକମାନେ କହୁଚୁ – "ଏଇ ଅଶିକ୍ଷିତ ଆଦିବାସୀମାନଙ୍କ ପାଇଁ ହିଁ ଜଙ୍ଗଲ ଧ୍ୱଂସ ପାଉଚି ।" କି ବିଚିତ୍ର ଯୁକ୍ତି । ଆମେ ସମସ୍ତେ ଆଜି ଏଇ ସମସ୍ୟାର ଗହୀରକୁ ଯାଇ ବିଚାର କରିବା ଉଚିତ କେମିତି ଏହାର ସମାଧାନ। କେମିତି ଟିମ୍ବର ମଫିଆର ସବୁପ୍ରକାର ଗଛକଟାକୁ ରୋକାଯାଇ ପାରିବ । କେମିତି ବଡ଼ବଡ଼ ଶିଳ୍ପପତିମାନଙ୍କ ବାଉଁଶକଟା ଓ ଜମିଲିଜ୍‌କୁ ବନ୍ଦ କରାଯାଇ ପାରିବ । ନହେଲେ କେବଳ ଗୋଟିଏ କଳାହାଣ୍ଡି ନୁହେଁ, ଆମେ ଆଉ ୫/୧୦ବର୍ଷ ଭିତରେ ଆଉ ୫/୬ଟି କଳାହାଣ୍ଡିର ସ୍ରଷ୍ଟା ବନିଯିବୁ । ଓଡ଼ିଶା ପାଲଟି ଯିବ ନିଛକ ମରୁଡ଼ିର ଏକ ସ୍ୱନାମଧନ୍ୟ ରାଜ୍ୟ ।



# ଆଦିବାସୀ ଜନଜୀବନର ଜଣେ ସଫଳ ଚିତ୍ରକାର

'ନବପତ୍ର' ସମ୍ପାଦକଙ୍କ ଚିଠିଟି ମୋତେ ଭାବନାର ଆବର୍ତ୍ତ ଭିତରକୁ ଠେଲିଦେଲା । ଏକ ପକ୍ଷରେ ସେ ମୋଠୁ ଆଦିବାସୀ ଜୀବନ ସମ୍ପର୍କିତ ଲେଖା ଚାହିଁଛନ୍ତି, କିନ୍ତୁ ସର୍ତ୍ତ ବାଢ଼ିଛନ୍ତି ଏହା ଯେପରି ଅଧ୍ୟାପକୀୟ ନ ହେଉ । ହେଉ ପ୍ରତ୍ୟକ୍ଷ ଓ ବାସ୍ତବଧର୍ମୀ । ଏବଂ ଧରି ନେଇଛନ୍ତି ଯେ, ମୁଁ ପଠାଇବାକୁ ଚାହିଁଥିବା 'ଗୋପୀବାବୁଙ୍କ ଲେଖାରେ କୋରାପୁଟ ଆଦିବାସୀର ଅର୍ଥନୈତିକ ଜୀବନ' ପ୍ରବନ୍ଧଟି ଯେହେତୁ ଦୀର୍ଘ ବା ଯେହେତୁ ଗବେଷଣା ନିବନ୍ଧ ସୁଲଭ ଶୀର୍ଷକ ଧାରଣ କରିଛି, ତା' ଅଧ୍ୟାପକୀୟ ହୋଇଥିବ । ଅର୍ଥାତ୍ ପ୍ରତ୍ୟକ୍ଷ ଓ ବାସ୍ତବଧର୍ମୀ ହୋଇ ନଥିବ । ସାଧାରଣତଃ ଅଧ୍ୟାପକୀୟ ଲେଖା ବୋଇଲେ ଆମେ ଯାହା ବୁଝୁ ତା' 'ହେଉଛି, ନିବନ୍ଧ ପାଇଁ ନିବନ୍ଧ' ବା 'ପାଣ୍ଡିତ୍ୟ ପ୍ରଦର୍ଶନ ପାଇଁ ନିବନ୍ଧ' ଯାହାର କିଛି ହେଲେ ବ୍ୟାବହାରିକତା ନଥାଏ । ଅଥଚ ସେ ଲାଗି ସଂପୃକ୍ତ ଗବେଷକଙ୍କୁ କିଛି ଉପାଧି ବା ଡିଗ୍ରୀ ବା ପଦ ପଦବୀ ବା ପୁରସ୍କାର ମିଳିଥାଏ । 'କଳା ପାଇଁ କଳା' ତତ୍ତ୍ୱର ବାହକମାନେ ଏଭଳି ଲେଖାର ଖୁବ୍ ବାହାବା କରନ୍ତି, ଡିଣ୍ଡିମ ପିଟନ୍ତି । ଲେଖକଙ୍କର ଜ୍ଞାନଗାରିମାରେ ବହୁ ବିଜ୍ଞବ୍ୟକ୍ତି ମୁଗ୍ଧ ହୁଅନ୍ତି । ମୂର୍ଖ ଲୋକେ କହନ୍ତି, 'କ'ଣ ନ ଲେଖିଲା ! ଆମେ ମୂର୍ଖମାନେ ସିନା କିଛି ବୁଝିପାରୁନୁ ।' ଆଉ କାଳେ ଲୋକେ ସହଜରେ ମଂଜ କଥାଟି ଧରିପାରିବେ, ଏଇ ଭୟରେ ଗବେଷକ ମହଶୟ 'କଅଁଳ' ଜାଗାରେ 'କମ୍ର, 'କାକ' ଜାଗାରେ 'ବାୟସ', 'ପାଣି' ଜାଗାରେ 'ତୋୟ' ବସାଇ ଚାଲନ୍ତି । ସେଭଳି ଭାବ ଓ ତତ୍ତ୍ୱ କ୍ଷେତ୍ରରେ ମଧ୍ୟ ବହୁ ନାହିଁ ନଥିବା 'ଇଜମ୍'ର ଅବତାରଣା କରି ପାଠକର ମନକୁ ଏଭଳି ଭାରାକ୍ରାନ୍ତ କରି ଦିଅନ୍ତି ଓ ଏଭଳି କେରିକେଚର୍, ଦେଖାଇ ଜିରାରୁ ଶିରା ବାହାର କରନ୍ତି ଯେ, ପାଠକ ବିଚାରା ତ୍ରାହି ତ୍ରାହି ଡାକ ଛାଡ଼ି 'ଯଃ ! ପଳାୟତି ସଃ

ଜୀବତି' ନ୍ୟାୟରେ ଲେଖକର ଲେଖାକୁ ନେଇ ସ୍ୱର୍ଗରେ ବସାଇ ଦେଇଛୁ' କରନ୍ତି । ସାମାଜିକ ପ୍ରାସଙ୍ଗିକତା ନଥିବା ଏ ସବୁ ଲେଖା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସମାଜର ସମସାମୟିକ ଉତ୍ପାଦନ ବ୍ୟବସ୍ଥାରେ ତ କିଛି ସାହାଯ୍ୟ କରିପାରେନି । ବରଂ ମୂଲ୍ୟବୋଧ କ୍ଷେତ୍ରରେ ସଂଶୟବାଦକୁ ଜନ୍ମ ଦେଇ ବହୁ ସୃଜନଶୀଳ ପ୍ରତିଭାଙ୍କୁ ପଥଭ୍ରଷ୍ଟ କରାଏ । ଆଉ ଦୁଃଖର କଥା, ଆମ ଓଡ଼ିଶାରେ, ପ୍ରବନ୍ଧର ଏଇଭଳି ପରମ୍ପରା ହିଁ ପ୍ରବନ୍ଧ ସାହିତ୍ୟର ମୁଖ୍ୟ ସ୍ରୋତ ହୋଇଆସିଛି, ଯାହା ବଦଳା ହେବା ଏକାନ୍ତ ଜରୁରୀ ।

ତେବେ ମୁଁ ଏଭଳି ଶୀର୍ଷକ ଦେଇ ଲେଖାଟିଏ ତିଆରି କଲି କାହିଁକି ? ଏହାର କିଛି ବ୍ୟାବହାରିକ ମୂଲ୍ୟ ଅଛି କି ନାହିଁ ? ଅଛି ଯଦି, କାହା ପାଇଁ ?

୧୯୮୮ରୁ ୯୦ ଭିତରେ ମୁଁ ଯେତେବେଳେ କୋରାପୁଟ ଆଦିବାସୀମାନଙ୍କ ଭିତରେ ନିଜର ପାଦ ଥାପିବା ପାଇଁ ଚେଷ୍ଟା କରୁଥିଲି, ସେତେବେଳେ ଗୋପୀବାବୁଙ୍କ କୋରାପୁଟ ସଂପର୍କିତ ବହିସବୁ ମୋପାଇଁ ଥିଲା ଆଲୋକବର୍ତ୍ତିକା । ଗାଁ ଗହଳରେ କାମ କରୁଥାଏଁ, ବ୍ୟାପକ ଲୋକ ସମ୍ପର୍କ ରଖୁଥାଏ । ଜୀବନ ଓ ଜୀବିକାର ସମସ୍ତ ସମସ୍ୟାକୁ ଅନୁଧ୍ୟାନ କରୁଥାଏ । ଯାଯାବର ଭଳି ଘୂରିବୁଲୁଥାଏ ମାଲକାନ୍‌ଗିରିରୁ ଇନ୍ଦ୍ରାବତୀ, ରାଇଘରରୁ ରାୟଗଡ଼ା, ଗୁଣୁପୁରରୁ କୋଟ ପାଡ଼ - ଆଉ କିଛି ନା କିଛି ଆନ୍ଦୋଳନ ନିର୍ମାଣ ଚେଷ୍ଟା ଚଳାଇଥାଏ । ଏତିକିବେଳେ ଗୁଣୁପୁରର ବର୍ଷୀୟାନ, ମାର୍କ୍ସବାଦୀ ଲେନିନ୍‌ବାଦୀ ନେତା ଡି.ବି.ଏମ୍. ପଟ୍ଟନାୟକ ମୋତେ କହିଲେ, 'କୋରାପୁଟ୍‌ରେ କାମ କରିବାର ଯଦି ସିଦ୍ଧାନ୍ତ କରିଛ, ତେବେ କାର୍ମେକେଲ ସାହେବ ଓ ନୀଳମଣି ସେନାପତିଙ୍କ ଗେଜେଟିଆର୍ ପଢ଼, ଜୟପୁର ରାଜାଙ୍କ ନନ୍ଦପୁର ରାଜବଂଶର ଇତିହାସ ପଢ଼, ବିଶ୍ୱନାଥ ଆଞ୍ଚାଙ୍କ ସର୍ବୋଦୟ ଆନ୍ଦୋଳନ ବିଷୟରେ ପଢ଼ ଓ ଗୋପୀବାବୁଙ୍କ ସବୁ ବହି ପଢ଼ । ବିଶେଷକରି 'ଶିବଭାଇ' ଓ 'ପରଜା' ନିଶ୍ଚିତଭାବେ ପଢ଼ । ଶିବଭାଇରେ ତ ଗୁଣୁପୁର ସାହୁକାରମାନଙ୍କର ଭିତର - ବାହାର ସବୁକିଛି ତୁମେ ଦେଖି ପାରିବ ।

ଖୁବ୍ ଉତ୍ସାହିତ ହେଲି । ଏ ସବୁ ସଂଗ୍ରହ ପାଇଁ ଷ୍ଟେଟ୍ ଆର୍କାଇଭସ୍‌ରୁ ନେସ୍‌ନାଲ୍ ଲାଇବ୍ରେରୀ ପର୍ଯ୍ୟନ୍ତ ଘୂରି ବୁଲିବାକୁ ପଡ଼ିଲା । ସେତେବେଳକୁ ଜ୍ଞାତସାରରେ ଗୋପୀବାବୁଙ୍କ କୌଣସି ବହି ଅପଢ଼ା ନଥିଲେ ମଧ୍ୟ 'ଶିବୁଭାଇ' ବହିଟିର ନାମ ମୁଁ ପ୍ରଥମେ ଶୁଣିଲି । ଡି.ବି.ଏମ୍.ଙ୍କୁ ସମ୍ମାନ ଦେଖାଇ, କେବଳ କୋରାପୁଟ

ଆଦିବାସୀମାନଙ୍କ ସହ ଅଧିକ ଏକାତ୍ମ ହେବା ଉଦ୍ଦେଶ୍ୟରେ ପରଜା, ଅମୃତର ସନ୍ତାନ, ଦାଦିବୁଢ଼ା, ଅପହଂଚ ଓ ଶିବୁଭାଇଙ୍କୁ ବାରମ୍ବାର ପଢ଼ିଲି । ଫଳରେ ମୋ ଆଗରେ ଏକ ନୂଆ ଜଗତ୍ ଉଦ୍ଭାସିତ ହୋଇଉଠିଲା । ଯେଉଁଠି ଜମାନ୍ ବାବୁମାନେ ଦେବତାର ସମ୍ମାନ ପାଆନ୍ତି, ଆଦିବାସୀ ରଇତମାନେ ନିଜ ଜମିରେ ନିଜେ ଗୋତି ରହନ୍ତି । ସାହୁକାର ଟଙ୍କାମୁଣିର ଚୁମ୍ବକରେ ଆଦିବାସୀ ଅଣ୍ଟାରୁ ଟଙ୍କା ଓ ଅଧୁଲିମାନ ଟାଣି ହୋଇଯାନ୍ତି, ତା'ର ଝିଅ, ବୋହୂମାନେ ଠିକାଦାରର ଭୋଗ୍ୟା ଓ ସାହୁକାରର ରକ୍ଷିତା ହୁଅନ୍ତି, ଘାସପାନୁ, ବାଡ଼ପାନୁ, ଲଙ୍ଗଳପାନୁ, ଜଙ୍ଗଲପାନୁର ଘେର ଭିତରେ ଘୂରିଘୂରି ଆଦିବାସୀ କରଜ କରେ, ମଦ ପିଏ, ଦାବାରେ ପଡ଼େ, ବାଇଦା ତାରିଖ ଠିକ୍‌ଭାବେ ବୁଝି ନ ପାରି କେଶ୍ ହାରେ, ଜେଲ୍‌କୁ ଟଣା ହୋଇଯାଏ । ମୁଁ ଦେଖିଲି ପୂର୍ବର ଶୋଷଣ ପ୍ରଥା ଓ ଏବର ଶୋଷଣ ପ୍ରଥା ଭିତରେ ଫରକ ବହୁତ କମ୍ । ସାହୁକାର ସଂଖ୍ୟା ବଢ଼ିଛି । ଚାକିରି ପାଇଁ, ବେପାର ପାଇଁ ବା ସମାଜ ସେବା ପାଇଁ ଯେତେ ଲୋକ ଘାଟୀ ଡେଇଁ ଆସିଛନ୍ତି ତାଙ୍କ ଭିତରୁ ଅନେକ ଏଠି ନବ୍ୟ ବାହୁକାର ପାଲଟିଯାଇ ଘରଦ୍ୱାର, ଜମିବାଡ଼ି ଆୟତ୍ତ କରି ଅୟସରେ କାଳ କାଟୁଛନ୍ତି । ଆଉ ଯିଏ ଘରଦ୍ୱାର ନ କରି ଫେରି ଯାଇଛି, ସେ ସାଥୀରେ ଘେନିଯାଇଛି ତାଡ଼ା ତାଡ଼ା ନୋଟ୍ - ସୁନା, ମୂଲ୍ୟବାନ କାଠର ସୌଖୀନ ଆସବାବପତ୍ର ଏବଂ ଏଥିପାଇଁ ଭିତ୍ତିଭୂମି ଯୋଗାଇ ଦେଇଛି ରାଷ୍ଟ୍ରର ଆଦିବାସୀ ବିରୋଧୀ ଆଇନ ଓ ଜଟିଳ ବିଚାର ବ୍ୟବସ୍ଥା ତଥା ଆଦିବାସୀର ଅଜ୍ଞତା, ସରଳତା, ପଛୁଆପଣ ଓ ଅନମନୀୟ ଗୋଷ୍ଠୀ ଚେତନା ।

ଗୋପୀବାବୁ ଏଇ ଶୋଷଣ ସାମ୍ରାଜ୍ୟର ଆତ୍ମାକୁ ବଡ଼ କୁଶଳୀ ହାତରେ ବ୍ୟବଚ୍ଛେଦ କରିପାରିଥିଲେ ୫ମ ଓ ୬ଷ୍ଠ ଦଶକରେ । ତା'ପରେ ଅବଶ୍ୟ ରାଜନୈତିକ ଆକାଶରେ ଅନେକ ପରିବର୍ତ୍ତନ ହୋଇଛି । ଆଦିବାସୀର ବିକାଶ ପାଇଁ ବହୁଟଙ୍କା ଢଳାଯାଇଛି । ଏତେଟଙ୍କା ଯେ ସେଥିରେ କୋଲାବ ଜଳଭଣ୍ଡାରରେ ହୁଏତ ଶହଶହ ପୋଲ ନିର୍ମାଣ କରାଯାଇ ପାରିଥାନ୍ତା । କିନ୍ତୁ ଆଦିବାସୀ ରାଜ୍ୟରେ ଶୋଷଣ ବ୍ୟବସ୍ଥାର ସୂର୍ଯ୍ୟାସ୍ତ ହେଲାନି । ଖାଲି ଢଙ୍ଗ ବଦଳିଗଲା । ରଙ୍ଗ ବି ବଦଳିଗଲା । ଆସିଲେ ରିଫ୍ୟୁଜି । ଶହଶହ ସଂଖ୍ୟାରେ ସେମାନଙ୍କ ଗାଁ ବସିଲା । ବନ୍ଧ ବନ୍ଧାଗଲା । ମାଛକୁଣ୍ଡ ପଛେପଛେ ଚିତ୍ରକୁଣ୍ଡା । ତା' ପଛକୁ ଉପରକୋଲବ, ଇନ୍ଦ୍ରାବତୀ । ଆସିଲା ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ । ଜଙ୍ଗଲ ସରିଲା । ଆଦିବାସୀର ଗାଁ ଉଜୁଡ଼ିଗଲା । ଶ୍ମଶାନ ବୁଡିଗଲା । ପିତୃପୁରୁଷର ଡୁମାମାନେ ଓ ଦେବତାମାନେ

ଅଥଳ ଜଳରେ କୁଆଡ଼େ ହଜିଗଲେ । ଏବେବି ଚିତ୍ରକୁଣ୍ଡାରୁ ଯନ୍ତ୍ରୀ ସତୁରି କି.ମି. ଲଞ୍ଚରେ ଯିବାବେଳେ ସେମାନଙ୍କ ଛାଇ ତୁମେ ଦେଖିବାକୁ ପାଇବ । ଶୁଣିବାକୁ ପାଇବ ସେମାନଙ୍କ କାନ୍ଦଣା ଓ ହାହାକାର । ପଚ୍ଛୁଆ ଲୋକ ଆସିଲେ ମାଲକାନଗିରି । କୋଲାବ କୂଳରୁ ବସତି ଉଠିଗଲା ରାମଗିରି କି ଶଶାହାଣ୍ଡି । ବିରାଟ ଅଦଳ ବଦଳ, ଆଦାନ ପ୍ରଦାନ, କ୍ରିୟା ପ୍ରତିକ୍ରିୟା ଘଟିବାକୁ ଲାଗିଲା । କିନ୍ତୁ ଆଉଜଣେ ଗୋପୀବାବୁ ଓଡ଼ିଶାର ଲେଖକମେଳରୁ ବାହାରିଲେନି ଏସବୁକୁ ଧରି ରଖିବା ପାଇଁ, ପ୍ରତିଛବି ଆଙ୍କିବା ପାଇଁ । (ଯେଉଁ ଜଣେ ଦି'ଜଣ ଏଠାକାର ଆଦିଭୂମିର ଆଦିବାସୀମାନଙ୍କ ଉପରେ ଲେଖିଛନ୍ତି ବା ଲେଖିବାର ଚେଷ୍ଟା କରିଛନ୍ତି, ସେମାନେ କି ଭୟଙ୍କର ଭାବେ ଆଦିବାସୀ ବିଦ୍ୱେଷୀ !)

ଏଇଠି ହିଁ ଗୋପୀବାବୁଙ୍କ ଲେଖାର ବ୍ୟାବହାରିକତା ମୁଁ ଖୋଜି ପାଇଛି । ଗୋପୀବାବୁଙ୍କ ଉପରେ ବହୁ ନିବନ୍ଧ ଲେଖା ହୋଇଛି, ଗବେଷଣା କରାଯାଇଛି, ବିଶେଷାଙ୍କ ବାହାରିଛି କିନ୍ତୁ ସାଧାରଣ ଲୋକଙ୍କ ସେବାରେ ବା ବ୍ୟବହାରରେ ତା' କିଭଳି ଲାଗି ପାରିବ ବା ଲାଗି ପାରିଛି ? କୋରାପୁଟ୍‌ର ଆଦିବାସୀମାନଙ୍କ ଭିତରେ କାମ କରିବାକୁ ଯାଉଥିବା କର୍ମୀପାଇଁ ତା' କି କାମରେ ଆସିଛି ?

ଆଉ ମଧ୍ୟ ଅଧିକାଂଶ ଲେଖକ ଗୋପୀବାବୁଙ୍କ ଭାଷା, ଜୀବନ ଦର୍ଶନ, ଆଦିବାସୀର ସାଂସ୍କୃତିକ ଜୀବନ ଉପରେ ବିଶ୍ଳେଷଣ କରିଛନ୍ତି । କିନ୍ତୁ ତାଙ୍କ ଲେଖାରେ କୋରାପୁଟୀ ଆଦିବାସୀ ଜୀବନର ଯେଉଁ ଅର୍ଥ ନୈତିକ ଚିତ୍ର, ଯାହାକି ସେ ସମାଜର ଭିତ୍ତିଭୂମି, ସେ ସଂକ୍ରାନ୍ତରେ କେତେଜଣ ଲେଖିଛନ୍ତି ?

ତେଣୁ ଏହି ଅର୍ଥନୈତିକ ଜୀବନର ବିଭିନ୍ନ ବିଭାବକୁ ଭାଗଭାଗ କରି ୧୩ଟି ଅଂଶରେ ସାମାନ୍ୟ ଟିକିଏ ଟିକିଏ ସଂଯୋଜନା ଧର୍ମୀ ଉପକ୍ରମ ଓ ଉପସଂହାର ଦେଇ ଗୋପୀବାବୁଙ୍କ ବର୍ଣ୍ଣନା ବା ବକ୍ତବ୍ୟକୁ ଠିକେ ଠିକେ ଥୋଇଦେଲେ, ଜଣେ କର୍ମୀ ପାଇଁ ଏହା ଅତ୍ୟନ୍ତ ଉପାଦେୟ ହୁଅନ୍ତା । ଏହି ଭାବନାରୁ ହିଁ ଏହି ପ୍ରବନ୍ଧର ପରିକଳ୍ପନା । ଉଦାହରଣ ସ୍ୱରୂପ 'ହାଟ ଅର୍ଥନୀତି' । ଏହି କାଟିଗରିରେ ଅନ୍ତର୍ଭୁକ୍ତ ହେବ ଗୋପୀବାବୁଙ୍କ ବହିର ବିଭିନ୍ନ ସ୍ଥାନରେ ଏ ସଂକ୍ରାନ୍ତୀୟ ବର୍ଣ୍ଣନା କରାଯାଇଥିବା ବିଶେଷ ବିଭାବ । ଯାହାଫଳରେ ପାଠକ ସେ ଅର୍ଥନୀତିକୁ ବୁଝିପାରିବ ଓ ତା' ସଂଗେ ସଂଗେ କ୍ରେତା – ବିକ୍ରେତା ଉଭୟଙ୍କ ମାନସିକତା ତଥା ଏହା ପଛରେ ଥିବା ଲାଭକ୍ଷତିର

ଅଙ୍କକୁ ମଧ୍ୟ ଦେଖିପାରିବ । ତ ସେହିପରି ଆସାମକାରିଆ ପ୍ରଥା, ଗୋତି ବ୍ୟବସ୍ଥା, ରୋଡ଼ କୁଲିକାମ, ବଘେଇ ଅର୍ଥନୀତି ଇତ୍ୟାଦି । ଯେପରିକି ଏହା ଜଣେ ଆଦିବାସୀ ସମାଜସେବୀ ବା ରାଜନୈତିକ କର୍ମୀର ହେଣ୍ଡବୁକ୍ ହୋଇପାରିବ । ଅବଶ୍ୟ ଆଉଜଣେ ଗୋପୀବାବୁ ବାହାରି ପାରିଥିଲେ ହୁଏତ ଏଭଳି ପ୍ରବନ୍ଧର ଆବଶ୍ୟକତା ନଥାନ୍ତା । ଦୁର୍ଭାଗ୍ୟକୁ ଓଡ଼ିଶାରେ ତା' ସମ୍ଭବ ହୋଇପାରିନି । ଏପରିକି ଖୋଦ୍ ଗୋପୀବାବୁଙ୍କ ଜୀବନ କାଳରେ ମଧ୍ୟ ତାଙ୍କ 'ମାଟି ମଟାଳ' ଯେତିକି ପ୍ରଶଂସା ଓ ପ୍ରଚାର ପାଇଛି, ପରଜା ବା ଶିବୁଭାଇ ବା 'ଦାଦିବୁଢ଼ା' ତା'ର କାଣିଚାଏ ପାଇ ପାରିନି । ଯାହାଫଳରେ ସାଂପ୍ରତିକ ଲେଖକମାନଙ୍କ ପାଇଁ ତା' ଅନୁସରଣୀୟ ହୋଇପାରିଲା ନାହିଁ । ଓଡ଼ିଆ ସାହିତ୍ୟର ଇତିହାସକାର ମାୟାଧର ମାନସିଂହଙ୍କ ସହ ଥରେ 'ଅମୃତର ସନ୍ତାନ' ଉପରେ ଆଲୋଚନା ହେଉଥିବା ବେଳେ, ଗୋପୀବାବୁ କିପରି ଅଦ୍ୱୈତ ବେଦାନ୍ତର ଦାର୍ଶନିକ ତତ୍ତ୍ୱକୁ ସରବୁ ସାଓଁତା ବୁଢ଼ାର ଜୀବନଦର୍ଶନରେ ପୂରାଇ ଦେଇଛନ୍ତି, ସେ କଥା ଉଲ୍ଲେଖକରି କଟୁଭାଷାରେ ତାଙ୍କ ନିନ୍ଦା କରିଥିଲେ । ଆଉ ଯେଉଁମାନେ ତାଙ୍କର ପ୍ରଶଂସା କରୁଚନ୍ତି, ଆଦିବାସୀ ଜୀବନଧାରାଠାରୁ ସେମାନେ ଏତେ ବିଚ୍ଛିନ୍ନ ଯେ, ତାଙ୍କ ପ୍ରଶଂସାର କିଛି ପ୍ରାସଙ୍ଗିକତା ରହୁନାହିଁ ।

ସୁତରାଂ ଆଦିବାସୀମାନଙ୍କ ସହ ବେଶ୍‌କିଛି ପରିମାଣରେ ଏକାତ୍ମ ହୋଇଥିବା ଏଇ ଦରଦୀ ବାସ୍ତବବାଦୀ ଲେଖକଟି ପାଖରୁ ସିଧାସଳଖ କିଛି ଶିଖିବା ପାଇଁ ଓ ଶୁଣିବା ପାଇଁ ପାଠକମାନଙ୍କ ଆଗରେ ଏକ ସଂଯୋଜନାଧର୍ମୀ ପ୍ରବନ୍ଧ ଉପସ୍ଥାପନା କରିବାରେ କାହାରି ବା କାହିଁକି ଆପତ୍ତି ରହିବ ? ଆଉ କାହିଁକି ବା ଏହା ଅଧ୍ୟାପକୀୟ ହେବ ।

ଆଶା କରେ, ସମ୍ପାଦକ ମହାଶୟ ମୋର ଏଇ ଅବିମୃଷ୍ୟକାରିତା ପାଇଁ କ୍ଷମା କରିବେ । ଏହା ପ୍ରକୃତପକ୍ଷେ ଏ ଲେଖକର ଆତ୍ମନିରୀକ୍ଷଣ । ଆଉ ଯେଉଁ ଲେଖା (ଗୋପୀବାବୁଙ୍କ ଲେଖାରେ କୋରାପୁଟ୍ ଆଦିବାସୀର ଅର୍ଥନୈତିକ ଜୀବନ)ଟି ଉପରେ ମୋର ଏକ ପ୍ରତିକ୍ରିୟା, ତାହା ଯଦି କମ୍ୟୁନିଷ୍ଟ ବିପ୍ଳବୀ, ସମାଜସେବୀ ଓ ଖୋଦ୍ ଜଣେ ଆଦିବାସୀର କାମରେ ଲାଗି ପାରନ୍ତା କେତେ ଉତ୍ତମ ନ ହୁଅନ୍ତା ସତରେ ।



# ଗୋପୀବାବୁଙ୍କ ଲେଖାରେ କୋରାପୁଟୀ ଆଦିବାସୀର ଅର୍ଥନୈତିକ ଜୀବନ

ଓଡ଼ିଆ ସାହିତ୍ୟରେ ଅବିଭକ୍ତ କୋରାପୁଟର ଚିତ୍ର ଏକାନ୍ତ ବିରଳ । ପାହାଡ଼, ପର୍ବତ, ଗିରିନଦୀ, ଜଳପ୍ରପାତ ଓ ସୁନ୍ଦର ସୁନ୍ଦର ଉପତ୍ୟକାଭରା ଏହି ଚାରୋଟି ଜିଲ୍ଲା ବନ୍ୟପ୍ରକୃତିର ଲୀଳାଭୂମି ରୂପେ ଆଜି ମଧ୍ୟ ବିଖ୍ୟାତ । ଓଡ଼ିଶାର ଅନ୍ୟ ଅଞ୍ଚଳର ଲୋକେ ଏବେ ମଧ୍ୟ କୋରାପୁଟ ସମ୍ପର୍କରେ କିମ୍ଭୂତ କିମ୍ଭାକାର ଧାରଣାର ବାଶବର୍ତ୍ତୀ । କୋରାପୁଟ ଭିତରକୁ ସୁଗମ ପ୍ରବେଶର ବାଧକ ରୂପେ ଚିରଦିନ ରହିଆସିଛି ବାଘ, ରୋଗ ଓ ପର୍ବତ । କୋରାପୁଟର ଦ୍ୱିତୀୟ ଗେଜେଟିଅର୍ ଲେଖକ ଆର୍.ସି.ବେଲ୍‌ଙ୍କ ଭାଷାରେ "ଏହି ଅଞ୍ଚଳର ଆକର୍ଷଣ କିନ୍ତୁ କଳାଜ୍ୱର ଓ ମ୍ୟାଲେରିଆର ପ୍ରାବଲ୍ୟ ସକାଶେ ବହୁ ପରିମାଣରେ ବାଧାପ୍ରାପ୍ତ ହୋଇଛି ।" କୁହାଯାଏ ଯେ, ଏଠାକାର ପାଣି ସୁଦ୍ଧା ପିଇଦେଲେ ମ୍ୟାଲେରିଆ ହୋଇଯାଏ ।

୧୭୬୫ ମସିହାରେ ଲର୍ଡ଼କ୍ଲାଇବ୍ ମୋଗଲ ବାଦ୍‌ଶାହଙ୍କଠାରୁ ଏକ ସନନ୍ଦ ବଳରେ ଏହି ଅଞ୍ଚଳର ଶାସନ କ୍ଷମତା ପାଇଥିଲେ ହେଁ ଏବଂ ୧୭୬୯ ବେଳକୁ ବିଶାଖାପାଟଣାକୁ ଏହି ଅଞ୍ଚଳର ଜିଲ୍ଲା ମହକୁମା ରୂପେ ଘୋଷଣା କରାଯାଇଥିଲେ ମଧ୍ୟ, ଶହେବର୍ଷ ପରେ ଅର୍ଥାତ୍ ୧୮୭୯ ସୁଦ୍ଧା ବ୍ରିଟିଶ୍ ସରକାର ଏଠାରେ ସାଧାରଣ ପ୍ରଶାସନ ପ୍ରତିଷ୍ଠା କରିପାରି ନଥିଲେ । ବ୍ରିଟିଶ୍‌ସରକାର ଯେତେଥର ଏଠାରେ ପ୍ରଶାସନ ପ୍ରଚଳନର ଚେଷ୍ଟା କରିଥିଲେ, ତାହା ବିଭିନ୍ନ ଆଦିବାସୀ ଗୋଷ୍ଠୀଙ୍କର ବିଦ୍ରୋହ ସକାଶେ ବ୍ୟାହତ ହୋଇଥିଲା । ୧୮୧୯ରେ ରେଭିନ୍ୟୁବୋର୍ଡ଼ର ଜଣେ ସଭ୍ୟ ମିଷ୍ଟର 'ଆକେରେ' ଏହି ଅଞ୍ଚଳକୁ "ପାହାଡ଼ ଜଙ୍ଗଲଭରା ଏକ ବିରାଟ ଭୂଖଣ୍ଡ, ଯାହାକି ଅସଭ୍ୟ ଓ ପ୍ରକୃତରେ ଅଜେୟ ବର୍ବରମାନଙ୍କ ଦ୍ୱାରା ଅଧ୍ୟୁଷିତ" ବୋଲି ରିପୋର୍ଟ

ଦେଇଥିଲେ । ସେ ପୁଣି ଲେଖିଥିଲେ, "ସେମାନଙ୍କ ପରିପାର୍ଶ୍ୱ ଓ ଦାରିଦ୍ର୍ୟ ସେମାନଙ୍କୁ ଅଜେୟ ହେବାରେ ସାହାଯ୍ୟ କରିଛି । ଏହା ଉପରେ ବିଜୟ ହାସଲ କରିବାକୁ କୌଣସି ସ୍ଥାନୀୟ ରାଜା ବିଶେଷ ଲାଳାୟିତ ହେବାକୁ ଲାଭଦାୟକ ମନେ କରିନାହାନ୍ତି । ସୁତରାଂ ଗଣ୍ଡ ଓ ବନ୍ୟପଶୁମାନଙ୍କର ବିଚରଣ ଭରା ଏହି ଅଞ୍ଚଳ ପୃଥିବୀର ଏକ 'ନଷ୍ଟକୋଣ' ରୂପେ ପରିତ୍ୟକ୍ତ ହୋଇଛି । ଏହାର ସୀମା ଏବେବି ଅଜଣା । ଅଭିଯାନକାରୀମାନଙ୍କର ପାଦ ଏଠାରେ ଆହୁରି ପଡ଼ି ପାରିନାହିଁ । ମାନଚିତ୍ରର ଏହି ସ୍ଥାନ ଏବେ ମଧ୍ୟ ଶୂନ୍ୟ ।"

୧୮୦୨ ମସିହାରେ ସ୍ଥାୟୀ ବନ୍ଦୋବସ୍ତ ଏଠାରେ ଆଦୌ କାର୍ଯ୍ୟକାରୀ ହୋଇ ନ ପାରିବାରୁ ୧୮୩୯ ମସିହା ବେଳକୁ ସମୁଦାୟ ବିଶାଖାପାଟଣା ଜିଲ୍ଲାକୁ (ଯେଉଁଥିରେ ଅନ୍ତର୍ଭୁକ୍ତ ଥିଲା କୋରାପୁଟ) ଏଜେନ୍ସି ଅଞ୍ଚଳ ଆଇନ୍‌ର ଅନ୍ତର୍ଭୁକ୍ତ କରି ଏହାର ଖଜଣା ଆଦାୟ ଓ ପ୍ରଶାସନ ଭାର ଜିଲ୍ଲାପାଳଙ୍କୁ ଅର୍ପଣ କରାଗଲା । କିନ୍ତୁ ଏହି ଆଇନ୍‌ର ପ୍ରୟୋଗ କଲାବେଳେ ୧୮୬୪ରେ ଗୁଣୁପୁର ଓ ପଟ୍ଟାସିଙ୍ଗିର ଶବର ବିଦ୍ରୋହ ଓ ୧୮୭୯-୧୮୯୦ରେ ମାଲ୍‌କାନ୍‌ଗିରିର କୋୟା ବିଦ୍ରୋହ ବହୁ ପ୍ରତିବନ୍ଧକ ସୃଷ୍ଟିକଲା । ବ୍ରିଟିଶ୍‌ସରକାର ବିରୋଧରେ ଆଦିବାସୀମାନେ୍ ବହୁ ସ୍ଥାନରେ ସଶସ୍ତ୍ର ବିଦ୍ରୋହ ଘୋଷଣା କଲେ । ଜୟପୁର ରାଜା ବିକ୍ରମଦେବଙ୍କ ସହଯୋଗରେ ୧୮୯୦ସୁଦ୍ଧା ଏ ସମସ୍ତ ବିଦ୍ରୋହକୁ ଦମନ କରି ଓ ପ୍ରାୟ ୧୦ବର୍ଷରୁ ଊର୍ଦ୍ଧ୍ୱ ଚାଲିଥିବା ଫିତୁରିର ନେତା ତାମାଦୋରାଙ୍କୁ ହତ୍ୟାକରି ଓ ମାଲ୍‌କାନ୍‌ଗିରିର ବିଦ୍ରୋହୀ ରାଣୀ ବାଙ୍ଗୁରୁଦେବୀଙ୍କୁ ନିର୍ବାସିତ କରି ବ୍ରିଟିଶ୍‌ସରକାର ନିଜର ଶାସନ ପ୍ରତିଷ୍ଠା କରିଥିଲା । କିନ୍ତୁ ତଥାପି ବିଦ୍ରୋହ ବନ୍ଦ ହୋଇ ନଥିଲା । ୧୯୮୨ରେ ଘାଟିଡ଼ିଆଁମାନଙ୍କ ବିରୋଧରେ କନ୍ଧମାନଙ୍କର ବିଦ୍ରୋହ, ଶିସ୍ତୁ ବା ଖଜଣା ଆଦାୟ ବିରୋଧରେ ୧୯୧୦-୧୧ ବସ୍ତର ସୀମାରେ କୋୟାବିଦ୍ରୋହ ଓ ୧୮୨୨-୨୪ ଆଲୁରି ସୀତାରାମାୟା ରାଜୁଙ୍କ ସଶସ୍ତ୍ର ଫିତୁରି ଏବଂ ୧୯୩୨ ବେଳକୁ ନାରାୟଣ ପାଟଣାରେ ପାଇକବିଦ୍ରୋହ ବ୍ରିଟିଶ୍ ଶାସନକୁ ଦୋହଲାଇ ଦେଇଥିଲା । ଏଜେନ୍ସି ଅଞ୍ଚଳ ଆଇନ୍‌କୁ ଏ ସମସ୍ତ ଫିତୁରି ପ୍ରବଳ ଭାବେ ବିରୋଧ କରିଥିଲା ।

ଜାତୀୟ ଆନ୍ଦୋଳନରେ ମଧ୍ୟ କୋରାପୁଟ ଥିଲା ଅଗ୍ରଣୀ । ବିଶେଷକରି ୧୯୪୨ରେ 'କର ବା ମର' ଆନ୍ଦୋଳନରେ ପାପଡାହାଣ୍ଡି ଓ ମାଥିଲି ଅଞ୍ଚଳ ପ୍ରଜ୍ୱଳିତ ହୋଇଉଠିଥିଲା । ପାପଡ଼ାହାଣ୍ଡିଠାରେ ପୁଲିସ୍ ଗୁଳିରେ ୨୭ଜଣ ଆଦିବାସୀ ସହିଦ୍

ହୋଇ ଓ ଶହଶହ ଲୋକ ଆହତ ହୋଇ 'ତୁରୀ' ନଦୀର ପାଣିକୁ ଲାଲ୍ କରିଦେଇଥିଲେ । ସେହିପରି ମାତିଲିଠାରେ ହଜାର ହଜାର କନ୍ଧ, କୋୟା ଓ ଅନ୍ୟାନ୍ୟ ଆଦିବାସୀଙ୍କୁ ନେଇ ମାତିଲି ଥାନା ଘେରାଉ କରିବା ପରେ ଏହି ଆନ୍ଦୋଳନରେ ପୁଲିସ୍ ଗୁଳିରେ ଅନେକ ପ୍ରାଣ ଦେଲେ ଏବଂ ଆଦିବାସୀ ନେତା ଲକ୍ଷ୍ମଣ ନାୟକ ଏକ ଫରେଷ୍ଟଗାର୍ଡ଼ ହତ୍ୟା ଅଭିଯୋଗରେ ଫାଶିଖୁଣ୍ଟରେ ଚଢ଼ିଲେ । ବିଭିନ୍ନ ମିଥ୍ୟା ଅଭିଯୋଗରେ ଶହଶହ ଲୋକ ଜେଲ୍ ବରଣ କରିଥିଲେ ।

ଅବିଭକ୍ତ କୋରାପୁଟ ଜିଲ୍ଲାର ମୁଖ୍ୟ ଆଦିବାସୀ ଗୋଷ୍ଠୀ ହେଲେ ଦ୍ରାବିଡ଼ୀୟ ପରିବାରର କନ୍ଧ, ପରଜା, ଗଣ୍ଡ ଓ କୋୟା ଏବଂ ମୁଣ୍ଡା ପରିବାରର ଶବର ଓ ଗଦବା । ଏହାକୁ ଛାଡ଼ି ରହିଛନ୍ତି ବଣ୍ଡା, ଡିଡ଼ୋୟୀ, ଭୂମିଆ, ମାଟିଆ, ଭତୋଡ଼ା, ଦୁରୁଆ, ହାଲ୍‌ବା, ରଣା ଓ ଗଉଡ଼ ଆଦି ଅନେକ ଜନଜାତି । ଏମାନଙ୍କର ଭାଷା, ସଂସ୍କୃତି ଓ ଚଳଣି ପରସ୍ପରଠାରୁ ଅଲଗା ହେଲେ ହେଁ ଅର୍ଥନୈତିକ ଜୀବନ ଏକାପରି । ସାହୁକାର, ଠିକାଦାର ଓ ସରକାରୀ କର୍ମଚାରୀମାନଙ୍କ ପାଇଁ ଏହା ହେଉଛି ଏକ ସ୍ୱର୍ଗରାଜ୍ୟ । ସରକାରଙ୍କ କୌଣସି ଆଦିବାସୀ ବିକାଶ ଯୋଜନା କିମ୍ବା ଆଦିବାସୀ ନିର୍ଯାତନା ବିରୋଧୀ ଆଇନ୍ ଏମାନଙ୍କ ଶୋଷଣକୁ ଆଜିପର୍ଯ୍ୟନ୍ତ ରୋକି ପାରିନାହିଁ । ବରଂ ଟାଣ କରିଛି ।

୧୮୬୯ ମସିହାରେ କାର୍ମିକେଲ ସାହେବ ବିଶାଖାପାଟଣା ଜିଲ୍ଲା ମାନୁଏଲ୍‌ରେ ପ୍ରଥମକରି କୋରାପୁଟ ସମ୍ପର୍କରେ କିଛିଟା ପରିଚିତି ସଭ୍ୟଜଗତକୁ ଦେଇଥିଲେ । ପରେ ପରେ ୧୯୦୭ରେ ଡବ୍‌ଲ୍ୟୁ ଫ୍ରାନ୍‌ସିସ୍(ଆଇ.ସି.ଏସ୍.), ୧୯୪୧ରେ ଆର.ସି.ଏସ୍.ବେଲ୍, (ଆଇ.ସି.ଏସ୍.) ଓ ୧୯୬୫ରେ ନୀଳମଣି ସେନାପତି (ଆଇ.ସି.ଏସ୍.)ଙ୍କ ଜିଲ୍ଲା ଗେଜେଟିଅର ଏ ସମ୍ପର୍କରେ ଅଧିକ ଆଲୋକପାତ କରିଛି । ନୃତତ୍ତ୍ୱବିତ୍ ଓ ସମାଜତତ୍ତ୍ୱବିତ୍‌ମାନେ ଏଠାକାର ଆଦିବାସୀମାନଙ୍କୁ ଏକ ଯାଦୁଘରର ଜିନିଷ ରୂପେ ଦେଖି ଓ ପରଖି ଆସୁଛନ୍ତି । ମାନବ ସଭ୍ୟତାର ବିକାଶର ଯେଉଁ ସ୍ତରରେ ଏଠାକାର ଆଦିବାସୀମାନେ ରହିଯାଇଛନ୍ତି, ତାହାକୁ ପରିହାସ କରି ଚିତ୍ରଣ କରିବା ଏବଂ ଅଯଥା ବାହାବା ଦେବାରେ ଏମାନଙ୍କ କ୍ରିୟାକାଣ୍ଡ ସୀମିତ ହୋଇ ରହିଯାଇଛି । ତଥାକଥିତ ନୃତାତ୍ତ୍ୱିକ ଓ ସାଂସ୍କୃତିକ ଦିଗକୁ ଛାଡ଼ିଦେଲେ ଅନ୍ୟାନ୍ୟ ଦିଗ ପ୍ରତି ଏମାନେ ସାମାନ୍ୟତମ ଧ୍ୟାନ ଦେଇ ନାହାନ୍ତି ।

ଅଥଚ ସଂସ୍କୃତି ହେଉ ବା ସଭ୍ୟତା ହେଉ, ସବୁର ମୂଳଦୁଆ ହେଉଛି ଅର୍ଥନୀତି । ୧୯୩୬ରେ ଓଡ଼ିଶା ସହ ମିଶି ଏକ ସ୍ୱତନ୍ତ୍ର ଜିଲ୍ଲାର ମର୍ଯ୍ୟାଦା ପାଇବା ପରେ ମଧ୍ୟ ୧୦,୪୯୮ବର୍ଗ ମାଇଲ୍ ପରିମିତ ଏହି ବିଶାଳ ଅଞ୍ଚଳ ଅର୍ଥନୈତିକ ଭାବେ ଏକ ପଛୁଆ ଅଞ୍ଚଳ ହୋଇ ରହିଛି । ଏଠାକାର ଆଦିବାସୀମାନଙ୍କର ଅର୍ଥନୈତିକ ଜୀବନ ପୂର୍ବବତ୍ ରହିଆସିଛି । ନିରକ୍ଷରତାର ହାର ସରକାରୀ ଭାବରେ ଯାହାହେଉନା କାହିଁକି ବାସ୍ତବରେ ଶତକଡ଼ା ୮୫ଭାଗ ଆଦିବାସୀ ନିରକ୍ଷର । ଏବେ ମଧ୍ୟ ଗୋଟାଏ ଗାଁରେ ଜଣେ ପାଠୁଆ ପିଲା ପାଇବା କାଠିକର ପାଠ । ସେମାନଙ୍କର ଏହି ନିରକ୍ଷରତା ଓ ସରଳ ବିଶ୍ୱାସ ହିଁ ହେଉଛି ସବୁପ୍ରକାର ଶୋଷଣର ମୂଳ । କୋରାପୁଟ୍‌ର ଆଦିବାସୀମାନଙ୍କର ଏହି ଅର୍ଥନୈତିକ ଜୀବନ ବିଷୟରେ ଗୋପୀ ମହାନ୍ତିଙ୍କ ଉପନ୍ୟାସଗୁଡ଼ିକ ଯେଉଁସବୁ ଚିତ୍ର ଦେଇଛନ୍ତି, ତାହା ଏକାନ୍ତ ପ୍ରଣିଧାନଯୋଗ୍ୟ । ଆଦିବାସୀମାନଙ୍କ ଜୀବନ ସହ ନିଜକୁ ସାମିଲ୍ କରିନେଇ ଗୋପୀବାବୁ ଏ ସମ୍ପର୍କରେ ଅନେକ ପ୍ରାମାଣିକ ତଥ୍ୟ ଉପସ୍ଥାପନ କରିଛନ୍ତି । ତାଙ୍କ 'ଦାଦିବୁଢ଼ା' ଲେଖା ହେବାର ସମୟ ୧୯୪୪ । ପୃଷ୍ଠଭୂମି ହେଉଛି ମୁରାନ୍‌ନଦୀ ଯେଉଁଠି ଓସାରିଆ ହୋଇଆସିଛି, ସେଇ ପାଖରେ ଥିବା ଲୁହା ଗାଁ ଅର୍ଥାତ୍ କାମ୍‌ତା-କୁମୁଲି-ବିସିଙ୍ଗପୁର ଅଞ୍ଚଳ । ଏଇ ମୁରାନ୍‌ନଈ ଦଶମନ୍ତପୁର ଅଞ୍ଚଳରୁ ବାହାରି ଇନ୍ଦ୍ରାନପୁରଠାରେ ଇନ୍ଦ୍ରାବତୀ ସହ ମିଶିଛି । ଏବକୁ ଏଠାରେ ବିରାଟ ବନ୍ଧ ନିର୍ମାଣ ହୋଇଛି । ଉପର ଇନ୍ଦ୍ରାବତୀ ବହୁମୁଖୀ ବନ୍ଧ ଯୋଜନା । 'ପରଜା'ର ରଚନାକାଳ ୧୯୪୫ । ପୃଷ୍ଠଭୂମି ରାୟଗଡ଼ା - କୋରାପୁଟ ମଝିରେ ପଡୁଥିବା ଲକ୍ଷ୍ମୀପୁର ଅଞ୍ଚଳ । ଏ ଉଭୟ ଉପନ୍ୟାସର ଚରିତ୍ର ଓ ନାୟକମାନେ ହେଉଛନ୍ତି ପରଜା ଗୋଷ୍ଠୀର । କୋରାପୁଟ ଉପରେ ଗୋପୀବାବୁଙ୍କର ତୃତୀୟ ଉପନ୍ୟାସ 'ଅମୃତର ସନ୍ତାନ'ର ରଚନାକାଳ ୧୯୪୯ । ପୃଷ୍ଠଭୂମି ରାୟଗଡ଼ା ଅଞ୍ଚଳର ଏକ କନ୍ଧ ଗାଁ - ମଣିଆପାୟୁ । 'ଶିବୁଭାଇ' ଉପନ୍ୟାସର ରଚନା କାଳ ୧୯୫୫ । ପୃଷ୍ଠଭୂମି ମୁନିଗୁଡ଼ା - ଚନ୍ଦ୍ରପୁର ମାଳଅଞ୍ଚଳର ଗୋଟିଏ ଛୋଟିଆ ଗାଁ, ଡୁମ୍ରିଗୁଡ଼ା । ଏ ଉଭୟ ଉପନ୍ୟାସର ନାୟକମାନେ କନ୍ଧଗୋଷ୍ଠୀର । ଏହାକୁ ଛାଡ଼ି କୋରାପୁଟ ପୃଷ୍ଠଭୂମିରେ ଲିଖିତ 'ଟଡ଼୍‌ପା' 'ଅପହଞ୍ଚ' ଓ 'ଶରତବାବୁଙ୍କ ଗଳି'କୁ ଏହି ଆଲୋଚନା ଭିତରକୁ ଅଣାଯାଇ ନାହିଁ । କାରଣ କୋରାପୁଟ ଅର୍ଥନୈତିକ ଜୀବନର ଚିତ୍ର ସେଥିରେ ଖୁବ୍ ଅସ୍ପଷ୍ଟ । ସେହିପରି ବିଷୟବସ୍ତୁ ବା ଦାର୍ଶନିକ ଦୃଷ୍ଟିଭଙ୍ଗୀ ଇତ୍ୟାଦି ଉପରେ ମଧ୍ୟ ଏଠାରେ ଆଲୋଚନା କରାଯାଇ ନାହିଁ । କୋରାପୁଟୀ ଆଦିବାସୀର ଅର୍ଥନୈତିକ

ଜୀବନକୁ ଯେପରି ଭାବେ ଗୋପୀବାବୁ ଦେଖିଛନ୍ତି ଓ ଅନୁଭବିଛନ୍ତି, ତାହାହିଁ ଠିକେଠିକେ ଏଠାରେ ଉଲ୍ଲେଖ କରିବାର ଚେଷ୍ଟା ହୋଇଛି । ବିଶେଷ ବିଶ୍ଳେଷଣ କି ତର୍ଜମା କରାଯାଇ ନାହିଁ କି ବର୍ତ୍ତମାନର ଅର୍ଥନୈତିକ ଜୀବନ ସହ ବିଶେଷ ତୁଳନା କରାଯାଇନାହିଁ । କାରଣ ମୋର ଅନୁଭବ, ଗୋପୀବାବୁ ଦେଖିଥିବା କୋରାପୁଟ୍‌ର ଶୋଷଣଭିତ୍ତିକ ଅର୍ଥନୀତିରେ କିଛି ମୌଳିକ ପରିବର୍ତ୍ତନ ହୋଇନାହିଁ । ବରଂ ତା' ବୃଦ୍ଧି ପାଇଛି - ଅଧିକ ଜଟିଳ ହୋଇଛି । ତିନି ଶେଣୀରେ ଏବେ ପାଣି ଉଠୁଛି । ଶୋଷକଶ୍ରେଣୀର ସରହଦ ବଢ଼ିଛି । ସେଥିରେ ଯୋଗ ଦେଇଛନ୍ତି କିଛି ଅମଲା, କିଛି ଠିକାଦାର, କିଛି ବଙ୍ଗଳାଦେଶାଗତ ଶରଣାର୍ଥୀ ଓ ରିଜାର୍ଭେସନ୍ ନିୟମ ଦ୍ୱାରା ଉପକୃତ ହୋଇଥିବା କିଛି ଆଦିବାସୀ ଓ ଦଳିତ । ଅର୍ଥାତ୍ ଯାହାକିଛି ପରିବର୍ତ୍ତନ ଆସିଛି ତାହା କେବଳ ଢାଞ୍ଚାରେ କିମ୍ବା ନିର୍ବାଚନୀ ରାଜନୀତିର ଓ ବିକାଶ ଯୋଜନା ଅର୍ଥନୀତିର ବାଧ୍ୟ ବାଧକତାରେ । ସୁତରାଂ ନୂଆ ବୋତଲରେ ସେଇ ପୁରୁଣା ମଦ । (ଅବଶ୍ୟ ଏହି ବିଷୟଟି ଅନ୍ୟତ୍ର ବିଶ୍ଳେଷଣ କରାଯାଇଛି ।) ତେଣୁ ଏନେଇ ଗୋପୀବାବୁଙ୍କ ବିଦ୍ରୋହୀ ମାନବବାଦୀ ଲେଖକାତ୍ମାର ଅନୁଭବ, କଳନା, ଅଭିଜ୍ଞତା ଓ ଚିନ୍ତା-ଚେତନା ସହ ଏକାତ୍ମ ହେବାପାଇଁ ଏହି ନିବନ୍ଧର ଯୋଜନା । ଆଶାକରେ କେରାପୁଟ ସହ ସଂପୃକ୍ତ ବା ପରିଚିତ ପାଠକ ଓ କର୍ମୀମାନେ ଏଥିରେ ଶୋଷିତ ଆଦିବାସୀବର୍ଗ ସମ୍ପର୍କରେ ଏକ ସ୍ୱଷ୍ଟ ପ୍ରାଥମିକ ଧାରଣା ପାଇପାରିବେ ଏବଂ ବର୍ତ୍ତମାନର ଆଦିବାସୀ ସମାଜ ପ୍ରତି ଦରଦଭରା ଅଥଚ ଶାଣିତ ଅନ୍ତର୍ଦୃଷ୍ଟି ଲାଭ କରିପାରିବେ । ଫଳରେ ତଦନୁଯାୟୀ ଆପଣାର କର୍ମସୂଚୀ ତଥା କାର୍ଯ୍ୟପନ୍ଥା ନିର୍ଣ୍ଣୟ କରିପାରିବେ ।

କୋରାପୁଟୀ ଆଦିବାସୀର ଅର୍ଥନୈତିକ ଜୀବନକୁ ନିମ୍ନମତେ ବାରଟି ଭାଗରେ ବିଭକ୍ତ କରାଯାଇଛି । କେବଳ ଚତୁର୍ଥଭାଗରେ ଏକ ଉପଭାଗ ରଖାଯାଇଛି । ସେଗୁଡ଼ିକ ହେଲା - ୧.ରଜା ସାହୁକାର - ରଇତ ସମ୍ପର୍କ, ୨.ସାହୁକାର ଓ ଗୋତି, ୩. ଜମାନ୍ ବା ସରକାରୀ କର୍ମଚାରୀ, ଅଧିକାରୀ ଓ ଆଦିବାସୀ, ୪.ବାହାର ସଭ୍ୟତାର ଆକ୍ରମଣ : ବାହାର ସଭ୍ୟତା ଓ ଆଦିବାସୀ ସଭ୍ୟତାର ଦ୍ୱନ୍ଦ୍ୱ, ୫.କୁଲିଜୀବନ : ଆସାମ ଚା'ବଗିଚାକୁ କୁଲି ଚାଲାଣ, ୬.ବେପାରୀ ଜୁଲୁମ ଓ ହାଟ ଅର୍ଥନୈତିକ, ୭.ଜଙ୍ଗଲ ଓ ଭୂମି ଅର୍ଥନୀତି, ୮.ବିବାହ ଓ ପର୍ବପର୍ବାଣୀ ଅର୍ଥନୀତି, ୯.ବିଭିନ୍ନ ଗୋଷ୍ଠୀ ଜୀବନ - ଖାଦ୍ୟ, ପୋଷାକ, ଚଳଣି - ଦାରିଦ୍ର୍ୟ ଓ ପରମ୍ପରାର ସମ୍ପର୍କ, ୧୦.ଧର୍ମ ଓ

ଜାତିପ୍ରଥା, ଅନ୍ଧବିଶ୍ୱାସ ଓ ଶୋଷଣ, ୧୧.ବାଘ, ବଘେଇ ଓ ଗ୍ରାମ୍ୟ ଅର୍ଥନୀତି, ୧୨.ଭୌଗୋଳିକ ଅର୍ଥନୀତି, ୧୩.ଶ୍ରେଣୀ ଚେତନା, ଶ୍ରେଣୀ ଘୃଣା ଓ ଶ୍ରେଣୀ ସଂଘର୍ଷ ।

ଏହିସବୁ ବିଭିନ୍ନ ଭାଗର ଆରମ୍ଭରେ ଆବଶ୍ୟକ ସ୍ଥଳେ କିଛିଟା ସୂଚନା ଓ ବିଶ୍ଳେଷଣ ଦିଆଯାଇଛି, ଯାହା ଗୋପୀବାବୁଙ୍କ ଅନୁଧ୍ୟାନକୁ ସମନ୍ୱିତ କରିବାରେ ସାହାଯ୍ୟ କରିବ ।

**ଅର୍ଥନୈତିକ ଜୀବନର ସ୍ତର :** ଏଠାରେ ଆଦିବାସୀର ଅର୍ଥନୈତିକ ଜୀବନର ସ୍ତର ଉପରେ ଠାଏଁ ଗୋପୀବାବୁ କହିଛନ୍ତି, "ସଂଗ୍ରହ, ଶିକାର, ଚାଷ - ଏହି ତିନିପ୍ରକାର ଅବସ୍ଥାରେ(ସେ) ଅଦ୍ୟାପି ରହିଛି । କୌଣସି ଗୋଟାକରୁ ପୂର୍ଣ୍ଣଭାବରେ ଖସି ଯାଇପାରି ନାହିଁ ।" କୋରାପୁଟ ଜିଲ୍ଲାର ଅନେକ ପଛୁଆ ଆଦିବାସୀ ଗୋଷ୍ଠୀ ସମ୍ପର୍କରେ ଏଇ କଥା ହିଁ ସତ୍ୟ । ବଣ୍ଡା, ଡିଡୋୟୀ, ଡଂଗ୍ରିଆ କନ୍ଧ ଓ କୋୟା - ଅନ୍ତେ ବହୁତେ ଏ ସମସ୍ତେ ଉତ୍ପାଦନର ଏହି ତିନି ପ୍ରାଗ୍ ସାମନ୍ତବାଦୀ ଓ ସମାନ୍ତବାଦୀ ଅବସ୍ଥା ସହ ଜଡ଼ିତ । କାରଣ ଚାଷ ମଧ୍ୟ ଏଠାରେ ମୁଖ୍ୟତଃ କୋଡ଼କି ମାରୁ ଚଷ, ପୋଡୁଚଷ । ଆଉ ସେଇଥିରେ ହଜାରେ ଶ୍ରମ କଲାପରେ ଯେତେବେଳେ ଉପତ୍ୟକାର ଜମି ବା ଝୋଲାଜମି ପ୍ରସ୍ତୁତ ହୋଇଯାଏ, ସାହୁକାରର ଶୋଷଣ ଜାଲ ମଧ୍ୟ ବିଛା ହୋଇଥିଲେ ଓ ସେସବୁ ଜମିକୁ କବଳିତ କରିନିଏ । ତା'ପରେ ଆସେ ଟ୍ରାକ୍ଟର, ଅର୍ଥକାରୀ ଫସଲ, ସାର ଓ ଔଷଧ । ଏ ସମ୍ପର୍କରେ ବିଶଦ ଆଲୋଚନାକୁ ଯିବା ପୂର୍ବରୁ କୋରାପୁଟ୍‌ର ନାମକରଣରେ ଗୋପୀବାବୁ ଦେଇଥିବା ତଥ୍ୟ ପଛରେ ଥିବା ଏଇ ଘାଟିଡିଆଁ ସାହୁକାରମାନଙ୍କ ଶୋଷଣ ସମ୍ପର୍କରେ ଥିବା ଇଙ୍ଗିତକୁ ଦେଖାଯାଉ -

"ଏଇ କୋରାପୁଟ -

କେବେ କେଉଁ ଯୁଗରେ 'ରଣା'ଜାତିର ଲୋକେ ସାନ 'ପୁଟ' ବା ପଲ୍ଲୀ ବସେଇଥିଲେ । ପାହାଡ଼ ସନ୍ଧିରେ ସେ 'ରଣା' ଲୋକଙ୍କ ସାଙ୍ଗୀ ଥିଲା 'କରା' । ସେମାନଙ୍କ ଗୋତ୍ର 'କରା' ବା 'ଖରା' ଅର୍ଥାତ୍ ଠେକୁଆ ଗୋତ୍ର । ଏବେ ସେ ପୁରୁଣା 'କରା' ଘରର ଶେଷ ମୁରବି ଡମ୍ବୁରୁ କରା ଦୁଧ ବିକୁଛି, ତା'ର କରାପୁଟ ଥିଲା ଖଣ୍ଡେ ଛୋଟିଆ ପଲ୍ଲୀ, ଅର୍ଥାତ୍ ତା'ରି ଘରର ନାଁ ଏବେ ରହିଛି ଏଡ଼େବଡ଼ କୋରାପୁଟ ଗୋଟାକର । କରାଘର ଛିଣ୍ଡିଛି, କୋରାପୁଟ ବଢ଼ିଛି, ଅନାମତ ଗୋଟିଏ ଜିଲ୍ଲା । (ପରଜା, ପୃ.୪୦୫-୬)

୧. ରଜା ସାହୁକାର - ରଇତ ସମ୍ପର୍କ :

ନୀଳମଣି ସେନାପତି ତାଙ୍କର କୋରାପୁଟ ଜିଲ୍ଲା ଗେଜେଟିଅରରେ ଲେଖିଛନ୍ତି, "ଆଦିବାସୀମାନଙ୍କୁ ଠକେଇ ସାହୁକାରମାନେ ଜମି ମାରିନେବା ଓ ଠକି ହୋଇଥିବା ଆଦିବାସୀମାନେ ନ୍ୟାୟ ପାଇବା ପାଇଁ କୋର୍ଟକୁ ଧାଇଁ ବୁଲିବା ଘଟଣା ଅତି ସାଧାରଣ । ଗୁଣୁପୁର ତାଲୁକର ଶବରମାନଙ୍କର ୧୯୫୧-୫୨ ମସିହାର ଗଣଆନ୍ଦୋଳନ, ଜମି ପ୍ରତି ସେମାନ୍‌ଙ୍କର ଆକର୍ଷଣର ଏକ ଜ୍ୱଳନ୍ତ ନମୁନା ।" (ପୃ-୮୨)

ରାଜା, ସାହୁକାର ଓ ଆଦିବାସୀ ରଇତର ସମ୍ପର୍କ ହେଉଛି ମୁଖ୍ୟତଃ ପ୍ରତାରଣା ଓ ଶୋଷଣର ସମ୍ପର୍କ । ଜଣେ ଜୁଲୁମ୍ କରେ, ଆଉଜଣେ ପିଠି ପତାଇ ସହି ଚଲେ । ଜଣେ ଠକାଏ ଆଉଜଣେ ଠକିହୁଏ । ଧର୍ମକୁ ସାକ୍ଷୀରଖି ଆଦିବାସୀ ସବୁ ହଳାହଳକୁ ହଜମ୍ କରେ । କିନ୍ତୁ ଶୋଷକ ଶୋଷିତର ଏଇ ସମ୍ପର୍କରେ ଅର୍ଥାତ୍ ସହ୍ୟ କରିଚାଲିବା ପରେ ବେଳେବେଳେ ଫାଟ ଧରେ - ପାହାଡ଼ପର୍ବତ କମ୍ପିଉଠି ଅଗ୍ନି ଉଦ୍‌ଗୀରଣ ହୁଏ । ଗୋପୀବାବୁ ଏଇ ସାହୁକାର ଓ ରଇତର ସମ୍ପର୍କକୁ ବର୍ଣ୍ଣନା କରିଛନ୍ତି ଅତି ନିଖୁଣ ଭାବରେ । ଗୋପୀବାବୁ ଲେଖିଛନ୍ତି :

"କନ୍ଧର ଧାରଣାରେ ରଇତ ଦରିଦ୍ର ହେଉପଛେ, ରଜାଠୁ ତା'ର ଆଭିଜାତ୍ୟ ବେଶି । ରଜା ସାନଭାଇ, କନ୍ଧ ବଡ଼ଭାଇ । ବଡ଼ଭାଇ ଘୋଡ଼ା ଚଢ଼ିବ ବୋଲି ଛାଟ ଭାଙ୍ଗିବାକୁ ଯାଇଥିଲା, ସାନଭାଇ ଘୋଡ଼ା ପିଠିରେ ବସିଛୁ । ସେହିଦିନୁ ସେ ରଜା, ଠକ ସାନଭାଇ, ବଡ଼ଭାଇର ନ୍ୟାଯ୍ୟ ପ୍ରାପ୍ୟ ସେ ଛଡ଼େଇ ନେଇ ଗାଦିମାଡ଼ି ବସିପଡ଼ିଥିଲା । ବଡ଼ଭାଇ ରଇତ, ବଡ଼ଭାଇ କନ୍ଧ, ବଡ଼ଭାଇ ସରବୁ ସାଓଁତା । ସାନଭାଇ - ରଜାର ଅଦୋଉତିକୁ କ୍ଷମାକରି ଶିଖିଛି । ସାନଭାଇକୁ କମ୍ ଭଲପାଏ ନାହିଁ ସେ - ମାଲୁଆ ପାହାଡ଼ ପରି ଉଞ୍ଚ, ଆକାଶ ପରି ଉଦାର, ସରଳ କନ୍ଧିଆଭାଇ ।

ସମୟ ଗଡ଼ି ଯାଇଛି । କନ୍ଧିଆଭାଇ ତା'ର ପର୍ବତ ଉପରେ ଭଙ୍ଗା ପଲାରେ ବସି କାନ୍ଦେ । ତା'ର ପିଠିରେ ଚିଆଁଦାଗ, ମନରେ ଘାଆ, ପେଟରେ ଭୋକ । କିନ୍ତୁ ସେ ସହି ଶିଖିଛି, ସର୍ବସହଣୀ ମା' ଧର୍‌ତନିର ପୋର୍‌ହୁଆଁ ପୁଅ କନ୍ଧିଆଭାଇ" - (ପୃ.୧ଅ.ସ.)

"××ଦିନଦିନ ଦୁର୍ଭାଗ୍ୟ ବଢୁଛି । ତଳର ଜମିଗଲା, କନ୍ଧ ଚଢ଼ିଲେ ପର୍ବତରେ, ସେଠି ପରର ଆପଣାର ବୋଲି କିଛିନାହିଁ । ଏଣିକି ପରର ବୋଝ

ପରର ଜୁଆଳି, ଦେହକୁ କାଟେ, ମନକୁ କାଟେ । କନ୍ଧର ରାଜ୍ୟ ସରିଛି, ତା'ର ଦେଶ ଛିନ୍‌ଭିନ୍, ହୁଏତ ଦିନେ ଲୋକେ ଭୁଲିଯିବେ ଯେ କନ୍ଧ ବୋଲି କେହି କେବେ ଥିଲା ।"××

ରଜା ରଜା, ପରଜା, ପରଜା ଅବସ୍ଥା ମେଣ୍ଟୁନାହିଁ । ଜମି ଯାଉଛି, ଭାତ ଯାଇଛି, ଜାତି ଛିଣ୍ଡି ପଡୁଛି । କନ୍ଧ ବୋଲି ଜନ୍ମହେଲେ ଅପମାନ ସିନା, ମାନନାହିଁ । (ପୃ.୨-୩, ଅ.ସ.)

"ଟଙ୍କା ନିଅ ଭାଉ ପଟାଅ, କାଟିଲେ ଆମକୁ ମାପିଦେବ । ଏଠୁ ନେବାକୁ କ'ଣ କମି କଷ୍ଟ ? ଗାଡ଼ି ଖର୍ଚ୍ଚ, ବଳଦର ଖୋରାକି, ଗୋଡିର ମୂଲ, ବାଟରେ ଚୋରିହାରି, ଡକେଇତି ଭୟ ତ' ଅଛି, ତମର ଇଷ୍ଟ, ଏ ବରଷାକାଳରେ ଏତେ କଷ୍ଟକରି ତୁମରି ହିତ ପାଇଁ ଆମେ ଆସିଛୁଁ । ତୁମର ବେଶି ଲାଭହେବ । ଆମର ଅଳ୍ପ । ଘରିଧରମକୁ ଅନେଇ କହିଦେଲି, ତୁମେ ଭାବ ।" କୌଣସି ଗୋଟିଏ ଜନ୍ତୁର ଘରିଗୋଡ଼ ପରି ଘରିଧରମକୁ ନିଘାକରି ଗୁମାସ୍ତା କହିଦେଲା । ଘୋ ଘୋ ହୋଇ ସମସ୍ତେ ରାଜି ହୋଇଗଲେ । ଜନ୍ତୁ ଉଠି ଠିଆହେଲା । ବର୍ଷଯାକର କନ୍ଧର ଉତ୍ପାଦନ ପେଟରେ ପୂରେଇ ଠିଆହେଲା । ସାହୁକାର ଜାତିର ଉପକାରୀ, ରଇତ ଜାତିର କ୍ଷୟକାରୀ ବାହାଦୂର୍ ଜନ୍ତୁ ସେ, ବେପାରି ସମାଜରେ ତା'ର ନାଁ 'ଗଡ଼ମ୍', ଅର୍ଥାତ୍ ଫସଲ କଞ୍ଚା ଥିଲାବେଳେ ଶସ୍ତାରେ ଭାଉ ପଟେଇ ଦାଦନ ପକେଇ ପାଚିଲା ଫସଲ ବୋହି ନେବାକୁ ଖଞ୍ଜା । 'ଗଡ଼ମ', 'ଗୋଡି' ପ୍ରଥାର ବଡ଼ଭାଇ 'ଗଡ଼ମ' - ସାହୁକାର ଦୌଲତର ମୂଳଦୁଆ, ରଇତର ଭଙ୍ଗାହାଡ଼ ଉପରେ ତା'ର ଘରିଧରମ । (ପୃ.୫୦୬-୭, ଅ.ସ.)

"ସାହୁକାର ଜନାର୍ଦ୍ଦନ ବିଶୋଇର ପୁଅ ସାହୁକାର ରାମ ବିଶୋଇ ଜାତିରେ ଶୁଣ୍ଢି । କୋରାପୁଟ ଜିଲ୍ଲାର ଅଧିକାଂଶ ସାହୁକାର ହୁଏ ଶୁଣ୍ଢି ନ ହେଲେ କୁମୁଟି । ସାହୁକାର ଜନାର୍ଦ୍ଦନ ବିଶୋଇ ମହୁଲ, ମଦ ରନ୍ଧେଇ ବିକ୍ରି କରିବାକୁ ଯୋଡ଼ିଏ ପେଣ୍ଠ ଖୋଲିଥିଲା । ସେଥିରେ ସେ ଅନେକ ସମ୍ପତ୍ତି କମେଇ ଗଲା । ତା'ପରେ ସରକାର ମଦବେପାର ନିଜ ହାତକୁ ନେଲେ । ସାହୁକାର ରାମ ବିଶୋଇ ମଦବେପାର ଛାଡ଼ି ସାହୁକାରି ବେପାରରେ ମନଦେଲା । ସାହୁକାର ହେବାର ଚିହ୍ନସ୍ୱରୂପ ତା'ର ବାମ ହାତରେ ପଟେ ମୋଟା ସୁନାଖଡୁ ତା'ର ଭେକ । କାନରେ ଦି'ପଟି ସୁନା କୁଣ୍ଡଳ - ତା'ର ବଡ଼ତି । ବଡ଼ବଡ଼ ତୋରାଣି ଛଣା ନିଶ, ଗହଳ ଆଖିପତା ତଳେ ଗହୀର

ଗହୀର ଆଖି, କୁଟିଳ ଚହାଁଣୀ, ମୋଟାମୋଟା ଓଠ ଦି'ଫାଳିରେ ସବୁବେଳେ ହସ । ସେ ତା'ର ଚରିତ୍ର । ବୟସ - ପଇଁତ୍ରିଶ ।"

"ତା'ର ବେପାର ବଡ଼ ସହଜ । କାରଣ ତା'ଠି ଟଙ୍କା ଅଛି । ଟଙ୍କାର ଏପରି ଶକ୍ତି ଯେ, ବେଶି ଟଙ୍କା ଅଳ୍ପଟଙ୍କାକୁ ଓଟାରି ଘେନିଆସେ, ଆସୁପଛେ ସେଥିରେ ଲାଗି ସିନ୍ଦୂର ବା ରକ୍ତକାଦୁଅ ବା ମାଂସ, ଟଙ୍କାଟଙ୍କା ମେଣ୍ଟ ବାନ୍ଧେ, ଅଳ୍ପଟଙ୍କା ଟାଣିହୋଇ ଆସି ବେଶି ଟଙ୍କା ଦେହରେ ଲୀନ ହୋଇଯାଏ । ପାହାଡ଼ି ଜାତିଙ୍କର ଅଳ୍ପ ଅର୍ଥ, ସାହୁକାରର ବେଶି ଅର୍ଥ, କେବଳ ଟଙ୍କାମୁଣି ପଦାରେ ଝୁଲାଇ ରଖିଲେ ଆଖପାଖର ସବୁ ଅଳ୍ପଟଙ୍କା ସବୁ ଖୁଚୁରା ପଇସା ଝାଡ଼ି ଓଟାରି ହୋଇ ତହିଁରେ ଆସି ପଶିଯାଏ ।"

"ସାହୁକାର ଟଙ୍କା କରଜ ଦିଏ, କାରଣ ବିଭା ହେବାବେଳେ ବରକନ୍ୟାର ବାପାକୁ ଦି'କୋଡ଼ି ତିନିକୋଡ଼ି ଟଙ୍କା ଲୋଡ଼ା ହୁଏ, ତାକୁ କହନ୍ତି 'ଝୋଲା'ଟଙ୍କା । ସାହୁକାର ଟଙ୍କା ଦେଇ ମୁଣ୍ଡ କିଣେ, ବର୍ଷବର୍ଷ ଲାଗି ଚକିରି ଖଟିଖଟି ଲୋକେ ଟଙ୍କା ଶୁଝନ୍ତି, ପୁଣି ବର୍ଷକୁ ବର୍ଷ ଚକ୍ରବୃଦ୍ଧି କ୍ରମରେ ଟଙ୍କା ବଢ଼ିଚାଲେ ।

"ତା'ପରେ ଆହୁରି କରଜ ଦିଏ ଧାନ, ମାଣ୍ଡିଆ । ଶ୍ରାବଣ, ଭାଦ୍ରବମାସରେ 'ଖାଦି'(ଖାଦ୍ୟ) । ଯେତେବେଳେ ଊଣା ଫସଲ ପାଚେ, ସାହୁକାର ଗାଁ ଗାଁ କେ ତା'ର ଭଣ୍ଡାର ଖୋଲିଦିଏ । ପୁଣି ଯେତେବେଳେ ଫସଲ ପାଚେ, ସାହୁକାର ହିଡ଼ମୁଣ୍ଡରେ ବସି ତା'ର ପାଉଣା ଆଦାୟ କରିନିଏ, ସୁଧ ଚକ୍ରବୃଦ୍ଧି କ୍ରମରେ ।

ଏହିପରି ତା'ର କାରବାର ।

"ଝିନ୍‌ଝଟ୍ ନାହିଁ, କାରଣ ପାହାଡ଼ିଆ ଲୋକେ ପ୍ରଶ୍ନ ପଚାରନ୍ତି ନାହିଁ । ଫାଙ୍କନ୍ତି ନାହିଁ, ଯାହା ମାଗିଲେ ତା' ଦିଅନ୍ତି । ସାହୁକାର ରାମ ବିଶୋଇ ତା'ର ଦଳଖିଆ ଘୋଡ଼ା ଉପରେ ଚଢ଼ିବସେ । ××× ଘୋଡ଼ାକୁ ପିଟିପିଟି ଡାଳ ପରେ ଡାଳ ଛିଣ୍ଡିଯାଏ । ମଠେଇ ମଠେଇ ଏପାଖ ସେପାଖ ଚହିଁଚହିଁ ସେ ବାଟ ଚାଲେ । ଦେଖେ କେତେଖଣ୍ଡ ଭୂଇଁରେ ତା'ର ଚାଷ ବଢ଼ିଲାଣି ଓ ଆଉ କେତେଖଣ୍ଡ ଭୂଇଁ ବାକି ଅଛି, ଦେଖେ କେତେଖଣ୍ଡ ଗାଁରର ଲୋକେ ତା'ର ହାତ ତଳିଆ ହେଲେଣି । ଆଉ କେତେଖଣ୍ଡ ବାଟକୁ ଆସୁଛନ୍ତି । (ଅ. ସ. ପୃ.୩୩-୪)

"ଗାଁର ବଡ଼ସାନ ଚାରିପାଞ୍ଚଜଣ ବେଢ଼ି ବସିଛନ୍ତି, ସାହୁକାର ବକ୍ତୃତା ଲଗେଇ ଦେଲା, ପ୍ରଥମେ ନିଜ ବିଷୟରେ, କେଡ଼େବଡ଼ ଲୋକ ସେ, କ'ଣ କ'ଣ ତା'ର

ଅଛି । ଅଧିକାରୀମାନଙ୍କ ସଙ୍ଗେ କିପରି ତା'ର ସମ୍ବନ୍ଧ । ଯାହା ସେ କହେ ତାଙ୍କର 'ସେଇଆ । 'କେଶୁ'(କେଶ୍)ରେ ପକେଇ ଦେଇପାରେ, 'କେଶୁ'ରୁ ଫିଟେଇ ଦେଇପାରେ । ତା' ସାଙ୍ଗରେ କଜିଆ ଲାଗିଲେ ଗୋଟାଗୋଟା ଅଧିକାରୀଙ୍କୁ ବି ସେ, ଭସ୍ମ କରିଦେଇଛି ।" 'ପରଜା - ପୃ.୨୬୮'

"ସାହୁକାର, ସେ ବଡ଼ଲୋକ । ତା'ର ପରିଚୟ ତା'ର ବାକ୍ସ ଭିତରେ, ଆଉ ରଇତ ପିଲା, ସେ ଗରିବ । ଏମିତି କେବେ ଦିନ ଆସିବ ନାହିଁ ଯେତେବେଳେ ସାହୁକାର ତା'ର ଉଞ୍ଚାପିଣ୍ଡା ଉପରୁ ଉହ୍ଲେଇପଡ଼ି ରଇତପିଲା ସାଙ୍ଗେ ଗୋଟାଏ ହୋଇଯିବ, ହେଲେ ସେ ଆଉ ସାହୁକାର ହୋଇ ରହିବ କେମିତି ? ତା'ର ବାକ୍ସ ଅମାର ଭିତରେ ତ' ମାଟି ପଶିଯିବ ! ସାହୁକାର ! ସେ କରଜ ଦେବାଲୋକ । ଗୋଡି ରଖିବା ଲୋକ ! ସାହୁକାର ! ସେ ହିଡ଼ମୁଣ୍ଡରେ ଧୋବଧାଉଳିଆଙ୍କ ସଙ୍ଗେ ଜଣେ, ଫସଲ ନ ପାଚୁଣୁ ତା'ର । ରଇତ, ସେ ବିଲ ମଝିରେ ପାଚି ମାଟି ସାଙ୍ଗରେ ଜଣେ, ସେ କାମ କରିବ ।" 'ପରଜା - ପୃ.୩୭୫'

"କେଉଁ ରଇତ ପିଲା ଝିଲିକୁ ନେଇଥିଲେ ସେଇଟା ହୋଇଥାନ୍ତା 'ବିବାହ' । ସାହୁକାର ନେବାଟା, ଲୋକେ କହିବେ, 'ରଖିବା', ପରଜୁଣୀ ଝିଅକୁ ସାହୁକାର ବିଭାହେବ କ'ଣ ? ସେଇଟା ହେଲା ରଖିବା ।

ସାହୁକାର ରଇତପିଲା ମିଶାମିଶି ଭିତରେ ଏଇତକ ହେଲା ଲାଜର କଥା । ଏଇ ଲାଜରେ - "ପ୍ରାଣ କାନ୍ଦିଯାଏ, ପ୍ରାଣ କାନ୍ଦିଯାଏ" - ପରଜା - ପୃ.୩୭୬

- ଥୋଟା ଗୁଡ଼ାରେ ସାହୁକାର ରାମ ବିଶେଇ ଘର -

"ପାହାଡ଼ର ଛାତି ଚିରିଚିରି ଆସି ନାଲିଶଗଡ଼ ରାସ୍ତା ତା'ର ଆଗ ଦାଣ୍ଡରେ ଗଣ୍ଠି ଭିଡ଼ିଛି । ଯେତେବେଳେ ଦେଖିଲେ ଖାଲି ଶଗଡ଼ ପୁଞ୍ଜାଏ, ଦି' ଦି' ପୁଞ୍ଜା ଏଠିସେଠି ବିଞ୍ଚିହୋଇ ପଡ଼ିଥିବ । କାହାର ଅଖ ସଜଡ଼ା ହେଉଛି, କେଉଁଥିରେ ନୂଆ ଲୁହା ଫିତା ଚକରେ ଭିଡ଼ା ଲାଗିଛି । କେଉଁଟା ସେହିପରି ଥୁଆ ହୋଇଛି କାମକୁ ଅପେକ୍ଷା କରି, ପିଲାମାନେ ନାଚିକୁଦି ଦୋଳି ଖେଳୁଛନ୍ତି ।

"ଘର ଆଖପାଖରେ ଅବଶ୍ୟ ଋରିପାଞ୍ଚଟା ଘୋଡ଼ା ଆଗଗୋଡ଼ ଛନ୍ଦାହୋଇ ନାଚିନାଚିକା ଘାସ ଚୋକୁଥିବେ ।

ଆଉ ପାଞ୍ଚଦଶଟା ହାତୀ ପରି ବଳଦ ଶୋଇ ଘୁଙ୍ଗୁଡ଼ି ମାରୁଥିବେ, ବେକ ଘରିପାଖେ ମାଛି ଆଉ କାଉ ।"

"ତା'ପରେ ତା'ର ଘର, ପ୍ରଥମେ ସାଉଡ଼ି ସାଉଡ଼ି ମାଟିଘର, ତା'ର ଭଣ୍ଡାର, ଘରେ ଘରେ ଧାନ, ମାଣ୍ଡିଆ, ବସ୍ତା ଓଳିଆ ଓଦର କୋରମେଇ, ତା'ପରେ ତା'ର ଭିତିରି ଭଣ୍ଡାର ଓ ଦୁଆର । ଦୁଆରେ ଲମ୍ବଲମ୍ବ ତାଟି, ଧାନ, ଅଳସି, ମରିଚ, ହଳଦିଗୁଣ୍ଡ ଶୁଖୁଥିବ । ତା'ର ଦୁଆରଟା ଗୋଟିଏ ବଡ଼ ଖଳା । ତା'ପରେ ତା'ର କୋଠାଘର । ଦକ୍ଷିଣର ତେଲେଙ୍ଗା ସାହୁକାରଙ୍କ ଘର ଛାଞ୍ଚରେ, ପିଣ୍ଡାରେ ବସ୍ତାମାଳ, ସେଇ ତରାଜୁ, ଭଙ୍ଗାଦଦରା ଖଟ ଚୌକି, ତା'ପରେ ଲୁହା ଗୋବମରା ବଡ଼ କାଠ କବାଟ । ଘରପାଖ ହେଲେ କିପରି ଗୋଟାଏ ଗମରା ଗନ୍ଧ ଜଣାପଡ଼େ, ଅଗଣାରେ ପଶିଲେ କ୍ରମେ ପରିଷ୍କାର ହୋଇ ବାରିହୁଏ, ଏଇ ଗମରା ଗନ୍ଧ, ବଳଦର ଆଉ ଗୋଡିର ଝାଳ, ସାଇତା ହୋଇଥିବା ପୁରୁଣା ଫସଲର ବାମ୍ଫ, ଆଗରେ ଖତକୁର, ଯୁଗଯୁଗର ଧୂଳି । କାରବାରୀ ଲୋକ ସେ, ସବୁମିଶି ତା'ର ଧନଦଉଲତର ସୁବାସ । କୁହୁଡ଼ି ପରି ଗାଁ ଆବୋରି ଉପରକୁ ଉଠେ । ପଦାକୁ ଆପଣାକୁ ଫୋପାଡ଼ି ହୁଏ । ଜଣେଇ ଦିଏ କେଡ଼େ ବଡ଼ ସେ । ଖାନଦାନ ବଡ଼ । ସାହୁକାର ରାମଚନ୍ଦ୍ର ବିଶୋଇ ।×××"

"ଆଉ ଠିକ୍ ତା'ର ଘର ଖାନାବାଡ଼ି ସେ ପାଖେ, ଦୁଇପାଖକୁ ଦୁଇଟି ସାନସାନ ପଲ୍ଲୀ । ସେଠି ଘରର ଘଳଭଙ୍ଗା ଦନ୍ତୁଡ଼ା ହାଲିଆ ଘାଲିଆ ହୋଇ ଗୋଟାଏ କଡ଼କୁ ଆଉଜି ପଡ଼ିଛି, ଉପରେ ପିରି ଛପର ଠାଏଠାଏ ଉଠିଯାଇ ତୁଚ୍ଛା ଡାଙ୍ଗଗୁଡ଼ାକ ଦିଶୁଛି । ତଳେ କାନ୍ଥଭଙ୍ଗା, ଫଟା, ଘଳ ଉପରୁ ସ୍ଥାନେ ସ୍ଥାନେ ଛିଣ୍ଡା କରିହା ସବୁ ଝୁଲୁଛି, ଅଗଣାରେ କୁକୁଡ଼ା, କୁକୁର ଆଉ ଅସନା ଅପୋଛା ଅବର୍ଦ୍ଧା ପିଲା, ସବୁବେଳେ କାନ୍ଦଣା, ଗରିବଙ୍କ ଘରକରଣା, ଯାହାଙ୍କର ଖାଇବାକୁ ଖାଦ୍ୟ ନାହିଁ, ପିନ୍ଧିବାକୁ ଖଦିନାହିଁ ।

ସାହୁକାର ଘରର ବେଶି ଶୋଭା ବଢ଼େଇ ଦିଏ ଦି'ପାଖରେ ଦୁଇ ପଲ୍ଲୀ ।

"ବିଧାତାର ଚିତ୍ରର ବିନ୍ୟାସ ପାଇଁ ଦୌଲତଖାନାର ଦୁଇପାଖେ ଦୁଇଟା ଫାଙ୍କା ମଶାଣି । ସେମାନେ ମଧ୍ୟ ବୁନିୟାଦ୍, ଏଇ ଦୁଇପାଖରେ ଲୋକେ । ଯୁଗେଯୁଗେ ତାଙ୍କର ବାପା ଗୋସାପେ କାମଧନ୍ଦା କରି ଖାଇ ଚଳିଛନ୍ତି । ଜମିଜମା ସବୁ ସାହୁକାର କ୍ରମେ ନେଇଯାଇଛି । ସେମାନେ ସଂକୁଚିତ ହୋଇଯାଇଛନ୍ତି, ଘର ସାମ୍ନାରେ ସାହୁକାରର

ବଡ଼ କୋଠି । କାମଧନ୍ଦା ପରେ ମଦ ଟୋପାକ ଲାଗେ ସୁଆଦ, ଦିନୁଦିନ ଦିନୁଦିନ ଯହୁଁ ଯାଏ, କେବେ ଦିନେ ସାହୁକାର କହେ, "ହେ, ତୋ' ଉପରେ ତିନିକୋଡ଼ି ଟଙ୍କା ହେଲା, ଟଙ୍କା ଦେବୁ କି ଭୂମି ଦେବୁ ?" ଏବେ ମଦ ଦୋକାନ ନାହିଁ, କିନ୍ତୁ ଭୂମିସବୁ ସରିଛି । (ପରଜା - ପୃ.୧୦୩-୪)

"କନ୍ଧ ପରଜା ରଇତ ଆସି ହାତଯୋଡ଼ି ମାଗୁଛି, "ସାହୁକାର, ପୁଟିଏ ଧାନ କରଜ ଦେ" ସାହୁକାର କହୁଛି 'ନେ' । ଗଲାବେଳେ ସାହୁକାର ପଚାରିଛି, "ପୁଟିଏ ନେଲୁ କିରେ ?" ରଇତ କହିଛି, 'ନେଲି' । ସାହୁକାର କହିଛି, "ଯା ଗୁମାସ୍ତାକୁ କହିଆ ।" ରଇତ ଫେରିଆସି କହିଛି, "କହିଲି" । ସାହୁକାର ଏଇ କଥା କହିବାକୁ ତାକୁ ତିନି ଜାଗାକୁ ପଠାଇଛି ।

ତହିଁ ଆରବର୍ଷ -

"ପୁଟିଏ ମୂଳ, ଆଉ ଅଧପୁଟିଏ ସୁଧ ବୋଝଧରି ରଇତ ଆସି କହିଛି, 'ନେ ସାହୁକାର' । ସାହୁକାର ଡୋଳା ଦି'ଟା କପାଳକୁ ଉଠେଇ ଦେଇ ପଚାରିଛି, 'କିରେ ଏ କ'ଣରେ ?" ରଇତ କହିଛି, "ପୁଟିଏ ମୂଳ, ଅଧପୁଟିଏ ସୁଧ ।" ସାହୁକାର ଜେରା କରିଛି "କିରେ ପୁଟିଏ ମୂଳ କ'ଣରେ ? ମୋଠୁଁ ନେଲୁ ପୁଟିଏ, ଗୁମାସ୍ତାକୁ କହିକରି ନେଲୁ ପୁଟିଏ, ସାହୁକାରିଣୀକୁ କହିକରି ନେଲୁ ପୁଟିଏ, ମୋର ଗୋଡି ଦେଲା ପୁଟିଏ, ଗଣିଲୁ କେତେ ପୁଟି ହେଲା ? ଚାରିପୁଟି ସମୁଦାୟ ନା ? ସେଥିରେ ସୁଧ ଦୁଇପୁଟି, ଏମିତି ଛ'ପୁଟି ହେଲା । ଏ ଦେଢ଼ପୁଟି ତ କଳନ୍ତରକୁ ବି ଅଣ୍ଟୁନାହିଁ ।" ରଇତ ଆବାକାବା ହୋଇ ଏଣେତେଣେ ଅନେଇଛି, ଛେପ ଢୋକି କହିଦେଇଛି, ହଇ, ହେଇଥିବ କାଇଁକି (ଅର୍ଥାତ୍ 'ପରା') ସାହୁକାର ।" ସେଇଦିନଠୁ ରଇତ ଋଣୀ । (ପରଜା - ପୃ.୧୦୩-୪)

"ଦେଶିଆ ରଇତ ଧର୍ମକୁ ଡରେ, ସାହୁକାରକୁ ଡରେ । ଉଭୟ ଡର ଭିତରେ ପଡ଼ି ମୁଣ୍ଡ ତା'ର ଗୋଳମାଳ ଧରିଯାଏ । ତା'ର ହିସାବ ଦଉଡ଼ିରେ ଗଣ୍ଠି । ଗଣ୍ଠି ଗଣିଗଣି ତା'ର ଦିନ ଯାଏ, ସାହୁକାରର ହିସାବ ଏସବୁ ଦଉଡ଼ି ଗଣ୍ଠିକୁ ବିଶ୍ୱାସ କରେନାହିଁ । ତା'ର ହିସାବ ଥାଏ ଖୁବ୍ ମୋଟାମୋଟା ପୋଥି ଭିତରେ, ଦେଖିଲେ ଆଖି ଖୋସି ହୋଇଯିବ । କେତେ ଅଙ୍କ, ଲେଖା, ମୁଣ୍ଡ, କଳାଶିରା, ନାଲିଶିରା ମିଶି ତା'ର ରୂପ, ସେ ଦିନୁଦିନ ନିଜେ ନିଜର ବଂଶ ବଢ଼େଇ ଯାଏ କାଗଜ ଉପରେ, ଆଉ ପୋଷିବାର ଭାର ସବୁ ରଇତର ।"

ଏତିକି କଥାରୁ କ'ଣ ବୁଝା ପଡ଼ିଯାଏନା ନାରାୟଣପାଟଣାର ଦୁଃଖ ? ନାଚିକାଲିଙ୍ଗାମାନଙ୍କର ଦୁଃଖ ? ନିଜ ଜମିରେ ନିଜେ ଗୋତି ଖଟିବାର ଦୁଃଖ ?

ବାପ ଭାଇ ଗୋତି ହୋଇ ସାହୁକାର ଘରକୁ ଚାଲିଗଲା ପରେ ସେ ପରିବାରର ଅବସ୍ଥା ସମ୍ପର୍କରେ ଗୋପୀବାବୁ ଲେଖିଛନ୍ତି –

"ପଡ଼ିଆ ଭୂଇଁ ଟାଙ୍ଗରା ହୋଇ ପଡ଼ିରହେ । ଚାରିପାଖରେ ଗର୍ଭିଣୀ ଭୂଇଁ ମଝିରେ ବାଟେବାଟେ ଝିଲିବିଲି ଫମ୍ପା ହାଣ୍ଡିରେ ପାଣି ଅଜାଡ଼ିବାକୁ ଗାଁ ତୁଠକୁ ଗଡ଼ି ଯାଆନ୍ତି । ଘରେ ଖାଦି ନାହିଁ; ଆମ୍ବ କୋଇଲି ନୋହିଲେ ତେନ୍ତୁଳି ଶସ ଛେଚି ଛିଣ୍ଡାକନାରେ ବାନ୍ଧି ପାଣିଧାରରେ ବାନ୍ଧିଦେଇ ଆସନ୍ତି ଗୋଟାଏ ଖୁଣ୍ଟରେ । ସେହି ହେବ ଖାଦି । ଜଙ୍ଗଲରୁ କନ୍ଦା, ପତ୍ରଡାଳ । କେବେ କେଉଁଦିନ ମିଳିଲେ ବଣ ବିରୁଡ଼ି ଟେଙ୍କରେ ଫେଣା ସିଝେଇ ଝୋଳ । ମୂଷା, ଢେମଣା ସାପ, ଚଢ଼େଇର ଡିମ୍ବ, କାଇ, ମହୁଫେଣାର ଡିମ୍ବ, ଏସବୁ ଅଣ୍ଡିରା ପିଲାଏ ପାଇବେ । ମାଇପି ଘରେ ଏ ଆନନ୍ଦ ସ୍ୱପ୍ନ । ଝରିପୋକର ଦିନ ଆସିନାହିଁ । ନୋହିଲେ ଜଳଖିଆଟା ଚଳନ୍ତା ।

"ପେଟ ଭିତରେ କେତେ ପ୍ରକାରର କୋଳାହଳ ହୁଏ । କେତେ ଛଳଛଳ ଅଶୁଣା ଶବ୍ଦ । ମନ ଘାଉଳି ହୁଏ, ଦିନ କାଟେ ।" (ପରଜା, ପୃ.୨୦୨-୩)

"ଏଇ ମେଘ ଢୁଢୁ କଳାଅନ୍ଧାର ଭିତରେ ପାହାଡ଼ ମୁଣ୍ଡିଆ ଉପରେ ଗୋଟିଏ ଗୋଟିଏ ପୁଞ୍ଜିଏ ପୁଞ୍ଜିଏ କଳାକଳା ଲୋକ, ଯାହାଙ୍କର ସାମଞ୍ଜସ୍ୟ ରହିଛି କଳାଅନ୍ଧାର ସହିତ, କଳା ମାଟିକୁଦ, କି ମଣିଷ କି ମେଘ ଭିତରର କେଉଁ କିମ୍ଭୂତ ଛାଇ, ପାଣି, ପବନର ଭଉଁରୀରେ କାଦୁଅରୁ ଉଠି ଏ ପାଖ ସେ ପାଖ ଦୋଳି ଖେଳୁଛି ଦି'ଦିନପାଇଁ ।

"କୁଦକୁଦ ପାହାଡ଼, କୁଢ଼କୁଢ଼ ପଥର, ତା'ରି ଭିତରେ ଦୋ'ଟି ଚାରୋଟି ପୋଡୁ ମାରୁ, ଭୂଇଁ ତଷୁ, କୋଡ଼କି ଧରୁ ମଣିଷ...

"ଏମାନେ ନିଆଶ୍ରୀ ଲୋକ, ମେଘ ମାଡ଼ରେ କୋଡ଼କି ମାଡ଼ ମିଶେଇ ମାଟି ତିଆରି କରନ୍ତି ପାହାଡ଼ର ମୁଣ୍ଡିଆ ଉପରେ ।

"ତଳେ ଭୂଇଁରେ ଲହଡ଼ି ଖେଳେ । ଶୁଣ୍ଡିଘର କ୍ଷେତରେ, କୁମୁଟିଘର ଜମିରେ, ମହାଜନ ବେଢ଼ାରେ, ତଲ୍ଲାତଲ୍ଲି ବାନ୍ଧି ମୁଣ୍ଡରେ ଛତା ଛତୋଡ଼ି ଠେଁସି ଗାଁଗୁଡ଼ାର ଲୋକେ ନିଡାଣି, ରୋପାଣି, ଜମି ସୁତୁରା ସୁତୁରି କାମରେ ଲୋଟୁଥାନ୍ତି, ନ ହେଲେ କେଉଁ ଭାଗ୍ୟବାନ ଚାଷୀ ଆପଣାର କ୍ଷେତରେ ହାତର କାରସାଦି

ଦେଖାଇଥାଏ । ଆଉ ଏ ଉପରର ଲୋକ କେଇଟା, ଗୋଟାଏ ଗୋଟାଏ ଉଞ୍ଚ ଢେପ ଆବୋରି ଲାଗି ପଡ଼ିଥାନ୍ତି । ପାଣି, ପବନ, ବଜ୍ର ଘଡ଼ଘଡ଼ି ଭିତରେ, ଖେଆଲ ନାହିଁ କୁଆଡ଼କୁ ।

"ପାଦରେ ବାଲି କାମୁଡ଼ି ଘା'କରେ, ପିଠିରେ ଯାଦୁ ହୁଏ । ଶେଥା ଯାଦୁ, ଦେହରେ ଅନର୍ଯ୍ୟାପ୍ ବର୍ଷାର ଶର କଣ୍ଟାପରି ଫୋଡ଼ି ହୋଇଯାଏ, ମୁଣ୍ଡର ଅଲରା ବାଳ ପବନ ଝିଙ୍କା ଓଟରା କରେ - ତଥାପି ସେମାନେ ହଟନ୍ତି ନାହିଁ । ତୁଣ୍ଡରେ ଖଣ୍ଡେଖଣ୍ଡେ ଧୁଙ୍ଗିଆପତ୍ର ଯାକିଦେଇ ବଙ୍କା ଢେମଣା ପାଦ ଆଙ୍ଗୁଠିରେ ଢାଲଢାଲୁଆ ମାଟିକୁ ଝଟିପିଟି ପରି ଚପିଧରି କୋଡ଼କି ଉଠେଇ ପାହାର ଲଗାନ୍ତି, ହାତ ଥମେନାହିଁ ।

"ବଣ ଉହାଡ଼ରୁ ବାଘ ରଡ଼ି ଛାଡ଼େ । ଝାମ୍ପି ନେଇ ଧରି ଚାଲିଯାଏ ବତିଶି ମାଳି ଭିନରର କେଉଁ ଖୋଲ ଭିତରକୁ, ନିତି ଏପରି ଘଟେ । କିନ୍ତୁ କୋଡ଼କି ମାରୁ ହଟେନାହିଁ । xxx ତଳର ତିଆରି ମାଟିରେ ତା'ର ଭାଗ ନାହିଁ ସତ, ଭାଗ ଅଛି ମୁଣ୍ଡିଆ ଚୂଳର କଙ୍କର ମଟାଳରେ । ସାଙ୍ଗ ତା'ର ଚିଲ ଆଉ ଶାଗୁଣା, ବାଜ ଆଉ ମୟୂର ମାରୁ (ମଜୁର୍‌ଶୁଲିଆ) ଆଉ ଯେତେ ଭୂତ, ପ୍ରେତ, ଆଉ ତୋଫାନ ବରଷା । (ପରଜା - ପୃ.୨୬୦-୧)

"ପର୍ବତ ଉପରେ କନ୍ଧର ଚାଷ, ତଳେ ସେ ଯେଉଁ କ୍ଷେତକୁ ସବୁଦିନିଆ କରି ଛାଡ଼ି ଦେଇଯାଇଛି ସେସବୁ ପରର । ଧୀରେଧୀରେ ସାହୁକାର ଆସୁଛନ୍ତି, କ୍ଷେତ ବଢ଼ାଉଛନ୍ତି, କନ୍ଧିଆ ଦେଶରେ ଚେର ମଡ଼ଉଛନ୍ତି । ଯେଉଁଠି ଆଖିଦୁରୁଶିଆ ଧାନ ଗହିର କୋଶକୁ କୋଶ ଲମ୍ବିଯାଇଛି, ସେଠି ସହୁକାର, ଶୁଣ୍ଡି, ବ୍ରାହ୍ମଣ, ତେଲେଙ୍ଗା । ସେମାନେ ବାହାର ସଭ୍ୟତାର ଉତୁରା ପେଜପରି ଫୋପାଡ଼ି ହୋଇ ବଣକୁ ଆସିଥିଲେ ଲୋଟା କମ୍ବଳ ଧରି । ବର୍ତ୍ତମାନ ସେମାନେ ମହାଜନ । ଶୁଣ୍ଡି ମଦ ବିକିବିକି ଜମିକଲେ । ବ୍ରାହ୍ମଣମାନେ କୁଆଡ଼େ ଭିକମଗା ଚାଉଳ ଏକାଠି ଜମେଇ ଛାଡ଼ି ଦେଇଯାଆନ୍ତି ଗାଁ ମୁଣ୍ଡିଆଳ ଘରେ, ସେହି ଚାଉଳକୁ ଦେଢ଼ୀ ଲଗାନ୍ତି, କ୍ରମେ ଅଧମର୍ଣ୍ଣଠାରୁ ଜମି ନିଅନ୍ତି । ତେଲେଙ୍ଗାମାନେ ସବୁ ଉପାୟ କରନ୍ତି । କିଏ ଦେଢ଼ୀମହାଜନୀ, କିଏ ବା ତୁଚ୍ଛାକୁ ନଫର ନଫର ହୋଇ କୌଶଳ ଲଗେଇ ଜମି ମାରିନିଏ, କେତେ ଉପାୟରେ । ବନ୍ଧୁ ହୋଇ ଆସି, ସଙ୍ଗାତ ମୈତ୍ର ବସି, ମଦପାଣି ଦେଇ ଧୀରେଧୀରେ ଚେକାମାଡ଼ି ବସନ୍ତି । ଅଧିକାରୀଙ୍କ ଶରଣିଆ ଯେଉଁମାନେ, ତାଙ୍କର ତ' ସାତଖୁଣ୍ ମାଫ୍ । କାଗଜ ଆଉ ବଟୁଚିହ୍ନ, ବଟୁଚିହ୍ନ ଆଉ କାଗଜ । ଜମି ହାସଲ । କିଏ ବନ୍ଧା ବୋଲି କହି ବିକ୍ରି

ଲେଖେଇ ନେଇ ଛୁ, କିଏ ରସିଦ୍ ବୋଲି ନା ଦାର - (ତ୍ୟାଗପତ୍ର) ଲେଖେଇ ନେଉଛି । ବନ୍ଦୋବସ୍ତ ନାହିଁ, ଖତିୟାନ୍ ନାହିଁ, ସ୍ୱତ୍ୱ ବିଷୟରେ ସମ୍ପୂର୍ଣ୍ଣ ଧାରଣା ନାହିଁ, ଜୋର୍ ଯାହାର ମୁଲକ ତା'ର, ପୋଷାକ ଯାହାର ଜୋର୍ ତାହାର । କାଗଜ ଉପରେ ବଟୁଚିହ୍ନ ମାରି ଦେଇ କନ୍ଧିଆଭାଇ ନୂଆ ଜମି ଖୋଜିବାକୁ ଚାଲିଯିବ ପର୍ବତ ଉପରକୁ । (ଅ.ସ.-ପୃ.୫୫)

"ଏପାଖେ ହାତୀ, ସେପାଖେ ହଜିଲା ପୂର୍ବପୁରୁଷଙ୍କ ଅଦେଖା ଆତ୍ମା, ଅନ୍ୟ ସ୍ଥାନରେ ପୋଲାଖିଆ ସାହୁକାର । ମଦ ରଣଦେଇ, ଟଙ୍କାରଣ ଦେଇ, ସାମାନ୍ୟ ଧାନ କରଜ ଦେଇ କେତେ ଫିକର କରି ସେମାନେ କନ୍ଧ ସଉରା ତିଆରି କରିଥିବା କ୍ଷେତକୁ ନିଜର କରିନେଇ ସାରିଛନ୍ତି, ଗାଁ'ଯାକ ଅନ୍ୟ ଲୋକଙ୍କୁ ଗୋବେ ବୋଲି ଜମି ମିଳୁନାହିଁ ।"

"ଖାଲି ଆଦିବାସୀ ଅଞ୍ଚଳ ବୋଲି କାହିଁକି, ନାନା ଉପାୟରେ ପୃଥିବୀର ସର୍ବତ୍ର ଲାଗି ରହିଛି ସେହି ଶୋଷଣ । ଜଣେ ଭୂମିର ମାଲିକ ବୋଲାଇ ପରିଶ୍ରମ ନ କରି ଫସଲର ବଡ଼ଭାଗ ଖାଉଛି । ଆଉଜଣେ ଲଙ୍ଗଳଧରି ଜମିରେ ଦେହ ମେହେନତ୍ କରି ଫସଲ ଉପୁଜାଇ ବି ଫସଲର ଅଧିକାରୀ ହୋଇପାରୁ ନାହିଁ । ବଡ଼ପୁରୁଣା ଏ କଥା ଅଥଚ ନିତି ନୂଆ ।

"ହେଇ ଦେଖାଯାଉ ମହନି ପାତ୍ର କଥା, ପୋଷାକରେ ଭଦ୍ରତାର ଛାପ, ବେକଠୁ ଆଣ୍ଠୁଯାକେ ଲମ୍ୱା ହଳଦିଆ କୋର୍ଟରେ କେଉଁଠି ଗୋଟିଏ ବୋତାମ ବି ଖୋଲା ନାହିଁ, ମାପିଚୁପି ଗଣିଗଣି କଥା, ଯେ ଓଠର ବାଙ୍କଟା ଯିବ କେତେଦୂର ଯାକେ । ବିଧବା ରୁକ୍ମିଣୀ ଦେବୀଙ୍କ ଆମ୍ - ମୁକ୍ତାର ହୋଇ ମହନି ପାତ୍ରଙ୍କ ଜୀବନ ଆରମ୍ଭ । ତାଙ୍କ କଥା ଯେ ଯାହା କହନ୍ତୁ, ସେ' ତ ଆଖିରେ ନ ଦେଖିବା କଥା, କିନ୍ତୁ ଆମ୍-ମୁକ୍ତାର ହେଲାପରେ ଯେ ଆପଣା ଗାଁରେ ମହନି ପାତ୍ର ଦି'ସାହାଲା କୋଠା ତିଆରି କଲେ, ତାଷଜମି ଏକା ଚକରେ ଶହେଏକର ଭେଇନେଲେ ଓ ଖାଉନ୍ଦକୁ ବାଲୁତ ଦୁହିଁଙ୍କ ସ୍ୱାର୍ଥ ରଖୁଛି କହି ଆପେ କେତେ ଗାଁର କନ୍ଧଙ୍କୁ ଚିତାକାଟି ନାନା କୌଶଳରେ କନ୍ଧଙ୍କ ଜମି ନେଇଯାଇ କନ୍ଧକୁ ଖପରାରେ ଖୋଇଦେଲେ, ଏ' ତ ଆଖିରେ ଦେଖିବା କଥା । ଧମକେଇବା, ଡରେଇବା, ଠକିବା, ଜାଲ୍ କରିବା, ମିଛ କହିବା, ପିଟିସନ୍ ପକେଇବା, ମକଦ୍ଦମା ଲଗେଇବା, ମଦ ଲାଞ୍ଚଦେଇ ଗୁଣ୍ଡା ଲଗେଇ ପିଟେଇବା, ଘର ହୁଡୁରେଇବା, ସବୁ ଦୁଷ୍ଟାମିରେ ଥାଇ କେଉଁଥିରେ ନିଜେ ଚିହ୍ନା ନ

ପଢ଼ିବା, ଏ' ତ ତାଙ୍କର ନିତିଦିନର କାର୍ଯ୍ୟ । ଦଳ ଗଢ଼ିଲେ ବଳ ବଢ଼େ - ଏଇ ନୀତିରେ ମହନି ଗୋଟିଏ ଦଳର ନେତା । ହାତରେ ଖଣ୍ଡେ ଖବରକାଗଜ ବି ଅଛି - 'ନିଜ ସମ୍ବାଦଦାତା' । ଯା' କହିଲେ ତାହା ଛାପିଦେଇ ପାରିବେ, ନଥାଉ ସେ ଖବରକାଗଜର ବେଶି କାଟ୍‌ତି । ଗୋଟିଏ ପ୍ରଶ୍ନକୁ ଦି'ଟଙ୍କା ହିସାବରେ ଦେଇଦେଲେ ମନଇଛା ପ୍ରଶ୍ନ ପଚାରିବାକୁ ଲୋକ ଅଛନ୍ତି, ହେଉପଛେ ସେ ପ୍ରଶ୍ନ ଯେତେ ଅମୂଳକ, ପଚାରି ଦେଲେ ହିଁ ହେଲା । ତେଣିକି ଲୋକେ କୁହାକୁହି ହେଉଥାନ୍ତୁ ସତମିଛ ବିଷୟରେ । ଭଦ୍ରଲୋକଙ୍କୁ ଭାଣ୍ଡିଆ କରିବାକୁ ଯାହାକିଛି ଗୋଟାଏ ଅପବାଦ ସୃଷ୍ଟି କରିଦେଲେ ହିଁ ହେଲା । ସେହି ହିଂସାର ଅବତାର ପିନ୍ଧେ ଧୋବଲା, ପକାଏ ପଇତା, ଚୌକିରେ ବସି ମୁଣ୍ଡ ଟୁଙ୍ଗାରେ, ମାମଲତ ଭାଙ୍ଗେ, ଦେଶର ପ୍ରତି ବଡ଼ ବିଷୟରେ ବି ବିବୃତି ଦିଏ । (ଶିବଭାଇ - ପୃ.୪୫-୬)

"ସେହିପରି କେତେ ଶୁଣ୍ଢି ମହାଜନ, କେତେ କୁମୁଟି, ବେପାରୀ, କେତେ ଥିଲାବାଲା । ଗରିବଙ୍କ ପାଇଁ ଆଖିରୁ ଲୁହ ଗଡ଼ାଇ ବକ୍ତୃତା ଦିଅନ୍ତି ଗୋବର୍ଦ୍ଧନ ପାଢ଼ୀ । ସେହି ପୁଣି କରାନ୍ତି ଯେତେ ବେଠି ବେଗାରି । କୋଠିଆକୁ ମୂଳ ହେଲା ବେଳକୁ ମାସକୁ ଛ'ଟଙ୍କା ସାତଟଙ୍କା । ଟଙ୍କା କରଜ ଦେଲେ ସୁଧ ଟଙ୍କାକେ ଟଙ୍କାଏ । ସେମାନେ ଉପରେ ଉପରେ ସଉରାଙ୍କ ହାତରେ ବଣ ହଣାଇ ଜମି ତିଆରି କରାଇ ନିଅନ୍ତି । କହନ୍ତି - "ଯେ ଆମ ବଣ, ତୁମେ ସଫାକର, ଖାଅ, ଯାଉ ଦି'ବର୍ଷ; ଯାହାକିଛି ସାମାନ୍ୟ ଖଜଣା କରିଦେବା । ତୁମେ ଜମି ତିଆରି କର, ଏଠି ଘରଦୁଆର କର । ଜମି ସଫା ହୋଇ ଠିକଣା ହୋଇସାରିଲା ପରେ ଦିଅନ୍ତି ସେମାନଙ୍କୁ ତଡ଼ି, ଜମି ମାଡ଼ି ବସନ୍ତି । ଅଣେ ବଣେ କଣେ ଶିରାଏ ଶିରାଏ ବସା ବାନ୍ଧିଛନ୍ତି ଛାରପୋକ ଦଳ, ଡିମ୍ବଠୁ ବଡ଼ଯାକେ, ସେହି ଯେଉଁମାନେ ରାତିକା ରାତି ଟଙ୍କାକୁ ପାଞ୍ଚଟଙ୍କା କରିବାକୁ ଇଚ୍ଛା କରନ୍ତି, କିଏ କିରୋସିନି ତେଲ ଚାରିପଇସାରେ ବିକିଲେ ପଳାଏ କମ୍‌ଦିଏ । କିଏ ଲୁଗାଖଣ୍ଡେ ବିକିଲେ ଟଙ୍କାକେ ସାତଣା ଅଧିକା ହାଙ୍କେ । କିଏ ଟଙ୍କାଟିଏ କରଜ ଦେଲେ କହେ ସୁଧ ବାବଦକୁ ବର୍ଷକୁ ନେବ ତିନିସେର ଛ'ସେର କି ବାରସେର ସୋରିଷ । ସେତକ 'ଫାଇଦା' । କିଏ ଠକିବା ପାଇଁ ସାନମାଣରେ ବିକେ, ବଡ଼ମାଣରେ କିଣେ । 'ଚିନ୍ନାମା' ଅର୍ଥାତ୍ 'ସାନଝିଅ' ବୋଲି ହାଙ୍କିଲେ ଚାକର ସାନମାଣ ଆଣି ପହଞ୍ଚାଏ । 'ପେଦାମା' ଅର୍ଥାତ୍ 'ବଡ଼ଝିଅ' ବୋଲି ହାଙ୍କିଲେ ସେ ଆଣେ ବଡ଼ମାଣ । ଯହିଁରେ ତିନିସେର କହି ଚାରିସେର ମାପି ନେଇହୁଏ ।

କେଉଁଠି ଗୁଣପୁରରେ ବେପାରି ଲାଞ୍ଜିଆ ସଓରା ସଙ୍ଗେ ମିତ ବସେ, କାରଣ ମିତ ମାଗଣାରେ ଭାର ଥୋଇ ବୋହି ଲାଗିଥିବ ମିତ ଘରକୁ, ହରଡ଼, ମୁଗ, ସୋରିଷ, ସୁଆଁ, ଯେତେ ଯାହା କରେ ସବୁ । ତା' ବଦଳରେ ରାତିରେ ମୁଠିଏ ଭାତ; ପୁଣି ମିତଘରେ ମାଂସ ଖାଇବା ମନା । ଆଉ କେଉଁଠି ବିଷମ କଟକରେ, ମୁନିଗୁଡ଼ାରେ ବେପାରି ଅବିକଳ ସେଇଆ କରେ ଡଙ୍ଗ୍ରିଆ କନ୍ଧକୁ । କିଏ ଜମି ବନ୍ଧା ରଖୁଛି କହି ବିକ୍ରି ଲେଖେଇନିଏ, ଦସ୍ତଖତ କରେଇ ନିଏ । କିଏ ଭାଗଚାଷୀଠୁ ଭାଗଧାନ ରସିଦ ନେଉଛି କହି ମିଥ୍ୟାରେ କାଗଜରେ ଟିପନେଇ କାଗଜରେ ତମସୁକ ଭର୍ତ୍ତି କରିଦେଇ ମକଦ୍ଦମା ଦାଏର୍ କରେ । କିଏ ଭାଗଚାଷୀକୁ ଜମିରୁ ଜବରଦସ୍ତ ଉଚ୍ଛେଦ କରେ...ଏଣେ ସଭାରେ ବୋଲାଏ ନେତା । କିଏ ହାତରେ ନ ମାରି ଭାତରେ ମାରେ, ଭାଗ ଦେବାରେ ଠକେ । ଚଷର ସବୁଖର୍ଚ୍ଚ ସୁଧ ସହିତ ତା' ଭାଗରୁ ବଡ଼ମାଣରେ ମାପିମାପି କାଟିନେଇ ସାନମାଣରେ ତା' ଭାଗଦିଏ । କିଏ ଭାଗ ପରିବର୍ତ୍ତେ 'ରାଉ'ବା 'ସଞ୍ଜା' ଦିଏ । ପାଞ୍ଚମହଣ ପାଚିବା ଜମିକୁ ଦଶମହଣ ପାଚେ ବୋଲି ମିଛରେ କହି ପାଞ୍ଚମହଣ ପାଇବ ବୋଲି କଥା କରି କାଗଜ ଲେଖାଇ ନିଏ । ଶେଷରେ ତାକୁ ଭସ୍ମକରେ । କିଏ ମୂଲିଆଠୁ ଓଲିକର କହି କଚିକାଚି ଦିନକର ଶ୍ରମ ଅସୁଲ କରି ତାକୁ ଦିଏ ଚଳିଶ ତୋଳା ଚଉଳ ହେଲାପରି ଧାନ । କିଏ ନାଲିଆଖି ଦେଖାଇ ଅବା ଗୋଗୋଛ ବାଡ଼ିଆ କରି ଡରେଇ ହରେଇ ଜବରଦସ୍ତ ପରର ଚଷଜମି ଦଖଲ କରେ । ମଣିଷକୁ ଛେଳି କରେ, ବନ୍ଧୁକ ଧରି ବୁଲେ । କିଏ ଏହି ସବୁ ଦୁରାତ୍ମାମାନଙ୍କ ସଙ୍ଗେ ସଲା ହୋଇ ତୋଳା ଉଠାଏ, କାଗଜ ବଦଳାଏ, ଦୁଇପକ୍ଷରୁ ପଇସା ଖାଏ, ପାଖେ ଅଭୟ ଦେବାପାଇଁ ପାଖେ ଭୟ ଦେବାପାଇଁ । ବଣୁଆମାଳ ଭିତରେ ବୁଢ଼ିଆଣୀ ଜାଲପରି ସଡ଼କ ଛକିରେ ଧୋବଲା କୋଠା ଠିଆ ହୁଅନ୍ତି ଜକାଜକି ହୋଇ । ସେଠି ବୁଢ଼ିଆଣୀମାନେ ଧୋବଲୁଗା ପିନ୍ଧନ୍ତି, ଗଣ୍ୟମାନ୍ୟ ବୋଲାନ୍ତି । କିଛି ଦାନପୁଣ୍ୟ ବି କରନ୍ତି । କାଦୁଅ ନ ଚକଟିଲେ ଯେପରି ଧାନ ହୁଏନାହିଁ, ସେହିପରି ମନ୍ଥନ ଦୋହନ ଶୋଷଣ ନ କଲେ, ଫକରେ ଘାଣ୍ଟି ନ ହେଲେ ପିଟି ହୁଏନାହିଁ ରାତିକା ରାତି କୋଠା । ସେମାନେ ଶୋଷଣକାରୀ ସମାଜ ଗଢ଼ନ୍ତି, ପୁଣି ପରସ୍ପରକୁ ବି ଶୋଷନ୍ତି । ତେଣୁକରି ସେହି ଧୋବଧାଉଳିଆ ସହରରେ ବେଉସା ଚଳାନ୍ତି । ଠକକୁ ଠକିବାକୁ ଆହୁରି ବଡ଼ଠକ, ଗୁଣ୍ଡାକୁ ଆୟତ୍ତ କରିବାକୁ ଆହୁରି ବଡ଼ଗୁଣ୍ଡା, ଆଉ ଚୋର, ଡକାୟତ, ବେଶ୍ୟା । ଆଉ ସେଠି ଶୋଷଣକାରୀମାନେ ହିଁ ସହରର ମୁଣ୍ଡିଆଳ ।

ସେମାନଙ୍କ ସୁଦୃଶ୍ୟ ହର୍ମ୍ୟ ସାଙ୍ଗକୁ ପୋଷାକ, ତାଙ୍କ ପିଲାଏ ଉଚ୍ଚଶିକ୍ଷା ପାଆନ୍ତି ସ୍କୁଲ୍, କଲେଜରେ, ସେମାନେ ଲେଖାପଢ଼ା ଜାଣିବା ଲୋକ । ତେଣୁ ତାଙ୍କ ମତରେ ଶକ୍ତି ଅଛି, ତାଙ୍କର ଭାଷଣ ଓ ବିବୃତିରେ ଓଜନ ଅଛି । ତାଙ୍କ ମତ କାଏମ୍ କରିବାକୁ ଓ ତାଙ୍କପାଇଁ ସୁବିଧା ଅସୁଲ କରିବାକୁ ତାଙ୍କର ପୋଷା ଗୁଣ୍ଡା ଓ ଦଲାଲ ଥାଆନ୍ତି, ହାନିଲାଭକୁ ଥାଏ ଟଙ୍କା, ଆଇନ୍ ସଙ୍ଗେ ଲଢ଼ିବାକୁ ଥାଆନ୍ତି ଓକିଲ । ଅଥଚ ତାଙ୍କର ବାହାରିଆ ଭଡ଼ଙ୍ଗ ପଛଆଡ଼େ ସବୁବେଳେ ଭୟ ଓ ଦୁଶ୍ଚିନ୍ତା । ଗୋଡ଼ରୁ ମୁଣ୍ଡଯାକେ ଅଳଙ୍କାର ଲଦିହୋଇ ଗୁଣୁପୁରରେ ବ୍ୟବସାୟୀ ସ୍ତ୍ରୀପିଲା ରାତିରେ ଘରଦୁଆର ମୁହଁରେ ପିଣ୍ଡା ଉପରେ ଝାଡ଼ା ବସନ୍ତି । ସେଥିପାଇଁ ରାସ୍ତା କରେକରେ ଘର ଦୁଆରମୁହଁ ପିଣ୍ଡାରେ କରି ନିଆଯାଇଥାଏ ଗୋଟିଏ ଲେଖାଏଁ ଗୋଲକଣା, ଆବର ପାଇଁ ଅଧାକାନ୍ଥ, ତଳେ ରାସ୍ତା କରର ନର୍ଦ୍ଦମା । ବହୁ ପୁରୁଣା ରୀତି ଏ । ସେହି ପ୍ରକାଣ୍ଡ କୋଠାମାନଙ୍କ ଆଗରେ ଜେଲ୍‌ଖାନାର ଲୁହାବାଡ଼ ପରି ଲୁହାବାଡ଼, ବନ୍ଦ ଥିଲେ ଦିଶେ ପିଞ୍ଜରା ପରି । (ଶିବଭାଇ, ପୃ.୪୬-୯)

"ପାଇକ କୁମୁଟି ଡଙ୍ଗ୍ରିଆ ସଙ୍ଗେ ମଇତ୍ର ବସେ । ଡଙ୍ଗ୍ରିଆ ଭାର ଭାର ଜିନିଷ ତା' ଘରେ ପୂରାଏ; ଏଣେ ଡଙ୍ଗ୍ରିଆ ବିରୋଧ ଲାଗିଲେ ହଣାକଟା ହୋଇ ଲୁହଲୁହାଣ, ବେକଟା ଛିଣ୍ଡେଇ ନେବା ତା' ପକ୍ଷରେ ବଡ଼ କଥା ନୁହେଁ । (ଶିଶୁଭାଇ, ପୃ.୧୨୮)

**୨. ସାହୁକାର ଓ ଗୋତି**

ସାହୁକାର ଓ ରଇତର ପୂର୍ବ କଥିତ ଏହି ସମ୍ପର୍କ ଭିତରୁ ଯେଉଁ ଭୂମିହୀନ ଆଦିବାସୀମାନେ ଉଦ୍ଭବ ହୁଅନ୍ତି, ସେମାନଙ୍କ ଭିତରୁ ବେଶ୍ ଥୋକେ ହୁଅନ୍ତି ସାହୁକାରର ଗୋତି । କୋରାପୁଟ୍‌ରେ ଉତ୍ପାଦନର ଇତିହାସ ହେଉଛି ଏହି ଗୋତିମାନଙ୍କ ଶୋଷଣର ଇତିହାସ । ସାହୁକାରର ସମସ୍ତ ମୁନାଫା ହେଉଛି ଏଇ ଗୋତିମାନଙ୍କ ହାଡ଼, ମାଂସ, ସ୍ୱେଦ ଓ ଅଶ୍ରୁ । ଯେତେ କଡ଼ାରୁ କଡ଼ା ଗୋତିମୁକ୍ତି ଆଇନ ହେଲେନି ଗୋତି ପ୍ରଥା ବନ୍ଦ ହୁଏନାହିଁ । ବିଲାତର ପୁଞ୍ଜି ସମ୍ପର୍କରେ ମାର୍କ୍ସ ଲେଖିଥିଲେ ଯେ, ତାହା ହେଉଛି କ୍ରୀତଦାସମାନଙ୍କର ହାଡ଼, ମାଂସ ଓ ଅଶ୍ରୁ । ଗୋପୀବାବୁଙ୍କ ଭାଷାରେ -

"ଅନ୍ଧାରି ବଣ, ତହିଁ କି ବାଟନାହିଁ । ଘରିପାଖରୁ ଧୀରେଧୀରେ ସାହୁକାର ଆସୁଛନ୍ତି । ଧୀରେଧୀରେ ତାଙ୍କର ବେପାର ବଢୁଛି । ତାଙ୍କର ସହର ବଢୁଛି । ଗାଁ

ବସୁଛି, ଦେଶିଆର ଧାନ ଦେଶିଆକୁ କରଜ ଲଗେଇ ସେମାନେ ସୁଧ ଖାଇବେ, ଦେଶିଆ ତାଙ୍କର ଗୋତି ହେବ । ତା'ର ପୁରୁଣା କ୍ଷେତ ତଷିବ, କିନ୍ତୁ ତାଙ୍କର ଚାକର ହୋଇ । ତେଣୁ ଫସଲ ଉପୁଜେଇବା ତା'ର କାମ, ଫସଲର ମାଲିକ ସାହୁକାର, ଫସଲ ପାଚିବା ଆଗରୁ କିଛିକିଛି ଟଙ୍କା ପକେଇ ଦେଇ ଫସଲ ପାଚିଲେ ସେମାନେ ଦଶଗୁଣ ଶସ୍ତାରେ କିଣି ନେଇଯିବେ । ତାକୁ କହନ୍ତି "ଗଡ଼ମ୍", ଫୁ ଆଉ ତାଳି, ଦେଶିଆ ଖତମ । ବଣ ଭିତରେ ଉଡ଼ିଉଡ଼ି ଚାଲିଛି ସାହୁକାର ତନ୍ତର ଗୁଣ୍ଡୁରିଜାଲ, ତାହାରି ନାଁ ସଭ୍ୟତା ।

"ସେହି ଜାଲରେ କନ୍ଧିଆ ଭାଇ ବି ଧରାପଡ଼େ । ଟିକିଏ ଛଟପଟ ହୁଏ, ତା'ପରେ ତା'ର କାମ ଶେଷ । ଠକେଇବାରେ ତ' ପଡ଼େ, ପଇସା ସରେ, ଗୋତି ହୋଇ ଆପଣା ଧିଆତି ଉପରେ ଆପଣା ପୁଅ, ନାତିଙ୍କ ଧିଆତି ବି ବାନ୍ଧିଦିଏ ଖଟି ମରିବାକୁ, କିନ୍ତୁ ଏତିକିରେ ଯଦି ନିସ୍ତାର ମିଳୁଥାନ୍ତା ।" (ଅ.ସ.ପୃ.୬୨-୬୩)

ଗୋତି ବିଷୟରେ ଗୋପୀବାବୁ ଆହୁରି କହିଛନ୍ତି -

"ପଇସା ଗଣି ଦେବାକୁ ସାହୁକାର ଅଛି ସତ, ଟଙ୍କା ପକେଇ ଦେଇ ମୁଣ୍ଡ କିଣିନେବ ଛ'ସାତ ବରଷ ପାଇଁ, ତା'ପରେ ମୁଣ୍ଡ ବିକାକିଣା ଗୋଲାମ । ସେଇ ବିଲକାମ ହେବ, ସେଇ ଡଙ୍ଗର ପାଇଟି ହେବ, ସେଇ ମାଣ୍ଡିଆ ବୁଣା ଅଳସି ବୁଣାହେବ, କିନ୍ତୁ ଆପଣାର କ୍ଷେତରେ ନୁହେଁ, ପରର କ୍ଷେତରେ, ଆପଣା ପାଇଁ ନୁହେଁ, ପର ପାଇଁ । ଯେଉଁଆଡ଼େ ଗଲେ ମାର୍କାମରା ସାହୁକାର ଘର ଗୋଲାମ ଗୋତି ।" (ପରଜା, ପୃ.୨୮)

"ଆଜି ସେମାନେ ଯିବେ ଗୋତି । ଖରା ନାହିଁ, କାକର ନାହିଁ, ଦେହପା'ର ଭଲମନ୍ଦ ନାହିଁ, ପରର ଜୁଆଳି ବେକରେ ପକାଇ ସେମାନେ ବୁଲିବେ, କାହିଁ ପିଠି ଲାଗିଯାଇଥିବ । ମୁହଁ ଶୁଖାଇ କେବେ ରାତିକୁ ଆସି ଡାକିବେ "ବାପା" ।" (ପରଜା, ପୃ.୩୦)

"ସାହୁକାର ଖାତାରେ ଅଣିକିଆ ଟିକିଲି ମରାହୋଇ "ଗୋଜା" ଅର୍ଥାତ୍ ଦଲିଲ୍ ଲେଖାହେଲା - ଲିଖିତଂ ଇତ୍ୟାଦି ଇତ୍ୟାଦି... । ତଳେ ଲେଖା ହୋଇଥିବା ସାକ୍ଷୀମାନଙ୍କ ଆଗରେ ସାହୁକାର ରାମ ବିଶେଇ ଶୁକ୍ରୁଜାନି ଓ ଟିକ୍ରାଜାନି ଏମାନଙ୍କୁ ମୋଟ ଶହେଟଙ୍କା ଉଧାର ଦେଲା । ଦୁହେଁ ଆଜି ଦିନଠାରୁ ତା'ର 'ଗୋତି' ହେଲେ

ଓ ସେମାନେ 'ଗୋତି' ପାଇଟି କରିବାକୁ ବାଧ୍ୟ ରହିଲେ । ପ୍ରତିବର୍ଷ ଜଣକ ପିଛା ପାଞ୍ଚଟଙ୍କା କରି ସୁଝି ଯାଉଥିବ ଓ ପ୍ରତି ମାସରେ ସାହୁକାର ଠାରୁ ପ୍ରତି ଗୋତି ଖାଦ୍ୟ ସ୍ୱରୂପ ପାଞ୍ଚପୁଟି ମାଣିଆ ପାଉଥିବେ ଓ ଶୀତଦିନେ ଏକଟଙ୍କାର ଖଣ୍ଡେ କମ୍ବଳ ପାଉଥିବେ । ଦରକାର ବେଳେ କର୍ମରେ ଆସିବ ।" ଇତି (ପରଜା, ପୃ.୩୫)

"ବାପ ପୁଅ ସକାଳୁ ଯାଆନ୍ତି, ସଞ୍ଜରେ ଫେରନ୍ତି । ଦିନଯାକ ସାହୁକାର ଘରର ପାଇଟି । କାହିଁ କନାପାଇ ଗାଁ, କାହିଁ କୁଟୁଗାଁ, କାହିଁ ପିପଲାପଦର, ଯେଉଁଠିକି ସାହୁକାର ପଠେଇଲା ସେଇଠିକି, ସଞ୍ଜରେ ଫେରନ୍ତି - କାନ୍ଧରେ ଝୁଲା ହୋଇଥାଏ ଫମ୍ପାଫମ୍ପା ଲାଉତୁମ୍ବା, ଖଣ୍ଡେ ଲେଖାଏଁ ଟାଙ୍ଗିଆ, ତଲ୍ଲା ଆଉ ତଲ୍ଲି । କାମ କରିକରି ହାତପାପୁଲି ସିଝି ଯାଇଥାଏ, ଗୋଡ଼ର ପେଣ୍ଡା ଛିଣ୍ଡି ପଡୁଥାଏ ସତେକି । ପାଟି ଅଠାଅଠା କରି, ତୁଣ୍ଡ ନାହିଁ, ମୁଣ୍ଡ ନାହିଁ, ଘନ ଜଙ୍ଗଲ ଭିତରେ ଥିରିଥାରି ଗଡ଼ିପଡ଼ନ୍ତି । ଜଙ୍ଗଲ ସାଇଁସାଇଁ କରେ, ବନସ୍ତ କନ୍ଦିଏ କନ୍ଦିଏ ଖୁନ୍ଦିହୋଇ ଯାଇଥାଏ ଅନ୍ଧାର, ଢେଉ ଢେଉକା ପାହାଡ଼ ମଝିରେ ଠାସୁକୁ ମାରି ଭରା ମଣିଷ ଚଲାବାଟ । ×××

ଦିନ ପରେ ଦିନ ଗଡ଼ିଯାଏ 'ଗୋତି' ପକ୍ଷରେ ସବୁଦିନ ସମାନ । ଆଜି ଯାହା, କାଲିକି ବି ତାହା । କେବଳ ଖଟଣି, ସାହୁକାର ନିକିତି ଧରି ବସି କାମ ଓଜନ କରିନିଏ । ଦିନେ ଡେରିରେ ଆସିଲେ କସିକରି ଗାଳିଦିଏ, ଆଉ ଦିଏ ହାଡ଼ଭଙ୍ଗା ପରିଶ୍ରମ । (ପରଜା, ପୃ.୪୩)

ଗୋତି ଦିନ ଗଣେ, ସାହୁକାର ଗଣେ ସୁଧ । ଗୋତିର ଦିନ ଗଣା ସରିଯାଏ, ସବୁ ଭୁଲି ଶେଷରେ ସେ ଭାବେ ଖାଲି କାମ ହିଁ ତା'ର ସାର, କାମ ପାଇଁ ତା'ର ଜନ୍ମ । ସାହୁକାର ଭୁଲେନାହିଁ, ଋଣର ଶିକୁଳି ବଢ଼ିବଢ଼ି ଚାଲେ । ×××

"ରାମ ବିଶେଇ ଅନୁସନ୍ଧାନ କରିଚାଲେ ନୂଆ ଗୋତି, ନୂଆ ଜମି, ତା'ର ରାଜ୍ୟ ବଢ଼େ, ଛିଣ୍ଡେନାହିଁ । ବାଘ ଶିକାର ଖୋଜିବୁଲେ, ଚିଲ ଚଢ଼େଇ ଖୋଜିବୁଲେ, ମଣିଷ ଖୋଜିଖୋଜି ବୁଲେ ବଣଜଙ୍ଗଲ ଭିତରେ କନ୍ଦମୂଳ ଆଉ ଶାଗପତର । ସାହୁକାର ରାମ ବିଶେଇ ଖୋଜେ ମଣିଷ । (ପରଜା, ପୃ.୪୬-୭)

"ସେ ଟଙ୍କାକୁ ଗଉଣିରେ ମାପେ, ଧାନକୁ ମାପେ ଶଗଡ଼ରେ, ଏଇ ତା'ର ଗାଁ ବଢୁଛି, ସମ୍ପତ୍ତି ବଢୁଛି, ନାଁ ବଢୁଛି, ଆଉ ଅଳସୁଆ ମୁଣ୍ଡରେ ବଢ଼ିଉଠୁଛି ନାନାପ୍ରକାର ଯୌନବିକାର । କେତେ ସ୍ତ୍ରୀଲୋକ ସେ ଭୋଗ କରିଛି ତା'ର ସୁମାରି ନାହିଁ । ×××

ନୂଆ ମୁହଁଟି ଦେଖିଲେ ସେ ଚିହିଁକି ଉଠେ; ×× ଦେହର ମୂଳରେ ତା'ର ଯୌନ ପ୍ରବୃତ୍ତିର ତଉଲ । ବସିବସି ସେ ଖରାପୁଏଁ ଆଉ ପିଙ୍କା ଟାଣେ, ଆଉ କାମ କରାଳି ଟୋକୀଙ୍କୁ ଅନେଇ ରହେ ପାଣିଆ ପାଣିଆ ଆଖିରେ, ଓଠ ଭିଜିଯାଏ । ରାମ ବିଶେଇ ହସେନାହିଁ, ଖାଲି ଗାରଡ଼ ପରି ରହେଁ, ଖାସୁରୁ ଖାସୁରୁ କରି ଦେହ କୁଣ୍ଡାଇ ହୁଏ, ଏଠୁ ସେଠିକି ସେଠୁ ଏଠିକି ରହେଁ । ବସିବସି ନିଶ ସାଉଁଳେ । (ପରଜା, ପୃ.୬୩)

"ଦି'ଭାଇଙ୍କର ରହିବା ବଖୁରି ଗୋଟିଶାଳରେ । ଛପର ସଡ଼ି ଯାଇଛି । କାନ୍ଥର ଉପରୁ ତଳକୁ ଚୂନପାଣି ପରି ବହିଆସିଛି ଧାରଧାର ସାପଘୁଅ, ଓଳି ସନ୍ଧିରେ ଲାଖିଯାଇ ଖଣ୍ଡଖଣ୍ଡ ସାପ କାତି ପବନ ହେଲେ ଚିରାକନା ପରି ଫଡ଼୍‌ଫଡ଼୍ ହୋଇ ପଦାକୁ ଉଡ଼ି ପଳାଏ । ଥରେଥରେ ଉପରୁ ନଥିକରି ମେଞ୍ଚାଏ ଖସେ । ଘର ଭିତରେ କଙ୍କଡ଼ାବିଛା ଛୁଆ ସାଲୁବାଲୁ ହୁଅନ୍ତି । ତଳଟା ଛତୁଫୁଟିଲା ପରି ବିରିବିରି । ହୁଙ୍କା ହେଇଛି ସେଠି । (ପରଜା, ପୃ.୨୯)

"କେନ୍ଦୁ ଅଡ଼ାର ବଣ ଭିତରେ ଥିବା ସାହୁକାରର ଜଣେ ଅଡ଼ାରି ଗୋତି ଜମ୍ବୁ ପରଜା ଦୌଡ଼ିଦୌଡ଼ି ଆସିଲା । ସାହୁକାର ପାଖେ ଡକା ଛାଡ଼ି କହିଲା - "ମୋ ଭାଇ ସନିଆ ପିଲାକୁ ବାଘ ନେଇଗଲା । ଦୁହେଁ ଆମେ ମଇଁଷି ଜଗିଥିଲୁ, ବାଟେବାଟେ ଯାଉଯାଉ ଭୁଷ୍‌ଭାଷ୍ କରି ଦଉଡ଼ି ଆସି ତାକୁ ନେଇ ପଳାଇଗଲା ।"

"ସାହୁକାର ଖଙ୍କାରି ଉଠି କହିଲା - "ଆଉ ମୋ ରଣଟଙ୍କା । ହଇରେ ସତ୍ୟାନାଶିଆ, ମୋ ଟଙ୍କା ବୁଡ଼େଇ ଦେବୁନା ଦେଇଦେବୁ ? କହ, ଜଲ୍‌ଦି କହ - କୋଡ଼ିଏଟଙ୍କା ଦେଇଥିଲି, ମୋଟେ ତିନିବର୍ଷ ଗୋତି ଖଟିଛି, ଆହୁରି ସୁଧମୂଳ ମିଶି କେତେ ହେବଣି - ଆଗେ ମୋର ଦଶଟଙ୍କାରୁ ଗୋଟାଏ ଦାମୁଡ଼ି ଊଣାହେଲେ ଚଳିବ ନାହିଁ, ହଳ ବିକ୍ ବଳଦ ବିକ୍ ମୋ ଟଙ୍କାତକ ଲେଉଟାଇ ଦେ, ନହିଲେ ବାବା ମୁଁ ଦାବା କେଶ୍ କରିଦେବି ଜାଣିଥା ।" ତତ୍ରୈବ ୯୨-୩

"ଦି'ପାଖେ ନିଘଞ୍ଚ ପାହାଡ଼, ମଝିରେ ଖଣ୍ଡେ ସମାନ ଭୂଇଁରେ ଖୋଲାମେଲା ଜଙ୍ଗଲ । ସେଇ ଜଙ୍ଗଲ ଭିତରେ ସାହୁକାରର ଗୋଟିଏ ଲେଖାଏଁ ଅଡ଼ାର(ଗୋଠ) । ସେଥିରେ ଦୁଇଶ' ତିନିଶ' ମଇଁଷି । ଖୋଲା ଥାଆନ୍ତି ସେମାନେ, ମନଇଚ୍ଛା ବଣ ଭିତରେ ବୁଲୁଥାନ୍ତି । ଏକାଠି ଜାଗାରେ ଶୁଅନ୍ତି । ପାଖରେ ଗୋଟିଏ ଗୋଟିକିଆ ଘର, ତା'ର ଫାଙ୍କଫାଙ୍କ ଝାଟିକାନ୍ଥ, ଉପରେ ଖଣ୍ଡେ ଚାଳ । ଅଡ଼ାର ଘର । ଯେତେବେଳେ ହେଲେ ଦେଖିଲେ ଅଗନାଗ୍ନି ବନସ୍ତ ଭିତରେ ଏପରି ଗୋଟାଏ

ଗୋଟାଏ କୁଡ଼ିଆଘର । ସେଠି ମଣିଷ ନଥାନ୍ତି, ତୁଣ୍ଡମୁଣ୍ଡ ନ ଥାଏ, ତାଟିକବାଟ ଖୋଲା, ଭିତରେ ଶିକାରେ ଓହଳି ଥାଏ ହାଣ୍ଡିହାଣ୍ଡି ଦୁଧଦହି, ଆଉ ସେଠି ଥାଏ ଗୋଟିଙ୍କ ହାଣ୍ଡିକାଉଡ଼ି । ମଇଁଷି ବେକରେ ପୁରୁଣା ବାଉଁଶ ଟିପା, ପୁରୁଣା ଘଣ୍ଟି ।

"ସେଠୁ ପ୍ରାୟ କୋଶେ କୋଶେ ବାଟରେ ଗୋଟାଏ ଗୋଟାଏ ସାନସାନ ଗାଁ, ସେହି ଅଢ଼ାର ଘରକୁ କେନ୍ଦ୍ରକରି ପାଖ ଦୂର ବଣ ଭିତରେ ମଇଁଷିଙ୍କ ସାଙ୍ଗେସାଙ୍ଗେ ଗୋଡି ବୁଲୁଥାଏ, କାନ୍ଧରେ ଗୋଟାଏ ବଡ଼ ତାଳପତ୍ର ଛତା, ଖଣ୍ଡେ ବାଡ଼ି, ସେଥିରେ ଝୁଲୁଥାଏ କିଛି ମାଣ୍ଡିଆ ଚୂନା, ପେଜଭର୍ତ୍ତି ଦୁଇତିନିଟି ଲାଉତୁମ୍ବା, ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ଗୋଟାଏ ବୁଜୁଳି, ଆଉଗୋଟାଏ ଦିଇଟା ବଡ଼ ଶିଙ୍ଗା, ଟାଙ୍ଗିଆ ଥାଏ କାନ୍ଧରେ, ବାଡ଼ି ହାତରେ ଅଢ଼ାରିଆ ସବୁବେଳେ ପ୍ରସ୍ତୁତ ।

"ଅଢ଼ାରିଆ ମଇଁଷିଙ୍କୁ ଟିକିଏ ଲୁଣ ବାଣ୍ଟେ, ସେତିକିରେ ବଶ କରେ । ସେ ଶିଙ୍ଗା ଫୁଙ୍କିଲେ ମଇଁଷି ବୁଝନ୍ତି, ଏଥର ଲୁଣ ବଣ୍ଟାହେବ । ତା'ପରେ ଠେଲାପେଲା ହୋଇ ନାଚି ନାଚିକା ଯେ ଯେଉଁଠି ଥାଆନ୍ତି ଦଉଡ଼ି ଆସନ୍ତି, ଅଢ଼ାରିଆ ଠେକାବନ୍ଧା ମୁଣ୍ଡରେ ଡେଙ୍ଗା ଛତଡ଼ି ଟେକି ହାତମୁଠା କରି ଶିଙ୍ଗା ଫୁଙ୍କିଫୁଙ୍କିକା ଆଗେଆଗେ ଚାଲୁଥାଏ, ଚାରିପାଖରୁ ନାଚିନାଚିକା ଧାଇଁ ଥାଆନ୍ତି ବଡ଼ସାନ ହୋଇ ଦି'ଶ ତିନିଶ ମଇଁଷି ।

ଅଢ଼ାରିଆ ମଇଁଷିମାନଙ୍କୁ ଚିହ୍ନେ । ଗଣିଗାଣି ମନେ ରଖିଥାଏ କାହା ପିଠିରେ କେତେଟା ଭଉଁରୀ ଅଛି । କାହାର ଲାଞ୍ଜ କେତେ ଲମ୍ୱ, ମୋଟ ଉପରେ କାହାଠି କି ଚିହ୍ନ । କେତେ ଚିହ୍ନ ସେ ନିଜେ ଦେଇଥାଏ । ପିଠିରେ ଚିଆଁ ଦିଏ, ଲାଞ୍ଜରୁ ବାଳ କତୁରୀ ପକାଏ, ଶିଙ୍ଘକୁ ଦାଗି ଦିଏ । ଲୁଣ ବାଣ୍ଟୁବାଣ୍ଟୁ ମଇଁଷିଙ୍କୁ ସେ ଗଣତି କରେ । କୋଡ଼ିକୋଡ଼ି କରି । ତା'ପରେ ପୁଣି ଏପାଖ ସେପାଖ ଖେଳେଇ ହୋଇ ଚରିବାକୁ ଯାଆନ୍ତି । କିଏ କେତେ ବାଟ ଚାଲିଯାଏ ଚରିବାକୁ କିଏ କେଉଁଠି ଛପି ରହିଥିବା ଝୋଲାର ଫାଙ୍କରେ ଗଡୁଥାଏ । ଅଢ଼ାରିଆ ସମସ୍ତଙ୍କୁ ମଝିରେ ମଝିରେ ଯାଇ ତନ୍‌ଖି କରିଆସେ ।

ଯେଉଁଠି ପାରି ସେଠି ବଣ ଭିତରେ ସଞ୍ଜହୁଏ । ମଇଁଷି ମନ୍ଦା ମଝିରେ ବଡ଼ ଛତଡ଼ିଟା ପୋତିଦେଇ ତଳେ ଅଢ଼ାରିଆ ଶୋଇପଡ଼େ । ଚାରିପାଖେ କରିଥାଏ ଗୋଟାଏ ବଡ଼ ନିଆଁ । ବରଷା ମାଡ଼ରେ କୁହୁଳି କୁହୁଳି ଧୂଆଁ ହୋଇ ନିଆଁ ବିଲ୍‌କୁଲ୍ ଲିଭିଯାଏ ।

କିନ୍ତୁ ମଣିଷ ଶୋଇପଡ଼ନ୍ତି । ପିଠି ଉପରେ ଗୋଟାଏ ବହଳ ଘୋରି ହେଲାପରି ମଶାମାନେ ନେସିହୋଇ ବସି ଥାଆନ୍ତି, ନିଦ ବାଉଳାରେ ଅଡ଼ାରିଆ ବାଡ଼େଇ ପିଟି ହୁଏ ଟିକିଏ; ପୁଣି ଶୋଇପଡ଼େ । (ପରଜା, ପୃ.୨୮୪-୫)

"ଏଇ ଘଞ୍ଚ ବଣ ଭିତରେ ମଇଁଷି ଗୋଠ ସାଙ୍ଗେସାଙ୍ଗେ ଟାଙ୍ଗିଆରେ ବାଟ ସଫା କରିକରି ସାହୁକାରର ଗୋତି ଆଗକୁ ମାଡ଼େ । କାନ୍ଧିକାନ୍ଧି କଣ୍ଟା, ଫଳ, ଲଟା ଦୋଳି ଖେଳୁଥାଏ । କେତେବେଳେ ଗୋଡ଼ରୁ ଫାଳେ ଯାଏ, କେତେବେଳେ କାନ୍ଧରୁ ଫାଳେ ।

"ବଣବାଟରେ ପାହୁଣ୍ଡ ଠିକ୍‌ରଖି ବାଟ ଚାଲିଲା ବେଳେ ସବୁବେଳେ ମୁଣ୍ଡ ଭିତରେ ଖେଳୁଥାଏ ବାଘର ଧାରଣା । ବାଟେବାଟେ ଘାଟି ନାସି ଉପରେ ଉପରେ ବାଘ ଘୁଅ ଲଦାଲଦି, କେତେ ନୂଆ କେତେ ପୁରୁଣା । କାଦୁଅରେ ବଡ଼ବାଘର ପାହୁଲ ଚିହ୍ନ । ପବନରେ ବାଘ ଗନ୍ଧ । କାଳଖୁଣ୍ଟି ଗଛର ଫୁଲ ଆଉ ବାଘିରିମାଳର ଫୁଲ ଅବିକଳ ବାଘପରି ଗନ୍ଧ ଛାଡ଼େ । ଝୋଲା କରେକରେ ବଡ଼ ଜନ୍ତୁ ଚାଲିଲା ପରି ଝପର ଝପର ଛପର ଛପର ଛପର । ପରଜା - ପୃ.୨୮୬

"ଗୋତିମାନେ ଥିରି ହୋଇ ବସି ଶୁଣନ୍ତି, ହାତ ପାପୁଲିରେ ଗାଲ ଥୋଇ । ସାହୁକାର ଗର୍ଜନ କରିଉଠେ, ଗର୍ଜନ ଛାଡ଼େ ।"

"ଅନ୍ଧାର ପଡ଼ିଆସେ, ଗୋତି କାମ ବୁଝିନିଏ ।"

"କାହାର ଭାଗ୍ୟରେ ପଡୁ ପଛେ ଗାଈ, ମଇଁଷିକୁ ବରତ କରିବା, କାହାର ସାହୁକାର ପାଇଁ ଚୌକି ଖୋଜିବା, କାହାର ପଥର ତାଡ଼ିବା, କାହାର ଗଛ ହାଣିବା । ସାହୁକାର କାମ କରାଇ ଜାଣେ, କାହାରିକୁ ଅଳସ ଆସେନାହିଁ, ବିଶ୍ରାମ ନାହିଁ ।"

"ଅନ୍ଧାର ଜମି ଆସେ । ତାରାର ଆଲୁଅରେ ଗାଁଦାଣ୍ଡ ପଦର ପରେ ସାହୁକାରର ରୁଦ୍ରମୂର୍ତ୍ତି, ଖାଲି ଗୋଟାଏ ଚଳନ୍ତା ଛାଇ । ତଳେ ଜକାଜକି ଗୋତିପଲ, ଉଦାସ କ୍ଲାନ୍ତ । ମନରେ ରଙ୍ଗନାହିଁ । ପିଠିରେ ଛାଲ ଖୁବ୍ କରଡ଼ା, ଗୋଡ଼ ଶିରଗଣ୍ଠି, ତଥାପି ବେଳେବେଳେ ମନ ଭିତରେ ଉଙ୍କିମାରେ ଦୂର ଗାଁର ନୁଆଣିଆ ଚାଳ, ବାରି ପଛପଟେ ଖୋଲାଖୋଲା କ୍ଷେତ, ଖାଲିଖାଲି ଫାଇଁ କରି ଉଇଁ ପୁଣି ନିଭିଯାଏ । ମନରେ, ଶିରାରେ ଉଡ଼ିଯାଏ ଆପଣା ଭୁଲା ଅବସାଦ...

"ଗୋତି ମୁଣ୍ଡ ବିକିଚି, ତା'ର ଛୁଟିନାହିଁ । ବଘେଇ ପାଗରେ ବି ସେ ମଇଁଷି ଚରେଇ ବୁଲୁଥିବ । ମଇଁଷି ହଜିଲେ ସାହୁକାର ତା'ର ତଣ୍ଟିରୁ ଧରିବ, କହିବ - "ମଇଁଷିର ଖରିଦ୍ ନ ଉଠିବା ଯାକେ ଗୋତି ଥାଇ ମର୍, ଯିବୁ କୁଆଡ଼େ ? ତେଣୁ ବଘେଇ ହେଉ, ଯାହା ପାରି ତା' ହେଉ ପଛକେ ଜୀବନମୂର୍ଚ୍ଛା ମଇଁଷି ପଛେପଛେ ତା'କୁ ଧାଇଁବାକୁ ପଡ଼ିବ ।" (ପରଜା - ପୃ.୨୮୭)

"ଆମ ଜମିରେ ଆମେ ଆଉ ଗୋତି ରହିବୁ ନାହିଁ ।" - ଏହା ଥିଲା ନାରାୟଣପାଟଣା ଆଦିବାସୀ ଆନ୍ଦୋଳନର ଡାକରା । ତାହା ମଧ୍ୟ ସେଇ ଲକ୍ଷ୍ମୀପୁର ଅଂଚଳର କଂଧମାନଙ୍କର । ଏହାର ନେତୃତ୍ୱରେ ଥିବ ନାଚିକାଲିଙ୍ଗାର ବାପା ଥିଲା ଜଣେ ଗୋତି । ତେବେ ଏଥିପାଇଁ ଅପେକ୍ଷା କରିବାକୁ ପଡ଼ିଲା ଅର୍ଦ୍ଧଶତାବ୍ଦୀ । ଆଉ ସେଥିରେ ମଧ୍ୟ ସରକାର ସାହାଯ୍ୟ ଯୋଗାଇ ଦେଲା ସେଇ ସାହୁକାରମାନଙ୍କୁ । (ଦ୍ରଷ୍ଟବ୍ୟ : 'ଓଡ଼ିଶାର ଜନଆନ୍ଦୋଳନ')

### ୩. ଜମାନ୍, ଅଧିକାରୀ ଓ ଆଦିବାସୀ

ବ୍ରିଟିଶ୍ ଶାସନ ପ୍ରବର୍ତ୍ତନ ବିରୋଧରେ କୋରାପୁଟ ଇଲାକାର ଆଦିବାସୀ ଜନଗୋଷ୍ଠୀ କିପରି ବିଦ୍ରୋହରେ ମାତି ଉଠିଥିଲେ ଆରମ୍ଭରେ ତା'ର ସୂଚନା ଦିଆଯାଇଛି । ଗୋଟିଏ ପକ୍ଷରେ ବ୍ରିଟିଶ୍ ତା'ର ସମସ୍ତ ଦଳବଳ ଘେନି ଏମାନଙ୍କ ଉପରେ ଦମନଲୀଳା ଆରମ୍ଭ କରିଥିଲା, ଅନ୍ୟପକ୍ଷରେ ଜୟପୁର ରାଜା ନିଜ କର୍ମଚାରୀମାନଙ୍କ ଜରିଆରେ ଶହଶହ ବର୍ଷ ଧରି ଶାସନ ନାମରେ ଶୋଷଣ ଚଳାଇ ଆସିଥିଲେ । ରାଜାଙ୍କ ଅମଳରେ ଥିଲା 'ଭେଟି' ପ୍ରଥା । କିନ୍ତୁ ବ୍ରିଟିଶ୍ ସରକାରଙ୍କ ଏଜେନ୍ସୀ ଏରିଆ ଆଇନ୍ ଆସିବା ପରେ ଆରମ୍ଭହେଲା 'ଶିସ୍ତୁ' ବା ଖଜଣା ପ୍ରଥା । ଜଙ୍ଗଲ ସମ୍ପଦକୁ ଲୁଟ୍‌କରିବା ପାଇଁ ବ୍ରିଟିଶ୍ ଆଣିଲା ଜଙ୍ଗଲ ଆଇନ୍ । ମଦରୁ ଟିକସ ପାଇବା ଲାଗି କଲା ସଲ୍‌ଟୁ ଆଇନ୍ । ଏହିସବୁ ଆଇନ୍‌ର ପ୍ରୟୋଗ ପାଇଁ ନିଯୁକ୍ତ ହେଲେ ଦଳଦଳ କର୍ମଚାରୀ । ବିଦ୍ରୋହର ପ୍ରଥମ ପର୍ବ ସରିଯିବା ପରେ ଏହି କର୍ମଚାରୀ ଗୋଷ୍ଠୀ କୋରାପୁଟ୍‌ର ଅଭ୍ୟନ୍ତରକୁ ବେଳ ଅବେଳରେ ଗସ୍ତ କଲେ, ଏମାନେ 'ଜମାନ୍' ବା 'ଅଧିକାରୀ' ନାମରେ ଖ୍ୟାତ ହେଲେ ଓ ଆଦିବାସୀ ପ୍ରଜାମାନଙ୍କୁ ଦାସ ଭଳି ବ୍ୟବହାର କଲେ । ଅଗମ୍ୟ ପାର୍ବତ୍ୟଅଞ୍ଚଳରେ ଡୋଲିବୁହା ପ୍ରଥା ପ୍ରଚଳିତ ହେଲା । ପୁଲିସ୍ କୋର୍ଟ-ଜେଲ୍‌ର ଧମକ ଦେଇ ଲୋକଙ୍କୁ ଲୁଟ୍‌କରି ଲାଗିଲେ ଓ ସାହୁକାରମାନେ ହେଲେ ଏମାନଙ୍କ ହାତବାରିଶୀ । ଏମାନଙ୍କ କୋପରେ କେତେକେତେ ପରିବାର

ନିଶ୍ଚିହ୍ନ ହୋଇଯାଇଛି ତା'ର ହିସାବ ନାହିଁ । ତେଣୁ ଆଦିବାସୀ ଦୃଷ୍ଟିରେ ଏମାନେ ମଧ୍ୟ ଜଣେଜଣେ କୋପ କରୁଥିବା ଦେବତା - ଭୋଗରାଗ ଦେଇ ସନ୍ତୁଷ୍ଟ କରିଦେଲେ ଶାନ୍ତି । ଏଇ ଭୋଗରାଗ ଦିଆନିଆରେ, ପ୍ରତି ଗାଁର ନାୟକ-ବାରିକ ହେଲେ ପୁରୋହିତ । ପରେ ଏହି ଜମାନ୍ ଓ ଅଧିକାରୀମାନଙ୍କର ସଂଖ୍ୟା ବଢ଼ିଛି, ଭୋଗ ବି ବଢ଼ିଚି - ଅତ୍ୟାଚାର ବଢ଼ିଛି । 'ଏବେ' ଆଉ 'ସେବେ' ଭିତରେ ଆଉ ବିଶେଷ କିଛି ଫରକ ନାହିଁ । ଖାଲି ଯାହା ଡୋଲିବୁହା ଓ ଲଙ୍ଗାବନ୍ଧା ଚିଟାଉ ପଠା ବନ୍ଦ୍ ହୋଇଛି ।

ଗୋପୀବାବୁ ଲେଖିଛନ୍ତି -

"ତଳେତଳେ ଝୋଲା କୂଳେକୂଳେ ଉଣ୍ଡିଉଣ୍ଡିକା ହରଡ଼ଚଢ଼େଇ ଖୋଜିବା ବାହାନାରେ କାନ୍ଧରେ ବନ୍ଧୁକ ପକାଇ ଏକର ସେକର ହେଉଥିଲା ଆଉଜଣେ ଲୋକ । ସେ ସଭ୍ୟଜଗତର ଲୋକ, କାରଣ ସେ ଜଙ୍ଘିଆ ପିନ୍ଧିଥିଲା, ଅଧା କାମିଜ୍ ପିନ୍ଧିଥିଲା, ଏଇ ଅଧାଲଙ୍ଗୁଳି ବେଶରେ, ସେ 'ଅଧିକାରୀ' - ହାକିମ । କାରଣ ସେ ବଣ 'ଗାରଡ଼'(ଗାର୍ଡ଼) ବା ଜଙ୍ଗଲ 'ଜମାନ୍' (ଚପରାଶି), ତା'ର କାମ ବଣ ଜଗିବା, କିଏ ବଣ ହାଣି ପକଉଛି ନିଘା କରିବା, ଧରପକଡ଼ କରିବା, ଗର୍ଜନ କରିବା । ଜଙ୍ଗଲ ଜମାନ୍‌ର ଏ ଅଞ୍ଚଳକୁ ଜମାନ୍(ଗସ୍ତ) ପଡ଼ିଥିଲା । (ପରଜା - ପୃ.୫)

"ଘରିଆଡ଼େ ହୁଲର ହୋଇଗଲା, "ଗାରଡ଼, ଜମାନ୍ ଜମାନ୍" । ନାଇକର ହାତବାରିସୀ ଗାଁର ଜଗୁଆଳ ଏବଂ କର୍ମକର୍ତ୍ତା ଡମ୍ବ 'ବାରିକ' ବାଡ଼ି ହଲେଇ ଘରିଆଡ଼େ ଚହଳ ପକେଇ ବୁଲିଲା, ଲୋକେ ରୁଣ୍ଡହେଲେ । ସିଧା ଆସିଲା, ଚଉଳ, ଡାଲି, ପନିପରିବା, ଗାଁର ଫସଲ, ଜଙ୍ଗଲ ଜମାନ୍ କମ୍ ମହାପ୍ରୁ ନୁହଁନ୍ତି । ବଣରେ ଗୋରୁ ଚରାଇବା ପାଇଁ ହଳପିଛା ଲଙ୍ଗଳ 'ପାନୁ'(ଟିକସ) ଦେବାକୁ ପଡ଼େ । ଏ ତ' ମାମୁଲି । ତାହାଛଡ଼ା କିଏ କେଉଁଠି ଚାଷ କରିବା ସକାଶେ ବାଘୁଆ ଅରମା ମାରି ଜମି କରିଛି ଅର୍ଥାତ୍ 'ପୋଡୁଚାଷ' କରିଛି, ସେଥିପାଇଁ ଜୋରିମାନା ପଡ଼ିବ । କିଏ ବେଆଇନ୍ ଭାବେ ଇଜାର(ରିଜର୍ଭଡ଼) ବଣରୁ ମହୁ ଆଣିଛି କିମ୍ବା ଘର କରିବାକୁ ଶାଳଗଛ, ପିଆଶାଳ ଗଛ କାଟିଛି, ସବୁକଥାକୁ ପତରେଗଲି ଜଙ୍ଗଲ ଜମାନ୍ । ଜଣେ ଜମାନ୍, ତା'ର ଆଠଟଙ୍କା ଦରମା, ତା'ର ଦଖଲରେ ଦଶପନ୍ଦର କୋଶ ନିଘଞ୍ଚ ଜଙ୍ଗଲ । ଶ୍ୱାପଦ ଶଙ୍କୁଳ । କୁକୁଡ଼ା ଆସିଲା । ତା'ର ଡିମ୍ବ ବି ଆସିଲା । ଏସବୁ ଶାଗ । ଅନେକ ଉପାଧିଆ ପଡ଼ିଲେ । ଜଙ୍ଗଲ ଜମାନ୍ ଭୋଗ ପାଇ ପାଇ ବରବୃଷ୍ଟି କଲା ।" (ପରଜା, ପୃ.୬-୭)

"ଖିଆପିଆ ସାରି ପୁଟୁଳା ବୁଜୁଳା ବାନ୍ଧି ଜଙ୍ଗଲ ଜମାନ୍ ଛାଉଣି ଉଠେଇ ନେଲା । ଏଣିକି ଆଉ ଗୋଟିଏ ଗାଁ । ଜିନିଷ ବହିବାକୁ ଚରିଜଣ ଭେଣ୍ଡିଆଙ୍କୁ ବିଲରୁ ଓଟାରିଆଣି ବାରିକ ହାଜର କଲା ।" (ପରଜା, ପୃ.୭)

"ନେଳି ଆକାଶରୁ ବଜ୍ର ଓହ୍ଲେଇବା ପରି ଦୂରରୁ ପର୍ବତ ଉପରେ ଦିଶିଲା ଗୁଡ଼ାଏ ଧୋବଧାଉଳିଆ ମୂର୍ତ୍ତି । ଟୋପି ଦୁଇଟା ଗୋଟାଏ । ସମସ୍ତଙ୍କ ଆଗରେ କାନ୍ଧରେ ବନ୍ଧୁକ, ହାତରେ ବାଡ଼ିଧରି ଜମାନ୍ ।" (ପରଜା, ପୃ.୨୩)

"ଏଇ ଲଙ୍ଗଳା କଉପୁନୀ ପିନ୍ଧା ଅଞ୍ଚଳରେ ଯିଏ ଲୁଗା ପିନ୍ଧିଲା ସିଏ ଅଧିକାରୀ । ଯାହାର ଯେତେ ହୁକୁମ୍ ଜାରି ସେ ସେତେ ବଡ଼ ଅଧିକାରୀ । ଏଇ ଧାରଣା ହିଁ ଶୁକ୍ରଜାନି ପିଲାଟିଦିନୁ ଘୋଷି ଆସିଛି । ସେ ଯେପରି ଅଧିକାରୀ ହେଉ, ମାନିବା ହିଁ ତା'ର କର୍ତ୍ତବ୍ୟ ।" (ପରଜା, ପୃ.୧୨୩)

"ଜମାନ୍ ଶୁଆର ଦେଶିଆ ଘୋଡ଼ା
ଯେଣିକି ଚହିଁଲେ ତେଣିକି ଅଡ଼ା ।"

"ମେଘ, ବାଘ ଆଉ ଅଧିକାରୀ । ତିନିହେଁ ସମାନ । କାହାର ବଳ ଖଟିବ ସେଠି ? ତାଙ୍କ ସଙ୍ଗେସଙ୍ଗେ ଗେଲ ଖେଳିଲେ କିଏ ସମ୍ଭାଳି ରହିପାରିବ ?

"ବାଘ ଶିକାରର ଶେଷଭାଗ ଶିଆଳ ପେଟ ପୂରେଇ ଖାଏ ।

ଗେଲାପଣରେ ବଡ଼ ଉପକାର । ମନ୍ତ୍ର ବଳରେ ବାହା ଟାଣ ହୁଏ । ଭାଗ୍ୟ ସୁପ୍ରସନ୍ନ ହୁଏ । ଯାହା ଇଚ୍ଛା ତାଆ କରିବାକୁ କେହିନାହିଁ । କେତେବେଳେ କେବେ କଦବା ବଡ଼ସାନ ଅଧିକାରୀମାନେ ପାରିଧିକୁ ଆସିଲେ ଜାଣିପାରି ନାରଣପାଟଣା ବାଟେ ପାର୍ବତୀପୁରରୁ କମଳା, କଦଳୀ, ସିଗାରେଟ୍ ବା ଆବଶ୍ୟକ ହେଲେ ନାଲିପାଣି ବୋତଲେ ଦି'ବୋତଲ, ବାରିରୁ କୋବି, କ୍ଷେତରୁ ବସ୍ତାଏ ଦି'ବସ୍ତା ଦେଉଳ ଭୋଗ ଧାନର ଚଉଳ, କାନ୍ଦୁଲଡାଲି, ବଜାରରୁ ଘିଅ ଟିଣେ, ଦି'ଟିଣ, ଆବଶ୍ୟକ ମାନିଆ ଡମସାହିରୁ ଧାଂଡ଼ି ଗୋଟିଏ ଯୋଡ଼ିଏ, ଖେଟେଇ ଦେବାକୁ ଗୋଟି । ଏହିପରି ସଜାଡ଼ି ରଖିଥିଲେ ଅଧିକାରୀ ହସିଦେଇ "ବାଃ ବାଃ ବିଶେଇ" କହି ଚାଲିଯାଆନ୍ତି । ଭୟ ଗଲା । ତା'ପରେ ଗୁରୁର ଉପଯୁକ୍ତ ଚେଲା ଯାହା ଦେଇଥାନ୍ତି ସୁଧ ଅସଲ ମିଶାଇ ସେତେକ ସବୁ ଆଦାୟ କରିନେଇ ବାରିହା ନିଶ ଅଗରେ ଶିରିଷ ଅଠା ବୋଳି ଘୋଡ଼ା ଉପରେ ଚଢ଼ି ପୁଣି ରାଜତ୍ୱ ଆରମ୍ଭ କରନ୍ତି । (ପରଜା, ପୃ.୧୯୬-୭)

"ବୋଧହୁଏ କନ୍ଧର ରାଜୁତି ଅମଳରୁ ବାଡ଼ି ଖଣ୍ଡକରେ ଚିଟାଉ ଲଟକାଇ ସେଥିରେ ନାଲି ଲଙ୍କାମରିଚ ବାନ୍ଧିଦେଲେ ଖବର ଜରୁରି ହୁଏ । ଧଇଁସଇଁ ହୋଇ ଧାଇଁଯାଇ ସେ ଖବର ପହଞ୍ଚେଇବାକୁ ସମସ୍ତେ ବାଧ, ନାହିଁ କରିବାକୁ କାହାରି ଘରା ନାହିଁ । କାଳକ୍ରମେ ଏଇ ପ୍ରଥାର ସୁବିଧା ନେଇଛନ୍ତି ଅନ୍ୟଲୋକ, ତାଙ୍କ ଭାର କାଉଡ଼ି ସହିତ ଘରୋଇ ଚିଠିରେ ବି ନାଲି ଲଙ୍କାମରିଚ ବନ୍ଧା । (ଅ.ସ.ପୃ.୧୨୦)

"କନ୍ଧଡିଶାରିର ଗଣନା ଅନୁଯାୟୀ ବିଖ୍ୟାତ 'ଓକ୍ରା' ଯୋଗରେ ଏହି ପୋଡୁର ଆରମ୍ଭ, ବଣପୋଡ଼ିରୁ ପୋଡୁଋଷର ଉପକ୍ରମ । ଏହାପରେ ଫାରାଷ୍ଟିଗାରଡ଼ର ଅଣ୍ଟାଗୁଞ୍ଜା 'ମାମୁଲି', ତାକୁ ବଳେଇଲେ 'ଫରାଷ୍ଟି' ନିଜେ । ସେତେବେଳକୁ ଘରେ ଫସଲ ଥିବ, ବାରିରେ କଦଳୀ ଥିବ, ସାହୁକାରମାନେ ଗଣି ଦେଇଥିବା ଦାଦନର କଞ୍ଚାଟଙ୍କା କିଛି ଥାଇପାରେ । ଯଦି ନିତାନ୍ତ ହିଁ ମକଦ୍ଦମା ଲାଗିବ, ତେବେ ପଚିଶଜଣଙ୍କ ପୋଡୁଋଷ ଅଞ୍ଚଳ ଦୁଇଜଣଙ୍କ ମୁଣ୍ଡରେ ଅଠା ବୋଲିଦେଇ ଜୋରିମାନା ଗାଁ'ଯାକ ଭେଦାକରି ଦେବେ, ଯାହାର ଯାହା ହେଉ, ସବୁକଥାକୁ ଦାୟୀ ନିଖିଳ, ଗୋଷ୍ଠୀ ।"

"ବେଳେବେଳେ ବଡ଼ ଅଧିକାରୀମାନେ ଗଡ଼ି ଆସନ୍ତି, ଆରାମଚୌକି ଗୋଡ଼ରେ ବାଉଁଶ ବାନ୍ଧିଦେଇ ଡୋଲି କରି ଉଠାଇ ନେବାକୁ ହୁଏ । ଖାଲି ଅଧିକାରୀ ଡୋଲିରେ ବସୁଥାନ୍ତେ କି ? କ'ଣ କରିବା ? ମା' ବାପ, ଜଣକିଆ ଲୋକ, ଉଠେଇ ନେଲେ; ଋଲନ୍ତୁ । କିନ୍ତୁ ସେତିକି ତ' ନୁହେଁ; ଚପରାଶି ବାବୁମାନଙ୍କ ପାଇଁ ଡୋଲି, ଗୁମାସ୍ତାବାବୁ (କିରାନି)ମାନଙ୍କ ପାଇଁ ବି ଡୋଲି, ନୌକର ପାଇଁ, ରୋଷେଇଆ ପାଇଁ, ଜୋତାବୁହା ପାଇଁ, ପାଣିବୁହା ପାଇଁ, ଶେଷରେ କୁକୁର ପାଇଁ ବି ଡୋଲି । ସେମାନେ ଚଢ଼ି ବସିବେ, ଏମାନେ ବୋହିବେ, କମି ଗମତ୍ ?"

"ମାଳଦେଶର ଝିଅ ବର ବାଛି ମନଇଚ୍ଛା ବିଭା ହେବାକୁ ଯେଉଁ ସୁଯୋଗ ପାଏ ବିଧାତା ତାକୁ ସେଥିରୁ ବଞ୍ଚିତ କରିଛି । ମନେଅଛି ସେଦିନର କଥା । ଖରାବେଳେ ଗାଧୋଇ ଆସି ଅଗଣା ଆଡ଼କୁ ମୋହିଁ ଗଲାବେଳେ ଅଚିହ୍ନା ଲୋକଙ୍କ ପାଟି । କୁର୍ତ୍ତା, ଜଙ୍ଗିଆ, ଟୋପି ପଗଡ଼ି - ପ୍ରଭୁ ଅଧିକାରୀ ନିଶ୍ଚୟ । କିଏ ଜଣେ ପ୍ରଭୁ ଅଧିକାରୀ କହିଲେ, 'ଧର ତାଙ୍କୁ, ସଉଦା(ତଲାସ)କର, ତାହାରିଠୁ କଥା ବାହାରିବ । ଦି'ଋରିଜଣ ମାଡ଼ି ଆସିଲେ । ନିଶୁଆ ନିଶୁଆ । ସେ ପାଖରୁ ଗର୍ଜନ ଡମ୍ବର ମିନତି ଶୁଭୁଥାଏ । "ମହାପ୍ରଭୁ, ମୋର ଝିଅ ମହାପ୍ରଭୁ, ସେ କିଛି ଜାଣେନାହିଁ, ତାକୁ କିଛି ନାହିଁ କର ମହାପ୍ରଭୁ ।" (ଅ.ସ.ପୃ.୩୦୫)

"ବାଲିପୂଜା ଅଳ୍ପଦିନ ଥାଏ, ନୂଆ ତାଷଜମି ହେବ ବୋଲି ଗୋଟାଗୋଟା ପର୍ବତ ଜଳି ସାରିଥାଏ । ଫାରାଷ୍ଟି ନିଦ ଭାଙ୍ଗିଲା, ସେ ତନଖି କରିଯିବ । କେଉଁ ଲୋକଟା ବଣ ମାରି ପୋଡ଼ି କେତେ କ୍ଷତି କରିଛି । ତା'ର କୋଡ଼ିଏ କୋଶ ବଣ, ଚାରିକୋଣକୁ ଜଣେଜଣେ ବଣ ଜଗୁଆଳି 'ଗାରଡ଼' । ଗାରଡ଼ ଯଦିବା ପଦାକୁ ବାହାରେ, ସେ ତା'ର ଚିହ୍ନା ଲୋକମାନଙ୍କୁ ସଙ୍ଖୋଳିବାକୁ ଯାଏ, ମଦ ପିଏ, ଗଞ୍ଜେଇ ଟାଣେ, ନ ହେଲେ ଅଫିମ ଖାଇ ତା' ଇଲାକାର ଗଛମାନଙ୍କୁ ସ୍ୱପ୍ନଦେଖେ । ଜର ଆଉ ବ୍ୟଭିଚାରରେ ସଢ଼ିସଢ଼ି ସମସ୍ତେ ଦିଶନ୍ତି ବୁଢ଼ାଘୋଡ଼ା ପରି, ଫାଳେଫାଳେ ଅଧେଅଧେ ମଣିଷ, ଗାଲ ପଶିଯାଏ ବାଳ ପାଚିଯାଏ । ଦରବାରି ବେଶରେ ବାହାରି ପଡ଼ିଲାବେଳେ ପୁରୁଣା ପୋଷାକ ହୁଗୁଳା ହୋଇ ଝୁଲିପଡ଼େ, ବାଦୁଡ଼ିପକ୍ଷୀ ପରି ଫଡ଼ଫଡ଼ ହୁଏ । ଫାରାଷ୍ଟିର ଦରହମା ତିରିଶ, ଗାରଡ଼ର ସାତ । କେବେକେବେ ଚାରିପାଞ୍ଚମାସର ଦରହମା ବାକି ପଡ଼ିଥାଏ । ତଥାପି ଫାରାଷ୍ଟି ଲେଞ୍ଚାର ହାତରୁ ଖାଇ, ଭାରୁଆ ବୋଝିଆଙ୍କ ମୂଲ ଦେଇ ମାସକୁ କୋଡ଼ିଏଦିନ ଗସ୍ତ କରୁଥିବେ । ପର୍ବତର ପବନ ମିଠା, ନିଜ ପେଣ୍ଟର ଆଖପାଖ ଗାଁରେ ଭଲ ଚରାଭୂଇଁ ।(ଅ.ସ., ପୃ.୩୨୪-୫)

"ମଣିଆପାୟୁର ଲୋକ ଘାଟି ଉପରୁ ଧାଇଁଧାଇଁ ତଳକୁ ଓହ୍ଲାଇଲେ, ସେଠି ଖଣ୍ଡେ ପଥର ଚଟାଣ ଅଛି, ଗଛ ଛାଇ ଅଛି, ଯେତେ ଅଧିକାରୀ ଆସିଲେ ସେଇଠି ଭେଟାଭେଟି । "ମହାପ୍ରଭୁ - ମହାପ୍ରଭୁ" କହି ତୋଫାନ୍ ଆଗରେ ବାଉଁଶଗଛ ପରି ସମସ୍ତେ ନଇଁପଡ଼ିଲେ ।" (ଅ.ସ., ପୃ.୩୨୯)

"ଆଗେଆଗେ ଛତର ଛାଉଳ ହୋଇ ଲୋକେ ଦୌଡ଼ି ଚାଲିଛନ୍ତି, ସ୍ତ୍ରୀଲୋକମାନେ ଲୁଚୁଛନ୍ତି, ପିଲାମାନେ ପଳଉଛନ୍ତି, ପଛେପଛେ ବାଡ଼ିଧରି ଜୋତା ଖଟ୍‌ଖଟ୍ କରି ଅଧିକାରୀ ଚାଲିଛନ୍ତି, ତାଙ୍କ ପଛରେ ଗାଁର ବଡ଼ ଲୋକମାନେ । ଆଗେଆଗେ "ମହାପ୍ରଭୁ - ମହାପ୍ରଭୁ" ନାଦ, ଦଣ୍ଡବତ ଜୁହାର; ପଛେ ଶଳା, ଗ୍ୟାଞ୍ଚ, ଲାଞ୍ଜି କୋଡ଼ାକା, ଲମ୍ଡ଼ି କୋଡ଼ାକା (ବେଶ୍ୟାର ପୁଅ) "କିବେ ବଣ ହାଣିଛ ? କିବେ ଜନ୍ତୁ ମାରିଛ ?" (ଅ.ସ.ପୃ.-୩୩୦)

"ବେଜୁଣୀର ଦିବ୍ୟଦୃଷ୍ଟି ଓ ଡିସାରିର ତାରାଗଣାଠୁ ଆହୁରି ତୀବ୍ର ଆହୁରି ପରିଷ୍କାର ଗଣନ ଯୋଖିଦେଇ କନ୍ଧିଆଭାଇଙ୍କୁ ଡାକ୍ ଲଗେଇ ଦେଇ ସେହି ଗୋଟିଏ ସ୍ଥାନରେ ଠିଆହୋଇ ଫାରାଷ୍ଟି ଟିପିନେଲା ଦଶମାଇଲ୍ ଏଗାରମାଇଲ୍‌ଠୁ ଆରମ୍ଭକରି

ମାଇଲିକ ଦୂରରୁ ପୋଡୁ କରିବା ଅଞ୍ଚଳ ସବୁର କ୍ଷେତ୍ରଫଳ, ଗଛର ଜାତି, ତା'ର ଗୋଲେଇ । କେଉଁ ଦୁର୍ଭେଦ୍ୟ ବଣମାଳର କଥା । ଯାଇଆସି ବୁଝି ଲେଖିଥିଲେ ଲାଗିଥାନ୍ତା ମାସେକାଳ, ଗୋଟିଏ ଯୁଗ । ଚେନ୍ ଘୋଷରା ହୋଇନାହିଁ, ଛେକାଛେକି କରି ସର୍ଭେ କରାହୋଇ ନାହିଁ । ଫାରାଷ୍ଟି ପାଇଗଲା ଦଶମିକ ବିନ୍ଦୁ ସହିତ କ୍ଷେତ୍ରଫଳ ।"

"ଶୁଣ କନ୍ଧମାନେ, ତୁମେସବୁ ଗାଧୋଇ କରି ଆସିଛ, ଜଣଜଣ କରି ଯାଇ ତିରୁପତି ଠାକୁରମୁଣ୍ଡରେ ହାତଦେଇ ସଫା କହିଯାଅ, କିଏ କେଉଁଠି କେତେଜଣ(ବଣ) ମାରିଛ ।"... ଏତେ ବଡ଼ ପ୍ରସ୍ତାବ ସକାଶେ କେହି ପ୍ରସ୍ତୁତ ନଥିଲେ । ଅଥଚ ଏହି ଉପାୟରେ ଲୋକଙ୍କ ଧର୍ମ, ଭୟ ଓ ବିଶ୍ୱାସକୁ ଅସ୍ତ୍ରକରି ଫାରାଷ୍ଟି ପାଇଯାଏ ପୋଡୁରକ୍ଷର ହିସାବ ।

"କିନ୍ତୁ କନ୍ଧ ହତାଶ ହୁଏନାହିଁ, ହତାଶ ହେଲେ ମାଳଦେଶରେ ବଞ୍ଚିବା ଅସମ୍ଭବ । ବିନା କାରଣରେ ବିପଦ ଆସୁଥିବ, ତା'ର ବେଳନାହିଁ, ଘଡ଼ି ନକ୍ଷତ୍ର ନାହିଁ, ଫାରାଷ୍ଟି ଯିବା ପଛେପଛେ ପ୍ରଚୁର ମଦପିଆ ଲାଗିଲା । ଲୋକେ ବସି ଧୁଙ୍ଗିଆ ପିଉପିଉ ଆଲୋଚନା କଲେ ଯେ ଏତେଟଙ୍କା ଦେଇ ସୁଦ୍ଧା ତାଙ୍କର କ୍ଷତି ହେଇନାହିଁ । କାଟିହାଣି ପର୍ବତ ଅଞ୍ଚଳରେ ଯେଉଁ ଫସଲ ହେବ, ସେସବୁ ଖୁବ୍‌ବେଶି । ସେ ହିସାବରେ ଦେହ ମେହନତ ପଶିଲା ନାହିଁ । ବାଘଖିଆର ଆଶଙ୍କା ଉପଦ୍ରବ ପଶିଲା ନାହିଁ, ଆଗରୁ ଲୁଣପରି ଟିକିଏ ଟିକିଏ ଦାଦନ ବିଞ୍ଚିଦେଇ ଯେଉଁ ଶସ୍ତା ଭାଉ ଠିକଣା କରିଦେବ ସାହୁକାର, ତାହା ବି ସେ ହିସାବରେ କଷ୍ଟ ହେଲାନାହିଁ । କେବଳ - କନ୍ଧ ଖୁସି ରହିବାକୁ ଗୋଟାଏ କାରଣ ଗଢ଼େ, ସେତିକି ।"

"ଫାରାଷ୍ଟି ଗଲା । ଭୟ ଗଲା । ହେଇ ଚାଲିଯାଉଛି ସେ, ଅଧିକାରୀ ରୂପରେ, ବୋଝ ବୋଝିଆ ଧରି । ଗାଁର ଛେଳି ପଛକୁ ଓଟାରି ହୋଇହୋଇ ମେଁମେଁ ବୋବେଇ ଚାଲିଛନ୍ତି, କୁକୁଡ଼ା ଗୋଡ଼ ବନ୍ଧାହୋଇ ମୁଣ୍ଡ ତଳକୁ କରି ବାଡ଼ିରେ ଲଟକିଛନ୍ତି । ଯାହା ଯିବାର ଯାଉ, ଚକ ଗଡ଼ିଗଡ଼ି ଫାରାଷ୍ଟି ଫେର୍ ଆସୁଆସୁ ଯାଏ ଦିନା କେତେ । (ଅ.ସ. ପୃ.୩୪୦)

**୪. ବାହାର ସଭ୍ୟତାର ଆକ୍ରମଣ : ବାହାର ସଭ୍ୟତା ସହ ଆଦିବାସୀ ସଭ୍ୟତାର ଦ୍ୱନ୍ଦ୍ୱ**

"ଯଦି ଆଇନ୍ ଲେଖାଳିକୁ ମୁଁ ଥରେ ଭେଟି ପାରନ୍ତି, ତେବେ ତାକୁ ପଚାରନ୍ତି ହଇହୋ, ତମେ ଇଏ କି ଆଇନ୍ ଲେଖୁଛ ? କାହାପାଇଁ ? ଯିଏ ଲେଖିଚି ତା'

ଉପରେ ମୁଁ ଟିକେ କ୍ରୁଦ୍ଧ ମଧ୍ୟ ହୋଇପାରିବିନି ? ମୋର ହାତ ସୁଦ୍ଧା ଉଠେଇ ପାରିବିନି । ଗୋଟିଏ ତାଲା ଓ ଚାବିକାଠି ପରି ତୁମର ଏ ଆଇନ୍, ଯାହା ମୋର ହୃଦୟକୁ ସୁଦ୍ଧା କୋଲପ ପକେଇ ଦେଇଛି ଏବଂ ମୋତେ ଶେଷ କରିଦେଇଛି ?" ଗର୍କିଙ୍କ ଆତ୍ମଜୀବନୀ, "ମୋ ବିଶ୍ୱବିଦ୍ୟାଳୟ" ପୃ.୫୨୨(ଇଂରାଜୀ)

ଜଣେ ଆଦିବାସୀ ପାଇଁ ଆମର ଆଇନ୍‌କାନୁନ୍‌ର ଭୂମିକା ଠିକ୍ ଏଇଆ । ବ୍ରିଟିଶ୍‌ସରକାର ନିଜ ଦେଶରେ ଭାରତ ପାଇଁ ଯେଉଁ ଆଇନ୍ କରିଛନ୍ତି, ତା'ର ଉଦ୍ଦେଶ୍ୟ ହେଉଛି ଆଦିବାସୀ, ଦଳିତ ଓ ଚାଷୀ, ଶ୍ରମିକମାନଙ୍କର ଶୋଷଣ । ଗଣତନ୍ତ୍ର କେବଳ ଧର୍ମକୁ ଆଖିଠାରେ । ପୁଣି ସେ, ଉପନିବେଶବାଦୀ ରୂପେ ଭାରତର ଲୁଟ୍ ପାଇଁ ଯେଉଁ ଆଇନ୍‌କାନୁନ୍‌ର ଶୃଙ୍ଖଳ ବେଢ଼େଇ ଥିଲେ, ଆମ "ସ୍ୱାଧୀନତା" ତାକୁ ଆହୁରି ଭିଡ଼ିଦେଲା । ସେଇ କ୍ରମରେ ସ୍ୱାଧୀନତା ପରେ ହାତରେ କ୍ଷମତାର ଡୋର ଧରିଥିବା କଳାଜୋକମାନେ ଭାରତୀୟ ରାଷ୍ଟ୍ରକୁ ଏକ କ୍ରୂର ଅର୍ଦ୍ଧଉପନିବେଶବାଦୀ ରାଷ୍ଟ୍ରରେ ପରିଣତ କରିଦେଲେ । ବାହାର ସଭ୍ୟତା ଆଦିବାସୀ ଇଲାକାକୁ ତା'ର ଉଗ୍ର ଲୁଟେରା ରୂପ ନେଇ ପ୍ରବେଶ କଲା ଏବଂ ଆଦିବାସୀ ସଭ୍ୟତାର ସବୁକିଛି ନିଜସ୍ୱ ସଂସ୍କୃତି ଓ ପରମ୍ପରାକୁ ଧ୍ୱଂସ କରିଦେବାର ଜାଲ ମେଲାଇ ଦେଲା । କୋର୍ଟ, କଚେରୀ, ଥାନା, ଜେଲ୍ ଇତ୍ୟାଦି ଶୋଷଣର ଫିସାଦି ଜାଲ ଆଦିବାସୀର ନିରକ୍ଷରତା ଓ ସରଳତାର ସୁଯୋଗ ନେଇ ଏଇ ସଭ୍ୟତାର ସବୁକିଛି ସୁନ୍ଦରପଣକୁ ଚଟି ଦେଇଗଲା । ବାହାର ସଭ୍ୟତା ଓ ଆଦିବାସୀ ସଭ୍ୟତାର ଏଇ ଦ୍ୱନ୍ଦ୍ୱ ଗୋପୀବାବୁଙ୍କ ଉପନ୍ୟାସରେ ତୀକ୍ଷ୍ଣଭାବେ ଫୁଟିଉଠିଛି । ସାମ୍ରାଜ୍ୟବାଦୀ ଅପସଂସ୍କୃତିର ଆକ୍ରମଣରେ ବା ବାହାର ସଭ୍ୟତାର ଆକ୍ରମଣରେ ଭାରତୀୟ ସମାଜର ନିଜସ୍ୱ ଲୋକସଂସ୍କୃତି ଯେପରି କ୍ଷତବିକ୍ଷତ, ଆଦିବାସୀ ସଂସ୍କୃତି ଆଜି ସେଇଭଳି ମ୍ରିୟମାଣ ହୋଇ ପଡ଼ିଛି ଏହି ବାହାର ସଭ୍ୟତାର ଅର୍ଥ ହେଉଛି ହିନ୍ଦୁ ଆର୍ଯ୍ୟସଭ୍ୟତା ବା ମିସନାରୀ ସଂସ୍ଥାର ସଭ୍ୟତା, ଗୋଟିଏ କଥାରେ ସାହୁକାରୀ ସଭ୍ୟତା ।

"ଏଇ ବଣ ବାହାରର ଲୋକ ବଣ ଭିତରକୁ ଆଖିଝଲସା ନୂଆ ଜିନିଷ ଆଣନ୍ତି, ଆଣନ୍ତି ରଙ୍ଗରଙ୍ଗର କାଚ, ଦେଶିଆ ତହିଁରେ ମାତିଯାଏ । କେବେ ଆପଣା ହାତରେ ତିଆରି କରି ସେ ଧୁଙ୍ଗିଆ ପିଉଥିଲା, ସଭ୍ୟତା ଦେଖାଏ ବିଡ଼ି, ଆପଣା ହାତରେ ବୁଣି ସେ ଲୁଗା ତିଆରି କରୁଥିଲା । 'ଡମ୍ବ'ର ଖଦି, 'ମିରିଗାଣ୍'ର କୁମ୍ଭପକା ମୋଟାଲୁଗା, ପରଜା(ପାଣ୍ଠିଆ) ଗଦ୍‌ବାର କେରିପଟର ବାଘପଟିଆ ଲୁଗା । ସଭ୍ୟତା

ଏସବୁ ବୁଢ଼ାଏ, ଦେଖାଏ ନୂଆଲୁଗା, କୋଟ୍‌କାମିଜ୍ । ଦେଶିଆ ବାବୁ ହେବାକୁ ମନକରେ, କୌପୁନୀ ପିନ୍ଧେ, ଅଥଚ ଦେହରେ ଖଣ୍ଡେ କୋଟ୍ ଲଗାଏ, ତେଲେଙ୍ଗା ସାହୁକାରକୁ ହନୁକରଣ କରି କୌପୁନି ଉପରେ କାନରେ ଲଗାଏ କୁଣ୍ଡଳ, ମୁଣ୍ଡରେ ମସ୍ତବଡ଼ ପଗଡ଼ି, ସେଥିରେ ସେ ପିକା ଟାଣିବା କାହାଲୀ ପୁଞ୍ଜାଏ ଖୋସିଦିଏ । କେବଳ ସେତିକି ନୁହେଁ, ସେ ନିଜର ବୁନିଆଦିକୁ ଘୃଣାକରି ଶିଖେ, ନିଜର ଭାଷାକୁ ଭୁଲିବାକୁ ମନକରି ଟିକିଏ ତେଲେଙ୍ଗା ଓ ଓଡ଼ିଆ ମିଶେଇ ଦିଏ ।

ରାସ୍ତା କରର ଦେଶିଆମାନେ ଭାଷା ଭୁଲିଗଲେଣି, ଦେଶ ଛାଡ଼ିଲେଣି, ତାଙ୍କର ଘର ତିଆରି କି ଘରକରଣାର ପ୍ରାଚୀନ ଶୈଳୀ କେଉଁଦିନୁ ଗଲାଣି, ଗଦ୍‌ବାର ଗୋଜିଆ ଘର, ମନ୍ଦିର ପରି ପରଜାର ଚୌଖୁଣ୍ଟ ଘର, ରଙ୍ଗରଙ୍ଗ ମାଟିରେ ଚିତ୍ରକରା; କନ୍ଧର ଗୋଷ୍ଠୀ ମାନିଆ ଏକାଶେଣିଆ ଗାଁ ପରିବର୍ତ୍ତେ କେତେଗୁଡ଼ିଏ ଅବର୍ଜିଆ ମେଣ୍ଢାକୁଡ଼ିଆ ସେଠି ।

ସାମାଜିକ ଜୀବନରେ ବି ସେହିପରି ବିଭ୍ରାଟ । ନୂଆ ସଭ୍ୟତାର କବଳରେ ପଡ଼ି ସମାଜ ଭାଙ୍ଗିଛି । ସାବୁନଧୁଆ ଶାଢ଼ୀପିନ୍ଧା ସ୍ତ୍ରୀଲୋକ ବେଶି ସାବୁନ୍ ଧୁଆ ବେଶି ଧୋବପିନ୍ଧା ବାହାର ପୃଥିବୀର ପୁରୁଷଙ୍କ ଆଡ଼କୁ ଚହଲି ଯାଇଛନ୍ତି, ତେଲୁଗୁ ଦେଶରୁ ଆସି ପଶିଛି ମେହ ଉପଦଂଶ ରୋଗ, ରାସ୍ତା କରର ଦେଶିଆ ପଲ୍ଲୀର ହାଡ଼ଶସ ଭିତରେ ।

"କନ୍ଧ ଅଭିଧାନରେ ବେଶ୍ୟା ଶବ୍ଦର ପ୍ରତିଶବ୍ଦ ନାହିଁ, ଗଦ୍‌ବା ଅଭିଧାନରେ ନାହିଁ, କିନ୍ତୁ ସୌରାପଲ୍ଲୀ ହାଟରେ ନାରଣପାଟଣା, ବନ୍ଧୁଗାଁ, ଆଲମଣ୍ଡାର କନ୍ଧ ଓ ଡୁମ୍ବ୍ରିପୁଟ, ଶିମିଳିଗୁଡ଼ା, ଜଇନଗର, ନଓରଙ୍ଗପୁରର ଗଦ୍‌ବା, ନାରଣପାଟଣା, କୋରାପୁଟ୍ ପାଖ ଚିନ୍ଦିରି ଗାଁ ଓ ଆଉ କେତେ ଅଞ୍ଚଳର ପରଜା ଓ ସବୁ ଅଞ୍ଚଳରେ ନୂଆ ହାୱା ଲାଗିଥିବା ଖ୍ରୀଷ୍ଟିଆନ୍ ଡମ୍ବ ବା ପାଣ, ଏମାନଙ୍କ ଅଭିଧାନରେ ଖରାପ ଶବ୍ଦର ଆବଶ୍ୟକତା କେଉଁଦିନୁ ହେଲାଣି । ଜାତି କ୍ଷୟକାରୀ ରୋଗ ତ' ନିଆଁପରି ମାଡ଼ି ଚାଲିଛି । ବଣ ଆଉ ସଡ଼କ ଧୂଳିର ସଂଘର୍ଷଣରେ ଯେଉଁମାନେ ନୂଆ ରୂପ ପାଉଛନ୍ତି, ସେମାନେ ଉଦ୍ଦେଶ୍ୟହୀନ କାମକ୍ଷୁଧାର ଫଳ, ତାଙ୍କର ଗଠନ ପାଇଁ ବଛାବଛି ନଥିଲା କି ଯୋଜନା ନଥିଲା । ମସ୍ତିଷ୍କ ଦୁର୍ବଳ, ମନରେ ବିକଟ ପାଶବିକତା, ଦେହରେ ରୋଗ ବା ରୋଗର ଉପସର୍ଗ ଗଣ୍ଠିବାତ, ପେଟଫୁଲା, ଚେହେରା ବିଶିଷ୍ଟହୀନ - ସାହାବ ଆଖିପରି ଆଖି, ବ୍ରାହ୍ମଣ କପାଳ, କନ୍ଧ ଥୋମଣୀ, ଗଦ୍‌ବା ଭୂଲତା ।

"ତାଙ୍କର ଅତୀତ ସରିଛି, ପୁଣି ପୁରୁଷ ପୁରୁଷ ଉତୁରା ଉତୁରିରେ ସେମାନେ ନୂଆ ହୋଇ କେବେ ଦଳ ବାନ୍ଧିବେ, ତାଙ୍କର ଆପଣାର କେଉଁଠି ମୂଳଦୁଆ, କେହି ଜାଣେନାହିଁ । ସେମାନେ ଗୋତି, ମଜୁରିଆ, କୁଲି । ସଞ୍ଜ ବୁଡ଼େ ରାସ୍ତା ଉପରେ ଦଳଦଳ ହୋଇ ସେମାନେ ଯା'ଆସ କରୁଥାନ୍ତି । ଆଖିରେ ଆଶା ନାହିଁ, ଛାତିରେ ବଳନାହିଁ, ସେମାନେ ମଦଦୋକାନ ପାଖରେ ଭିଡ଼ ଲଗାଉଥାନ୍ତି, ତାଙ୍କର ସ୍ତ୍ରୀଲୋକମାନେ ମୁଣ୍ଡରେ ଫୁଲପେନ୍ଥା ଖୋସି ଲୁଗାଟିମାନ ସଜାଡ଼ି ପିନ୍ଧି ହେଁହେଁ ଫେଁଫେଁ ହୋଇ ବୁଲୁଥାନ୍ତି । ନିଛାଟିଆ ରାସ୍ତାରେ ପୁରୁଷମାନଙ୍କୁ ଦେଖିଲେ ଗୀତ ବୋଲନ୍ତି ।

"ଏଇ ଅଧା ତିଆରି ପ୍ରେତଦଳଙ୍କ ଭିତରେ କେଉଁ ଦେଶ ବିଦେଶର କେତେ ବଡ଼ଲୋକ ସାନଲୋକର ପୁଅଝିଅ ଅଛନ୍ତି କିଏ କହିପାରିବ ? ନିଛାଟିଆ ବଙ୍ଗଳାଘର, ବିଲାତି ମଦର ନିଶା, ବାରବୁଲା ବାଟୋଇ, ତା'ର ନିର୍ଜନ ବନବାସ, ଲଙ୍ଗଳା ବଣଦେଶ, ସବୁ ମିଶାମିଶି ବିଶ୍ୱାମିତ୍ର ସୃଷ୍ଟି, ଅନାବନା ବାଟର ବାଟୋଇ ଚାଲିଯାଇଛି, ସେ ତା'ର ସମ୍ମାନ ମୁଣ୍ଡେଇ ବାଟ ଚାଲୁଥିବ କେଉଁ ଦୂରଦେଶରେ, ଏଠି ତା'ର ପ୍ରେତ ସନ୍ତତି, ଯେଉଁମାନେ କେଉଁ କୁଳର ନୁହଁନ୍ତି । କୁଲି ଗୋତି ସିଟିଏମ୍ ବେଶ୍ୟା । ଏଇ ସଭ୍ୟତାର ପହିଲି ରୂପ ଭେକ ବଣଦେଶରେ । (ଅ.ସ.ପୃ.୬୨-୬୫)

"କନ୍ଧଦେଶର ପ୍ରାଚୀନ ରୀତି ସେଠି (ବଣ ଗାଁମାନଙ୍କରେ) ରହିଛି । ଗାଁ ମୁଣ୍ଡିଆଳର ମାନ୍ୟ ଅଛି । ଗଣ-ମତ, ଗଣ-ତନ୍ତ୍ର ଅଛି ସାମାଜିକ ଜୀବନରେ । କିନ୍ତୁ ଏଇ ବଣ ଭିତରେ ପୁଣି ତ' ବାହାର ପୃଥିବୀର ପ୍ରଭାବ ପଡ଼ିଆସୁଛି ଟିକିଏ ଟିକିଏ । ମେରିଆ ବଳି ବନ୍ଦ ହେଲାଣି, ଅଧିକାରୀମାନେ କମାନ୍ ବୁଲିଆସନ୍ତି, ସାଲୁଟ୍ ଆସନ୍ତି ମଦରନ୍ଧା ଦେଖି, ବଣ ଗାରଡ଼ ବଣମରା ଦେଖିଆସନ୍ତି, ଆସନ୍ତି ସାହୁକାରମାନେ ହିଡ଼କ୍ଷେତ ଦେଖିବାକୁ, ପ୍ରସାର ବଢ଼େଇବାକୁ, କିନ୍ତୁ ଏ ପର୍ଯ୍ୟନ୍ତ ଏ ଅଞ୍ଚଳକୁ ନାଲିସଡ଼କ ପଡ଼ିନାହିଁ, ମାଳର ଗୁମର ପଦାରେ ପଡ଼ିନାହିଁ । ଜଗୁଆଳ ଅଛନ୍ତି ବାଘ, ରୋଗ, ପର୍ବତ । ଏହିପରି ଦିନେ, ବଣର ଛାତି ଚିରି ନାଲିରାସ୍ତା ଫିଟିଯିବ । ଗାଡ଼ି ବୋଝେଇ ମଣିଷ ଚାଲିବେ ଆସାମ ଚ'ବଗିଚାକୁ, ବଙ୍ଗଳା ବନ୍ଧାହେବ, ଅଧିକାରୀ ବିଜେ କରିବେ, ଇସ୍କୁଲ୍, ଡାକ୍ତରଖାନା, କଚିରୀ ଆହୁରି ଅଧିକାରୀ । ବଣଦେଶ ସଭ୍ୟ ହେବ । ପରିବର୍ତ୍ତନହୀନ କନ୍ଧଦେଶ ଦୁଲୁକୁଥିବ, ଯୁଗ - ସଭ୍ୟତାର ରୂପରେ ।"(ଅ.ସ.ପୃ.୬୬)

ଗୋପୀବାବୁଙ୍କର ସେଇ ଭବିଷ୍ୟବାଣୀ ଆଜି ସତ୍ୟ ହୋଇଛି । ସଭ୍ୟତାର ପ୍ରସାର ପାଇଁ ସଡ଼କ ଓ ରେଳ ଲାଇନ୍‌ର ବିସ୍ତାର ଜରୁରି ହୋଇଛି । ପ୍ରଥମେ ସଭ୍ୟତାର ବିସ୍ତାର ଅର୍ଥାତ୍ ଶୋଷଣର ବିସ୍ତାର । ଖଣି ଓ କାଠ, ବାଉଁଶ ଲୁଣ୍ଠନର ବିସ୍ତାର । ତା' ବିରୋଧରେ ଦେଖା ଦେଉଥିବା ମେଳି ବା ବିଦ୍ରୋହ ବା ଆନ୍ଦୋଳନର ଦମନ ପାଇଁ ଅତିଶୀଘ୍ର ପୁଲିସ୍‌ବାହନୀ ପହଞ୍ଚାଇବା ଜରୁରି ହେବାରୁ ସଡ଼କ ଓ ରେଳପଥର ବିସ୍ତାର । ଗତ ୫ବର୍ଷ ଭିତରେ ଆରମ୍ଭ ହୋଇଥିବା ସବୁଜ ଶୀକାର ଓ ଲୋହିତ ଶୀକାରକୁ ତ୍ୱରାନ୍ୱିତ କରିବା ପାଇଁ ଏସବୁ ସଡ଼କକୁ ଆହୁରି ପ୍ରଶସ୍ତ ଓ ଶକ୍ତ କରାଯାଇଛି । ରେଳଲାଇନ୍ ଆଗେଇ ଯାଇଛି ଜଗଦଲ୍‌ପୁର, ବୈଲାଡିଲା ପର୍ଯ୍ୟନ୍ତ ।

"ବଣ ସରୁଛି, ବର୍ଷା କମୁଛି, ଘର ଭାଙ୍ଗୁଛି । କ୍ଷେତ ଗଲିଯାଉଛି । ଜାତି ଖସୁଛି । ରକ୍ତଗୋଳିଆ ହେଉଛି, ନୂଆ ରୋଗ ଘୋଟୁଛି । ଗହଳଚହଳ ବଢୁଛି । ନାନାପ୍ରକାର ବିଚିତ୍ର ଶବ୍ଦରେ କାନ ଅତରା ପଡୁଛି । ବଣର ଶବ୍ଦ ବୁଡୁଛି ।"

"ଘରିଆଡ଼େ କେଉଁମାନେ ଡେଇଁଡେଇଁ ବୁଲୁଛନ୍ତି, ଗଛକୁ ଗଛ, ଘରକୁ ଘର ? ସେମାନେ ମୁଷା ନୁହଁନ୍ତି, ପ୍ରାସ୍କା ନୁହଁନ୍ତି ଅଥଚ ମାଙ୍କଡ଼ । ଆଉ ତାଙ୍କର ଲାଙ୍ଗୁଡ଼ରେ ବଡ଼ବଡ଼ ନିଆଁହୁଳା, ତାହାରି ତାତିରେ ଛଟପଟ ହୋଇ ସେମାନେ ଡେଇଁଛନ୍ତି, ନିଜେ ଜଳୁଛନ୍ତି, ଦେଶ ପୋଡୁଛନ୍ତି ପଞ୍ଝାକୁ ପଞ୍ଝା । ଗଛନାହିଁ, ପତର ନାହିଁ, ଖାଲି ଲଣ୍ଡା ପଥର । ତାହାରି ଉପରେ ଡେଇଁ ଲାଗିଛନ୍ତି ହୁଳା ଲାଙ୍ଗୁଡ଼ିଆ ମାଙ୍କଡ଼ । ଗାଁକୁ ଗାଁ, ଦେଶକୁ ଦେଶ ସବୁ ପୋଡ଼ି ଛାରଖାର ହେଉଛି, ଉଠୁଛି ଆକାଶକୁ ଧୂଆଁ, ପୋଡୁ କଲେ ଯେପରି ଧୂଆଁ ଉଠେ । ××× ଭାଗ୍ୟର ଦ୍ୱାହିଦେଇ କନ୍ଧ ଘରକରଣା କରିଯାଏ, ପାହାଁନ୍ତି ପହରେ ପର୍ବତ ଉପରେ ଆକାଶର ନାଳିଗାର ପରି ବଣ କରେକରେ ଦେଖାଦିଏ ନାଲି ସଡ଼କର ରେଖା, ଧୀରେଧୀରେ ସେ ଲମ୍ବେ, ଭିତରକୁ ଭିତରକୁ । (ଅ.ସ.ପୃ. - ୬୬-୬୭)

"ନାଲି ରାସ୍ତା ପଶୁଛି ଧୀରେଧୀରେ, ଖଣ୍ଡେ ତତଲା ନାଲିଆ ଛୁରୀପରି । ସେହି ଛୁରୀର ଛୁଆଁତା ଲାଗି କେତେ ରାଇଜର କେତେ ରାମ ରାବଣ ଅମଳର ଦଣ୍ଡକାରଣ୍ୟ ମାଲ୍ୟବନ୍ତ ଗିରିର ଶାଳଗଛସବୁ ମୂଳରୁ ଛେଦି ହୋଇଯାଉଛି । ସପ୍ତତାଳ ଭେଦ ହୋଇଛି; ମେଦାମେଦା ଅସୁରର ହାଡ଼ର କୁଢ଼ପରି ଗଦା ହୋଇପଡ଼ିଛି ପୁରୁଣା ମଣିଷର ସଂସ୍କୃତିର କୋଣାରକ, ଗଦା, ଗଦା । ×× ସଭ୍ୟତାର ଭଗ୍ନାଂଶ ଗଲେ ନାଲି ରାସ୍ତାରେ ଗଡ଼ିଗଡ଼ିକା ଭିତରକୁ; ଭିତରକୁ, ନାଲିରାସ୍ତା ଲମ୍ବିଯାଏ । ତା'ର

କଳକବ୍‌ଜାରେ ଆଧୁନିକତାକୁ ଉପହାସ କରି ସେହିବାଟେ ପାରିହୁଏ ଚଢଉପରବ । ରାସ୍ତାଏ ରାସ୍ତାଏ, ବଣରୁ ଆସି ରାସ୍ତାକୁ କଟାକଟି କରି, ରାସ୍ତାକୁ ଉପେକ୍ଷା କରି । କୌପୁନି ପିନ୍ଧା ଉନ୍ନତ ପୁରୁଷ, ହାତରେ ଧନୁ, ବର୍ଚ୍ଛା, ଓଡ଼ିଆନଳୀ । ପଞ୍ଝାପଞ୍ଝା ସ୍ତ୍ରୀଲୋକ... କେବଳ ଫୁଲ, ମଦ, ଗୀତ । (ଅ.ସ.ପୃ.-୧୫୭-୮)

"ଲୁଗା ପିନ୍ଧିବା ନ ପିନ୍ଧିବାକୁ ପରେଇ ନାହିଁ । ବାହାର ଦୁନିଆ ଉପରେ ନିର୍ଭର ଲୁଣ ପାଇଁ । କେଉଁ ଅତୀତ କାଳରେ କେବେ ମଣିଷ ଲୁଣର ବଶ୍ୟତା ନେଇଥିଲା ଆଉ ତା' ମନେନାହିଁ । ସେହି ଲୁଣ ଟିକକ ଆଣିବା ପାଇଁ ତା'ର ବାହାର ଦୁନିଆ ସହିତ ସମ୍ବନ୍ଧ, ସେଇଥିପାଇଁ ତା'ର ବାଟବୁଲା, ତା' ସଙ୍ଗେସଙ୍ଗେ ବାହାର ଲୋକଠୁ ଭଲକଥା ମନ୍ଦକଥା ଶିକ୍ଷା ।"

"ସମତଳର ଲୋକେ ଭାବନ୍ତି ଯେତେଦିନ ଯାକେ ଡଙ୍ଗ୍ରିଆକନ୍ଧ, ଲାଞ୍ଜିଆ ସଓରା, କୋଟିଆ କନ୍ଧ ଏହି ଆଦିମ ଅବସ୍ଥାରେ ଥିବେ, ସେତେବେଳ ଯାକେ ତାକୁ ଠକି ତାଙ୍କଠୁ' ସୁବିଧା ଅସୁଲ କରିହେବ - ଏହି ଯେପରି ଘରିଅଣାକୁ ଛୟାନବେଟି କଦଳୀ, ଟଙ୍କାଏ ଦି'ଟଙ୍କାକୁ ଗୋଟାଏ ମଇଁଷି ଛାଲ, ଟଙ୍କାଏ ଦେଢ଼ଟଙ୍କା ପକାଇଦେଲେ ଟୋକେଇଏ ହଳଦୀ । ଉପନିବେଶ ସ୍ଥାପନକାରୀଙ୍କ ପରି ସେମାନେ ବି ଭାବନ୍ତି ଯେ ଶୋଷଣ ପୂର୍ବରୁ ଆଗ କ୍ଷେତ୍ର ପ୍ରସ୍ତୁତ କରିବା ଦରକାର, ସେଥିପାଇଁ ଦରକାର ନିଶାଦ୍ରବ୍ୟ ଠେଲିବା । ଡଙ୍ଗ୍ରିଆକୁ ମଦ ପିଆଇବା, ଆଦିବାସୀଙ୍କ ଗାଁଗହଳିରେ ସ୍ଥାନେସ୍ଥାନେ ମଦଦୋକାନ ଖୋଲିଦେବା । ସେମାନେ ଚାହାଁନ୍ତି ଡଙ୍ଗ୍ରିଆ ଜୁରୋପର୍ବ କରୁଥାଉ, ଅଶିକ୍ଷିତ ହୋଇ ପଡ଼ିଥାଉ, କେହି ନ ଯାଆନ୍ତୁ ତା' ପର୍ବତକୁ, କେବଳ ସେହି ବେପାରୀଙ୍କ ଛଡ଼ା । ତେଣୁ ନ୍ୟସ୍ତସ୍ୱାର୍ଥ ଦଳମାନ କାହାଣୀ ଗଢ଼ି ରଟେଇଛନ୍ତି ଯେ ଡଙ୍ଗ୍ରିଆ ଭୟଙ୍କର ମଣିଷ, କଥା କଥାକେ ଛୁରା ଚଲାଇଦିଏ, ହୁସିଆର । କେହି ଚଢ଼ନା ନିୟମଗିରି, ସେହିପରି ରଟେଇଛନ୍ତି, ଜୁରୋ ବନ୍ଦକଲେ ଡଙ୍ଗ୍ରିଆ ବିଦ୍ରୋହ କରିବେ ଇତ୍ୟାଦି । (ଶିବଭାଇ - ପୃ.୧୧୪-୧୮)

"ଅତଏବ ଏହିପରି ଏହିପରି ହୋଇ ଡଙ୍ଗ୍ରିଆ ଅନୁନ୍ନତ ଅବସ୍ଥାରେ ରହିଛି । କ୍ରମେ ଅନୁନ୍ନତ ଅବସ୍ଥା ପ୍ରତି ତା'ର ସ୍ନେହ ଜମିଯାଇଛି, ଶୃଙ୍ଖଳା ପ୍ରତି ଶ୍ରଦ୍ଧା ଆସିଛି ବନ୍ଦୀର, ଏ ଯେପରିକି ଚୂଡ଼ାନ୍ତ । ବାହାରେ ଯେପରି ନ୍ୟସ୍ତସ୍ୱାର୍ଥ ବେପାରୀ ରଟେଉଛନ୍ତି, ଯେ ଏମାନଙ୍କୁ ତାଙ୍କ ନିଜ ଉପାୟରେ ରହିବାକୁ ଚଳିବାକୁ ଦିଅ । ଭିତରେ ବିଘର କ୍ଷେତ୍ରରେ ସେହିପରି କେତେକ ନୃତତ୍ତ୍ୱବିତ୍ କହୁଛନ୍ତି ଯେ ଏମାନଙ୍କ ସଙ୍ଗେ ଲାଗ

ନାହିଁ, ଏମାନେ ଯେମିତି ଅଛନ୍ତି ସେମିତି ଥାଆନ୍ତୁ । ନ' ହେଲେ ଆଦିମ ସଂସ୍କୃତି ଲୋପ୍ ପାଇଯିବ । (ଶିବଭାଇ, ପୃ.୧୧୮)

ଏବେ ଏବେ ଏହି ରଚନା ସହିତ ଯୋଡ଼ା ଯାଇଛି ନକ୍ସଲ୍ ଉପଦ୍ରବ କଥା । ଫଳରେ ପ୍ରକୃତ ଘଟଣା ନ ବୁଝି ଖୋଦ୍ ସରକାରଙ୍କ ପୁଲିସ୍‌ବାହିନୀ ଅଭ୍ୟନ୍ତର ଗାଁରେ ପଶି ସାଧାରଣ ଆଦିବାସୀମାନଙ୍କୁ ନିଶାଣ ବନାଉଚି - ନାଁ ଦେଇଛି ନକ୍ସଲ । କେହି ବି ଏହାର ଅନୁସନ୍ଧାନ କରି ପ୍ରକୃତ ସତ୍ୟ ପ୍ରକାଶକଲେ ସେମାନଙ୍କୁ ମଧ୍ୟ କୁହାଯାଉଛି ନକ୍ସଲ ।

"ହାକିମ ଗୋଟିଏ କାଗଜ ଦେଖି କହିଦେଲେ - "ମଝିରେ ତିନିଟା ମଙ୍ଗଳବାର ଛାଡ଼ିଦେବୁ, ତହିଁ ଆର ମଙ୍ଗଳବାର ଆ ।" ××× ଓଲାଆଁସିଆ ପଶୁ ପରି ବଣର ଲୋକ ତ, ସେ କି ବୁଝେ ତାରିଖ, ବାର, ବାଇଦା ? ଆଉ ତା'ର ମନେ ବି ରହେନାହିଁ କିଛି, ସବୁ ଗୋଳିଆଗାଳିଆ । ×× ପୂଝାରି କହିଲା - "ହେତୁ ରଖିଥା, ଆଜିକୁ ମିଶାଇ ଛ'ଟା ମଙ୍ଗଳବାର ଦିନ ଏଠି ବିଚାରଣା, ସାକ୍ଷୀମାନଙ୍କୁ ନେଇ ଆସିବୁ ।" (ପରଜା, ପୃ.୪୨୩)

କୋଟୁଘରେ(କଚିରିରେ) ବିଚ୍ଛରଣା (ବିଚ୍ଛର) ହେଲା ମାଣ୍ଡିଆଜାନିର । "ମାଣ୍ଡିଆଜାନି, ତୋ ନାଁରେ ଦାବା ହେଇଚି ଯେ ତୁ' କୁଆଡ଼େ ଅମୁକେଇ ଦିନ ମଦ ରାନ୍ଧୁଥିଲୁ, ଆଉ ତୋ' ପାଖରୁ ଅମୁକ ଜିନିଷ ମିଳିଲା ?"

"ବଲଦିଆ ଆଖିରେ ଅନେଇରହି 'ଆଉଆଉ' ହୋଇ ଆଉ ଜଙ୍ଗଲୀ ଲୋକଙ୍କ ପରି ମାଣ୍ଡିଆଜାନି ମଧ୍ୟ କହିଲା, "ସତ୍ ମହାପ୍ରୁ, ଦୋଷ କଲି ଆଉ କାହିଁକି ନାଇଁ ବୋଲିବି ।" ମେସ୍‌ରେଟ(ମାଜିଷ୍ଟ୍ରେଟ୍)ରାୟ ଶୁଣେଇ ଦେଲେ, "ତୋତେ ପଚ୍ଛଶଟଙ୍କା ଜୋରିମାନା ହେଲା, ନ ଦେଇ ପାରିଲେ ପନ୍ଦରଦିନ ଜେଲ୍ ।"

"ମାଣ୍ଡିଆ ଆପତ୍ତିକଲା, "କିଛିନାହିଁ ମହାପ୍ରୁ, ସେମିତି କହିଲେ ମରିଯିବି ନାଇଁକି - ମହାପ୍ରୁ, ତୁମର ଇଷ୍ଟ ମହାପ୍ରୁ, ରକ୍ଷାକର ମହାପ୍ରୁ ।"

"ବଜ୍ରପଡ଼ା ଶାଳଗଛ ପରି ମୁହଁ ଶୁଖେଇ ମାଣ୍ଡିଆଜାନି ଗାଁକୁ ଫେରିଆସିଲା, ତା'ର ପାହାଡ଼ ଖୋଲ ଭିତରର ଗାଁକୁ ।"

"ହଠାତ୍ ଦେଖିଲେ ବୁଝାଯିବ ନାହିଁ, ଖାଲି ଆଖି ସେ ପାଖେ ଆର୍ତ୍ତନାଦର ତୋଫାନ ପାଲଟିଛି କରୁଣ, ବିଷଣ୍ଣ ହୋଇ, ଜ୍ୟୋତିହୀନ ଗଭୀର ଗୋଟିଏ ଛାୟା ।

ଯହିଁରୁ ବୁଝାଯିବ, ସେ ପ୍ରାଣରେ ଆଘାତ ପାଇଛି । ଆହତ ମନର ସୂଚନା କେବଳ ତା'ର ଗହାଁଣୀ ।"

"କେଉଁ କର୍ଣ୍ଣ ପିଶାଚୀ ଯେପରି ବାଟେଘାଟେ କାନେ କାନେ ଖାଲି କହି ଲାଗିଛି ସେହିକଥା, ପଚାଶଟଙ୍କା - ନୋହିଲେ ପନ୍ଦରଦିନ ଶିକ୍ଷା । କେଡ଼େ ଗରମ - କେଡ଼େ ଭୟାନକ - କି ଗର୍ଜନ ତା'ର ପହିଲି ଆଷାଢ଼ର କଳା ଆକାଶରେ ବଜ୍ର ଘଡ଼ଘଡ଼ି ଯେପରି ଶବ୍ଦରେ ଶବ୍ଦରେ ଆଙ୍କି ଯାଉଛି ସେହିକଥା - ସେହିକଥା ।" (ପରଜା, ପୃ.୮୧)

ସେହିପରି ମିଛସାକ୍ଷୀ ସଜାଇ କେଶ୍ ଦେବା ସମ୍ପର୍କରେ :

"ଥରେ ଅଧେ ସାହୁକାରର ଭୋକଶୋଷ ଦିନେ ଖୁଜୁବୁଜୁ ହୋଇ ଉଠିଥିଲା । ଏହିପରି ଖଣ୍ଡେ ଜମି, ଯାହା ସାହୁକାର ସାନ ପଲ୍ଲୀଠୁ ଛଡ଼ାଇ ନେଇଥିଲା, ବନ୍ଧକି ସୂତ୍ର ନାଁରେ । ସେଥିରେ ମକାଫସଲ ଫାଟି ପଡୁଥିଲା । ଚାରିପାଖେ ବାଡ଼, ଭିତରେ ଜଗୁଆଳି, ଡାହାଣ ପଲ୍ଲୀର ସନିଆଁ ପରଜା ଦୁଇଦିନ ଉପାସ ପଡ଼ିଲା ଉତ୍ତାରୁ ପୁଣି କଳେ ପାଣି ପିଇ ପେଟ ଭର୍ତ୍ତି କରିବାକୁ ଝୋଲାକୁ ଗଡ଼ି ଯାଉଯାଉ ବାଡ଼ ଭିତରେ ହାତ ପୂରେଇ ଦୁଇଟା ମକା ତୋଳିଥିଲା । ଗୋଟାଏ ପାଟିରେ ପୂରେଇ ଥିଲା, ସେମିତି କଞ୍ଚାମଞ୍ଚା, ଆରଟା ହାତରେ ଧରିଥିଲା । କିଏଜଣେ ପଡ଼ୋଶୀ ଅଧବାଟରେ ପଚାରି ଦେବାରୁ ସତକଥା କହି ପକାଇଲା । ତା'ପରେ କଥାଟା ଉଠିଲା ସାହୁକାର କାନରେ । ତା' ଉତ୍ତାରୁ, ମଝିଦାଣ୍ଡରେ ମହୁଲଗଛରେ ବାନ୍ଧି ପକେଇ ହେଲା ମାଡ଼ । କେତେ ଯେ ମାଡ଼ ବରଷିଲା । ସାହୁକାର ପୁଲିସ୍‌ଷ୍ଟେସନ୍‌କୁ ରିପୋର୍ଟ କଲା । ଇନ୍‌କ୍ୱାରୀ ହେଲା । କେତେ ସାକ୍ଷୀ ଜମାହେଲା । କିଏ କହିଲା, ମୁଁ ବାଡ଼ ସେପାଖେ ବନ୍ଧାଡ଼(ପାଇଖାନା) ବସିଥିଲି, ଦେଖିଲି । କିଏ କହିଲା, ମୁଁ ଗୋରୁ ଖୋଜୁଥିଲି । ଆକାଶରୁ ଖସିଲା ପରି ଆଉ କେଜାଣି କେତେ ପାଚିଲାମକା ଆସି ଜମାହେଲା । କାହୁଁ ଆସିଲା ଗୋଟାଏ ଟୋକେଇ, କେଉଁଠୁ ଗୋଟେ ଅଖା । କଥା ଛିଣ୍ଡିଲା ମଝି ରାତିରେ ସନିଆଁ ପରଜା ବାଡ଼, ଭିତରେ ପଶି ମକା ଚୋରି କରୁଥିଲା । ଅଖା ଭର୍ତ୍ତି ହୋଇସାରିଥିଲା, ଟୋକେଇ ଭର୍ତ୍ତି ହେବା ଉପରେ, ମଟ୍‌ମଟ୍ ଶବ୍ଦ ଶୁଣି ମଞ୍ଚାରୁ ଜଗୁଆଳିମାନେ ଓହ୍ଲେଇ ଆସିଲେ, ତା'ପରେ ପନ୍ଧାଡ଼ବସୁ ଗୋରୁ ଖେଦୁ ସାକ୍ଷୀମାନେ । ସଙ୍ଗୀନ କେସୁ । ସନିଆ ପରଜାକୁ ଚାରିମାସ ଶିକ୍ଷା ହୋଇଗଲା" - (ପରଜା, ପୃ.୧୦୫)

"କଚିରି, ଘାଉଁଘାଉଁ ଲୋକ, ଗୁମାସ୍ତା, ଟରଣୀ, ଦଳେଇତ(ଚପରାଶି), ଜମାନ୍(କନେଷ୍ଟବଲ୍) । ଚଷମା ପିନ୍ଧା ଓକିଲ ପଛେପଛେ ଲସରପସର ହୋଇ ଦଳଦଳ ଧାଇଁଥିବେ । କାଗଜପତ୍ର ଖସ୍‌ଖାସ୍, ବହି ଗଦା ଦୁମ୍‌ଦାମ୍ । ନିଶୁଆ ନିଶୁଆ ପଗଡ଼ି ବନ୍ଧା ଦଳେଇତ ଜମାନ୍ କଟମଟ କରି ଅନେଇ ରହିଥିବେ । ଟିକେ କଥାକେ ଗର୍ଜନ ।

"କଚିରି । ସେ ଦେଶିଆ ଲୋକକୁ ଭାରି ଭୟ, କଚିରି ନ ଚଢ଼ିଲା ଲୋକକୁ । ସବୁକଥା ଶୁଣାଣିରେ ବଢ଼େ ।

"'ସମାନପତ୍ର'(ସମନ୍‌ସ୍) ଆସେ, ଲୋକେ ଦେଖିଛନ୍ତି । ଲେଖାମାନ ଆସେ, ତହିଁରେ ନାଲି ଲଙ୍କାପରିଚ ବାନ୍ଧିଦେଇ ପଠେଇ ଦେଇଥାଏ ଦଳେଇତ, ନ ହେଲେ ତା'ର ଗୋଟାଏ ସନ୍ତକ ପଠେଇ ଥାଏ, ଢାବାଲି(ହୁଦା), କି ଠେଙ୍ଗା ତା' ସାଙ୍ଗରେ 'ସମାନ ପତ୍ର' । ତାକୁ ଦେଖିଲେ କେହି ଅଟକେଇ ପାରିବ ନାହିଁ । ଏ ଗାଁ ଲୋକ ଦଉଡ଼ି ଦଉଡ଼ି ନେଇ ସେ ଗାଁରେ ଦେଇଆସିବ, ସେ ଗାଁଲୋକ ଆର ଗାଁରେ, ଏହିପରି ଠିକଣା ମୁଣ୍ଡରେ ପହଞ୍ଚିବା ପର୍ଯ୍ୟନ୍ତ ଆଜ୍ଞା ପତ୍ରିକା ଧାଇଁ ଚାଲିଯିବ ।" (ପରଜା, ପୃ.୩୯୭)

ଆଜ୍ଞା ପତ୍ରନେଇ ଯାଉଥିବା ଲୋକକୁ କୁହାଯାଉଥିଲା ଟାପାକାରିଆ । ବର୍ତ୍ତମାନ ଆଉ ଆଗଭଳି ନାଲିଲଙ୍କା ବନ୍ଧା ହେଉନାହିଁ । କିନ୍ତୁ ସମନ୍ ବା ନୋଟିସ୍ ବିନା ଖର୍ଚ୍ଚରେ ଠିକ୍ ଜାଗାରେ ପହଞ୍ଚିଯାଏ । ପୁଣି ଖାଲି ସରକାରୀଲୋକ ନୁହଁନ୍ତି । ବେସରକାରୀ ଲୋକେ ବି (ବିଶେଷତଃ ଓକିଲମାନେ) ଏହାର ସୁଯୋଗ ନେଉଛନ୍ତି ।

ଏଭଳି ଟାପାକାରିଆମାନଙ୍କ ଦକ୍ଷତା ବା ସେମାନଙ୍କୁ ମିଳିଥିବା ଜମିଜମା ଭିତ୍ତିରେ 'ଟାପାଗୁଡ଼ା' ବା 'ଥାପାଗୁଡ଼ା' ନାମ ଥାଇ କିଛି ଗାଁ ମଧ୍ୟ ଦେଖିବାକୁ ମିଳେ ।

"ସେଇ ସଞ୍ଜରେ, ପୁଣି ଲେଖୁ ଘରେ ।
'ଲେଖୁ' କଦଳୀ ନେଲା, 'ଲେଖୁ' ଡିମ୍ବ ନେଲା ।
ମନଟା ଆହୁରି ଉଣା ହୋଇଗଲା,
ଖର୍ଚ୍ଚ ପାଇଁ 'ଲେଖୁ' ଗୋଟିଏ ତାଲିକା ଦେଲା,

"ମୁଣ୍ଡ ପାଞ୍ଚଟଙ୍କାର ଲାଗିବ । କାଗଜ ଦି'ଟଙ୍କାର, ତା'ପରେ ଆହୁରି ଖର୍ଚ୍ଚ, କହିବି ପଛେ", ତହିଁ ଆରଦିନ ଦାବା ଦାଖଲ ହେଲା, 'ଲେଖୁ' କହିଲା, ରହିବାକୁ ହେବ ଆହୁରି ଦି'ଦିନ । ସେ ଅଭୟ ଦେଉଛି, ଦାବା କିଣାହେବ ନିଶ୍ଚୟ ।

"ଖର୍ଚ୍ଚକୁ ଡରୁଛୁ କାହିଁକିରେ ? ସବୁ ଖର୍ଚ୍ଚ ତୁମକୁ ପରେ ମିଳିବ । ଦାବା ଜିତିଲା ଉତ୍ତାରୁ ।" ପନ୍ଦରଟା ଟଙ୍କା ଚାଲିଗଲା, କିନ୍ତୁ ଭୟ ଭାଙ୍ଗିଛି । 'ଲେଖୁ'ର ମୁହଁ ଦେଖିଲେ ବିଶ୍ୱାସ ହୋଇଯାଏ ଆପେ ଆପେ । ଭାରି ଗୋଟାଏ ବଳ, ସେ 'ଲେଖୁ' । ସାହୁକାରର ଭବିଷ୍ୟତ ବିଷୟରେ ଯାହା ସେ ବର୍ଣ୍ଣନା କରେ, ଖର୍ଚ୍ଚକୁ ଭୁଲିଯାଏ, ଏଡ଼େ ଖୁସିଲାଗେ । ତା'ର ବଙ୍କା ନାକ ଆଉ ଚଷମା ଉଢ଼ାଳରେ ଛପିରହି ସାହୁକାରକୁ ଟେକା ପକେଇ ଯାଆନ୍ତି ସେମାନେ ମନ ଖୁସିରେ । ଢ଼ିମା, ପଥର, ଫୋପଡ଼, ଟେକା ।

"ଗଛମୂଳେ ଶୀତ ବାଧେନାହିଁ । 'ଲେଖୁ'ର କଥାରେ ଛାତିକୁ ତାତି ଲାଗେ ।" (ପରଜା, ପୃ.୪୦୪)

ଏଇ ଲେଖୁ ବା ମୋହରିରମାନେ ସବୁ ଜାଗାରେ ହାଜର ଥାଆନ୍ତି । ଗୋଟିଏ ଏଫ୍.ଆଇ.ଆର୍.ଲେଖିଦେଲେ ନିଅନ୍ତି ଶହେଟଙ୍କା । ତା' ସହ ଦଶ କି କୋଡ଼ିଏ ଖିଲ ପାନ । ବେଙ୍କ ଋଣ, ବୁଢ଼ାବୁଢ଼ୀ ପେନ୍‌ସନ୍, ପଞ୍ଚାୟତ ବିଚାର, ଅଫିସରଙ୍କୁ ଦରଖାସ୍ତ, ପୋଷ୍ଟଅଫିସ୍ ସବୁଠି ଏମାନଙ୍କୁ ଲୋଡ଼ା । ତେଣୁ ଲେଖୁ ପଣିଆ ଏମାନଙ୍କ ହାତରେ ଶୋଷଣର ଅସ୍ତ୍ର । ତେବେ ବର୍ତ୍ତମାନର କାନୁନୀ ସମୟକୁ ମୁକାବିଲା କରିବା ପାଇଁ ଏବଂ ଆଦିବାସୀ ବିକାଶ ଯୋଜନାମାନଙ୍କୁ ସାମ୍ନା କରିବା ପାଇଁ ଏମାନଙ୍କ ସାମାଜିକ ଆବଶ୍ୟକତା ବଢ଼ି ଯାଇଛି । ଏମାନଙ୍କ ଭିତରେ ଅଛନ୍ତି କିଛି ସମାଜ ସଚେତନ ଶିକ୍ଷକ, କର୍ମଚାରୀ ବା ସାମାଜିକ କାର୍ମୀ । କିଛି କିଛି ବୃତ୍ତିଗତ ଲେଖୁ ବଦମାସୀ କରୁଥିଲେ ମଧ୍ୟ ଏମାନଙ୍କର ମୁଖ୍ୟଭାଗ ଆଦିବାସୀର ଉପକାରୀ ବଂଧୁ ।

**୫. କୁଲି ଜୀବନ : ଆସାମ ଚା'ବଗିଚାକୁ କୁଲି ଚାଲାଣ :**

ଗୋତି ପଣରୁ ମୁକ୍ତିପାଇଁ ଆଦିବାସୀ ଆଗରେ ତିନୋଟି ଚଉଡ଼ା ରାସ୍ତା । ଗୋଟିଏ ସି.ଟି.ଏମ. ଡମଲୋକଙ୍କ ସଙ୍ଗେ ସଲା ହୋଇ ଚୋରି କରିବା, ଦ୍ୱିତୀୟଟି ସିଧା ଆସାମ ଚା'ବଗିଚାକୁ କୁଲି ହୋଇ ଚାଲାଣ ହେବା ଓ ଦ୍ୱିତୀୟ ଚୋରାମଦ ତିଆରି କରି ବିକିବା । ଆଦିବାସୀମାନେ ବେଶି ସଂଖ୍ୟାରେ ଏହି ପଛ ଦୁଇରାସ୍ତାକୁ

ବରି ନେଇଥାନ୍ତି । ଆସାମ ଚ'ବଗିଚାକୁ କୁଲି ଚାଲାଣ ବିଷୟରେ ନୀଳମଣି ସେନାପତି ଲେଖିଛନ୍ତି - "୧୯୫୨-୫୩ ମସିହା ପୂର୍ବରୁ ଏହି ଜିଲ୍ଲାରୁ ବହୁସଂଖ୍ୟକ କୁଲି ଆସାମର ଚ'ବାଗାନକୁ ପଠାଯାଉଥିଲା । ଏହି ଅଞ୍ଚଳରେ ଯେ ବହୁ ଶସ୍ତାରେ କୁଲି ମିଳନ୍ତି ଏ କଥା ଜଣାପଡ଼ିବା ପରେ ୧୯୨୩ ମସିହାରେ ପ୍ରଥମେ କୁଲି ରିକ୍ରୁଟ୍‌ମେଣ୍ଟ ଆରମ୍ଭହେଲା । ସେହିଦିନୁ ସେମାନଙ୍କୁ କୋରାପୁଟ୍ ଡିପୋକୁ ପଠାଗଲା ଓ ସେଠାରୁ ଆସାମ ଚାଲାଣ କରାଗଲା । ୧୯୩୬-୩୭ରୁ ୫୧-୫୨ ପର୍ଯ୍ୟନ୍ତ ଚାଲାଣ ହୋଇଥିବା କୁଲିମାନଙ୍କ ସଂଖ୍ୟା ବର୍ଷକୁ ହାରାହାରି ୩୫୨୨ । ଚ' ବଜାର ମାନ୍ଦା ଧରିବାରୁ ୧୯୫୨-୫୩ଠାରୁ ଏହି କୁଲି ରପ୍ତାନି ବନ୍ଦ ଅଛି ।"

(ନୀଳମଣି ସେନାପତିଙ୍କ କୋରାପୁଟ ଗେଜେଟ୍, ପୃ.୮୧)

ସେହି କୁଲି ଜୀବନ ସମ୍ପର୍କରେ ଗୋପୀବାବୁଙ୍କ ମନ୍ତବ୍ୟ :

"ଖବର ମିଳି ସାରିଲାଣି, ଠେଙ୍ଗାଜାନୀ ସନ୍ତୋଷ କୁମାରୀ କୋରାପୁଟ୍‌ରୁ ଆସାମ ଡିପୋ ଜରିଆରେ ଆସାମ ଚାଲିଗଲେ । ପିଲିମନ୍ ଡମ୍ ଦଶମନ୍ତପୁର ଗାଁ'ର ଛାଲ ନେଇ ବେପାର କରିବାକୁ ଯାଇଥିଲା । ଏଇବାଟେ ଫେରିଲା । ସେ ବି କହୁଥିଲା, ଯେଉଁମାନେ ଖୋଜିବାକୁ ଯାଇଥିଲେ ସେମାନେ ବି କହୁଥିଲେ, ସେ ଦୁହେଁ ଚାଲିଗଲେ, ଯେପରି ଯାଆନ୍ତି ବଣ ଦେଶର କେଜାଣି କେତେ ଲୋକ, କିଏ ସାହୁକାର ଦାଉରୁ ବଞ୍ଚିବାକୁ, କିଏ ଖାଲି ପଇସା ରୋଜଗାର କରିବାକୁ - ଯାଆନ୍ତି ଭାରି । କିଏ ବା ସେ ଦେଶରେ ଘରଦୁଆର କରି ରହନ୍ତି । କିଏ ମରନ୍ତି । କେତେକେତେ ଲୋକ ଫେରିଆସନ୍ତି ପୁଣି । (ଦାଦିବୁଢ଼ା, ପୃ.୬୯-୭୦)

"ବଣ ରାଇଜକୁ ତୁଣ୍ଡ ବାଇଦରେ ଖବର ଆସିଛି କଣ୍ଟ୍ରାକ୍ଟରର କୁଲି ଲୋଡ଼ା । ଦିନକୁ ଦୁଇ ଅଣା - ମାସକୁ ତିନିଟଙ୍କା - ଦଳରେ ରହିବାର ବୁଲିବାର ମଉଜ - ନୂଆ ଜାଗା । ଫୂର୍ତ୍ତି । ସେଠି ମାଣ୍ଡିଆ ପେଜ ମିଳିବ, ପେଟ ଭର୍ତ୍ତି, ଜୁଡ଼ା ଭସେଇ ଜଡ଼ାତେଲ ବୋହିଯିବ, ଗଭା ଲୁଚେଇ ଫୁଲ, ସାବୁନ ।" (ପରଜା, ପୃ.୨୦୬)

"ଏକାଠି ଟୋକୀପଲ ପାଖକୁ ପାଖ ଠେଲାଠେଲି ହୋଇ ରାସ୍ତା ଉପରେ ରୋଳ(ରୋଲର)ରେ ଯୋଚା ହୋଇ ରୋଳ ଟାଣନ୍ତି ।" (ପରଜା, ପୃ.୨୩୧)

"ଅସଂଖ୍ୟ କୁଲି, କେତେ ଦୂରଦୂର ଗାଁର । ଅଧିକାଂଶ ସ୍ତ୍ରୀଲୋକ ପରଜା ନୋହିଲେ ଗଦ୍‌ବା, ପୁରୁଷ ସବୁ ଜାତିର, ଅଧିକାଂଶ କନ୍ଧ, ମିସ୍ତ୍ରୀମାନେ ଡମ୍ବ ।

ପରଜା ବେକର ମାଳି, ଗଦ୍‌ବା କାନର ମସ୍ତ ବଡ଼ବଡ଼ ଗୋଲଗୋଲ ପିତ୍ତଳ ତାର, ଡମ୍ବର ବ୍ଲାଉଜ୍, କନ୍ଧର ଗୋଟାମୋଟା ଜଟପରି ବାଳ, କଣ୍ଟ୍ରାକ୍ଟରର ମସ୍ତ ପଗଡ଼ି, ବିଡ଼ି ଧୂଆଁ, ମୋଜାରେ ପେନ୍‌ସିଲ୍ ଛାତିରେ ଭାଙ୍ଗରୁଲ, ଟୋକା ଗୁମାସ୍ତା, ସବୁ ଗୋଟାଏ ଚଞ୍ଚଳ ହଲିଲା ଚହଲିଲା ଛବି । ରାସ୍ତା କରେକରେ ଗାତ, ମାଟିଗଦା, ଭଙ୍ଗା ପଥର ଗଦା, ମଟାଳ ଗଦା । କେଉଁଠି ହଣାହଣି, କେଉଁଠି ଭଙ୍ଗାଭଙ୍ଗି, କେଉଁଠି ବୁହାବୋହି । ତା'ର ଭିତରେ ଭିତରେ ତୁଚ୍ଛା ଗୋଳମାଳ, ଡାକହାକ, ଗାଳି ଫଜିତ୍, ଗୀତ ।

"ଦ୍ୱିତୀୟ ସଡ଼କ, ସିଧା ଆସାମ ଚ'ବଗିଚ । ଶହଶହ ଲୋକ ଯାଆନ୍ତି । ଚ' ବଗିଚ କୁଲି ଡିପୋ ପାଖେ ସେ ଯେ କେତେ ଗହଳ । କେତେ ଆନନ୍ଦ । ସରୁ ଲମ୍ବା ଟିଣ ଖୋଳରେ କାଗଜ ପକେଇ ଡିପୋ ସର୍ଦ୍ଦାର ଗାଁଗାଁ ବୁଲେ, କେତେ ପ୍ରକାର କଥା କହେ ବନେଇ ବନେଇ ।"

"ମଦ, ଯାହାକୁ ଯେତେ । ଧାଂଡ଼ି, ଯାହାକୁ ଯେତେ । ଟଙ୍କା, ଛାଡ଼ ସେ କଥା ।"

ଏଇ ଅଚିହ୍ନା ଦେଶର ଡାକ କେବେ କେମିତି କାହାକୁ ଉଚ୍ଚାଟ କରି ପାହାଡ଼ ଖୋଲ ଭିତରୁ ଓଟାରି ଘେନି ଚାଲିଯାଏ । ଟିକ୍ରା ସ୍ୱପ୍ନ ଦେଖେ ଠିଆଠିଆ । କିନ୍ତୁ ମାଣ୍ଡିଆଟା, ସବୁ ଖୁସି ମାଟି କରିଦେବ ସେ । ମାଣ୍ଡିଆ କହେ, "ଫେରିବା କି ନାହିଁ । ଫେରିଲା ବେଳକୁ ଯଦି ଘର ନଥିବ, ବାପ ନ ଥିବ, କ'ଣ ହେବ ଟଙ୍କା କେଇଟା ? କାହା ପାଇଁ ବା ?"

ଅଳ୍ପ କଥାରେ ମୁଣ୍ଡକୁ ତା'ର ମେଘ ଚଢ଼େ, ତା'ପରେ ଆଉ ହସେଇ ହୁଏନାହିଁ ତାକୁ ଯେତେ ଚେଷ୍ଟାକଲେ ।

"ପିଲା ତୁ, ତେଣୁ ଛଟପଟ ହେଉଛୁ । ଦୂର ବିଦେଶରେ ଟଙ୍କାମୁଣିଟି ମୁଣ୍ଡତଳେ ଦେଇ କାକୁତି ହୋଇ କାଇଲାରେ (ବେମାରରେ) ପଡ଼ି ରହିଥିବୁ, ଦେଶଟା ଦିଶିଦିଶି ଯାଉଥିବ, ଆଖି ଖୋଲିଲେ ନାହିଁ । ଚିହ୍ନାଲୋକର କଥା ଶୁଭିଶୁଭି ଯାଉଥିବ । କାନ ପାରିଲେ ନାହିଁ । ଡାକିବୁ । "ବାପା", "ବାପା" । କେହି ଜବାବ୍ ଦେବେନାହିଁ ।

ତା'ପରେ ସାଥୀଲୋକେ କେହିକେହି ଫେରିବେ ଅବା, ତୁ ଫେରିବୁ ନାହିଁ । ଆଉ ଦେଶ ଦେଖିବୁ ନାହିଁ ।" (ପରଜା, ପୃ.୩୩୩)

କୋରାପୁଟ ଅଞ୍ଚଳରେ ପୂର୍ବରୁ ଗୋଟିଏ ପ୍ରବାଦ ପ୍ରଚଳିତ ଅଛି ଯେ, ଆସାମକୁ ଯିଏ କୁଲି ହୋଇଯାଏ ସେ ଯଦି ୧୨ବର୍ଷ ଭିତରେ ନ ଫେରେ ବା ତା'ର କିଛି ଖବର ନ ମିଳେ ତେବେ ତାକୁ ମୃତ ବୋଲି ଧରି ନିଆଯାଇ ତା'ର ଶୁଦ୍ଧିକ୍ରିୟା କରିଦିଆଯାଏ । ତା'ର ଜମିବାଡ଼ି ଅନ୍ୟମାନଙ୍କୁ ଦେଇ ଦିଆଯାଏ । କୋରାପୁଟ ଚଳଣି ଅନୁସାରେ ଏମାନଙ୍କର ସ୍ତ୍ରୀମାନେ ଏତେଦିନ ଅପେକ୍ଷା କରିବାର ପ୍ରଶ୍ନ ଉଠେନାହିଁ । ବର୍ଷେ ଦି'ବର୍ଷ ଜଗିବା ପରେ ସେମାନେ ସଗର୍ତ୍ତା ହୋଇଯାଆନ୍ତି । ଆସାମ ଯିବାଲୋକଙ୍କୁ କୁହାଯାଏ "ଆସାମ କରିଆ" । ଆଉ କେବେ ଏଭଳି କେହି ଆସାମ କରିଆ ଗାଁକୁ ଫେରନ୍ତି ତ' ସେମାନଙ୍କର ପୁନର୍ଜନ୍ମ ହେଲା ବୋଲି ମନେକରି ଜନ୍ମ ସମୟର କ୍ରିୟାସବୁ କରାଯାଏ । ଏଭଳି ଘରଫେରା ଆସାମକାରିଆମାନଙ୍କର ସଂଖ୍ୟା ଅତ୍ୟନ୍ତ ନଗଣ୍ୟ । ହୁଏତ ହୋଇପାରେ ଶହେକେ ଜଣେ । ଏହାର ଅର୍ଥନୈତିକ କାରଣ ମୋଟାମୋଟି ଭାବେ ବୋଧଗମ୍ୟ ହେଲେ ମଧ୍ୟ ନିର୍ଦ୍ଦିଷ୍ଟ ଭାବେ ଗବେଷଣା ସାପେକ୍ଷ । ତେବେ ଏ ଲେଖକ ଯେଉଁ କେତେଜଣ ଅସାମକାରିଆ ବା ଆସାମକାରିଆଣୀଙ୍କ ସମ୍ପର୍କରେ ଆସିଛି, ସେମାନେ ହୁଏତ ସ୍ୱାଧୀନତା ପରବର୍ତ୍ତୀ ଦଙ୍ଗାର ଶୀକାର ହୋଇ ପରିବାର ହରାଇଛନ୍ତି ବା ସେମାନଙ୍କର ବାପା, ଭାଇ ସେଠାକାର ମାଫିଆ ଆକ୍ରମଣରେ ମରିଛନ୍ତି ବା ମରୁଡ଼ି ସମୟରେ ଭୋକ ଉପାସରେ ମରିଛନ୍ତି । ପରେ ଛୋଟିଆ ଛୋଟିଆ ଦଳରେ, ଭୋକ ଉପାସରେ ଚାଲିଚାଲି କେବେ କେଉଁଠି ଟ୍ରେନ୍ ଚଢ଼ି ସବା ଶେଷରେ ନିଜ ମୁଲକରେ ସେମାନେ ପହଞ୍ଚି ପାରିଛନ୍ତି । ଏଇଭଳି ଆସାମରେ ରହିଥିବା ଚା' ବାଗାନ କୁଲିବସ୍ତିର ହଜାର ହଜାର ଓଡ଼ିଆଙ୍କ ପାଇଁ ୬ଷ୍ଠ ଦଶକର ଦଙ୍ଗା ସମୟରେ କମ୍ୟୁନିଷ୍ଟ ପାର୍ଟିର ଶାନ୍ତିକମିଟି ତରଫରୁ ଆସାମ ଯାଇଥିବା ବେଳେ ସେମାନଙ୍କ ସଭାରେ ମନମୋହନ ମିଶ୍ର ଯାଇଥିଲେ - ସେଇ ବିଖ୍ୟାତ ଗୀତ - "କେତେ ଦୂରେ ତୋର ଓଡ଼ିଶା ମାଟିରେ କାହିଁ ମହାନଦୀପାଣି । ପାଞ୍ଚଅଣାରେ ମିଳେ କି ତୋତେରେ ଦିଓଳି ବାସୀ ତୋରାଣି ?"

### ୬. ବେପାରୀ ଜୁଲମ ଓ ହାଟ ଅର୍ଥନୀତି :

କୋରାପୁଟର ଅର୍ଥନୀତିରେ ବେପାରୀମାନେ ସାହୁକାରମାନଙ୍କ ଭଳି ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରିଥାନ୍ତି । ଆଉ ଅଧିକାଂଶ ବେପାରୀ ହିଁ ପରବର୍ତ୍ତୀ ଅବସ୍ଥାରେ ସାହୁକାର ସାଜିଥାନ୍ତି ।

ଆଦିବାସୀମାନଙ୍କ ମଧ୍ୟରେ ଏବେ ମଧ୍ୟ କିଛି ପରିମାଣରେ 'ବାର୍ଟାର୍' ପ୍ରଥା ବା 'ଜିନିଷ ଅଦଳବଦଳ' ଅର୍ଥନୀତି ଚାଲିଛି ସତ, କିନ୍ତୁ ହାଟ ଜରିଆରେ 'ମୁଦ୍ରା' ଅର୍ଥନୀତି ଧୀରେ ଧୀରେ ପ୍ରଚଳିତ ହେଲାଣି । ଦୂରଦୂରାନ୍ତ ଅଭ୍ୟନ୍ତର ଅଞ୍ଚଳର 'ହାଟ'ଗୁଡ଼ିକରେ ହିଁ 'ମୁଦ୍ରା' ଅର୍ଥନୀତିର ପ୍ରାରମ୍ଭିକ ପର୍ବ ଆରମ୍ଭ ହୋଇଥିଲା । କିନ୍ତୁ ଆଦିବାସୀମାନଙ୍କର ବିଭିନ୍ନ ପଣ୍ୟଦ୍ରବ୍ୟର ତୁଳନାତ୍ମକ ମୂଲ୍ୟ ସମ୍ପର୍କରେ ସଠିକ୍ ଅବଧାରଣା ନ ଥିବାରୁ ବେପାରୀମାନେ ନାମକୁ ମାତ୍ର ମୂଲ୍ୟରେ କୃଷିଜାତ ଓ ଜଙ୍ଗଲଜାତ ଦ୍ରବ୍ୟ କ୍ରୟକରି ପ୍ରଚୁର ମୁନାଫା ଉଠାନ୍ତି । ସେମାନେ ଦେଶିଆମାନଙ୍କୁ ଉଭୟ ଓଜନ ଓ ବିନିମୟ ମୂଲ୍ୟରେ ନିୟମିତ ଭାବେ ଠକାନ୍ତି । ସଭ୍ୟ ଜଗତର ଶସ୍ତା ଚକଚକିଆ ଜିନିଷକୁ ବହୁ ମୂଲ୍ୟରେ ବିକ୍ରି କରି, ନୂଆ ନୂଆ ଉପଭୋଗ୍ୟ ବସ୍ତୁ ସହ ଆଦିବାସୀକୁ ପରିଚିତ ଓ ଅଭ୍ୟସ୍ତ କରାଇ ଉପକାରୀ ବନ୍ଧୁ ହିସାବରେ ହିଁ ବେପାରୀମାନେ ନିଜର ଜୁଲୁମ ଚଳାନ୍ତି । ଗାଁ ଗାଁରେ ଏମାନେ 'ଖେଦା' ବୁଲାଇ ଏସବୁ ଜିନିଷ କାରବାର କରନ୍ତି । ଅନ୍ୟପକ୍ଷରେ ସରକାରୀ ଆଇନ୍‌କାନୁନ୍ ତଥା ଆଦିବାସୀ ଉତ୍ପନ୍ନ ଦ୍ରବ୍ୟ କ୍ରୟ ଓ ସଭ୍ୟଜଗତର ଦ୍ରବ୍ୟ ବିକ୍ରୟ ପାଇଁ ସମବାୟ ଆନ୍ଦୋଳନ ଏବଂ କୃଷି ଓ ଜଙ୍ଗଲଜାତ ଦ୍ରବ୍ୟର ଉଚିତ୍ ଦର ଘୋଷଣା ଇତ୍ୟାଦି ପଲିସି ସମାନ୍ତରାଳ ରାସ୍ତାରେ ଆଗେଇ ଚାଲିଥାଏ । ଏ ସବୁ ପ୍ରତି ସାମାନ୍ୟ ଭ୍ରୂକ୍ଷେପ ନ କରି ବରଂ ଏ ସବୁକୁ ନିଜ ପକେଟ୍‌ରେ ପକାଇଦେଇ ବେପାରୀମାନେ ନିଜର ଜୁଲୁମ୍ ଓ ଠକେଇ ଚଳାଇ ଯାଆନ୍ତି । ବିଚାରା ଆଦିବାସୀ କେବେହେଲେ ଉପଯୁକ୍ତ ଦର ପାଏନାହିଁ । ଏହାର ସବୁଠାରୁ ବଡ଼ ଉଦାହରଣ, ଆଜି ବି ବାହାରେ ଯେଉଁ ଶାଳ, ବିଜା ଓ ଟିକ୍ କାଠର ମୂଲ୍ୟ ସର୍ବନିମ୍ନ ୪୦ରୁ ୫୦ହଜାର ଟଙ୍କା ହେବ ତା'ର ମୂଲ୍ୟ ବାବଦକୁ କାଠ ବେପାରୀମାନେ ମାତ୍ର ୨୦୦ରୁ ୧୦୦୦ଟଙ୍କା ଭିତରେ ଆଦିବାସୀ ରଇତଙ୍କୁ ଦେଉଛନ୍ତି । ସେହିପରି ଆଦିବାସୀ ଦ୍ୱାରା ସଂଗୃହୀତ ଜଙ୍ଗଲଜାତ ଦ୍ରବ୍ୟ ବା ଜମିରେ ଉତ୍ପନ୍ନ ଫସଲ ବା ଅନ୍ୟ ଜିନିଷର ପାଣିମୂଲ୍ୟ । ଏମାନେ ଗୋପୀବାବୁଙ୍କ ଅମଳର ବେପାରୀଙ୍କ ଭିତରୁ କେତେ ଫରକ ତାହା କୋରାପୁଟ ସହ ସଂପୃକ୍ତ ଯେକୌଣସି ବ୍ୟକ୍ତି ଗୋପୀବାବୁଙ୍କର ନିମ୍ନୋଦ୍ଧୃତ ହାଟ ଓ ବ୍ୟବସାୟ ଚିତ୍ରରୁ ସହଜରେ ଜାଣିପାରିବେ ।

"ପ୍ରତି ଶୁକ୍ରବାର ନନ୍ଦୀ ଗାଁ ହାଟକୁ ଛତା ଛତୋଡ଼ି ଧରି ଏହି ଦାଦିବୁଢ଼ା ବାଟଦେଇ ମଣିଷର ସ୍ରୋତ ବହିଯାଏ । କିଣାଳି ବିକାଳି ବେଶି ନୁହଁନ୍ତି । ଦେଖଣାହାରୀ ବେଶି । ହାଟ ତାଙ୍କ ପର୍ବ । ପଇସାକର ଧୂଆଁପତ୍ର ନୋହିଲେ ଅଧଲାକର ଲୁଣ

କିଣିବା ବାହାନାରେ ସେମାନେ ଆଠ ଦଶକୋଶ ବାଟ ହାଟକୁ ଯାଆନ୍ତି । ଗାଁର ଅଧେ ମିଣିପେ, ଗାଁସାରା ସବୁ ମାଇପେ । ମୁଣ୍ଡରେ ଜଡ଼ାତେଲରେ ଜୁଡ଼ା ସଜାଡ଼ି ଧୋବ ଫୁଲ ପେନ୍ଥା ଖୋସି ନାଲିଲୁଗା ପିନ୍ଧି ଯାଆନ୍ତି ପାହାଡ଼ି ଝିଏ, ପାଦ ଝୁଣ୍ଟେ ନାହିଁ । ଗୋଡ଼ ଘୋଳି ହୁଏନାହିଁ । ହସି ହସିକା ଗୀତ ବୋଲି ଚାଲି ଯାଆନ୍ତି, ପାହାଡ଼ର ଢାଲୁଏ ଢାଲୁଏ ଯାଆନ୍ତି ପରଜା ଟୋକିଏ, ଆଉ ଡମ ଟୋକୀମାନେ । ଖ୍ରୀଷ୍ଟାନମାନେ ଧୋବଲୁଗା ଆଉ ଖଣ୍ଡେଖଣ୍ଡେ ବ୍ଲାଉଜ୍, ନୋହିଲେ ହରରଙ୍ଗି ଲୁଗା । ତହିଁରେ ଫାଳେ ନାଲି ତ ଫାଳେ ହଳଦିଆ । ଫାଳେ ନେଳି । ଆଉ ଚାଲନ୍ତି 'ଗଦବା'ଝିଏ, ଦେହରେ କେରଂ ଝୋଟରେ ହାତବୁଣା ନାଲି କଳା ପଟିପଟିକା କେରଂଲୁଗା, କାନରେ ଗୋଲ ଗୋଲ ପିତ୍ତଳ ତାରମୋଡ଼ା ଅଳଙ୍କାର, କାନ୍ଧକୁ ବୋହି ପଡ଼ିଥାଏ, ଗୋଲ ବିଜୁଳି ପରି, ମୁଣ୍ଡ ବାଳରେ ନାଲି ପଟି । (ଦାଦିବୁଢ଼ା, ପୃ.୧୧)

"ଗଲା ନିର୍ଗୁଣ୍ଡି, ପୁଣି ପର୍ବତ ଚଢ଼ା, ପର୍ବତ ଉପରେ ଉପରେ, ଚଢ଼ି ଚଢ଼ି ସତେକି ଏକ କାନ୍ଥ ଉପରେ ବଡ଼ ଗାଁ ନିଶିଖାଲ, ଦି ଧାଡ଼ି ହୋଇ ପନ୍ଦରଘର ଡଙ୍ଗ୍ରିଆ ଅଛନ୍ତି । ଚାରିପାଖେ ଦିଶୁଛି ଆହୁରି ଉଞ୍ଚଉଞ୍ଚ ପାହାଡ଼, ପାହାଡ଼ର ଢାଲୁ ଯାକ ତୋଟା, କଦଳୀ ହିଁ ବେଶି । ଏହି ତିନିହଜାରଫୁଟ୍ ମାଳ ଉପରେ କଦଳୀ ବିକ୍ରିହୁଏ ଅଣାକୁ ଷୋଳଟା । ଟୋକେଇଏ ହଳଦୀ ଦେଢ଼ଟଙ୍କା କି ସାତସୁକା । ଡମ୍ବେପାରୀ ଆସି ବୋହି ନିଅନ୍ତି । କଦଳୀ ବିକନ୍ତି ଗୋଟି ଦି'ପଇସା ।(ଶିବଭାଇ, ପୃ.୧୧୨-୧୨)

"ପ୍ରତିବର୍ଷ ପ୍ରତି ପରିବାରର ବ୍ୟୟ ମଧ୍ୟ ଖାଦ୍ୟ ଛଡ଼ା ପ୍ରାୟ ଶହେଟଙ୍କା । ଖାଦ୍ୟଶସ୍ୟ ଛାଡ଼ି ଅନ୍ୟାନ୍ୟ ପଦାର୍ଥରୁ ଆୟ ବି ସେହି ଶହେ ଦେଢ଼ଶହ, ସବୁ ସରିଯାଏ, ରହେନାହିଁ ବଳକା । ଟଙ୍କାର ବ୍ୟବହାର ବେଶିନାହିଁ; କେବଳ ବଦଳା ବଦଳି, ଡମ୍ବ ବେପାରୀ ଆସିବ । କୌପନୀ ଲୁଗା ଖଣ୍ଡେ ଦେଲେ ତିନିମାଣ ଚାରିମାଣ ମାଣ୍ଡିଆ ମାପି ନେବ । କେଉଁ ଝାଳବୁହା ମାଲ ବିନିମୟରେ କେତେ ଅନ୍ୟ ଜିନିଷ ଆସେ ଡଙ୍ଗ୍ରିଆ ତା' ଅନୁଭବ କରେ । ତେଣୁ ସେ ବଦ୍‌ଖର୍ଚ୍ଚୀ ନୁହେଁ । ମଦ ଖାଏ କ୍ୱଚିତ୍ । (ଶିବ ଭାଇ, ପୃ.୧୧୬)

"ଏପରି ଭାବରେ ଅନେକ ଅର୍ଥ କରୁଛନ୍ତି, ମଦଖିଆ ରହିବ, ଗୋରୁ ମଇଁଷି ହଣା ରହିବ, ଜୁରୋପର୍ବ ରହିବ । ତା'ହେଲେ ତ ରହିବ ବହୁତ କଥା, ବଳେ ରହିବ । ଏଇ ଯେପରିକି ନକଲି ଗହଣା, ରଙ୍ଗରଙ୍ଗର କାଚମାଳି ପାଇଁ ବଜାର, କଳ ତିଆରି ଜିନିଷ ପାଇଁ ବଜାର, କଣିଲା ବେଳକୁ ପଇସାକୁ ଚାରିଗଣ୍ଡା କଦଳୀ । ଆଉ

ରହିଥିବ ତା'ର ସୁଧ ପ୍ରଥା - ଟଙ୍କାଏ କରଜ ନେଲେ ମୂଳକୁ ମୂଳ ରହିଥିବ - ଟଙ୍କାକେ ମାଣେ ଅର୍ଥାତ୍ ତିନିସେର ସୋରିଷ କି କାନ୍ଦୁଲ ମାପି ଦେବାକୁ ପଡ଼ିବ ଖାଲି ବର୍ଷକର ସୁଧ ବାବଦକୁ । ଯେ ଟଙ୍କା ବ୍ୟବହାର କରୁ ନଥିଲା, କେବଳ ଜିନିଷ ବଦଳ ଦେଇ ଦେଇ ଚଳୁଥିଲା, ଟଙ୍କାର ବ୍ୟବହାର ତାକୁ ଶିଖାଇବାକୁ ହେବ, ଟଙ୍କା ପାଇଁ ତା'ଠି ଆବଶ୍ୟକତା ସୃଷ୍ଟି କରିବାକୁ ହେବ । ଥରେ ସେ ଥୋପଟା ଗିଳିଲେ ତା' ପରେ ଓଟାରି ଓଟାରି ତା'ଠୁ ସବୁ ନେଇଯିବାକୁ ପଡ଼ିବ । ଧରେଇ ଦିଅ ସପୁରି ଶଗଡ଼, ଶଗଡ଼, ପାହାଡ଼ ପରି କଦଳୀ, ପଣସମଞ୍ଜି, ପଣସ ଯାହା ମିଳିବ ଏଠୁ । ପର୍ବତ ଓହ୍ଲେଇ ପଡ଼ିଲେ ସେ ପାଖେ ମୁନିଗୁଡ଼ା ରେଳଷ୍ଟେସନ୍, ରେଳରେ ଜିନିଷ ବୋଝେଇ କରିବାକୁ ଭାରି ସୁବିଧା । (ଶିବଭାଇ, ପୃ.୧୧୮-୧୯)

"ଛ' କୋଶ ଦୂରରେ ପୋଡ଼ାଗଡ଼ ହାଟ, ବୁଧବାର ଦିନ, ସପ୍ତାହରେ ଥରେ । କିନ୍ତୁ ପ୍ରାୟ ସମସ୍ତେ ଯାଆନ୍ତି । ଗୋଟିଏ ହାଟପାଳି ବାଦ୍ ଯାଏନାହିଁ ।"

"ଜଙ୍ଗଲ ମଝିମଝି ଏହିପରି ଅନେକ ହାଟ ବସେ, ଆଉ ସାତକୋଶ ଆଠକୋଶ ଦୂରରୁ ପାହାଡ଼ ଜଙ୍ଗଲ ଡେଇଁ ଲୋକେ ଆସନ୍ତି, ବିକାଳି ଓ ଦେଖଣାହାରୀ ଦଳ । ଲୋକେ ଆସନ୍ତି, କିଏ ଗଣ୍ଡିଏ ଲଙ୍କାମରିଚ ବିକିବାକୁ, କିଏ ଦୁଇଗରି ପଇସାର ଲୁଣ, ତେଲ ସଉଦା କରିବାକୁ । କିନ୍ତୁ ଏଇ ଦଳ ବାନ୍ଧି ଆସିବାରେ ହିଁ ସେମାନଙ୍କର ଆନନ୍ଦ, ତୁଚ୍ଛାକୁ ହେଉପଛେ, ଅଳସିତେଲ, କୁସୁମ ତେଲରେ ଜୁଡ଼ା ଚିକିଚିକି କରି ବାଟଯାକ ପେନ୍ଥା ପେନ୍ଥା ସଜ ବଣଫୁଲ ଗଭାରେ ଖୋସି ଖୋସିକା ମାଇପି ପଲ ଆସନ୍ତି । କାରଣ ଅଧିକାଂଶ ମାଇପେ । ହସ ଓହଳେଇ ଦେଇ ଗୀତ ମେଲିଦେଇ ଖାଲ ଆଉ ପାହାଡ଼ ଡେଇଁ ଆସନ୍ତି, ହାଟ ତାଙ୍କର ଯାତ୍ରା, ତାଙ୍କର ସମ୍ମିଳନୀ, ଆଉ ତାଙ୍କର ସଭା ।"

"ସିଝା କନ୍ଦମୂଳ, ମକ୍କା ଖଇ ଆଉ ବଣର ଫଳ ବାଟଯାକ ଖାଇ ଖାଇ ସେମାନେ ବକର ବକର ହୋଇ ଆସନ୍ତି । ବାଟ ବାଧେ ନାହିଁ । କେତେ ଭେଟାଭେଟି ହୁଏ, କେତେ ମନ ଉଲୁସା ମେଳ, ଏ ରାଇଜ ଓ ସେ ରାଇଜର କଥା, ପୁଣି ସେମାନେ ଫେରି ଯାଆନ୍ତି । ହାଟ ଲାଗିଥାଏ । ହୋହା ପାଟି ।

"ଗୁଡ଼ ଆଉ ମୁଢ଼ିରେ ତିଆରି ଖଜା ଦୁଇପଇସା ପୁଅ ପାଇଁ ଘେନି ଯିବାକୁ ଛ'କୋଶ ଦୂରରୁ ଲିଲି ପରଜା ଆସିଛି । ଗାଁ ନାଇକର ସ୍ତ୍ରୀ ଆସିଛି, ପଇସାକର

ମାଟିତେଲ(କିରୋସିନୀ ତେଲ) କିଣିନେବ । ତାକୁ ସେ ଆଠଦିନ ଜାଳିବ । (ପରଜା, ପୃ.୬୫)

"ହାଟକୁ ସାନ୍‌ସାନ ହାଡ଼ ଚମର ଘୋଡ଼ା ପିଠିରେ ଚଢ଼ି ଆସିଥାନ୍ତି ଅତିକାୟ ସାହୁକାର, ନିଶୁଆ, କୁଣ୍ଡଳିଆ, ପେଟୁଆ, ଜବରଦସ୍ତ ସାହୁକାର । କେତେ ବିଶୋଇ କେତେ ତେଲୁଗୁ, ମୋପନ୍ନା କି ପାପନ୍ନା । ଚମ୍ପା ଗଧବନା, ଅଣ୍ଡା ଭରପୁ, ଡାଲି ସେଠି, ଡୋଗିଲା ଅପ୍‌ଲି ସ୍ୱାୟାଁ, ପେଣ୍ଟାୟା, ଏଙ୍କାୟା, ସାତ୍‌ତାୟା, ଚଲପତ୍ ରାଓ, ଜଗନ୍ନାଥ ରାଓ, ରାମାରାଓ, ଗୁମ୍ମୁସ୍ୱାମୀ, ନାରଣ ମୂର୍ତ୍ତି ।

ଏମାନେ ସାହୁକାର । ଯାଙ୍କ ଜାତିରେ ଯାଙ୍କ ଦେଶରେ ବି ଚଷୀ ମଜୁରିଆ ବେଶି ଦରିଦ୍ର । କିନ୍ତୁ ଏମାନେ ସାହୁକାର । ଶଗଡ଼ ଆସିଛି, ବାଟରେ ଅଛି । ଟଙ୍କାଥଳୀ ଆସିଛି ମାପିବାକୁ ମାଣ ଆସିଛି, ପୋଡ଼ି ଆସିଛି । ବଡ଼ମାଣ ସାନମାଣ, ବଡ଼ପୋଡ଼ି ସାନପୋଡ଼ି । କିଣିଲା ବେଳକୁ ବଡ଼ଟିରେ, ବିକିଲା ବେଳକୁ ସାନଟାରେ । ବରଗଛ ମୂଳେ ପର୍ବତ ପ୍ରମାଣ କଳା ମିଶିମିଶି ଗେଣ୍ଡୁମଞ୍ଜି ପରି ଅଳସୀ ଗଦା ହୋଇ ରହିଛି । ପଡ଼ି ରହିଛି ମାଣ୍ଡିଆ, ଧାନ, ହଳଦୀ, କାନ୍ଦୁଲ, ରାଶି, ଜଡ଼ା - କନ୍ଧଭାଇର ସର୍ବସ୍ୱ । ନିର୍ବୋଧ ଦେଶିଆ ପଲ ସିଝା କନ୍ଦମୂଳ ବଜାରରେ ବ୍ୟସ୍ତ । ରଙ୍ଗକରିଆ କାଚମାଳି ଦୋକାନରେ ଭିଡ଼ ଲାଗିଛି । ଶସ୍ତାରେ ସୁଲଭରେ ମାଲ୍ ନେଇଯିବାକୁ ପଥଶ୍ରମ କରି ହଡ଼ାଘୋଡ଼ା ଉପରେ ସବାର ହୋଇ ସାହୁକାର ଆସିଛନ୍ତି । ବୋହି ନେଇଯିବେ ଏକା କ୍ଷେପକେ ଦୁର୍ଲଭ ଶୁଣ୍ଡୀଘରକୁ, ଚମ୍ପିଆ ଶୁଣ୍ଡୀଘରକୁ । ସେଠୁ ସବୁ ଚାଲିଯିବ ଶିଙ୍ଗି ସେଠି ଗୋଦାମକୁ କି ଚିଟିବାବୁ ଗୋଦାମକୁ, ତା'ପରେ ଆଲୋକକୁ । ଫସଲ ଯିବ, ଆସିବ କିଛିଟଙ୍କା । ଦେଶିଆ ସେତକ ବାଉଁଶ ନଳୀରେ ପୂରେଇ ମାଟି ଭିତରେ ପୋତି ଦେଇଥିବ । ଦେଖୁଦେଖୁ ସାହୁକାର ସୁଧ ଗଣୁଗଣୁ ଶିସ୍ତୁ ଦେଉଦେଉ ସେତକ ବି କୁଆଡ଼େ ଉଡ଼ିଯିବ । ତା'ପରେ ଠ ଠା ଠି, ନଖରେ ଆଞ୍ଚୁଡ଼ି, ଶାବଳରେ ତାଡ଼ି ପର୍ବତ ଉପରେ ପଥର ସନ୍ଧିରେ ଆହୁରି ତାଷ । ଆଉ ରାତିରେ ମଦ ପିଅ ନାଚ । ହାଟକୁ ପଶିବା ବାଟରେ ହାଟ କଣ୍ଟ୍ରାକ୍ଟର ଲୋକ ହାଟପାନ୍ ଅସୁଲ କରୁଛନ୍ତି । ମୁଣ୍ଡର ପସରା ଟଣା ଓଟରା, ହାତ ମୋଡ଼ାମୋଡ଼ି । କିଏ ବାଉଁଶିଆ କରଡ଼ି ଘେନି ଆସିଛି । ପକା ଦି'ପଇସା । ଫାରାଷ୍ଟି ଗାର୍ଡ଼ ବଣଦ୍ରବ୍ୟକୁ ଟିକସ ଅସୁଲ କରୁଛି । ନାଲି ପଗଡ଼ିଆ ଜଣେ ଦି'ଜଣ ଟହଲ ମାରୁଛନ୍ତି । ଛାତି ଫୁଲେଇ । ହାତରେ ସାନସାନ ବାଡ଼ି ।

"ପାଖେପାଖେ ସାହୁକାର ଦଳ ବସିଛନ୍ତି । ସାମ୍‌ନାରେ ଖଣ୍ଡେଖଣ୍ଡେ କାଠବାକ୍ସ । ଫସଲ ମାପ ଲାଗିଛି । ମୁଣ୍ଡରେ ଠେକା, ତୁଣ୍ଡରେ ସୁଠା, କାନରେ କୁଣ୍ଡଳ, ହାତରେ ପିଟା ସୁନାବଳା । ଚେକା ଚଉଧୁରୀ ସାହୁକାର । (ଅ.ସ.ପୃ.୧୦୫-୬)

ଆଜିର ବେପାରୀମାନେ ସୁନାବଳା ପିନ୍ଧନ୍ତି ନାହିଁ କି ଘୋଡ଼ା ପିଠିରେ ବସି ଆସନ୍ତି ନାହିଁ । ସେମାନେ ଦାମୀଦାମୀ କାର୍‌, ଜୀପ୍ ଓ ମୋଟରସାଇକେଲ୍ - ମାରୁତି, ଟାଟାସୁମୋ, ଟାଟା ସାଇରା ଓ ହିରୋହଣ୍ଡା ଚଢ଼ନ୍ତି । ଗାଁ ଗହଳିରେ ସେମାନଙ୍କ ଦଲାଲମାନେ ପାଲ ଟାଣି ପାଲା ଝୁଲାଇ ବସିଥାନ୍ତି । ସେମାନେ ସିଧା ରାଜନୀତି କରନ୍ତି ନାହିଁ । କିନ୍ତୁ ସବୁ ପାର୍ଟିର ନେତାମାନଙ୍କୁ ଆଙ୍ଗୁଠି ଅଗରେ ନଚାଉଥାନ୍ତି । ସେମାନେ ଆଖପାଖ ସହର ବଜାରରେ ଦୋମହଲା ତେ ମହଲା ମେଢ଼ ବନାଇ ବସିଥାନ୍ତି । ଦୁଇଚାରିଟା ଟ୍ରକ୍ ବାହାରେ ଥୁଆ ହୋଇଥାଏ । ସେଇ ଜଙ୍ଗଲଜାତ ଓ କୃଷିଜାତ ଦ୍ରବ୍ୟ ବାହାରକୁ ଚାଲାଣ କରିବାର ଲିଜ୍ ସେଇମାନେ ହିଁ ନିଅନ୍ତି । ବାହାରର ବେପାରୀମାନେ ସହଜରେ ପଶି ପାରନ୍ତି ନାହିଁ । ବାକୀ ସରକାର ବର୍ଷକୁ ଥରେ କୃଷିଜାତ ଜଙ୍ଗଲଜାତ ଦ୍ରବ୍ୟର ଦର ଘୋଷଣା କରନ୍ତି, ସେସବୁ ବେପାରୀମାନଙ୍କୁ ସୁହାଇବା ଭଳି । ପୁଣି ବଢ଼ାଇବା ବଦଳରେ କିଛି ଜିନିଷର ମୂଲ୍ୟ ସରକାର ବର୍ଷକୁ ବର୍ଷ କମାଇ ଚାଲନ୍ତି । ମାଲ୍‌କାନ୍‌ଗିରି ବା ଉମରକୋଟ୍ ସୀମା ଡେଇଁଗଲେ ମଧ୍ୟପ୍ରଦେଶରେ ଯେଉଁ ତେନ୍ତୁଳି ୨୦ଟଙ୍କାରେ ବିକ୍ରି ହୁଏ, ତା'ର ସରକାରୀ ଘୋଷିତ ମୂଲ୍ୟ ଓଡ଼ିଶାରେ ରହେ ୧୦ଟଙ୍କା । ପୁଣି ଆଦିବାସୀ ପାଖକୁ ଏଇ ତଥାକଥିତ ସରକାରୀ ଘୋଷିତ ମୂଲ୍ୟ ତାଲିକା କେବେହେଲେ ଠିକ୍ ସମୟରେ ପହଞ୍ଚେ ନାହିଁ । ଜିଲ୍ଲାପାଳମାନେ ଏହାକୁ ଆଦିବାସୀମାନଙ୍କ ପାଖରେ ପହଞ୍ଚାଇ ଦେବାପାଇଁ ଓଡ଼ିଆରେ ପର୍ଚ୍ଚା ଛପାଇବାକୁ ଆପଣାର କର୍ତ୍ତବ୍ୟ ମଣନ୍ତି ନାହିଁ । ଏହା ଖାଲି କମିଶନରଙ୍କ ଦସ୍ତଖତ ଥାଇ ଗେଜେଟ୍‌ରେ ଇଂରାଜୀରେ ବାହାରେ, ଲୋକଙ୍କୁ କହିବା ପାଇଁ ଯେ, ଆଦିବାସୀମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଆମେ ୱାଜିବ୍ ରେଟ୍ ଘୋଷଣା କରିଛୁଁ । ଏଣେ ସରକାରୀ ସମବାୟ ସଂସ୍ଥାମାନେ ଏସବୁ ଜିନିଷ କିଣିବା ବନ୍ଦ କରିଛନ୍ତି । ସରକାରୀ ମଣ୍ଡି ବ୍ୟବସ୍ଥା ମଧ୍ୟ ସମୁଦ୍ରକୁ ଶଙ୍ଖେ ଭଳି । ଆଦିବାସୀମାନେ ସେଥିଲାଗି ଯାହା ବି ବିକିବେ, ବେପାରୀମାନଙ୍କୁ ବିକିବେ, ପାଣି ମୂଲ୍ୟରେ ବିକିବେ । କାରଣ ନାମୀଦାମୀ ବେପାରୀଙ୍କୁ ଏଭଳି ଜିନିଷର ଲିଜ୍ ଦିଆ ଚାଲିଛି ଓ ଦିଆ ଚାଲିବ । ଅଥଚ ସରକାର

ଘୋଷଣା କରନ୍ତି - "ଲଘୁ ବନଜାତ ଦ୍ରବ୍ୟ କିଣିବା ସକାଶେ ଏହି ମୂଲ୍ୟ ଜଙ୍ଗଲ ଓ ପରିବେଶ ବିଭାଗର କାର୍ଯ୍ୟ ନିର୍ଦ୍ଦେଶ ଭିତ୍ତିରେ ସାରା ରାଜ୍ୟରେ କାରବାର କରୁଥିବା ଟି.ଡ଼ି.ସି.ସି., ଅନ୍ୟ ସମସ୍ତ ସମବାୟ ସଂସ୍ଥା, ସମସ୍ତ ବେସରକାରୀ ବ୍ୟବସାୟୀ ଓ ଲିଜ୍‌ଧାରୀଙ୍କ ପ୍ରତି ଲାଗୁ ହେବ । ପ୍ରାଥମିକ ସଂଗ୍ରହକାରୀମାନଙ୍କୁ ଏହି ମୂଲ୍ୟ ସମ୍ପର୍କରେ ଅବଗତ କରାଇବା ପାଇଁ ଜିଲ୍ଲାପାଳମାନେ ସେମାନଙ୍କ ଜିଲ୍ଲାସାରା ଏ ସମ୍ପର୍କରେ ବ୍ୟାପକ ରୂପେ ପ୍ରଚାର କରିବା ସଙ୍ଗେସଙ୍ଗେ ସଂଗ୍ରହକାରୀମାନେ ଯେପରି ଏହି ମୂଲ୍ୟ ପାଇପାରିବେ, ସେ ଲାଗି ଏକ ବିଧିବଦ୍ଧ ବ୍ୟବସ୍ଥା ସୃଷ୍ଟି କରିବେ ।" ସ୍ୱା.ଅରବିନ୍ଦ ବେହେରା, କମିଶନର...ପତ୍ର ନଂ.୩୩୭୨୭ / ଏସ୍.ଏସ୍.ଡ଼ି. । ୨୬.୧୧.୯୯ ।

ଏଣେ କ୍ଷେତ୍ର ଉପରେ ଅବିଭକ୍ତ କୋରାପୁଟ୍‌ର ସମସ୍ତ ବାଉଁଶ ସଂପଦ ଉପରେ ଆଦିବାସୀର ଅଧିକାରକୁ ସମ୍ପୂର୍ଣ୍ଣ ରଦ୍ଦକରି କାଗଜକଳ ମାଲିକ ଥାପାର ବା ଜେକେମାନଙ୍କୁ ପରୋକ୍ଷ ଲିଜ୍ / ଲାଇସେନ୍ସ ଦେଇ ଦିଆଯାଇଛି । ବାସ୍ତବରେ ଲିଜ୍ ରହିଛି ଫରେଷ୍ଟ କର୍ପୋରେସନ୍ ନାମରେ । ସେମାନଙ୍କ ନାଁରେ ସମସ୍ତ କଟାକଟି ଓ ବୁହାବୁହି କାମ କରୁଛନ୍ତି ପେପର୍‌ମିଲ୍ ଲୋକେ । ଫଳରେ ଆଦିବାସୀର ଟର୍ଲ୍ଲା‌ଟର୍ଲ୍ଲି, ଝଙ୍ଗ୍‌ଡ଼ି, ଘର, ବାଡ଼ ଏପରିକି ଧନୁତୀର ଓ ବଂଶୀ ସାରଙ୍ଗୀ ପାଇଁ ମଧ୍ୟ ବାଉଁଶ ଖଣ୍ଡେ ମିଳୁନାହିଁ । ଆଦିବାସୀର ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ଜୀବନ ପ୍ରଭାବିତ ଓ ପରିବର୍ତ୍ତିତ ହେବାରେ ଲାଗିଛି । ପୁଣି ଆଦିବାସୀ ଦଖଲରେ ଥିବା ଜଙ୍ଗଲଜମିକୁ ଛଡ଼େଇ ସେ ଜମିରେ ଆକାଶିଆ ଓ ୟୁକାଲିପଟାସ୍ ଲଗାଇ ପ୍ଲାଇଉଡ୍ ଓ କାଗଜ କାରଖାନାର ମାଲିକମାନଙ୍କୁ ହାତକୁ ଟେକି ଦିଆଯାଉଛି । ଏହିପରି ଖାଲି ଭେକ ବଦଳା ବେପାରୀ ନୁହଁନ୍ତି, ନାମୀ ପୁଞ୍ଜିପତିମାନେ ବି ଆଦିବାସୀର ଅର୍ଥନୈତିକ ଜୀବନରେ ବେପାର ପାଇଁ ପ୍ରବେଶ କଲେଣି । ଏଇସବୁ ବେପାରୀଙ୍କର ଭାଉ ଅନେକ । ଏହା ସାଥିକୁ ଅଛନ୍ତି କାଠବେପାରୀ ଓ ପାକ୍‌ନା(ପଥର)ବେପାରୀ । ଏମାନେ ଓଡ଼ିଶା ରାଜନୀତିକୁ ଉଠାପକା କରିପାରନ୍ତି, କରୁଛନ୍ତି । ଗୋପୀବାବୁଙ୍କ ଲେଖାରେ ଥିବା ହାଟ-ଅର୍ଥନୀତି ସଳଖ ରାସ୍ତାରେ ଆସି ଏଇଠି ପହଞ୍ଚି ପାରିଛି । କିନ୍ତୁ ପଚାଶବର୍ଷ ପରେ ବି ଆଦିବାସୀ ଯେଉଁଠି ଥିଲା ସେଇଠି ଅଛି ବରଂ ତଳକୁ ଖସିଛି ।

**୭. ଜଙ୍ଗଲ ଓ ଭୂମି ଅର୍ଥନୀତି :**

କୋରାପୁଟ୍‌ରେ ଆଦିବାସୀ ମୁଖ୍ୟତଃ ରଇତ । ଜମି ଏଠାରେ ଉତ୍ପାଦନର ମୁଖ୍ୟ ମାଧ୍ୟମ । ତେଣୁ ଜମି ପ୍ରତି ତା'ର ଆକର୍ଷଣ ଯଥେଷ୍ଟ ଅଧିକ । ପୋଡୁଚାଷ ଓ

ଝୋଲା ତାଷ, ଶିସ୍ତୁ ଓ ପାନୁ, ନାୟକ ଓ ବାରିକ, ବନ୍ୟଜୀବଜନ୍ତୁ, ମହୁଲ, ଟୋଲ, କେନ୍ଦୁପତ୍ର, ଶାଳମଞ୍ଜି, ଝୁଣା ଆଦି ଜଙ୍ଗଲ ଉତ୍ପାଦନ । ଏମାନଙ୍କ ଭୂମି ଅର୍ଥନୀତିର ମୁଖ୍ୟ ଉପାଦନ ଜଙ୍ଗଲ ଭିତରୁ ଜମି ତିଆରି କରି ଆଦିବାସୀ ଚଷେ - ସରକାରଙ୍କ ଦୟା ଉପରେ ନିର୍ଭର କରେନାହିଁ, ତେଣୁ ଭୂମି ଅର୍ଥନୀତିରେ ଜଙ୍ଗଲ ଏକ ମୁଖ୍ୟ ଉପାଦାନ । ଗୋପୀବାବୁ ଏଇ ଜଟିଳ ଅର୍ଥନୀତିକୁ ବହୁ ଜାଗାରେ ପାଠକ ଆଗରେ ବାଢ଼ିଛନ୍ତି ।

"ସେତେବେଳେ ଏ ବଣକୁ ବାଟ ନଥିଲା । ମଣିଷର ଅଗ୍ରଗାମୀ ବାହିନୀ କନ୍ଧିଆ ଭାଇ, ତା' ଅସ୍ତ୍ର କାନ୍ଧର ଟାଙ୍ଗିଆ ଖଣ୍ଡକ, ଆଉ ନିଆଁ । କନ୍ଧ କମ୍‌ହାର ଲୋହା ପଥରରୁ ଲୁହା ଆଉଟି ଟାଙ୍ଗିଆ ତିଆରି କରେ । କନ୍ଧ ଜଙ୍ଗଲ ହାଣେ, ବାଟ ସଫାକରେ । ଋଷ ପଡ଼ିଆ ସଫାକରେ, ହାଣିଥିବା ଗଛରେ ଖରାଦିନେ ନିଆଁ ଲଗେଇ ଦିଏ । ପାଉଁଶ ଖତ ହୁଏ । ବେଳେବେଳେ ପର୍ବତ ଉପରେ ଗାଁ ବସେଇ ଦିଏ । ପର୍ବତର ଅରମା ସଫାକରି ଋଷକରେ ।....କନ୍ଧ କ୍ଷେତ ତିଆରି କରେ । ପଛେପଛେ ସଭ୍ୟତା ଆସେ । ସାହୁକାର ଆସେ, ଧୋବ ଧୋବଳିଆ ଆସନ୍ତି, ଦେଖନ୍ତି ଭଲ ଜମି, ସେତକ ହାତ କରନ୍ତି, କନ୍ଧ ଚଢ଼େ ଉପରକୁ ଉପରକୁ । ତେଣୁ ଯେଉଁଠି ବଣ ସେଇଠି କନ୍ଧ, ଜାଗା ଖୋଲିଗଲେ କନ୍ଧ ତଡ଼ି ହୋଇଯାଏ । (ଅ.ସ.-ପୃ.୬୨-୬୫)

"ପାହାଡ଼ରୁ ଓହ୍ଲେଇପଡ଼ି ତାକେ ବାଟ ଗଲେ ବୁରୁନ୍ଦାବାଡ଼ି ଗାଁ । ହରଡ଼ଗଛ ବଢ଼ିଛି ଜଙ୍ଗଲପରି । ଗୋଟାଏ ଗଛ ଆଠହାତ ଦଶହାତ ଉର୍ଦ୍ଧ୍ୱ । ପ୍ରତି ମଞ୍ଜି ଆପଣା ହାତରେ ପର୍ବତ ସନ୍ଧିରେ ତେଣ୍ଟାରେ ଖୋଳିଖୋଳି ଲଗେଇଛି । ପ୍ରତି ଗଛ ପାଇଛି କୋଡ଼କି - ତାଷର ସୁବିଧା । ପର୍ବତ ଡାଲୁରେ ଗଡ଼ି ଆସୁଥିବା ସଢ଼ାପତ୍ରର ଖତ, କଳା ମିସ୍‌ମିସ୍ ହୋଇ ଉଲୁସି ଉଠୁଛି । ତା' ପାଖରେ ପର୍ବତ ଉପରେ ତା'ର ଜଡ଼ାକ୍ଷେତ । ଏରଣ୍ଡ ହୋଇଛି ମହାଦ୍ରୁମ । ଡାଲୁ ତଳକୁ ବାଜ୍ରା ବଢ଼ିଛି । ତା' ତଳକୁ ସୁଆଁ, କନ୍ଧର ସମ୍ପତ୍ତି ପାହାଡ଼ ଉପରେ । ବାହାରର ଲୋକ ତଳର ଜମି ଦଖଲ କରିଛନ୍ତି ନାନା ଫିକରରେ । ପାହାଡ଼କୁ ସେମାନଙ୍କର ବଳ ନାହିଁ । ସେଠି କନ୍ଧ ହିଁ ମାଲିକ । ସେଠିକି ହଳ ପହଞ୍ଚିବ ନାହିଁ । ଟ୍ରାକ୍ଟର ପହଞ୍ଚିବ ନାହିଁ । ଖାଲି କନ୍ଧର ପାଦ । ଯେ ତୀଖ ପାହାଡ଼କୁ ଝିଟିପିଟି ପରି ଝପିଧରେ । ଆଉ ତା'ର କୋଡ଼କି(କୋଡ଼ି) ଟାଙ୍ଗିଆ । ସିଧାସଳଖ ମୁଣ୍ଡ ବୁଲାଇ ପାତାଳକୁ ଅନେଇଲେ ବି କନ୍ଧର ଗୋଡ଼ ଖସେନାହିଁ । ସେ ସେହି ପୋଛିଦେଲା ପରି ସଳଖ ଡାଲୁରେ ଧାଁଧଉଡ଼ କରିପାରେ । (ଶିବଭାଇ, ପୃ.୨୧)

"୩୦ ମାଇଲ ଲମ୍ବା ୧୦ମାଇଲ୍ ଓସାର ପ୍ରାୟ ପନ୍ଦରହଜାର ଲୋକ ବାସ କରୁଥିବା ଏହି ଚନ୍ଦ୍ରପୁର ମାଳ ଓଡ଼ିଶାର ଭୌଗୋଳିକ ବିସ୍ତୃତି ମଝିରେ କେଉଁଠି ଛପି ରହିଛି । ମଣିଷଖିଆ ବାଘ ଓ ଅରଣା ହାତୀ ଏଠି ବଣେବଣେ । ଘଞ୍ଚ ଶାଳବଣ, ବାଉଁଶ ବଣ, ପାହାଡ଼ ତଳିଆ ପଦର ଉପରେ ୬/୭ହାତ ଉଞ୍ଚର ବହଳ ଶିକୁଳି ଘାସ – ତାହାରି ତଳେତଳେ ମହାବଳ ଲୁଚିରହେ । ମଣିଷ ପାଟି ଶୁଣିଲେ ହାତୀ ବି କାଠ ପରି ଠିଆହୁଏ । ପହିଲି ସଞ୍ଜରେ ଶାଳଗଛ କିଏ ହାତୀ ଗୋଡ଼ କିଏ ବାରି ହୁଏନାହିଁ । ବହଳ ଘାସରେ ଶାଳଗଛ ତଳେ ମଣିଷ ଚାଲିଚାଲି ଗଲାବେଳେ ହଠାତ୍ ଶାଳଗଛଟା ଉପରକୁ ଟେକି ହୋଇଯାଇ ମଣିଷ ଉପରେ ମାଡ଼ି ହୋଇ ବସେ । ହାତୀ ଗୋଡ଼ ତଳେ ମଣିଷ ଚଟଣି ହୋଇଯାଏ ।

"ସେହି ଅଞ୍ଚଳ ଯେ, କେତେ କଷ୍ଟରେ କେତେ ପରିଶ୍ରମରେ ମଣିଷ ଉପୁଜାଏ ଫସଲ । ଆଶା ରଖିଥାଏ କାଟିବି, ଖାଇବି, ଛ'ମାସ । ଫସଲ କ୍ଷେତ ଚାରିକରେ ବାଘୁଆ ବଣ । ଢେଉପରି ଭଉଁରୀ ବୁଲିଛି ସାନସାନ ପାହାଡ଼ । ସେଠି ଜନ୍ତୁଙ୍କ ଖଣି, ଶମ୍ବର, ଚିତଳ, ନୀଳଗାଈ, କୁଟ୍ରା, ବାର୍ହିଆ, ଏପରିକି ଗୟଳ, ବଣ ପୋଢ଼ । ଫସଲ ପାଚି ଆସିଲେ ସେମାନଙ୍କ ସହିତ ଅହରହ ଲୁଚକାଳି ଖେଳି ଏକରୁ ଗୋଡ଼େଇ ନେଇ ସେକରୁ ଲେଉଟି ଆସିଲା ବେଳକୁ ଏକରେ ଲୁଚିଥିବା ଜନ୍ତୁ ବାହାରି ଆସି ଫସଲ ଖାଇବାକୁ ଆରମ୍ଭ କଲେଣି । ବାଘ ନେଇଯିବ ବୋଲି ଖୁବ୍ ଉଞ୍ଚ ଗଛରେ ଜଗିବା ପଲା ବାନ୍ଧିବାକୁ ପଡ଼େ । ରାତିଯାକ ଚେତାରହି ଶିଙ୍ଗାଫୁଙ୍କ, ବାଜା ବଜାଅ । ଏମିତି ଏମିତି ହୋଇ ଫସଲକଟା ଦିନ ପାଖ ହେବ । ତା'ପରେ ଦିନେ ଦେଖିଲାବେଳକୁ ହାତୀ ଚରିଯାଉଛି । ଯେତେ କାନ୍ଦିଲେ ବୋବେଇଲେ, ଯେତେ ଯାହା କଲେ ହେଲେ କିଛି ଫଳନାହିଁ । ହାତୀ କ୍ଷେତରେ ଥରେ ମୁହଁ ପୂରେଇଲେ ପାଖରେ ଥାଇ ଡାଇଡାଇ କରି ଓଡ଼ିଆ ନଳି ଫୁଟାଇଲେ ବି ଚମକିବ ନାହିଁ କି ଘୁଞ୍ଚିବନାହିଁ ।"

"ପୁଟିକ ଦେଢ଼ମହଣା ବୋଲିଖାଲ ଗାଁର କୋଟିଆ କନ୍ଧ ହିମେରିକା ମୋହନ କନ୍ଧର ବାର୍ଷିକ ଆୟ ।

ଧାନ – ୧୫ପୁଟି ସୁଆଁ – ୮ପୁଟି

ମାଣ୍ଡିଆ – ୬ପୁଟି ସୋରିଷ – ୧ପୁଟି

ରାଶି - ୨ପୁଟି

କୋଣ୍ଡା - ୨ପୁଟି ଜଡ଼ା - ୧୦ମାଣ

"ଏପାଖେ ହଳଦୀ, ହରଡ଼, ଧୂଆଁପତ୍ର ହୁଏନାହିଁ । ସେସବୁ ବିଷମ କଟକ ଆଡ଼େ । ହିମେରିକା ମୋହନ ଘରେ ଋରିପ୍ରାଣୀ । ମୋହନ, ତା' ଭାରିଜା ଲେଟି, ତା' ପୁଅ ବରାଡ଼ି ଓ ତା' ଝିଅ ଡ଼ାବାଙ୍ଗି ।

ବର୍ଷକୁ ତା'ର ଖର୍ଚ୍ଚ -

ଖୋରାକି - ୪ଜଣକୁ - ୪ × ୮ = ୩୨ପୁଟି

ଲୁଗା - ଜଣକୁ ଦି'ଖଣ୍ଡ ଲେଖାଁ-୮ଖଣ୍ଡ

ଅନ୍ୟାନ୍ୟ ଆବଶ୍ୟକତା ୪ପୁଟି

"ଅତଏବ ତା'ର ଧାନ ମାଣ୍ଡିଆ ବର୍ଷକୁ କ'ଣ ଯିବ ? ଯାଏ ୪ମାସ । ଅନ୍ୟଦିନ ସେ ଅନ୍ୟାନ୍ୟ ଜିନିଷ ଖାଇ ପେଟ ଭର୍ତ୍ତି କରେ - କନ୍ଦାମୂଳ, ଟାକୁଆ, ତେନ୍ତୁଳିମଞ୍ଜି, ଶାଗ, ଡାଳ, ଶଲପ ଧୂଳି ଇତ୍ୟାଦି । ଅଭ୍ୟାସ ହୋଇଗଲାଣି, ବାଧେ ନାହିଁ, ବରଂ ସେ ତା'ର ଖାଦ୍ୟ । ସେ ଖାଦ୍ୟର ରଙ୍ଗ ଓ ଧରଣ ବି ତା' ଆଖିକୁ ନୂଆ ନୁହେଁ । ଆମ୍ବଟାକୁଆ ଶସକୁ ଛେଚି କସ ପାଣିରେ ଧୋଇ ଶୁଖେଇ ସେହି ଶସରେ ପିଠା - ଗୋଲାପି ନାଲି ଦିଶେ । ଶଲପ ଧୂଳିରେ ଜାଉ - ହଳଦିଆ ବହଳ ନାଳ, ଓଉ ନାଳଠୁ ବଳି । ହାଣ୍ଡି, ଲାଉତଙ୍କ ଓ ପତ୍ର ଚଉକୁନୀ ସାହାଯ୍ୟରେ ପରମ ଆନନ୍ଦରେ ତାକୁ ସେ ପାଇଦିଏ । ଖୋରାକ୍ ଅଟକେନାହିଁ । ତା'ଛଡ଼ା ଶିକାର, ବଣରେ ନାନାଦି ପଶୁ । କିଛି ନ ମିଳିଲେ ସମତଳ ଗାଁର ଗୋରୁକୁ ସେ ହାଣି ଖାଇଦିଏ । କୋଟିଆର ସେ ଏକ ବଦନାମ୍ । ଲୁଗା ପାଇଁ ତ' ବିଶେଷ ଚିନ୍ତା ନାହିଁ । ସ୍ତ୍ରୀଲୋକ ପିନ୍ଧିବେ ୪ହାତ ଲମ୍ବା ବେଢ଼େଇ ହେବାକୁ କନା ଓ ଉପରେ ପକାଇବାକୁ ୨ହାତ ଲମ୍ବା ଖଣ୍ଡେ ଓଢ଼ଣି ।

"ପୁରୁଷ ପିନ୍ଧିବ ୫ହାତର କରିଆ । ଖଣ୍ଡ ୩ଟଙ୍କା ପଡ଼ିଯିବ । ଡମ୍ବକି ଡେରା ବୁଣା ମୋଟା ଖଦି । ସେ ମିଲ୍‌ଲୁଗା ପିନ୍ଧେନାହିଁ । ମୂଲ୍ୟ ଦେବାକୁ ପଇସାର ବ୍ୟବହାର ବି ସବୁବେଳେ ନଥାଏ । ବୁଲା ବିକାଳି ଡମ୍ବକୁ ୪ମାଣ ମାଣ୍ଡିଆ ମାପିଦେଲେ ତା' ବଦଳରେ ପାଞ୍ଚହାତର କରିଆ ମିଳିଯାଏ । ପୂଜା ଉଷା ବାବତ ବେଶି ଖର୍ଚ୍ଚନାହିଁ ।

ବର୍ଷକେ ଚରିପ୍ରକାର, ନୂଆଖିଆ ପାଇଁ ଚରିପୂଜା । ଚଇତ୍ର ମାସରେ ବିରି, ମୁଗ, କାନ୍ଦୁଲ ଆଦି ରବିଶସ୍ୟ ଅମଳ କଲାବେଳେ ଗୋଟିଏ ପୂଜା, ଆଷାଢ଼ମାସରେ ଆମ୍ବଟାକୁଆ ଖାଇବାକୁ ଆରମ୍ଭ କଲାବେଳେ, ଭାଦ୍ରବରେ ସୁଆଁ ନୂଆଖିଆ, ଆଶ୍ୱିନରେ ଧାନ ନୂଆଖିଆ । ମଇଁଷି ହଣା ପୂଜାଆଠ ବର୍ଷରେ କି ଦଶବର୍ଷରେ ପଡ଼େ । ବିଭାଘରକୁ କିଛି ଖର୍ଚ୍ଚ ହୁଏ । ତା' ମଧ୍ୟ ଅନ୍ୟଜାତି ତୁଳନାରେ ବେଶି ନୁହେଁ, କିଏ କ'ଣ ପାଇବ ବନ୍ଧା ଅଛି । (ଶିବଭାଇ, ପୃ.୬୬-୬୮)

"ଠାଏଠାଏ ପାହାଡ଼ଯାକ ଲଣ୍ଡାକରି କୋସ୍ତା(ଝୋଟ) ଆମଦାନି କରାହୋଇଥିଲା । ଦିଶୁଛି କେଉଁ ପାହାଡ଼ଯାକ କଦଳୀବଗିଚ୍ଚ, କେଉଁଠି ପଣସ, ସପୁରି ବଣ, କେଉଁଠି ବା ହଳଦୀ । ଡଙ୍ଗ୍ରିଆର ସମ୍ପତ୍ତି ଏହି ଗୋଟାକୁ ଗୋଟାପାହାଡ଼, ପାହାଡ଼ଯାକ ତୋଟା, ଗୋଟାଏ ଗୋଟାଏ ତୋଟା ପାଏ ଦି'ପା ବାଟ । (ଶିବଭାଇ, ପୃ.୧୦୯-୧୧୩)

"ପରିଶ୍ରମ ତ' ସବୁଦିନେ । ତା'ର ଜୀବନ ହିଁ ପରିଶ୍ରମ । ଚଇତରେ କୋସ୍ଲା ସଙ୍ଗେ ମିଶାଇ ମାଣ୍ଡିଆବୁଣା । ବୈଶାଖରେ ବୁଣା ସରିଯାଏ । ଜମିରେ ମଇ ପଡ଼େ । ଏଣେ ବଣ ହଣା, ବଣ ପୋଡ଼ା କାମ ଲାଗେ । ଜ୍ୟେଷ୍ଠରେ ପୋଡୁଜମିକୁ ସଫାକରେ । ଆଷାଢ଼ରେ ଘାସ, ଆଗଛା ବଛା । ଶ୍ରାବଣରେ ବିଶେଷକିଛି କାମ ନଥାଏ । ଭାଦ୍ରବରେ କ୍ଷେତ ଜଗେ । କ୍ଷେତରୁ ଚଢ଼େଇ, ମାଙ୍କଡ଼ ଓ ଜନ୍ତୁ ହୁରୁଡ଼ାଏ । ଅଶିଣ କାର୍ତ୍ତିକରେ କୋସ୍ଲା ମାଣ୍ଡିଆ ଖୁଣ୍ଟିନେବା କାମ । ମାର୍ଗଶିର ପୁଷରେ ତୋଟାକାମ, ଘାସ ସଫା, ପାହାଡ଼ କ୍ଷେତରୁ ଟେକାପଥର ବଛା । ଅଳସେଇ ହୁଏ କେବଳ ମାଘଫଗୁଣରେ - ସେ ତା'ର ପର୍ବଦିନ । ସରଳ ସୁସ୍ଥ କନ୍ଧ ଚଷୀ, ପାହାଡ଼ର ପୁଅ ଝିଅମାନେ - ଚଲି ସଳଖ, ବିଚର ସଳଖ, କଥା ସଳଖ, ସବୁ ସିଧାସିଧା । ତାଙ୍କଠି ଯଜ ରୋଗ ନାହିଁ କି କୁଷ୍ଠ ନାହିଁ । କିନ୍ତୁ ଗୋଟିଏ ଅଭାବ । ସେମାନେ ସଫାସୁତୁରା ହୋଇ ଶିଖି ନାହାନ୍ତି, କେହି ବତେଇ ନାହିଁ । (ଶିବଭାଇ, ପୃ.୧୧୪-୧୮)

"ବାରିକ ଡମ୍ବଜାତିର ଲୋକ, ସେ ଡଂଗ୍ରିଆ ଗାଁକୁ ଚବି । ବାହାରର ବେପାରୀ ଓ ପର୍ବତର ଡଂଗ୍ରିଆ - ଏ ଦୁଇପକ୍ଷ ଭିତରେ ସେ ସିଡ଼ି । ବାରିକ ଦେଖେ ନାହିଁ ଏ ପଦା ଦେଶର କର୍ମୀଙ୍କୁ ଭଲ ଦୃଷ୍ଟିରେ । ଯେଉଁ ସାମାଜିକ ପରିସ୍ଥିତିରେ ସେ ବିଶେଷ ପରିଶ୍ରମ ନ କରି କନ୍ଧମାନଙ୍କଠୁ ପ୍ରତି ଘରୁ କିଛି ସାହାଯ୍ୟ ପାଇ କୁଡ଼ିଆଟି ବାନ୍ଧି ଚଲିଯାଉଛି, ଏମାନେ ଚହାଁନ୍ତି ସେ ପରିସ୍ଥିତିକୁ ଓଲଟେଇବାକୁ । ଯେପରିକି

ଖାଲି କଥା କହିକହି ସେ ରୋଜଗାର କରିପାରିବ, ଏପରି ଚଳିବ ନାହିଁ, ଏଇ କନ୍ଧ ପରି ତାକୁ ମଧ୍ୟ ପରିଶ୍ରମ କରିବାକୁ ପଡ଼ିବ । ଏମାନେ କହନ୍ତି କନ୍ଧ ଗୋରୁ ନ ମାରୁ, ଗୋରୁ ନ ଖାଉ । ତା'ହେଲେ ବାରିକ ମାଂସ ପାଇବ ନାହିଁ ମାଗେଣା, ମାଗେଣାରେ ଗୋରୁର ଛାଲ ପାଇବ ନାହିଁ ହାଟକୁ ଯାଇ ବିକି ପଇସା ଆଣିବାକୁ । ଏମାନେ କହନ୍ତି କନ୍ଧ ମଦ ନ ଖାଉ, ତା'ହେଲେ ବାରିକ ବି ମଦ ପାଇବ ନାହିଁ । ବେଳ କାଳକୁ ମଦ ରାନ୍ଧି ବିକିବାକୁ ସୁବିଧା ମିଳିବ ନାହିଁ । ବଡ଼କଥା, ଏମାନେ(ବାରିକମାନେ) ଗ୍ଚହାଁନ୍ତିନି କନ୍ଧ ପାଠପଢୁ । ସଭ୍ୟ ଶିକ୍ଷିତ ହେଉ । ବାରିକଠୁ ବେଶି ବିପଦ ହେବ ସେ କନ୍ଧର । ଯଦି ବୁଦ୍ଧି ଦେବ ସେ, କାହିଁକି ଆଉ ବାରିକକୁ ପଗ୍ଚରିବ ?(ଶିବଭାଇ, ପୃ.୧୨୬-୧୨୮)

"କାର୍ଲା ଜାନି କହିଲା, "ଯେତେ ଜମି ଅଛି ସେ ଖାଲ ହେଉ କି ଡଙ୍ଗର ହେଉ ସବୁ ତ ଆମେ ବାଣ୍ଟି ଖାଉଛୁ । ଏମିତି ପୂର୍ବାଧିକାଳଠୁ । ଜଣେ ଖାଉଥିବ ଜଣେ ଗ୍ଚହିଁଥିବ ସେ କଥା ନାହିଁ । କିଛି ଜମି କୋଠରେ ବି ଗ୍ଚଷ ହୁଏ । ତୁମେ ଏବେ କ'ଣ କରୁଚ, କୋଉ କାଳରୁ କୋଉ ଯୁଗରୁ ଚଳି ଆସୁଥିଲା ଏମିତି ଯେ, ଯାହା ମିଳିବ ସମସ୍ତେ ବାଣ୍ଟି ଖାଇବେ, ନ ହେଲେ ଏ ଗାଁ ଭାଙ୍ଗିଯିବ । ଜଣେ ଲୋକକୁ ଯଦି ଗାଁ ପୋଷି ନ ପାରିଲା ସେ ଏଠି ରହିବ କାହିଁକି ? ତା'ର ଅଲଗା କରି କେଉଁଠି ଘର ନ କରିବ କାହିଁକି ? ଆମ ଗାଁରେ କିଏ ପର ବୋଲି ଆମେ ଜାଣିନାହୁଁ । ପିଲାଯାକ ଗାଁ ଯାକର, ସେମିତି ବୁଢ଼ାବୁଢ଼ୀଯାକ, ଅପାରଗ, ରୋଗୀଯାକ । ସମସ୍ତେ ତାଙ୍କୁ ଚଳେଇ ନେବେ । ଗାଁ ଭିତରେ ସମସ୍ତେ ଖାଇବେ, ଜଣେ କିଏ ଭୋକରେ ରହିଗଲେ ସେଇଟା ଗାଁଯାକକୁ ପାପ ନାହିଁ କି ? ଆମ ଗାଇଟା ବୁଢ଼ୀ ହୋଇଗଲା ବୋଲି ତାକୁ ପୋଷିବା ନା ମାରିଦେବା ? ତୁମେ କହୁଚ କାମ କର ଖାଅ, ଆମେ ବି ସେଇଆ କହୁଚୁ । ଏମିତି ଆମେ ବଣର ମାଙ୍କଡ଼ ପରି ବଣ ପର୍ବତରେ ରହିଛୁ, ଯାହା କମୋଉଁ ତା' ଖାଉଁ, ଜିନିଷ ବଦଳରେ ଲୁଗା, ଲୁଣ ପାଉଁ । ଆମେ ଫେର୍ ଗୋଟାଏ ମଣିଷ ନା କ'ଣ ?"(ଶିବଭାଇ, ପୃ.୧୩୦-୧୩୧)

"ଟାଙ୍ଗରା ହେଉ, ପଥର ହେଉ ଏଇ ଜମି ଆମକୁ ପୋଷିଛି । ଆମେ ଜମିକୁ କହୁ 'ଆମ ଝିଅ' । ସେଇ ଝିଅ ଛାଏଁ ଝିଅ ଥାଏ । ମଣିଷ ମରିଯାଏ । ଆମେ ସେ ଝିଅକୁ ବିକୁ ନାହିଁ । ଜଣକର ଜମି-ଝିଅ ଉପରେ ସେଇ ଗୋତ୍ରରେ ସବୁ ଡଙ୍ଗ୍ରିଆ କନ୍ଧଙ୍କର ଅଧିକାର । ସମସ୍ତିଙ୍କି ନ ପଗ୍ଚରି ସେ ଜମିକି ସେ ଆଉ କାହାକୁ ଦେଇପାରିବ

ନାହିଁ । ଦେଲେ ସେ ଗୋତ୍ରର ଅନ୍ୟକିଏ ଆସି ତା' ଉପରେ ତା'ର ହକ୍ କଥା କହିବ, ଧରି ବସିବ - ମୋତେ ପଚରା ହୋଇନାହିଁ, ମୁଁ ଏ ଜମି ଛାଡ଼ିବି ନାହିଁ । ଏମିତି ଏମିତି ହୋଇ ଜମିତକ ରହିଯାଇଛି ଡଙ୍ଗ୍ରିଆର, ନଇଲେ ଆମର ଟଙ୍କା ପାଇବାକୁ ଠିକ୍ ଥିଲେ, ଏ ପର୍ବତରେ ବି ସାହୁକାର ଆସନ୍ତେଣି ।" (ଶିବଭାଇ, ପୃ.୧୩୧)

"କେତେଠି ସାହୁକାର ଆଗରୁ ଦାଦନ ଲଗେଇ ଦେଇଛନ୍ତି । ପାଚି କଟା ହେଉହେଉ ତାଙ୍କର ଲୋକ ଆସି ମାପିନେଇ ଚାଲିଯିବେ । କେତେଠି କରଜ ଅଛି । ପାଚିଲେ କରଜ ସୁଝାହେବ । ଆଉ ଶିସ୍ତୁ, ଦାସ୍ତୁ, ଜମାନ, ଅଧିକାରୀ, ଜୋରିମାନା - ଏଟା, ସେଟା, କେତେକଥା । କିନ୍ତୁ ସେ ପାଚିକୁ ଅନେଇ ବସିଲେ କାମ ଚଳିବ ନାହିଁ । ପାଚି ତା'ର କବିତା, ଗୀତ ମାଗୁଛି, ଗାଇବାକୁ ହେବ ।(ଦାଦିବୁଢ଼ା, ପୃ.୮୫)

"ଜଙ୍ଗଲରେ ନୂଆ ପୋଡୁ କରାହେବ । ପୋଡୁ ପୂର୍ବରୁ କେଉଁ ଜଙ୍ଗଲରେ ଗଛ ବେଶି ଗହଳ ନୁହେଁ, ତଳେ ମାଟି ଅଛି, ଢାଲୁ ବେଶି ତୀଖ ହୋଇ ନଥିବ, ତାହା ପରେ ଚାରିପାଖେ ସ୍ଥାନେସ୍ଥାନେ ପୂଜାକରି ଚୌହଦୀ ଚିହ୍ନଟ କରିବା ଲାଗି ନିଆଁ ଜାଳିବାକୁ ପଡ଼ିବ, ଯେପରିକି ପରବ ସରୁ ନ ସରୁ ଗାଁ ଯାକର କୁରାଢ଼ି ପାହାର ପଡ଼ିବ ତାହାରି ଉପରେ । ପରେ ଜଙ୍ଗଲ ଗାରଡ଼(ଗାର୍ଡ଼), ଆସି ଦେଖିଲା ବେଳକୁ ତୁଚ୍ଛା ଅଙ୍ଗାରଗୁଡ଼ିଏ ଗଦା ହୋଇଥିବ ସେଠି, ଯେପରିକି ଗଛର ହିସାବକରି ହେବନାହିଁ ବେଶି ବା ଜୋରିମାନା ବେଶି ଭିଡ଼ିବ ନାହିଁ । (ପରଜା, ପୃ.୧୧୧)

"ବାପ ଢିପ ଭୂଇଁ ଚାରିଖଣ୍ଡ ରଖି ଯାଇଥିଲା, ଶିସ୍ତୁ ବର୍ଷକୁ ହଳକର ଚାରିଟଙ୍କା, ଲେଣ୍ଟୁ ଛ ପଇସା । ତା'ପରେ ଖରାଏ ତରାଏ ଲାଗି ଗଦ୍‌ବା ଝୋଲା ଗାଡ଼ର ଖଣ୍ଡି ହାଣି ମୁଣ୍ଡା(ବନ୍ଧ) ବାନ୍ଧି ବର୍ଷବର୍ଷ ଅପେକ୍ଷା କରି ସୁକୃଜାନି ପାଣି ଭିତରୁ ସାର ଖାଲିଭୂଇଁ ଦୁଇଖଣ୍ଡ ବାହାର କଲା । ଇନ୍ଦ୍ର ଦୟାକଲେ ସରୁଧାନ ଗଡ଼ିଶାଏ ପର୍ଯ୍ୟନ୍ତ ପାଚିଯିବ । ବହୁଦିନ ତାଷ୍ କରି ଚାଲିଗଲା । ବେଢ଼ା ଜମିରେ ଗୁଣ୍ଡୁପୁର ସବୁର ଧାନ, ସରୁ ଦେଉଳ ଭୋଗ ଧାନ, ନିହାତି ନିକୁଛିଆ ହେଲେ ମୋଟାଧାନ, ଢେପ ଭୂଇଁରେ ମାଣ୍ଡିଆ ଗଡ଼ିଶେ ଅଧଗଡ଼ିଶେ, ସୁଆଁ, ଅଳସି, ଗବ । ପାହାଡ଼ ଦେଶରେ ଅନେକ ସ୍ଥାନରେ ବେଢ଼ାଭୂଇଁକୁ ଶିସ୍ତୁ ନାହିଁ, କାରଣ କେଜାଣି କେତେବେଳେ ଝରଣାର ସୁଅ ତୋଡ଼ରେ ଭୂଇଁ ଭାସିଯିବ, କିନ୍ତୁ ଅମିନ୍ ରିବିନ୍ ଆସିଲେ । ବେଢ଼ା ଦି'ଖଣ୍ଡକୁ କାମୀଭୂମି ତଳେ ଲେଖି ନେଇଗଲେ, ଶିସ୍ତୁ ଆହୁରି ଚାରିଟଙ୍କା ବଢ଼େଇ ଦେଇଗଲେ ।

ସେହିଦିନୁ ସୁକୁଜାନି ଶିସୁ ଦିଏ ଭୂମିଖାଏ । କିନ୍ତୁ ତା'ର ଭାରି ଆଦରର ଭୂଇଁ ସେ । କେତେ ଅଭାବ ବିପଦ ଆସି ଯାଇଛି, ତା'ର ପ୍ରାଣର ଭୂଇଁକୁ ବନ୍ଧା ଲଗେଇ ଦେବାରୁ ବୁଢ଼ା ରାଗିଯାଏ । (ପରଜା, ପୃ.-୧୯୧)

"ଜମିର ସନ୍ଧି ଗଛରେ ଜ୍ୟେଷ୍ଠର ଚଢ଼େଇଛୁଆ ଖୋଳପା ଠୁକେଇ ପଦାକୁ ଥଣ୍ଟ ବଢ଼େଇ ଦେଖେ, ଲାଗିଛି ଖୋଳା ତଡ଼ା ତଷାତଷି, ଝାଳନାଳ ହୋଇ ବଳଦ ମଣିଷ ଲାଗିଛନ୍ତି, ଗହୀର ଖାଲ ଭିତରେ, ଅତଟ ପାହାଡ଼ ଉପରେ - ଯେଉଁଠି କ୍ଷେତ ଅଛି ସେଠେଁଠି । ଧାନ, କାନ୍ଦୁଲ, ଜୋଣା(ମକା) ଅନ୍ୟାନ୍ୟ ହର୍ ଫସଲ ସବୁଦିନେ ବୁଣାଯାଏ । ଯେତେ ବିଲ-ଜାଟିର(ଝଗଡ଼ାର) ଆରମ୍ଭ ଏଇଦିନୁଁ । ଜମି ଦଖଲ ନେବାର ସୂତ୍ର କରିବାକୁ ହେବ ବୁଣିବା ଦିନରୁ । (ପରଜା, ପୃ.୧୯୪)

"ଗରଜ ସୁନ୍ଦର ଜବାବ ଦେଇଛି, ହଳଦିଶୀଲଗୁଡ଼ା ଜମିଗୁଡ଼ିକ ବିନା କଷ୍ଟରେ ସେ ସାହୁକାରକୁ କରେଇ ଦେବ । ପଠାଣ ଅମିନ୍ ଏ ଗାଁରେ ଡେରା ପକାଇଥିଲା । କଥା ପକ୍କା ହୋଇଯାଇଛି । ପ୍ରଥମେ କ'ଣ ମିଛ ଉପରକୁ ଲେଖି ହଳଦିଶୀଲଗୁଡ଼ା ପ୍ରାଚୀନ ନାଇକ ଜାମିରି ସାଓଁତାଙ୍କୁ ନାଇକ ଗାଦିରୁ ଗୁଲାବର୍ଷ ସେ ଉଠାଇଦେଲା, ଶଲପୁ ସାଓଁତାକୁ ସାଓଁତା କଲା । ଏତିକିରେ ପରେ ବହୁତ ମଜା ଲାଗିଯିବ । ଜମିର ତ ଖତିୟାନ ନାହିଁ, ଲେଖା ବହି ଉପରେ ପ୍ରଜାସ୍ୱତ୍ୱ ଥିଲେ ମଧ୍ୟ ପ୍ରଚଳିତ ବିଶ୍ୱାସ ଯେ ନାଇକ ମୂଳେ ଭୂମି, ଗାଁର ସବୁ ଜମି ନାଇକର, ଯାହାକୁ ମନ କଲା ସେ ଦେଲା, ଯାହାଠୁଁ ମନ କଲା ଛଡ଼େଇ ନେଲା । ତେଣୁ କଲି ମଞ୍ଜି ଗଜା ହେବ - ଜମି ଜାମିରି ସାଓଁତାର ନା ଜମି, ଶଲପୁ ସାଓଁତାର । (ପରଜା, ପୃ.୧୯୭)"

ଏହିଭଳି କୂଟ କପଟ କରି, ରାଷ୍ଟ୍ର ଓ ସରକାରୀ କଳର ସାହାଯ୍ୟ ସହଯୋଗ ନେଇ ଆଦିବାସୀର ଜମିକୁ ସାହୁକାର ମାରିନିଏ । ଅର୍ଥନୀତିବିଦ୍‌ମାନେ କହନ୍ତି Land alienation - ଜମି ବିଚ୍ଛେଦିକରଣ । ଏଇଥିରୁ ଉପୁଜେ ଯେତେ ଦ୍ୱନ୍ଦ୍ୱ ।

"ବର୍ଷକୁ ବର୍ଷ ଆସେ ସେ, ଥାଳିର ଭାତ, ଧିଅର ଲୁଗା, ଗଜୁରି ଆସେ ମାଟି ଭିତରକୁ ସୁଥମୁଥ ହୋଇ ଥାଳ ଉଲୁସେଇ, ମନ ଉଲୁସେଇ ।"

"ଟାଣୁଥିବା ଫିଙ୍ଗୁଥିବା ନିଶ୍ୱାସ ପରି ଅତି ସହଜ ସେ । ଯୁଗଯୁଗର ପାଚି । ଯାଉ ପଛେ ଭାଗେ କାଉ, ଘରଚଟିଆ, ଝିଣ୍ଟିକା, ପିମ୍ପୁଡ଼ି ମୁହଁରେ, ହିଡ଼ ମୁଣ୍ଡରେ ଆଁ କରି ରହିଁଛନ୍ତି ଯେଉଁମାନେ, ନିଅନ୍ତୁ ଶୋଷି ଯେତେ ତାଙ୍କର କରାମତି ।

"ସବୁଯାଇ ଗଣ୍ଡିଏ ବଳିବ, ଧୁଆଁ ହସରେ ବା ଲୁହ ପାଣିରେ ଭିଜେଇ ଜିଭରେ ଲଦିବାକୁ, କାଠୁଆ ପଟା ଠାଇଠାଇ ଜିଭର ଫାଙ୍କରେ କେତେ ରସ ଉପୁଜିବ ସେତିକିରେ ଗଣ୍ଡିଏ ଭାତ, ଦିନକୁ ହେଉ ବା ଛ'ମାସକୁ ହେଉ – ଆପଣା ହାତରେ କାରସାଦି, ନିଶ୍ୱାସରେ ତାତି, ଝାଳରେ ସିଝି ମାଟି ପଣରୁ ଭାତପଣକୁ ଆସିଛି ସେ – କେତେ ନାଟ ସେତିକି ପାଇଁ ।"

ଏହିପରି କେତେଦିନ ବିତିଯିବ, ପାଚିରେ ପାଚିରେ ବର୍ଷ ଗଣାହୋଇ । ଏଇ ପାଚି ସାଙ୍ଗରେ ପରଜା । ଝଡ଼ି ପଡ଼ିବ ବୁନିଆଦି ମାଟିରେ, ପୁଣି କେତେ ଆସିବେ, ପାଚି ଗୋଟେଇବାକୁ ।

"କିଏ ପଚରେ ଦିଲ୍ଲୀର ମସ୍‌ନଦ୍‌ରେ କିଏ ବସିଛି ତାକୁ ? ଧର୍ତ୍ତନୀ ମାଆ ନିଶାଣି ମୁଣ୍ଡା ତା'ର ହିସାବ ରଖେନାହିଁ । ମୁସ୍‌ଲିମ୍ ହେଉ କି ମରହଟ୍ଟା ଶିବାଜୀ ? ସିରାଜଉଦ୍‌ଦୌଲା କି ଓ୍ୟାରେନ୍ ହେଷ୍ଟିଙ୍ଗ୍‌ସ୍ ?"

"ପରଜା ଖାଲି ଜାଣେ – ହିଡ଼ ମୁଣ୍ଡିଆ ଅଛି ଜଣେ – ହିଡ଼ ମୁଣ୍ଡିଆ ଜଣେ ବସିଥିବ ହାତପାତି, ଯାହାହେଉ ତା'ର ପରିଚୟ, ରାମ ବା ରାବଣ । (ପରଜା, ପୃ.୨୦୧)"

"ସାହୁକାର ତ ସାହୁକାର । ତା'ର ଗୋଟାଏ ଜାତି, ଗୋତ୍ର କ'ଣ ? ସେ ରାମ ହେଲେ କେତେ, ରାବଣ ହେଲେ କେତେ ? ଆଦିବାସୀ ରଇତକୁ ଶୋଷଣ କରିବା ପାଇଁ ସେ ହିଡ଼ ମୁଣ୍ଡିଆ ଜମିରେ ନ ପଶି ପାଚିର ମାଲିକ ।(ତତ୍ରୈବ)

### ୮. ବିବାହ ଓ ପର୍ବପର୍ବାଣୀ ଅର୍ଥନୀତି :

ଆଦିବାସୀ ସଂସ୍କୃତିର ଏକ ମୁଖ୍ୟ ବିଭାବ ହେଉଛି ତା'ର ପର୍ବପର୍ବାଣୀ । ସେ ଚଇତିପର୍ବ ହେଉ କି ପୁଷ୍ ପରବ, ବାଲିପରବ ହେଉ କି ଟାକୁ ପରବ ବିବାହ ହେଉକି ମୃତ୍ୟୁ ହେଉ – ସବୁଥିରେ ଆଦିବାସୀ ଗୋଷ୍ଠୀ ଜୀବନର ଐକ୍ୟତାନ ଶୁଣିବାକୁ ମିଳେ । କିନ୍ତୁ ଏହାର ନୃତାତ୍ତ୍ୱିକ ବା ସମାଜ ତାତ୍ତ୍ୱିକ ଦିଗ ନୁହେଁ, ଅର୍ଥନୈତିକ ଦିଗ ପ୍ରତି ଏଠାରେ ଆମେ ଦୃଷ୍ଟି ଦେଉଛୁ । ବିବାହରେ, ମୃତ୍ୟୁରେ ଓ ପର୍ବପର୍ବାଣୀରେ ନିଜ ସଂସ୍କୃତି ଓ ପରମ୍ପରାର ଟେକ ରଖିବାକୁ ଯାଇ ଝୋଲା ଟଙ୍କା ଓ ଭୋଜି – ମଦଟଙ୍କା ଯୋଗାଡ଼ କରିବା ପାଇଁ ଆଦିବାସୀ ଋଣ ଆଣେ । ଋଣ ଶୁଝିବାକୁ ଗୋରୁ ବିକେ, ଜମି ବନ୍ଧାଦିଏ କି ସାହୁକାର ପାଖରେ ଯାଇ ଗୋତି ରହେ । କେବେ

କେମିତି ଏଥିରେ ସଂସ୍କାର ଆସେ । କିନ୍ତୁ ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇପାରେନି । ଗୋପୀବାବୁ ଅନୁଧ୍ୟାନ କରିଛନ୍ତି :

"ଏହି କୋଟିଆ ବିଭାଘର ପ୍ରଥା ସ୍ୱତନ୍ତ୍ର । ପରସ୍ପର ମନକୁ ପାଇଲେ ପୁଅ, ଝିଅ ଦୁହେଁ ନିଜନିଜ ବାପା, ମା'ଙ୍କୁ କୁହନ୍ତି । ଶୁଭଦିନ ଦେଖି ପୁଅଘର ଲୋକେ ସେମାନଙ୍କ ଉପରେ ହଳଦିପାଣି ପକାନ୍ତି । ସମସ୍ତେ ଥାଇ ଝିଅଘର କହନ୍ତି, "ଆଜଠୁ ଏ ଝିଅ ତୁମର ।" ପୁଅଘର କହନ୍ତି, "ଆଜଠୁ ଏ ପୁଅ ତୁମର ।" ପୁଅଘର ଲୋକେ ଘରକୁ ଫେରିଯାଆନ୍ତି, ତା'ପରେ ବ୍ୟାପୃତ ରହନ୍ତି ଝିଅକୁ ନେବାପାଇଁ 'ବାରକନ୍ଦା' ସଂଗ୍ରହ କରିବାରେ । 'ବାରକନ୍ଦା' ସଂଖ୍ୟାରେ ବାର ନୁହେଁ କି ଗଛମୂଳର କନ୍ଦା ନୁହେଁ । ଝିଅ ବାପା ପାଇଁ ହଳେ ପୋଢ଼, ଚରିପଟ ଛଡ଼ା, ଝିଅର ମାମୁଁ ଲାଗି ଗୋଟିଏ ଛତା, ଝିଅ ବାପ ପାଇଁ ଦି'ପଟ ଥାଳି, ଝିଅର ମା' ପାଇଁ ପାଞ୍ଚଟଙ୍କାର ଖଣ୍ଡେ ଲୁଗା, ଝିଅର ଗାଁ ଲୋକଙ୍କ ପାଇଁ ତିନିଟା ଛେଳି, ଜାନିର ପାଉଣା ଆଠଣା, ଦିସାରିର ପାଉଣା ଚରିଅଣା, ପେସିନିର ପାଉଣା ଗୋଟିଏ ଛେଳି ବୋଦା, ଜାତିଭାଇଙ୍କ ପାଇଁ ତିନିଚରି ଟିଣ ମଦ । ବରର ବାପା ଏତକ ନେଇ କନ୍ୟା ବାପାକୁ ସମର୍ପି ଦେଲା ପରେ ବିଭାଘର ପାଇଁ ଦିନ ଠିକ୍ ହେବ । ସେଦିନ କନ୍ୟା ଗାଁର ଲୋକେ କନ୍ୟାକୁ ଘେନି ବର ଗାଁକୁ ଆସିବେ । ଛାମୁଡ଼ିଆ ହୋଇଥିବ । ତା'ତଳେ ହାଣ୍ଡିରେ 'ମକ' ବୋଲି ଏକପ୍ରକାର ମଦ ଥୁଆ ହୋଇଥିବ । କନ୍ୟାଘର ପହଞ୍ଚିବା ପରେ ବାଟପୂଜା ଓ ନଈପୂଜା ହୁଏ । ଆଗ ରାତିରୁ ଝୋଲାରୁ ଏପରି ଜାଗାରୁ ପାଣି ଆସିଥାଏ ଯେପରିକି ସେଠି ଚଢ଼େଇ ବି ଥଣ୍ଟ ବୁଡ଼େଇ ନଥିବ । ସେହି ପାଣିରେ ହଳଦୀ ଗୋଳା ହୁଏ । କନ୍ୟାର ପାଦକୁ ବର ତା'ର ନିଜ ପାଦରେ ଚପି ଧରିଲେ ଦୁହିଁଙ୍କ ଉପରେ ଜାନି ସେହି ପାଣି ଢାଳିଦିଏ – ସେହି ହେଲା ବିଭାଘର । ତା' ପରେ ଜାତିଆଣ ଭୋଜି । ଏ ହେଲା ପ୍ରଥା ଅନୁସାରେ ବିଭା । ଏତେ ବାରକନ୍ଦା ଭୋଜିକୁ ଯାହାର ଶକ୍ତିନାହିଁ, ସେ ଶଶୁରଘରେ ଆଗତୁରା କୁଲିକାମ କରି ମୂଳରେ ସୁଝିଲା, ନ ହେଲେ କନ୍ୟା ସଙ୍ଗେ କଥା ଭାଷା ହୋଇ ଲୋକ ପଠାଇ ତାକୁ ଶୂନ୍ୟେ, ଟେକିଟେକି ଚୋରିକରି ଆଣିଲା । (ଶିବଭାଇ, ପୃ,୬୮-୬୯)

"ପୂର୍ବରୁ କନିଆକୁ ମଙ୍ଗେଇ ଦିନେ ବନ୍ଧୁ ଦୁଇତିନିଜଣ ଘେନି ପହଞ୍ଚି ଅତି ପ୍ରାଚୀନ ପଦ୍ଧତି ଅନୁସାରେ କନ୍ୟା ମୁହଁରେ ଲୁଗା ଗେଞ୍ଜିଦେଇ ଶୂନ୍ୟେ ଶୂନ୍ୟେ ତାକୁ ଚୋରୀକରି ଆଣିବାକୁ ହୁଏ । ଘରେ ଆଣି ପାଞ୍ଚଦଶଜଣଙ୍କୁ ଡାକି ଛୋଟ ଭୋଜିଟିଏ

ଦେଇ ବିନା ଛାମୁଡ଼ିଆ ବିନା ଢୋଲ ମହୁରୀରେ ଡାଲିଭାତର ଖାଲି ସାନ ବିଭାଟିଏ କରି ଦେବାକୁ ହୁଏ । ତା'ପରେ ଖୋଜି ଖୋଜିକା ଆସେ କନ୍ୟାର ବାପ । ପାଞ୍ଚସାତଙ୍କୁ ବସେଇ ପଞ୍ଚାତି କରେ । ସାମାନ୍ୟ ଝୋଲା ଟଙ୍କାରେ ସବୁ ମେଣ୍ଟିଯାଏ । ସେ ଏକା କାହିଁକି, ଏପରି ବିବାହ ଅନେକ ଗରିବ ଲୋକ କରିଥାଆନ୍ତି ।" (ଦାଦିବୁଢ଼ା, ପୃ. ୩୨-୩୩)

"ପହିଲି ମେଘରେ ତା'ର ଚେତା ଆସିଲା, ସେ ବାହାହେବା ଉଚିତ୍ । କିନ୍ତୁ ଖାଲି ଅଣ୍ଟାରେ କନିଆ ମିଳନ୍ତି ନାହିଁ । ଭାବିଭାବି ଠିକ୍ କଲା, ବର୍ଷଯାକ ବୁଲିବୁଲି ସେ ଖୋଜିବ, କେଉଁଠି ଅଛି ତା'ପାଇଁ କନିଆଁ । ଯଦି କେହି ରାଜିହୁଏ, ଝୋଲା ପରିବର୍ତ୍ତେ ଶଶୁର ପାଖେ ଗୋତି ହୋଇ ରହିଯିବ । ପୋଷି ହେବା, ଘର କରିବା - ଦୁଇ ନଟ ଏକାଥରକେ ଛିଣ୍ଡିଯିବ । ତା'ର ଝରିଖଣ୍ଡ କଉପୁନି, ଖଣ୍ଡିଏ ଝରିକଣିଆ ଛିଣ୍ଡାକନା, ଗୋଟିଏ ରସଗିନା, ତିନୋଟି ଲାଉତୁମ୍ବା, ଗୋଟିଏ ଡୁଙ୍ଗୁଡୁଙ୍ଗା ଆଉ ଖଣ୍ଡିଏ ପାଚିଲା ବାଡ଼ି । ମାଣ୍ଡିଆଚୂନା ପୁଳିଏ ବାଟକୁ ବାନ୍ଧି ସବୁ ସରଞ୍ଜାମ ବାଡ଼ିରେ ଲଟକେଇ, ନନ୍ଦିବାଲି ଗାଁ ଛାଡ଼ି ଚାଲି ଆସିଲା ।

"ବଡ଼ବଡ଼ ପରଜା ଗାଁ ଦେଖି ଦିନେ ଦି'ଦିନ ରହେ । ଗାଁରେ ତନଖି କରେ । "ବର ଦରକାର କାହାରି ? ଗୋତି ରହିବି" । ଧାଙ୍ଗଡ଼ି ବସାଘର ଦୁଆରମୁହଁରେ ସଞ୍ଜବେଳେ ଉଙ୍କିମାରେ, କାଉଡ଼ି କାନ୍ଧେଇ ଡୁଙ୍ଗାଡୁଙ୍ଗା ବଜାଏ । କିନ୍ତୁ କେହି ଭରସା ଦିଅନ୍ତି ନାହିଁ । ତା'ର ମୁଣ୍ଡରେ ଡେଙ୍ଗା ପଗଡ଼ି ନାହିଁ କି ଦେହରେ ଲମ୍ବା ଦୋପରସ୍ତି ମାଠ ନାହିଁ । ଧାଂଡ଼ି କହନ୍ତି-"ନିଚୁନିଚୁ" । ନନ୍ଦିବାଲି ବାଟ ଧରେ । ମାଣ୍ଡିଆଚୂନା ସରିଗଲେ କାହା ବିଲରେ ମଜୁରୀ ଖଟେ ଦି ଦିନ, ପୁଣି ବାଟ ଭାତିଆ ଯୋଗାଡ଼ ହୋଇଯାଏ । (ପରଜା, ପୃ.୨୬୨)

"ଦିନ ପନ୍ଦରଟି ମଉଚ୍ଛବ କରିବା ପାଇଁ (ଚଇତି ପରବ) ରଇତ ମାସକ ଆଗରୁ ଲାଗି ପଡ଼େ, ମାସେ ଆଗରୁ ଠୁଳ କରିବାକୁ ଆରମ୍ଭ କରିଦିଏ ପନ୍ଦରଟି ଦିନର ସରଞ୍ଜାମ । ଧାନ, ମାଣ୍ଡିଆ ପେଷା ପେଷି ଲାଗେ, ବିଲ ଟାଙ୍ଗର ତାଷାତାଷି, ପାଣିକାଞ୍ଜି କାଠ କାଉଡ଼ି ଯେତେ ସରଞ୍ଜାମ ସବୁ । କାରଣ ଏ ପନ୍ଦରଦିନ ଭିତରେ ତୁଚ୍ଛା ଆନନ୍ଦ ହିଁ କରିବ, ନାଚିବ, ଗାଇବ, ମଦ ପିଇବ, ବଣକୁ ଯିବ ଶିକାର କରି, ଯେପରି ବଞ୍ଚିବାକୁ ସବୁ ସରାଗ ପାଇବ, କିନ୍ତୁ ପାଇବ ନାହିଁ କ୍ଳେଶ ଦୁଃଖ ।"

"ଚଇତ ପରେପରେ ଲାଗି ଆସିବ ବୈଶାଖ ଓ ଜ୍ୟେଷ୍ଠ, ଖରା ଭିତରେ ଅଜଣା ହୋଇ କେତେବେଳେ ପହିଲି ମେଘ ଅସରା ଢାଳିଦେବ, ତା'ପରେ ଲାଗି ରହିବ ମାଳଭୂଇଁର ବର୍ଷା, ଘରିଆଡ଼େ ଅନ୍ଧାର, ଆକାଶରେ ଭାଁଭାଁ ପବନ, ସେତେବେଳେ ଘରିଆଡ଼େ ଭୁଷୁଡ଼େଇ ଝୋଲା ଗୋହିରୀରେ ପାଣି ଘଲିବ ଛଳଛଳ । ଗହୀର ବେଢ଼ାର ଧାନ ସେତେବେଳକୁ ବଢ଼ିଥିବ, ଯେପରି ଚଳନ୍ତା ସୁଅରେ ମାଟି କାମୁଡ଼ି ମୁଣ୍ଡ ଠିକ୍ ରଖିପାରିବ ସେ, ନୋହିଲେ ଭାସି ଘଲିଯିବ । ପରବର ଆଗରୁ ଯାହାର ବେଢ଼ା ଭୂଇଁ ଖଣ୍ଡେ କି ଦି'ଖଣ୍ଡ ଅଛି ସେମାନଙ୍କର ଏ ଦିନେ ବେଶି କାମ; ହିଡ଼ତଞ୍ଚା, ବେଢ଼ାରେ ହଳକରା, ବେଢ଼ାରେ ପାଣିଢାଳି କାଦୁଅକରି ମଞ୍ଜିବୁଣା, ଏହିସବୁ ବେଢ଼ା ଚାଷିର ଦିନ, ଆଉ ପୋଡୁଚାଷିର ମଧ୍ୟ ।

ତେଣୁ ପରବର ପୂର୍ବଦିନ କେଇଟାରେ ସମସ୍ତେ ଅତି ଅଧିକ ବ୍ୟସ୍ତ, ବର୍ଷ ଭିତରେ ସବୁଠାରୁ ବେଶି, ପିଲାମାନେ ନିତିନିତି ଜାଳେଣି କାଠ ଜମା କରିବାରେ, ବଡ଼ମାନେ ଚାଷ କରିବାରେ, ସ୍ତ୍ରୀମାନେ ପୁରୁଷମାନଙ୍କୁ ସାହାଯ୍ୟ କରିବାରେ ଓ ଘରେ ପେଜ ପାଇଁ ଅଣ୍ଡାଦମ୍ପା ପାଇଁ ଲନ୍ଧା ପେଣ୍ଡମ୍ ପାଇଁ ଫେଷାଫେଷି କରିବାରେ । (ପରଜା, ପୃ.୧୧୦-୧୧)

"କିନ୍ତୁ ଆଜି ପୁଷ୍ ପରବ, ××× ଚଞ୍ଚଳ ଉଠି ମୁହଁରେ ବାସିପାଣି ନ ଦେଉଣୁ ଗାଁର ଝିଅବୋହୂ ରଙ୍ଗମାଟି ଆଣିବାକୁ ଘଲିଗଲେ । ଘର ଲିପାପୋଛା ହେବ । କାମ ଲାଗିଗଲା । କାନ୍ଥରେ ଧଳାମାଟି ଓ ଲାଲ୍‌ମାଟି ଓ ପିଣ୍ଡାରେ କଳାମାଟି, ହଳଦିଆମାଟି, ଏହା ଉପରେ ଚିତାକୁଟା । ଘର ଲିପା ହେଲା । ପଟିପଟି ହୋଇ ନାନା ବର୍ଣ୍ଣର ମାଟିରେ ଚିତ୍ର ଅଙ୍ଗାର ଚୂନାକରି ଅଳସି ତେଲରେ ଗୋଳି କବାଟ ଓ ଚଉକାଠରେ କଳା ଦିଆଗଲା । ଘର ଚେଇଁ ଉଠିଲା । ପେଜ ମନ୍ଦିଏ ମନ୍ଦିଏ ଖାଇଦେଇ ଗାଁର ଲୋକେ ଘଲିଲେ ଜଙ୍ଗଲକୁ କାଠହାଣି । ମାଇପେ ମୁଣ୍ଡରେ ତେଲ ମାରିବା, ମୁଣ୍ଡ କୁଣ୍ଡେଇବା, ଲୁଗା ସିଝେଇବା, ଏହିସବୁ କାମରେ ଲାଗିଗଲେ । ଆଜି ପୁଷ୍‌ପରବ । ବର୍ଷଯାକର ଧୂଳିମଳି ଆଜି ସଫା ହେବ । (ପରଜା, ପୃ.୭୦-୭୧)

"'ଜୁରୋ', ଅର୍ଥାତ୍ ଲୁଟ୍‌ପାଟ କରିବା ପର୍ବ । ପୂର୍ବେ ଏ ପର୍ବରେ ମଣିଷ 'ମେରିଆ' ପଡୁଥିଲେ, ପରେ ମଣିଷ ବଦଳରେ ମଇଁଷି । ପ୍ରଥା ଥିଲା ମଇଁଷିଟା ଦଉଡୁଥିବ, ତା' ପଛରେ ପଲପଲ ଡଙ୍ଗ୍ରିଆ ଗୋଡ଼େଇ ତାକୁ ଚୋଟଚୋଟ କରି ହାଣି ତା'ର ମାଂସ ଲୁଟି ନେଉଥିବେ । ମଇଁଷି ଖାଇବାରେ ତାଙ୍କର ଅଭାବ ନାହିଁ ।

କିନ୍ତୁ ଏ ମାଂସ ପୂଜା ଭୋଗ, ତେଣୁ ଏହାର ମୂଲ୍ୟ ବେଶି । ସେ ମାଂସକୁ ଗାଁକୁ ନେଇ ଘରେଘରେ ଟିକିଏ ଟିକିଏ ମାଟିରେ ପୋତି ଦିଅନ୍ତି । ବିଶ୍ୱାସ ଯେ ତା'ହେଲେ ସବୁ ମଙ୍ଗଳ ହେବ । ସବୁ ଅଶୁଭ ନିବାରଣ ହେବ । ଦୁର୍ଗାପୂଜା ହିଁ ଜୁରୋର ସମୟ । ମହାଷ୍ଟମୀ ରାତିରେ ବଳିପଡ଼େ କଲ୍ୟାଣସିଂହପୁର ଦୁର୍ଗାଦେଉଳରେ । ସେହି ରାତ୍ରିରେ ମୁନିଗୁଡ଼ାଠୁ ତିନିମାଇଲ ଦୂରରେ ଭୈରବ ଦେଉଳରେ ଓ ଠାକୁରାଣୀ ଦେଉଳରେ ବଳିପଡ଼େ । ପୁଣି ତା' ପରଦିନ ବି । ନବମୀ ସକାଳେ ବିଷମ କଟକରେ ପର୍ବ ହୁଏ । ପ୍ରଥମେ ନିୟମରଜା ଦେଉଳରେ, ତା'ପରେ ଠାକୁରାଣୀ ଦେଉଳରେ, ତା'ପରେ ମାର୍କୋମା ଠାକୁରାଣୀଙ୍କ ଦେଉଳରେ, ଶେଷରେ ଭୈରବ ଦେଉଳରେ । କେଉଁ ଠାକୁରାଣୀ ଦେଉଳରେ ବଳିଭାଗ କିଏ ପାଇବ କେତେ ପାଇବ ତାହା ଆଗରୁ ବିଧାନ ଅଛି । ମଇଁଷିକୁ ଖୋଲିଦେବା ପ୍ରଥା ଉଠାଯାଇ ମଇଁଷିକୁ ହଣେଇ ଭାଗ ପାଇବାକୁ ଅଧିକାର ଥିବା ଗାଁମାନଙ୍କୁ ବାଣ୍ଟିଦେବା ପ୍ରଥା କରାଯାଇଥିଲା । ଜୁରୋ ଉପଲକ୍ଷରେ ଜୟପୁର ଜମିଦାରଙ୍କ ଦରବାର ହେଉଥିଲା । ସେ ତିନିଜାଗାରେ ଡଙ୍ଗ୍ରିଆ ଫଳମୂଳ ଟଙ୍କା ଭେଟି ଦେଉଥିଲା, ପାଉଥିଲା ଖଣ୍ଡେଖଣ୍ଡେ କନା, ମୁଣ୍ଡରେ ଗୁରେଇବାକୁ । ତା' ପୂର୍ବରୁ ଦଶରା ପାଇଁ ଖଜଣା ହିସାବରେ ଗାଁଗାଁ ଗରୁଛେଳି ଅସୁଲ ହୋଇସାରିଥାଏ । ଡଙ୍ଗ୍ରିଆ ବାଜା ବଜେଇ ସ୍ତ୍ରୀଲୋକ ସମସ୍ତଙ୍କୁ ଘେନି ଡେଇଁ ଡେଇଁ ପର୍ବତରୁ ସହରକୁ ଆସେ, ଖୁସି ଶରଧାରେ ପର୍ବ କରୁକରୁ ଖୁସିରେ କିଛି ମୁଆଁ ଦୋକାନ, ପିଠା ଦୋକାନ, ବି ଲୁଟି କରିଦିଏ, ଜୁରୋ କରିଦିଏ; ପରେ ପୁଣି ଫେରିଯାଏ ପର୍ବତକୁ ।" (ଶିବଭାଇ, ପୃ.୧୧୩-୧୧୪)

### ୯.ବିଭିନ୍ନ ଗୋଷ୍ଠୀ ଜୀବନ - ଖାଦ୍ୟ, ପୋଷାକ, ଚଳଣି - ଦାରିଦ୍ର୍ୟ ଓ ପରମ୍ପରାର ସମ୍ପର୍କ :

ଗୋଟିଏ ସମୟରେ ଅବିଭକ୍ତ କୋରାପୁଟ ଥିଲା ଓଡ଼ିଶାର ବୃହତ୍ତମ ଜିଲ୍ଲା । ଏବେକୁ ତାହା ଚାରିଟି ଜିଲ୍ଲାରେ ବିଭକ୍ତ ହୋଇଛି । ଅବିଭକ୍ତ କୋରାପୁଟ୍‌ରେ ଆଦିବାସୀ ଜନଗୋଷ୍ଠୀଙ୍କର ସଂଖ୍ୟା ଥିଲା ୫୨, ଯେତେବେଳେ କି ସମଗ୍ର ଓଡ଼ିଶାର ୩୦ଟି ଜିଲ୍ଲାର ଆଦିବାସୀ ଜନଗୋଷ୍ଠୀଙ୍କ ସଂଖ୍ୟା ୬୨ । ବିଭାଜନ ପରେ ବର୍ତ୍ତମାନର କୋରାପୁଟ ଜିଲ୍ଲାରେ ଏଭଳି ୧୮ଟି ଗୋଷ୍ଠୀ ଥିବା ବେଳେ ବାକି ୩୪ଟି ଗୋଷ୍ଠୀ ରାୟଗଡ଼ା, ମାଲକାନଗିରି ତଥା ନବରଙ୍ଗପୁର ଜିଲ୍ଲାରେ ବାଣ୍ଟି ହୋଇ ରହିଛନ୍ତି । ରାୟଗଡ଼ାର ବିଶେଷ ଆଦିବାସୀ ଜନଗୋଷ୍ଠୀ ହେଉଛନ୍ତି ଲାଞ୍ଜିଆ ସଉରା । ସଉରା,

ଡଂଗ୍ରିଆ କନ୍ଧ ଓ କୁଟିଆକନ୍ଧ, ନବରଙ୍ଗପୁରରେ ଭୋତଡ଼ା, ଗଣ୍ଡ ଓ ହାଲ୍‌ବା ମାଲ୍‌କାନ୍‌ଗିରିରେ କୋୟା, ବଣ୍ଡା, ଦୁରୁଆ, ହାଲ୍‌ବା, ଗଦବା, ଗଣ୍ଡିଆ, ଓ ଡିଡୋଇ, କୋରାପୁଟରେ ପରଜା ଗଦବା, ଦୁରୁଆ ଓ କନ୍ଧ । ଏ ପ୍ରତ୍ୟେକଙ୍କ ପୋଷାକପତ୍ର, ଭାଷା, ଚଳଣି ଓ ଗୋଷ୍ଠୀଜୀବନ ଏବଂ ପରମ୍ପରା ଅଲଗା ଅଲଗା ହେଲେ ମଧ୍ୟ ଖାଦ୍ୟପଦାର୍ଥ ଓ ପରବ ପାଳନରେ ଅନେକ ସମତା ଦେଖିବାକୁ ମିଳେ । ଗୋଟିଏ ଗୋଟିଏ ଗୋଷ୍ଠୀ ଏକ ନିର୍ଦ୍ଦିଷ୍ଟ ପର୍ବତ ସନ୍ଧି, ନଦୀତଟ ବା ଅରଣ୍ୟ ଅଂଚଳରେ ରହିଯିବା କାରଣରୁ ସୃଷ୍ଟିହୁଏ ଯେଉଁ ବିଚ୍ଛିନ୍ନତା, ସେଇଥିରୁ ହିଁ ଜନ୍ମ ନେଇଥାଏ ଯେତେ ଯାହା ପାର୍ଥକ୍ୟ । କିନ୍ତୁ ସଂସ୍କୃତିଗତ ଭାବେ ସମସ୍ତେ ନିଜକୁ ଧର୍ତନୀ ଦେବୀର ସନ୍ତାନ ଭାବି ସମସ୍ତ ପ୍ରାକୃତିକ ଉପାଦାନକୁ ଦେବତା ଜ୍ଞାନକରି ପୂଜା କରନ୍ତି, (ଯେପରି କରାଯାଏ ଶାନ୍ତାଳ ବା ମୁଣ୍ଡା ଗୋଷ୍ଠୀରେ 'ସାର୍‌ନା' ନାମରେ) ପରବ ପାଳନ୍ତି ଏବଂ ଶୋଷକ ଗୋଷ୍ଠୀର ଗୋଟିଏ ପ୍ରକାର ଶୋଷଣର ଶୀକାର ହୁଅନ୍ତି । ସବୁ ଫରକ ଭିତରେ ଯେଉଁ ସାମ୍ୟ ଏବଂ ସମସ୍ତଙ୍କର ସର୍ବବ୍ୟାପୀ ଦାରିଦ୍ର୍ୟ ସହ ପରମ୍ପରାର ସଂପର୍କ ବିଷୟରେ ଗୋପୀବାବୁଙ୍କ ଅନୁସନ୍ଧିତ୍ସା ବେଶ୍ ତୀକ୍ଷ୍ଣ ।

"ଘୋର ବନସ୍ତ ଭିତରେ ଦଶଟି ଘର ଥାଇ ଛୋଟ ଗାଁଟିଏ । ଏଠି ଥାଆନ୍ତି କୋଟିଆ କନ୍ଧ । ବୁଡୁବେଲିରୁ ଚନ୍ଦ୍ରପୁର ଯାଉଁଯାଉଁ ଗାଁଟି ପଡ଼େ । ବୁଡୁବେଲି ପଟେ ଏତେ ଉଚ୍ଚ ଘାସ ଯେ, ହାତୀ ଲୁଚିଯିବ । ଚନ୍ଦ୍ରପୁର ଆଡ଼କୁ ଖଣ୍ଡେ ପାହାଡ଼, ଗାଁ ଉପରକୁ ସତେ କି ଝୁଙ୍କି ପଡ଼ିଛି । ରାତି ହେଲେ ମହାବଳବାଘ ଦୁଆରେ ବୁଲେ । ଗାଁର ପ୍ରଧାନ ଲୋକ ବା ମାଝି ଗୋଗେରଙ୍ଗା ଗୋତ୍ରର ମଣ୍ଡଳ କନ୍ଧ । ପୁରା ନାଁ ଗୋଗେରଙ୍ଗା ମଣ୍ଡଳ ମାଝୀ । ×× ସମୁଦାୟ ଦଶଜଣଙ୍କ ବାର୍ଷିକ ଖଜଣା ତିନିଟଙ୍କା । ଘରେକେ ତିନିପୁଟିରୁ ପାଞ୍ଚପୁଟି ଯାକେ ଧାନ ଆୟ କରନ୍ତି । ପୁଟିକ ଦେଢ଼ମହଣ । ଫସଲ ସରିଗଲେ ଚିରକାଳର ଖାଦ୍ୟ ଆମ୍ବଟାକୁଆ, ତେନ୍ତୁଳିମଞ୍ଜି । ବୁଢ଼ାମଣ୍ଡଳ ମାଝୀ ଡେଙ୍ଗା ଧଳା ଜାତିଆଲୋକ । ଗୋଟିଏ ଆଖି ବସନ୍ତ ରୋଗରେ ନଷ୍ଟ ହୋଇଛି । ଦଶଘର ହେଉପଛେ, ଗୋଗେରଙ୍ଗା ବଂଶ କନ୍ଧଙ୍କର ଏ ଗୋଟିଏ ନାମୀ ଗାଁ । ବାଲି ମୋଝେକି, ଜର୍ଜହୁଁ, ମୂଲଡାକା, ପେନାଗାଉ, ଆମ୍ବ ଡିମାହାଁ ଗାଁମାନଙ୍କରେ ତାଙ୍କର ବିଭାଘର ଚଳେ । ଅନ୍ୟ ଗୋତ୍ର ସହିତ । ଯେପରି ଚନ୍ଦ୍ରପୁର, ବାନ୍ଦିରି, ଆଦିପାଙ୍ଗାର, ଟାଙ୍ଗାରାଙ୍ଗା କି କୁଡାମା ଗାଁର ଦ୍ୱେଡ଼ାକା ବଂଶର । ଏଠି ବସା କରିବାକୁ କେବଳ କନ୍ଧଘର ପିଣ୍ଡା । ପିଣ୍ଡା ପାଞ୍ଚହାତ ଓସାର । କିନ୍ତୁ ପଦାରୁ ଦିଶେ ଚାଳ ନଇଁ ଆସିଛି ।

ନଇଁ ନଇଁ ଭିତରେ ପଶିବାକୁ ହୁଏ । ପିଣ୍ଡାରେ କରେ ଚାଳରୁ ତଳକୁ ଗୋଟାଗୋଟା କାଠ ପୋତା ହୋଇ ବାଡ଼ ହୋଇଛି । ଘର ଦୁଆରମୁହଁରେ ପିଣ୍ଡା ଫାଟକ । ବଣଜନ୍ତୁଙ୍କ ଭୟରେ ଘର ପିଣ୍ଡାରେ ବାଡ଼ । ତେଣୁ ପିଣ୍ଡାଯାକ ତୀବ୍ର ମୂତ୍ରଗନ୍ଧ ।

ପିଣ୍ଡା ତଳକୁ ଅସନା, ଅଳିଆ, ବାଘକୁ ଡରିଡରି । ପିଣ୍ଡା ମଝିରେ କନ୍ଧ ଏଠି ରାତିରେ ପରିସ୍ରା କରେ । ଗନ୍ଧ ସଙ୍ଗେ ମିଶିଯାଏ ଧୂଆଁଗନ୍ଧ । ଘର ଭିତରେ ସବୁବେଳେ ନିଆଁ ଜଳୁଥିବ । (ଶିବଭାଇ, ପୃ.୫୫-୫୬)

"କୋଟିଆ କନ୍ଧ ସଂଗ୍ରହ, ଶିକାର, ଚାଷ - ଏ ତିନିପ୍ରକାର ଅବସ୍ଥାରେ ଅଦ୍ୟାପି ରହିଛି । କୌଣସି ଗୋଟାକରୁ ପୂର୍ଣ୍ଣଭାବେ ଖସି ଯାଇପାରି ନାହିଁ । କୋଟିଆ ପୁରୁଷ ଓ ସ୍ତ୍ରୀ ବେକଯାକ ନାନାରଙ୍ଗର ମାଳି ପିନ୍ଧନ୍ତି । ସ୍ତ୍ରୀଲୋକ ଜଣକ ପ୍ରାୟ ଅଧସେରେ ତିନିପା ଓଜନର କାଚମାଳି ଧୋବ, କଳା, ନାଲି ପିନ୍ଧନ୍ତି । ମୁହଁ ଦେହରେ ଚିତା, ନାକ ଅଗରେ ବି । ଅଣ୍ଟା ଠୁ ଉପରକୁ ଲଙ୍ଗଳା, କେବଳ ଅକନ୍ଧ ବା ବାହାରର ଲୋକ ଦେଖିଲେ ଦି'ହାତିଆ ଓଢଣାଟି ଛାତି ଉପରେ ଖାଲି ବିଛେଇ ଦିଏ । ପୁରୁଷ ପିନ୍ଧେ କଉପୁନି ଖଣ୍ଡିଏ । ପାଞ୍ଚହାତିଆ କରିଆକୁ ଚିରି ସେ କଉପୁନି କରେ । (ଶିବଭାଇ, ପୃ.୬୮-୬୯)

"ଡଙ୍ଗ୍ରିଆ ଗାଁ ପାତଲାମ୍ବା । ପାହାଡ଼ ଉପରେ ଘରିପାଖେ ବାଡ଼ ବୁଜା ହୋଇ ଛଅଟି ଘର ଏକାଠି । ସେତିକିରେ ଡଙ୍ଗ୍ରିଆ ଗାଁଟିଏ, ଆମ୍ବତୋଟା, ତେନ୍ତୁଳି ତୋଟା ତା'ର ସଙ୍କେତ । ଗାଁର ପାଟ୍ଟୁ ବିଶିମାଝୀ ଅର୍ଥାତ୍ ମୁଣ୍ଡିଆଳର ନାଁ ସିକୋକା ବଂଶର ଶମ୍ବରା । ବାଡ଼ ସେ ପାଖେ ରିଜର୍ଭବଣ । ଆଷାଢ଼ ମାସରେ ସେହି ବାଡ଼ ସେ ପାଖରୁ ହିଁ କେରା ବୁଢ଼ାକୁ ମହାବଳ ବୋହି ନେଇଥିଲା । ଗାଁରେ ପ୍ରଚୁର ଆମ୍ବଟାକୁଆ ସାଇତି ରଖାଯାଇଛି । ଆମ୍ବକୋଇଲି ହିଁ ପ୍ରଧାନ ଖାଦ୍ୟ । ଅଳ୍ପ ମାଣ୍ଡିଆ, କିଛି ଜୋଣା, କୋଶ୍ଳା, ସୁଆଁ ବି ଅଛି । ବଣର ଶାଗଡ଼ାଳ, ଜନ୍ତୁ ବି ଏଥିରୁ ବି କିଛି ଖାଦ୍ୟ ଗୋଟାଏ । ଶମ୍ବରା ମାଝୀ ଘର ଭିତରେ ସଢ଼ାଶବର ମାଂସ ରଖିଛି । ଭଣଭଣ ଗନ୍ଧ ଛାଡୁଛି ।

"ପାହାଡ଼ି ପବନର ଦାଉରୁ ବଞ୍ଚିବା ପାଇଁ ଚାଳକୁ ନୁଆଁଇ ଆଣିଛନ୍ତି ଭୂଇଁ ପତନରୁ ଦି'ଫୁଟ୍ ଉଚ୍ଚ ପର୍ଯ୍ୟନ୍ତ । ଘଳଆଗରେ ବସି ଲେଫଟେଇ ପିଣ୍ଡାକୁ ପଶିବାକୁ ହୁଏ । ପଶିଗଲେ ଦିଶେ ଓସାରପିଣ୍ଡା । ପରିଷ୍କାର ଘର । ଉଚ୍ଚ ଘଳ । ଭିତରେ ଆମ୍ବଟାକୁଆ, ତେନ୍ତୁଳିମଞ୍ଜି ପ୍ରଚୁର ରଖା ହୋଇଛି । ଘଳରେ ଗୁଞ୍ଜା ହୋଇଚି ଶୁଖିଲା ମାଂସ, ଶିଙ୍ଗ, ନାନା ଦ୍ରବ୍ୟ । (ଶିବଭାଇ, ପୃ.୧୧୦)

"ସେହିପରି ପାହାଡ଼ ଚଢ଼ିଚଢ଼ି ଗଲେ ନିର୍ଗୁଣ୍ଡି ଗାଁ, ପାଞ୍ଚଘର କନ୍ଧ, ପାଞ୍ଚଘର ଡମ୍ବ ହୋଇ ଏକ ବଡ଼ଗାଁ । ଏ ଗାଁର ବିଶିମାଝୀ ସିକୋକା ସିକ୍‌ଲା କନ୍ଧ । ଦେବପୂଜକେ ଜାନି ସିକୋକା ବକ୍‌ସି ସାଢ଼େତିନିଟଙ୍କାକୁ ସିଂହପୁରରୁ ଗୋଟିଏ ଛତା କିଣି ଆଣିଛି । ସୁନ୍ଦର ସରସ, ହସହସ ଭଦ୍ରଲୋକଟିଏ ସେ । ପିନ୍ଧିଛି କଉପୁନି, ତା'ର ଫେରରେ କାରୁକାର୍ଯ୍ୟ । ଡଙ୍ଗ୍ରିଆ ହାଟକୁ ଯାଇ ହାତବୁଣା କରିଆ କିଣିଆଣେ । ତାକୁ ତା'ର ପ୍ରେୟସୀକୁ ଦିଏ । କନ୍ଧଝିଅ ରଙ୍ଗସୂତାରେ ବୁଣାବୁଣି କରିବାରେ ଧୁରନ୍ଧର । ନାଲି, ହଳଦିଆ, କଳା ତିନିପ୍ରକାର ସୂତାରେ ମାଛକଣ୍ଟା ପରି ସେ ବୁଣାବୁଣି କରେ, ନହେଲେ ତ୍ରିକୋଣ ପକାଏ, ଗୋଲଗୋଲ ଫୁଲ ବି ପକାଏ, ଏମିତି ଡଙ୍ଗ୍ରିଆ କଉପୁନିର ଲାଞ୍ଜି ଓ କୁଞ୍ଚ ଶୋଭାପାଏ । (ଶିବଭାଇ, ପୃ. ୧୧୧)

"ବିଚିତ୍ର ସେ ଡଙ୍ଗ୍ରିଆ, ଦେହରେ ଅସୁର ପରି ବଳ । ପାଞ୍ଚହାତ ଉଚ୍ଚ ଡେଙ୍ଗା ମରଦ, ହାତଗୋଡ଼ ବଳିଲା ବଳିଲା, ଦେହଯାକ ମୋଟା ସାପପରି ମାଂସପେଶି ଗୁଡ଼େଇ ହୋଇଛି ।×× ଘରିପାଖର ପଥର ପରି ସେ ବି ଖଣ୍ଡେ ପଥର, କିନ୍ତୁ ଚଳନ୍ତି ପଥର । ପୁରା ତୀଖ ପାହାଡ଼ ଢାଲୁରେ ଆଖିପିଛୁଳାକେ ତରତର ହୋଇ ଦଉଡ଼ି ଯାଇପାରେ, ଗୋଡ଼ ଖସେନାହିଁ । ଅଦ୍ଭୁତ ତା'ର ଠାଣି ଓ ପୋଷାକ । ପୁରୁଷର ନିଶ ଉପରେ ନୋଲକ ସେ ଲଗାଏ, ଫାଶିଆରେ ପଦକ ହାଡ଼, ଖପରାର କି କାଚର । ନାକଦଣ୍ଡିରେ ପିନ୍ଧେ ଗୋଜିଆ କାଠି, କାନରେ ଝରା, ମୁଣ୍ଡରେ ଜୁଡ଼ା ଭିତରେ ପିତଳ କି କଂସାର ଏକ ଟାଣକାଠି, ବେକରେ ସରୁ କାଚମାଳି କେରାକେରା । କଟିରେ ମୋଟା ବଳା । ଅଣ୍ଟାର କଉପୁନି ଡୋରରୁ ଖୋଳରେ ଝୁଲୁଥାଏ ହାତେ ଲମ୍ବର ଓସାରିଆ ବାଙ୍କୁଲିଛୁରୀ; ଭାରି ଦାଢ଼, ଭାରି ଟାଣ । କାହାରି କାହାରି ଅଣ୍ଟାରୁ ଦୁଇଟା ସେମିତି, ସମସ୍ତଙ୍କ କାନ୍ଧରେ ଟାଙ୍ଗିଆ । ଡଙ୍ଗ୍ରିଆ ଖୁସି ହୋଇଗଲେ ହଠାତ୍ କୁଦାଟାଏ ମାରି ଅଣ୍ଟାରୁ ଛୁରୀ, କାନ୍ଧରୁ ଟାଙ୍ଗିଆ କାଢ଼ି ଡେଇଁଡେଇଁ ଏକାଠି ଠୁକେଇ ଠୁକେଇ ଗୀତ ବୋଲି ବୋଲି ହାତଗୋଡ଼ ଛାଟି, ନାଚିବାକୁ ଆରମ୍ଭ କରିଦିଅନ୍ତି । ଏତେ ଶାନ୍ତଶିଷ୍ଟ ଭଦ୍ରଲୋକ ନାହିଁ ନଥିବାର । କେତେବେଳେ ମଦ ତ ଖାଆନ୍ତି ନାହିଁ, କେତେଲୋକ ଲଙ୍କାମରିଚ ବି ଖାଆନ୍ତି ନାହିଁ ।

"କିନ୍ତୁ ପର୍ବଦିନରେ ଯେତେବେଳେ ସେମାନେ ସମତଳକୁ ଓହ୍ଲାନ୍ତି, ସେତେବେଳେ ବାଟରେ ଧରେ ମଦ ବିକାଳି । ସହରକୁ ଆସିଲା ବେଳକୁ ନିଶାରେ ଟଳଟଳ, ହୋସ୍ ନଥାଏ । ଜୁରୋପର୍ବ ବେଳେ ବିଷମକଟରେ ଯେ ପାରେ ସେ

ଦେଖିଥିବ ନିଶା ଟଳଟଳ ଅରଣା ଡଙ୍ଗ୍ରିଆକୁ, ସେ ତା'ର ଛୁରା ଓ ଟାଙ୍ଗିଆ ବୁଲେଇ ବୁଲେଇ ଡେଗେଁଡେଗେଁ ଗାଳି ଦେଇଦେଇ ପଟୁଆର କରେ, ବଳି ମଇଁଷି ଉପରେ କୁଦିପଡ଼ି ତା'ର ଖଣ୍ଡଖଣ୍ଡ ମାଂସ କାଟିପକାଏ, ×× ଯେ ଶୁଣିଛି ସେତେବେଳେ ଡଙ୍ଗ୍ରିଆର ମତ୍ତ ଗର୍ଜନ ଯେପରି ଗୁମ୍ଫା ଭିତରୁ କୌଣସି ହିଂସ୍ରଜନ୍ତୁର ବୋବାଳି, ଡଙ୍ଗ୍ରିଆ ବିଷୟରେ ଠିକ୍ ଓଲଟା ଧାରଣା କରି ସେ ଭାବିଦିଏ ଏ ମଣିଷ ନୁହେଁ । ଏ ବି ଏକ ବଣଜନ୍ତୁ । ଅଥଚ ଅତି ସରଳ ଅତି ଶାନ୍ତ ସୁଧାର ଏ ଡଙ୍ଗ୍ରିଆ ଆପଣାର ପର୍ବତ ଗାଁରେ । (ଶିବଭାଇ, ପୃ.୧୧୨,୧୧୩)

"ଘର ଗୋଟିକେ ବର୍ଷକୁ ଦଶମାଣ ଲୁଣ ଦରକାର ହୁଏ । ଖରାଦିନେ ଥରେ କିଣି ପୋତିଦେଲେ, ଟିକିଏ ଟିକିଏ ନେଇ ବର୍ଷକ ଚଳେ । କିରୋସିନି ବର୍ଷକୁ ଦୁଇବୋତଲ, ପର୍ବ ଲାଗିଲେ ଦରକାର ପଡ଼େ, ନହେଲେ ନାହିଁ । ଖାଇବାତେଲ ତ ମୋଟେ ଦରକାର ନାହିଁ । ଡଙ୍ଗ୍ରିଆ ତା'ର ଖାଦ୍ୟକୁ ବିନା ମସଲାରେ ବିନା ତେଲରେ ସିଝେଇ ସାଝେଇ ଖାଏ । ପୁରୁଷର ଷୋହଳ ହାତ ଲମ୍ବା ହାତେ ଓସାରର କଉପୁନି, ହାତବୁଣା ଖଦି ତିନିଟଙ୍କା ପଡ଼େ । ଯାଏ ବରଷେ, ଆଉ 'ପାଙ୍ଗୁର ବାଟା' ଅର୍ଥାତ୍ ଘୋଡ଼ି ହେଲା, ବର୍ଷକୁ ଦଶହାତିଆ ଦୁଇଟା ଦରକାର । ସ୍ତ୍ରୀଲୋକ ପିନ୍ଧା 'ବେରା' ଦୁଇଖଣ୍ଡ, ଖଣ୍ଡକ ତିନିହାତ ଲମ୍ବା ଦୁଇହାତ ଓସାର । ଖଣ୍ଡେ ଅଣ୍ଟାରେ ଗୁରା ହୁଏ, ଆଉଖଣ୍ଡେ ଅଣ୍ଟା ଉପରକୁ ସାମ୍ନାପଟେ ପଡ଼େ । ଧୂଆଁପତ୍ରରେ ମାସକୁ ଟଙ୍କାଏ । (ଶିବଭାଇ, ପୃ.୧୧୫)

×× କନ୍ଧ ଏକ ନୁହେଁ, କନ୍ଧର ଭାଷା ଏକ ନୁହେଁ । ଦେଖ ଯେ ଗଞ୍ଜାମଜିଲ୍ଲା ଯାକ କନ୍ଧ କହନ୍ତି 'କୁଇ' ଭାଷା; ଅଥଚ କୋରାପୁଟ କଳାହାଣ୍ଡି କନ୍ଧ ଭାଷା 'କୁଭି' କୁଇଠୁ ଭିନ୍ନେ । ପୁଣି ଦୁଇଭାଷାରେ ନାନାପ୍ରକାର ବୋଲି, ଏପରି ଯେ ଗୋଟିଏ ଗୋଟିଏ ଉପତ୍ୟକାରେ ନୂଆନୂଆ ବୋଲି । ସେହିପରି 'କୁଭି' ଭାଷାରେ କୋରାପୁଟିଆ, ରାୟଗଡ଼ିଆ, କୋଟିଆ, ଡଙ୍ଗ୍ରିଆ, ଦେଶିଆ, ବୋଲି ଯେତେ ଇଚ୍ଛା । କୋଟିଆରେ ପୁଣି ଦେଖ ଯେ ଚନ୍ଦ୍ରପୁର ମାଳରେ ପଶ୍ଚିମ ଅଧକ ଏକପ୍ରକାର ବୋଲି, ପୂର୍ବ ଅଧକ ଯେଉଁତକ ଆହୁରି ଗହୀର ମାଳ ଭିତରେ ଅଛି – ତା' ବୋଲି ଆଉ ପ୍ରକାରେ । (ଶିବଭାଇ, ପୃ.୧୨୭)

"ଗୋଟିଏ ଝଙ୍କା ବରଗଛ ମୂଳରେ ଗାଁର ସଦର ଦାଣ୍ଡ । ଘରିପାଖେ ଖାଲି ଗୋଳିଆ ଗୋଳିଆ ପଥର । ଯେତେ ପୁରୁଷ ମରନ୍ତି ପ୍ରତ୍ୟେକଙ୍କ ପାଇଁ ଖାଲି ସ୍ମୃତି ରଖିବା ଉଦ୍ଦେଶ୍ୟରେ ସିଧା ହୋଇ ଖଣ୍ଡିଏ ଲେଖା ପଥର ଆଉ ଯେତେ ସ୍ତ୍ରୀଲୋକ

ମରନ୍ତି, ପ୍ରତି ଜଣ ପାଇଁ ଟଟା ହୋଇ ଖଣ୍ଡେ ଲେଖା ପଥର ପୋତା ହୁଏ । ମଝିରେ ଏ ମୁଣ୍ଡ ସେମୁଣ୍ଡ କେତେଖଣ୍ଡ ପଥର ଚଟାଣ ପଡ଼ି ରହିଥାଏ ବସି ପଞ୍ଚାୟତ କରିବାକୁ, ନୋହିଲେ ରାତିବେଳେ ଗାଁ ଧାଙ୍ଗଡ଼ି ନାଟ ଦେଖିବାକୁ । (ପରଜା ଗାଁ) -

(ଦାଦିବୁଢ଼ା, ପୃ.୬)

"ପାହାଡ଼ଲୋକଙ୍କ ଭିତରେ ଏକେ ଡମ୍ବଲୋକ ଚତୁର, ଡମ୍ବଜାତିର ପୁଣି ଫାଉଲ ଡମ୍ବ ଗୋଟିଏ ବିଚକ୍ଷଣ ବିଶାରଦ । ତା'ର ବିଶାଳ ଗାଡ଼ିଆ ମୁହଁରେ ସବୁବେଳେ ଫନ୍ଦିଫିକର ଖେଳ କରୁଥାଏ । ସରୁଆଁ ମୁହଁଟିଏ, ଥରେ ଦେଖିଦେଲେ ନେହୁଳ ମନେପଡ଼େ, ଋହାଁଣୀ ବଡ଼ କୁଟିଳ, ଲାଗିବ ଯେପରି ମଣିଷ ସାଙ୍ଗେ ଲୁଚକାଳି ଖେଳୁଛି । ତା' ଆଖି, ଆଢୁଆଳରେ ରହି ସବୁ ଦେଖୁଛି, ସବୁ ବୁଝୁଛି, ଅଥଚ ଧରାଛୁଆଁ ଦେଉନାହିଁ । (ପରଜା, ପୃ.୨୭)

"ମୁହାଁମୁହିଁ ଧାଡ଼ିଧାଡ଼ି ହୋଇ ଘର କବାଟ ପଡ଼ିଛି । ରଙ୍ଗ କଳା, ହଳଦିଆ, ଧଳା ମାଟିରେ ପଲସ୍ତରା କାନ୍ଥ ଉପରେ ଅରିକ ଲେଖା ଚିକ୍‌ଚିକ୍ ଦିଶୁଛି, ପାହାଡ଼ର ଦାନ୍ତପରି, ଋରିପାଖର ଅଳିଆ ଅସନା ହାଇମାରି ଉଠୁଛି । ଘର ଆଗରେ ପତ୍ର ଚୌକନି କୁଡ଼, ଖତକୁଡ଼, ଆମ୍ବଚୋପା ଟାକୁଆଗଦା । ସାହି ମଝିରେ ଡେଙ୍ଗା ସଲପ ଗଛଟା, ବାହୁଙ୍ଗା ବାହୁଙ୍ଗା ପକେଇ ଠିଆଠିଆ ଖାଲି ଘୁମଉଚି । (ପରଜା, ପୃ.୧୬୩)

"ସେଇ ପ୍ରାଚୀନ ପଦ୍ଧତିର ଘର, ମଝିଘର, ତା'ର ଦାଣ୍ଡକବାଟ ଅଛି, ଏ କରେ ଭଣ୍ଡାରଘର, ସେ କରେ ରୋଷେଇଘର, ଦୁଇଘରର ଖାଲି ଭିତିରି କବାଟ ଅଛି ଦାଣ୍ଡଘରକୁ । ସେ ଆଟୁ, ସଘା, ଅଧାକାନ୍ଥି ହାଣ୍ଡି ରଖିବାକୁ ପାହାଚ, ଦାଣ୍ଡଘର ଚଟାଣରେ ମାଣ୍ଡିଆ ସୁଆଁ ପେଶିବାକୁ ଗାତ । ସବୁ ପୁରୁଣା ରୀତିରେ । କିନ୍ତୁ ସବୁ ନୂଆ ।" (ପରଜା, ପୃ.୧୮୪)

"ପାହାଡ଼ ଦେଶର ପ୍ରତିକଥାରେ ପଞ୍ଚାତି । କେବେ କେଉଁ ପୁରାକାଳରେ ଏହି ପଞ୍ଚାତିରେ ହିଁ ସବୁ ଦ୍ୱନ୍ଦ୍ୱ ନିଷ୍ପତ୍ତି ହେଉଥିଲା । ଏବେ ପଞ୍ଚାତିର ନିଷ୍ପତ୍ତି କାହାରି ହାତ ବାନ୍ଧି ପାରୁନାହିଁ । ତଥାପି ପଞ୍ଚାତି ହୁଏ ।" (ପରଜା, ପୃ.୧୯୯)

**୧୦. ଧର୍ମ, ଜାତିପ୍ରଥା, ଅନ୍ଧବିଶ୍ୱାସ ଓ ଶୋଷଣ**

ଶହଶହ ବର୍ଷ ଧରି କୋରାପୁଟୀ ଆଦିବାସୀର ବିଚ୍ଛିନ୍ନ ଜୀବନ ତା' ଭିତରେ ବପନ କରିଛି ଅନେକ ଅନେକ ପ୍ରକାରର ଅନ୍ଧବିଶ୍ୱାସ – ଗୁଣିଗାରେଡ଼ି ପାଙ୍ଗଣ-

ନିଜର ପବିତ୍ରତାକୁ ଅତୁଟ ରଖିବା ପାଇଁ ଜାତିପ୍ରଥା ଓ ଅସହାୟତାକୁ ଅତିକ୍ରମ କରିବା ପାଇଁ ବିଭିନ୍ନ ଧର୍ମଧାରଣା । ଯେପରିକି ପାଣ୍ଡୋଇ(ଜୋତା) ମାଡ଼ରେ ଜାତିଯାଏ ବା ନିମ୍ନଜାତିର ଘରେ ଖାଇଲେ ବା ଜେଲ୍ ଗଲେ ଜାତି ଯାଏ । ଏଇ ଧାରଣା ପ୍ରାୟ ସବୁ ଗୋଷ୍ଠୀ ଭିତରେ ରହିଛି । ଜାତି ହେବାପାଇଁ ଗାଁଲୋକଙ୍କୁ ଭୋଜି ଓ ମଦ ଦେବାକୁ ପଡ଼େ । ଏହାକୁ ଭିତ୍ତିକରି ସାହୁକାର ତା'ର ଶୋଷଣର ଜାଲ ମେଲାଇ ଦିଏ । ସେହିପରି ରୋଗ / ବାଘ / ମରୁଡ଼ି ନହେବା ପାଇଁ ସେ ମହାପ୍ରଭୁଙ୍କୁ ପୂଜାକରେ । ବିଶ୍ୱାସକରେ ଦୁଷ୍ଟ ବା ସନ୍ଥମାନଙ୍କ ଉପରେ, ନିଜର ପୂର୍ବପୁରୁଷଙ୍କ ଆତ୍ମା ଉପରେ । ରୋଗରୁ ଆରୋଗ୍ୟ ହେବାପାଇଁ ଡାକ୍ତର ସେବା ନାହିଁ – ତେଣୁ ଗୁଣିଗାରେଡ଼ି ଉପରେ ବିଶ୍ୱାସ ନ କଲେ ରୋଗୀ ପ୍ରତି ତା'ର କର୍ତ୍ତବ୍ୟ ନ ତୁଲେଇ ପାରିବାର ଅପରାଧରେ ସେ ଅପରାଧୀ ହୋଇଯିବ । ବାଘକୁ ସେ ମାରିପାରେନି । ତେଣୁ ବାଘର ଅପରାଜେୟତା ବିଷୟରେ ଅନେକ ଗଳ୍ପ ସୃଷ୍ଟିକରେ । ବାଘକୁ ପୂଜାକରେ । ସେହିପରି ମରୁଡ଼ି, ଯାହା ଉପରେ ତା'ର ହାତନାହିଁ । ଏ ସଂପର୍କରେ ଗୋପୀବାବୁଙ୍କ ବିଶ୍ଳେଷଣ ଓ ତିକ୍ତତା କିଛି କମ୍ ନୁହେଁ ।

ଡଙ୍ଗ୍ରିଆ କନ୍ଧ ଅବଜ୍ଞାରେ ତଳଦେଶର କନ୍ଧକୁ ଅନାଏଁ, ପାହାଡ଼ମାଳାର କୋଟିଆ କନ୍ଧ ବି ତଳ ଦେଶିଆକୁ ତୁଚ୍ଛ ତାଚ୍ଛଲ୍ୟ କରେ ।

ବାକି ପୁଣ୍ୟପର୍ବ । ଲାଞ୍ଜିଆ ସଉରା ଆପଣା ହାତରେ ଆପଣା ନିଶତକ ଗୋଟିଗୋଟି କରି ଓପାଡ଼ି ପକାଏ । ଗୋଟିଏ ଧାନ ସହିତ ଟାଣିକରି ଧରେ, ସ୍ଥିର ପାଣିକୁ କରେ ଦର୍ପଣ, ଆପଣା ନିଶ ଆପେ ଓପାଡ଼ିବାରେ ହିଁ ଆନନ୍ଦ । ଲାଞ୍ଜିଆ ସଉରା ଯାହା ରୋଜଗାର କରେ ତହିଁରେ ୧୦ଅଣା ଯାଏ ପୂର୍ବପୁରୁଷଙ୍କ ଆତ୍ମାଙ୍କ ପାଇଁ ମଇଁଷି ବଳିଦେଇ, କାରଣ ତା'ର ବିଶ୍ୱାସ ଜର ହେଲେ ବି ସେହି ଅତୀତର ଆତ୍ମାମାନେ ଜର କରାନ୍ତି । ସର୍ଦ୍ଦି କରାନ୍ତି ସେହି, ଆଉ ଅନ୍ୟାନ୍ୟ ଯେତେ ଔଷଧ ସବୁ । ଡଙ୍ଗ୍ରିଆ କନ୍ଧ ଆପଣା ନିଶ ଓପାଡ଼େ ନାହିଁ । କେହି ବେମାର ପଡ଼ିଲେ ସେ ବଡଲାନୀ ପୂଜାକରେ ସତ, କିନ୍ତୁ ସେଥିପାଇଁ ଗୋଟିଏ କୁକୁଡ଼ା ଛୁଆ ହିଁ ଯଥେଷ୍ଟ । ସାଧାରଣ ପର୍ବ କେବଳ ବିଭିନ୍ନ ଶସ୍ୟର ନୂଆଖିଆ । ଯଥା ମାଘମାସରେ ମେରିଆ, ଭୋଦୁଅରେ ନୂଆଖିଆ, ବିମାରାଜା ପୂଜା, ମାର୍ଜିଆ ରାଣୀ, ଚୈତ୍ରରେ ଆମ୍ବ ନୂଆ ଖାଇବାର ବେଳ ତେଣୁ ସେ ବି ପର୍ବ । ଯାହାକୁ ସେମାନେ କହନ୍ତି 'ନୁରେଶ'ପର୍ବ । ପାରାଟିଏ କି କୁକୁଡ଼ାଟିଏ ହେଲେ ପର୍ବକୁ ଯଥେଷ୍ଟ । ଖାଲି ତିନିବର୍ଷରେ ଥରେ ପଡ଼େ

ପୋଢ଼ପୂଜା, ତା'ର ବିଧି ବନ୍ଧା ହୋଇଚି । ଘରକେ ଗୋଟିଏ ଛେଳି, ପାଞ୍ଚ ଛଅଟି କୁକୁଡ଼ା, ଯୋଡ଼ିଏ ପାରା, ଗୋଟିଏ ମେଣ୍ଢା, ଘରର ସମସ୍ତିଙ୍କ ପାଇଁ ନୂଆଲୁଗା । ତା'ଛଡ଼ା ଗାଁ ଭେଦାରେ ମଶାଣି ଡୁମା ଲାଗି ଗୋଟିଏ ଘୁଷୁରି, ଗାଁଯାକର ଯୋଡ଼ିଏ ପୋଢ଼, ମଦ ଟିଣେ, ଅନ୍ୟ ଗାଁରୁ ଯେତେ କୁଣିଆ ଆସିବେ ସମସ୍ତେ ମାଣେ ଲେଖାଏଁ ଚାଉଳ ଓ କିଛି ମଦ ନେଇଆସିଥିବେ । ପ୍ରତି ଗାଁକୁ ସଙ୍ଖୋଳା ବେଭାର ଦେବାକୁ ପଡ଼ିବ ଗୋଟିଏ ଲେଖାଏଁ ଛେଳି, ସର୍ବମୋଟ ତିନିତିନି ବର୍ଷରେ ପୋଢ଼ 'ପୂଜା' କଲାବେଳେ ପ୍ରତି ପରିବାରକୁ ଖର୍ଚ୍ଚ ଲାଗିଯାଏ ହାରାହାରି ଶହେଟଙ୍କା । (ଶିବଭାଇ, ପୃ.୧୧୪-୧୧୮)

"'ଗୁଡ଼ିଘର' - ଠାକୁରାଣୀ ରହିବା ପାଇଁ ଖଣ୍ଡିଏ ଚାଳିଆ, ଛ'ହାତ ଉଞ୍ଚ, ଛ'ହାତ ଲମ୍ବ, ଛ'ହାତ ଓସାରର ଘର । କାନ୍ଥଯାକ ଝାଟିମାଟିର । ମାଟି, ଗୋବର ଲେସା ହୋଇ ସେଥିରେ ଚିତ୍ର ଅଙ୍କା ହୋଇଥାଏ । ପ୍ରତି ପାଖ କାନ୍ଥରେ ଚାରୋଟି ଲେଖାଁ କାଠଖମ୍ବ । କାଠଖମ୍ବ ଉପରେ ଏକପଟିଆ ଥୁଆ ହୋଇଛି । ସେଥିରେ ଯୋଡ଼ାଏ ଲେଖା ଗୋଜିଆ ଗୋଜିଆ ସ୍ତନପରି, ଏମିତି ଘରଯାକ ତିନିଯୋଡ଼ା, ସତେଯେମିତି କି ଏଭଳି ନହେଲେ ଠାକୁରାଣୀ 'ମାଁ' ବୋଲେଇ ପାରିବ ନାହିଁ । କାଠଖମ୍ବ ସବୁ ଆଠଆଂଶିଆ ହୋଇ କୁନ୍ଦା ହେଲାପରି ହଣା ହୋଇଛି । ମଝିରେ ମଝିରେ ଆଠ ଆଂଶିଆ ଉପରେ ଗୋଲ, ଏଇ ଚାଳିଆର ଗୋଟାଏ ପାଖରେ ଗୋଟିଏ ମାଟିବେଦି, ବେଦି ଉପରେ ଗୋଲ ହୋଇ ଗୋଟିଏ ବଡ଼ ଅକର୍ମଶିଳା, ସେହି ଧରଣୀ ଦେବୀ, ତାଙ୍କରି ଏ ମନ୍ଦିର ।

"ପାଖରେ ଗୋଟିଏ ସାଉଁଳିଆ କାଠଖମ୍ବ ପୋତା ହୋଇଛି । ମଣିଷ ହାତର ବାରମ୍ବାର ସ୍ପର୍ଶ ପାଇପାଇ କାଠଟି ହେଲାଣି ସାଉଁଳିଆ, ଚିକଣମଖା । ସେଇ କାଠ ହିଁ ବଳି ବାନ୍ଧିବା କାଠ, ସେହି ଧରଣୀ ପଥର ଉପରେ କାହାର ରକ୍ତ ଢଳା ହୋଇଥିବ, ସେହି ଚାଳି ତଳେ ମାଟି ଭିତରେ ପୋତା ହୋଇଥିବ ବଳି ପଡ଼ିଥିବା ଗାଈମାଂସ, ପୋଢ଼ମାଂସ । ମେରିଆ ନରବଳି ବନ୍ଦ୍ ହୋଇଛି । କିନ୍ତୁ ଗୁଡ଼ିଘର ଅଛି, ଗୁଡ଼ିଘରର ସ୍ମୃତି ଅଛି । ଗାଁରେ କୋଉଠି ହେଲେ ଥୁଆ ହୋଇଥିବ ମେରିଆ ପୂଜାର ସାମଗ୍ରୀସବୁ - ଏକ ପିତଳଥାଳି, ଗୋଟିଏ ଗାଡୁଆ, ଯେଉଁଥିରେ ରକ୍ତ ଓ କଟାମୁଣ୍ଡ ସମ୍ଭାଦି ରଖା ହେଉଥିଲେ, ଏକ ଲୁହା ଶିକୁଳି, ଯେଉଁଥିରେ ମେରିଆକୁ ବାନ୍ଧୁଥିଲେ, ଆଉ ଛୁରୀ, ଲୁଚିକରି ହେଲେ କେଉଁଠି ହେଲେ ଥିବ ଏ ତିନୋଟି ପଦାର୍ଥ, ଧରଣୀଗୁଡ଼ିର ସାମଗ୍ରୀ । (ଶିବଭାଇ, ପୃ.୧୩୩)

"ପ୍ରତି ଗାଁରେ ଗୁରୁମାଈ ଅଛନ୍ତି । ଯାହାଙ୍କ ବାପା, ମାଆ ପିଲାଦିନେ ତାଙ୍କୁ କୌଣସି କାରଣରୁ ଦିଅଁଙ୍କୁ ପାଣିଛଡ଼େଇ ଦିଅନ୍ତି, ସେମାନେ ଗୁରୁମାଈ । ସେମାନେ ଗୋପୀ ଭାବାପନ୍ନ । ଅନ୍ୟବେଳେ ଯାହା ହୁଅନ୍ତୁ, ପୂଜାବେଳେ ସେମାନେ ନାରୀ ।"

"ରାମ ନାଇକ ବାରମ୍ୱାର ଦଣ୍ଡବତ ହୋଇ ଖଜୁରୀ ଥୁଣ୍ଟାରେ ଦାଦିବୁଢ଼ା ପାଖେ ଗୁହାରୀ କରେ, ଅଳିକରେ । ନିଜର ପାଟି ନିଜେ ଶୁଣେ - ଦାଦିବୁଢ଼ା, ଗଲାବର୍ଷ ଯେମିତି ପାଞ୍ଚମୁଣ୍ଡ ଗୋରୁ ମୋର ମଲେ, ଏବର୍ଷ ଯେପରି ନହୁଏ । ତୋତେ ପାରା ଦେବି, କୁକୁଡ଼ା ଦେବି, ମଦ ଦେବି, ସେମିତି କରିବୁ ନାହିଁ ଦାଦିବୁଢ଼ା, ମରିଯିବିଟି - (ଦାଦିବୁଢ଼ା, ପୃ.୧୮)

"କାହାର କେତେ ସୁଖଦୁଃଖ । ଯାହାର ପୁଅ ରୋଗରେ ପଡ଼ିଥିଲା, ପରେ ଭଲ ହୋଇଗଲା, ଯାହାର ଗାଈ ହଜିଥିଲା, ଖୋଜିବାରୁ ମିଳିଗଲା, ଯାହାର ପାଚିଲା, ଯାହାର ଫଳିଲା ସମସ୍ତିଙ୍କ ଦ୍ୱାରା ଅଭିଷିକ୍ତ ସେ, ଅନାଦିକାଳର ଦେବତା ଦାଦିବୁଢ଼ା, ସେଇମାନେ ତା'ର ମହିମା ଗାଇବେ । ପୁଣି ଏଇ ଦଳରେ ଯାନ୍ତି ସେମାନେ, ଯାହାର ପୁଅ ଏନ୍ତୁଡ଼ିଘରେ ମଲା, ଯାହାର ଗାଈ ଗୁହାଳରୁ ଚୋରିଗଲା, ଯାହାର ଧାନକ୍ଷେତ ତଡ଼ା ପାଣିରେ ଖାଲ ହୋଇଗଲା; ଏମାନେ ମଧ୍ୟ ଉପାଧିଆ ପଡ଼ିଥିଲେ । ଠାକୁର ଶୁଣିନାହିଁ - ଏତେ ବଡ଼କଥା କହିଦେବାକୁ କାହାର ତୁଣ୍ଡନାହିଁ । ଆହୁରି ଦିନକାଳ ଅଛି, ଏକା ଦିନକେ ସବୁପିଲା ମରିବା, ସବୁ ଗାଈ ହଜିବା ଶେଷ ନୁହେଁ । ତେଣୁ ଏ ହତଭାଗ୍ୟମାନେ ଆପଣାର ଫଟା କପାଳକୁ ଦୋଷ ଦିଅନ୍ତି । ଦାଦିବୁଢ଼ା ଉପରେ ଅଭିମାନ କରି କରି ତାହା ଉପରେ ନିଜର ବିଶ୍ୱାସ ବଢ଼ାଇ ନିଅନ୍ତି । ଆହୁରି ଲାଞ୍ଚଦେଇ, ନେହୁରା ହୋଇ ଭବିଷ୍ୟତ ପାଇଁ ସୁବିଧା ତରକ କରିନେବାକୁ ଲାଗିପଡ଼ନ୍ତି । କାରଣ ଏମାନେ ମଣିଷ । ମଣିଷ ଆସନ୍ତାକାଲି ପାଇଁ ଆସନ୍ତା ପରକାଳ ପାଇଁ ଅଣ୍ଟା ଭିଡ଼ି ଖଟୁଥାଏ, ହେଉପଛେ ଆସନ୍ତାକାଲିଟା ଗତକାଲି । ଆଉ ଦାଦିବୁଢ଼ା ଠାକୁର, ସବୁ ଉପଚରକୁ ଏକାଠିକରି ଗଣ୍ଠିରି ବାନ୍ଧିବା ତା'ର ଧର୍ମ, ତା'ର ସବୁ ନଗଦ । (ଦାଦିବୁଢ଼ା - ପୃ.୬୫)

"ମୃତ୍ୟୁର ନାଁ କେହି ଧରନ୍ତି ନାହିଁ, କିନ୍ତୁ ତା'ର ସମୟ ବୁଝି ସେ ଚାଲିଆସେ କେତେ ଉପାୟରେ, ଜର, ଛାତିବଥା, ବାଘଖିଆ, ମାମୁଲି ଏତିକି, ଆଉ ତ କେତେ ଅଛି । ଦିଶାରୀ ବୁଢ଼ା ଯିବା ପଛେପଛେ ଜର ଛାତିବଥାରେ ଆଉ ଦଶବାରଜଣ ଗଲେ । ସବୁ ଗାଁରେ ଜର, ଛାତିବଥା । ଦାଦିବୁଢ଼ା ପାଖେ ଅସଂଖ୍ୟ ପୂଜା ଦିଆଗଲା,

ସେହି କାରଣରୁ ବୋଧହୁଏ ମୋଟେ ଦଶବାରଜଣ ମରିସାରିଲା ପରେ ଜର, ଛାତିବଥା ଛାଡ଼ିଗଲା । (ଦାଦିବୁଢା, ପୃ.୮୩)

**୧୧.ବାଘ, ବଘେଇ ଓ ଗ୍ରାମ୍ୟ ଅର୍ଥନୀତି:**

କୋରାପୁଟ ଗେଜେଟ୍‌ରେ ନୀଳମଣି ସେନାପତି ଲେଖିଛନ୍ତି, "ବନ୍ୟଜନ୍ତୁ ବା ସଂକ୍ରାମକରୋଗ ଦ୍ୱାରା ବାରମ୍ବାର ଆକ୍ରାନ୍ତ ହେଲେ କିମ୍ବା ବର୍ଷବର୍ଷ ଧରି ମରୁଡ଼ି କିମ୍ବା ଅନ୍ୟାନ୍ୟ ଦୁର୍ବିପାକ ଦେଖାଦେଲେ ବେଜୁଣୀ ଓ ଦିଶାରୀର ପରାମର୍ଶରେ ଆଦିବାସୀମାନେ ନିଜର ବାସସ୍ଥଳୀ ଛାଡ଼ି ଗାଁ ବସେଇବା ପାଇଁ ନୂଆ ଭୂମିର ସନ୍ଧାନରେ ଯାଆନ୍ତି ।" (ପୃ.୮୩) ଏଇ ବନ୍ୟଜନ୍ତୁଙ୍କ ଭିତରେ ମୁଖ୍ୟସ୍ଥାନ ବାଘର । ବାଘ ମାତିବାକୁ କୁହାଯାଏ 'ବଘେଇ' । ବଘେଇରେ ଉଜୁଡ଼ି ଯାଇଥିବା ଗାଁର ସଂଖ୍ୟା ଅନେକ । ତେଣୁ ବାଘ ସମ୍ପର୍କରେ କଥା, ଉପକଥା ଓ ପ୍ରବାଦର ଅନ୍ତନାହିଁ । ଏପରିକି ଆଦିବାସୀର ଗ୍ରାମ୍ୟ ଅର୍ଥନୀତିରେ ବାଘର ମଧ୍ୟ ଏକ ଭୂମିକା ରହିଛି । ମାଲକାନ୍‌ଗିରି ଜିଲ୍ଲାରେ ଏପରି ଏକ ଗାଁ ହେଉଛି କୋରକେଣ୍ଡା ବ୍ଲକ୍‌ର ସୀମାକେଣ୍ଡା । ଏହି ଗାଁରେ ଷଷ୍ଠ ଦଶକରେ ବଘେଇ ପଡ଼ିଥିଲା । ସେଇ ବଘେଇ ଫଳରେ ୬ଜଣଙ୍କର ମୃତ୍ୟୁ ହେବାପରେ କେବଳ ଗାଁ ନାୟକ ରାମଚନ୍ଦ୍ର ମାଡ଼କାମିଙ୍କୁ ଛାଡ଼ି ଅନ୍ୟ ସମସ୍ତେ ଗାଁ ଛାଡ଼ି ଅନ୍ୟତ୍ର ଚାଲିଯାଇଥିଲେ । ୯ମ ଦଶକରେ ସେମାନଙ୍କ ଭିତରୁ ଅଧାଅଧି ଅର୍ଥାତ୍ ମୂଳ ଲୋକଙ୍କ ପୁଅ ନାତିମାନେ ଫେରି ଆସିଥିଲେ । ଏ ସମ୍ପର୍କରେ ଗୋପୀବାବୁଙ୍କ ଅନୁଧ୍ୟାନ ଅପୂର୍ବ ।

"ଏଇ ଭାଲୁ ଗାଡ଼ରେ ସମ୍ବାରୀକୁ ବାଘ ଖାଇଥିଲା । ଜ୍ୟେଷ୍ଠରେ ବଣ ନାହିଁ । କିନ୍ତୁ ଦ୍ୱିପହରରେ ବାଘ ଡୁମା ବୁଲେ । ଯେତେ ଲୋକଙ୍କୁ ବାଘ ଖାଇଥାଏ ତାଙ୍କରି ପ୍ରେତ ସେ । ପିଲାପରି ଚେହେରା, ମାଇ-ଅଣ୍ଡିରା ଜଣାପଡ଼େ ନାହିଁ । ମୁଣ୍ଡ ନାଲି, ଆଖି ନାଲି, ଦେହଯାକ ବଡ଼ବଡ଼ ରୁମ । ଲୋକେ କହନ୍ତି କେତେପ୍ରକାର ଶବ୍ଦକରେ ସେ । କୁନ୍ଥେଇଲା ପରି, ଗର୍ଜିଲା ପରି, କାଠ ଭାଙ୍ଗିଲା ପରି । ବାଘଡୁମା ଡରାଇ ଖେଦେ । (ପରଜା, ପୃ.୨୦୮)

"ଉଡ଼ି ଆସୁଥିବା ପାଣି ବାମ୍ଫକୁ ଦେଖିଲେ ଛାତି ଭିତରେ ଚାଉଁକରେ, କାରଣ ବାଘର ଅଭ୍ୟାସ ସେ ମେଘ ତଳେତଳେ ଧାଇଁଆସେ । ମେଘୁଆ ପାଗରେ ସୁଲୁସୁଲିଆ ପବନ ଦେଲେ ଦେଶର ଲୋକେ କହନ୍ତି 'ବଘେଇ ପାଗ' । ବାନ୍ଧି

ବାଢ଼େଇଲେ କେହି ପଦାକୁ ବାହାରନ୍ତି ନାହିଁ, ଯେହେତୁ ସେପରି ପାଗ ହେଲେ ଅବଶ୍ୟ ଯେଉଁଠି ହେଲେ ବାଘ ମଣିଷକୁ ଧରେ । କିଏ ନ ଜାଣେ ମହାବଳ କଥା ? ବାଘେଇ ପାଗ ହେଲେ ବାଘକୁ କୁଆଡ଼େ ବେଶି ଭୋକ କରେ, ଆଉ ସେ ଲାଞ୍ଜ ଟେକି ନାଚେ । ତାକୁ ନାଚ ମାଡ଼େ । ତା'ପରେ ପାଞ୍ଚ ଥାଉନ୍ତୁ ପଚିଶି ଥାଉନ୍ତୁ ଦିନ ଦିପହରେ ଗହଳି ଭିତରୁ ମଣିଷ ଉଠେଇ ନେଇ ସେ ଗ୍ଲିଯାଏ, ତହିଁ ଆରଦିନ ଦି'ପହର ଭିତରେ ମଡ଼କୁ ସେ ସଫାକରି ଖାଇଦିଏ । ସେ ଦିନକୁ ତାକୁ ନିଶାଧରେ, ମଦୁଆ ପରି ଟଳିଟଳିକା ଝୋଲା କରେକରେ ସେ ବୁଲୁଥାଏ, ଶୋଇ ପଡୁଥାଏ, ମଝିରେ ଦିନଟାଏ ଛାଡ଼ିଦେଇ ପୁଣି ସେ ଯାଇ ଧରେ ଆଉ କୋଉ ଗାଁରେ, ଦିନଯାକ ବୁଲୁଥାଏ ସେ ବାଟ କରର ଉଞ୍ଚଉଞ୍ଚ ପାହାଡ଼ ମହୁଡ଼ରେ, ସେଠି ରହି ସେ ଶିକାରର ସନ୍ଧାନ ନିଏ । ସଞ୍ଜ ପହିଲି ପହରେ ବଡ଼ବଡ଼ ରାସ୍ତା କରରେ ରାତି ଟିକିଏ ବଢ଼ିଲେ ସେ ଗାଁ ତଳେତଳେ ବୁଲେ, ଇଚ୍ଛା ହେଲେ ବୁଲି ଗ୍ଲିଯାଏ, ଏକା ରାତିକେ ଦଶକୋଶ, ପନ୍ଦରକୋଶ । (ପରଜା, ପୃ.୨୮୬-୭)

ବାଘର ବୋବାଳି ଶୁଭିଲା ପରି ଲାଗୁଥାଏ ବେଳେବେଳେ ମେଘୁଆ ପବନରେ । ବାଘ ଏକାରକମ ବୋବାଏ ନାହିଁ । କେତେବେଳେ ଦୂରପାହାଡ଼ ଉପରେ ଘଡ଼ଘଡ଼ି ପରି, କେତେବେଳେ ଅଳି କରୁଥିବା ଅଲିଅଳ ସାନପିଲାର ଅଝଟ ପରି, କେତେବେଳେ କେଉଁପରି । ବାଘର ଆଖିରେ ଅଳ୍ପ ଆଲୁଅ ଧାସ ଲାଗିଗଲେ କିପରି ସେ ଜଳିଉଠେ, ଯେପରି ଦୁଇଟା ବଡ଼ବଡ଼ ଶାଗୁଆ ତାରା ପାଖାପାଖି ବସି ଖାଲି ଜଳିବାରେ ଲାଗିଛି । ବାଘର ଆଖିକୁ ଗ୍ହିଁ ରହିଲେ କିପରି ବୋଧହୁଏ ସତେକି ଦୁଇଟା କବାଟ ଖୋଲି ଯାଇଛି । ଭିତରେ ଦୁଇଟା ବଡ଼ବଡ଼ ହାଲୋଳମୟ ଗୁମ୍ଫା, ଯେତିକି ଆଗେଇଲେ ଖାଲି ବଢ଼ିବଢ଼ି ଯାଉଛି ।

ବାଘ କେମିତି ବୁଦାତଳେ ଲେପ୍‌ଟି ଯାଇ ପଡ଼ି ରହିଥାଏ, ମାଟିରେ ମିଶିଯାଏ, ଖଣ୍ଡିଏ ଛଉଛଉକା ଚଉତି ହୋଇଥିବା କମ୍ବଳ ପରି, ଆଉ ମନ ଇଚ୍ଛାରେ ସେ ଆପଣାକୁ ଫୁଲାଇ ଫୁଲାଇ ବଡ଼ କରିଦିଏ । ହୁଏ ଗୋଟିଏ ମଇଁଷି ଆକାର ×× ବାଘ କେମିତି ମଣିଷ ଧରେ । ପ୍ରଥମେ ଆସି ପବନ ବେଗରେ ଧକ୍କାଟାଏ ମାରି ତଳେ ଫୋପାଡ଼ି ଦିଏ, ପଛେ ଗୋଟାଏ ହାତରେ କାଖେଇ ନେଇ ଗ୍ଲିଯାଏ । କାଖ ଆଉ ଛାତି ପାଖ ସାନହାଡ଼ ମଝିରେ ଚିପି ଧରି ଆଉ ଥୋଡ଼ାଏ ବାଟ ଗଲେ ଯାଇଁ ତଣ୍ଟିରୁ କଣାକରି ରକ୍ତପିଏ ।

ଲୋକେ କହନ୍ତି, ମାଇକିନିଆ ଧରିନେଲେ ମାଘ ତାକୁ ଦୋଷ୍ କରେ - ଜିଅନ୍ତା ହେଉ କି ମଲା ହେଉ । (ପରଜା, ପୃ.୨୯୫)

"ରୂପାଜାନି ଡେଉଁରିଆ ଦେଲା । ହାତରେ, ବେକରେ, ଅଣ୍ଟାରେ ଲୋକେ ପୁଣି ଗାରେଡ଼ି ମନ୍ତ୍ରରେ ଶିଝା କେତେ ଜିନିଷ ବୋଝେଇ ହୋଇଥାନ୍ତି । ତଥାପି ତାଙ୍କୁ ବାଘ ଧରେ, ଏକାମାସ ଭିତରେ ସ୍ତ୍ରୀପୁରୁଷ ହୋଇ କୋଡ଼ିଏ ଜଣକୁ ବାଘ ଖାଇଲା । ତଥାପି ବଘେଇ ବନ୍ଦ ହେଲାନାହିଁ । ଗାଁ ନସିଗଲା । ଏମିତି ବଘେଇ କେବେହେଲେ ଦେଖା ନଥିଲା । ଅନ୍ୟାନ୍ୟ ପାଖ ଗାଁରେ ବାଘ ଖାଏ । କିନ୍ତୁ ଏ ଗାଁଟା କେମିତି କପାଳ ଜୋର୍‌ରେ ବଞ୍ଚିଯାଏ । ପାଞ୍ଚବର୍ଷରେ ଗୋଟିଏ ହେଲେ ବହୁତ ହେଲା ।" (ଦାଦିବୁଢ଼ା, ପୃ.୯୦)

"ଦୂର ମାଲ୍‌କାନଗିରି ବଣରେ 'ବଣ୍ଡାପରଜା' ଜାତିର ଲୋକ ଅଛନ୍ତି । ସାନସାନ ମଣିଷ, ମୁଣ୍ଡରେ ବାଳ ସାନସାନ କରି କଟା, ହାତରେ ଖାଲି ଧନୁଶର, ତାଙ୍କ ଦେଶରେ ବାଘ କୋପକଲେ ସମସ୍ତେ ଏକାଠି ହୋଇ ପ୍ରାଣକୁ ପାଣିଛଡ଼େଇ ଦେଇ ବାଘ ପଛେପଛେ ଗୋଡ଼ାନ୍ତି । ଖଣ୍ଡିଆଦଣ୍ଡିଆ ହୁଅନ୍ତି, ବାଘକୁ ମାରନ୍ତି, ଗୋଡ଼ାନ୍ତି, ତା'ର ମାଂସ ଖାଆନ୍ତି, ତେବେଯାଇ ତାଙ୍କର ରିଷା ଶାନ୍ତହୁଏ । ସେମାନେ ଘରକୁ ଫେରନ୍ତି । ଏହି ମେଣ୍ଟ ଆଉ ଜୀବନ ମୁରୁଛା ସାହସ ସକାଶେ ତାଙ୍କ ଦେଶରେ ବାଘର ଧାଡ଼ି ଧାପନାହିଁ । ସୁସ୍ଥରେ ଜମି ଚାଷ କରନ୍ତି, ବାଘ ପର୍ ବଣରାଜ୍ୟରେ ମୁହଁ ଲୁଚେଇ ବୁଲେ ।" (ଅ.ସ.ପୃ.୪୯୧)

"କନ୍ଧ ବଣ୍ଡା ପରଜା ପରି ପ୍ରତିହିଂସା ପରାୟଣ ହୋଇପାରିବ ନାହିଁ । କାରଣ ସେ ସଭ୍ୟତର, ବାଘର ମାଂସ ସେ ଖାଏନାହିଁ । ସଭ୍ୟ ସମାଜ ସଭ୍ୟ ଶାସନରେ ଯୁଗଯୁଗ ଗାଳି ହୋଇ ଚକ୍ରବର୍ତ୍ତୀ କଲ୍ୟାଣରୁ ଶାନ୍ତଶିଷ୍ଟ ହୋଇ ବେଜୁଣୀ ଆଉ ଡିସାରିଙ୍କ ଧର୍ମ, ଦେବତା, ପୁରୁଷକାର ଶୁଣିଶୁଣି ତା'ର ଅରଣା ଦୁଃସାହସ ଉଡ଼ିଯାଇଛି । ସେ ଶାନ୍ତଶିଷ୍ଟ ହୋଇଛି । ଅନାସକ୍ତ ହୋଇଛି । ××× । ଏହିପରି ଅବସ୍ଥାରେ ପଡ଼ି ପଶୁବଳରେ ବଳୀୟାନ ବଣର ଶତ୍ରୁଠାରୁ ଆତ୍ମରକ୍ଷା କରିବା ପାଇଁ ସେ ହିଂସ୍ର ଭୟକୁ ପ୍ରତିରୋଧ କରିବା ପାଇଁ କନ୍ଧଙ୍କର କେବଳ ମନ୍ତ୍ରବଳ ।" (ଅ.ସ.ପୃ.-୯୧-୯୨)

"(ଡଙ୍ଗରିଆ) ଦେହରେ ତ ଏମିତି ବଳ ଯେ କେଉଁଠି ନାହିଁ ନଥିବାର । ଡଙ୍ଗିରିଆ ଆଉ ମହାବଳ ଧରାପରା ଲାଗିବା କଥା ବି ଶୁଣାଯାଏ । ଖାମ୍ବେଶିଗାରେ

କନ୍ଧ କଦଳୀବାରିରେ ଥିଲା ବାଘ, ଧରି ପକାଇଲା, ଲାଗିଗଲେ ଦୁହେଁ ଯେ କନ୍ଧ ଖଣ୍ଡିଆ ହେଉପଛେ କାତିରେ ଭୁଷିଭୁଷି ବାଘକୁ ମାରି ପକାଇଲା ।" (ଶିବଭାଇ, ପୃ.୧୨୮)

"ଏହି ସେ ଅଞ୍ଚଳ ଯେଉଁଠି ହାତୀ ଭୟରେ, ବାଘ ଭୟରେ ବର୍ଷବର୍ଷ ଗାଁ ଭାଙ୍ଗିଯାଏ । ଫଲ୍‌ଫଲିଆ ନଈ ଉପରେ ରାଇବିଜୀ ଥିଲା ଗୋଟିଏ ବଡ଼ଗାଁ, ଡାମ୍‌ରୁଠାରୁ ଚନ୍ଦ୍ରପୁର ଯିବା ବାଟରେ × × ଜଣେ ସାହେବ ବଙ୍ଗଳା ପଛଆଡ଼େ ଦାଫାଲିଆ ଶାଳବଣରେ ଗୋଟିଏ ହାତୀକୁ ଗୁଳିକଲେ ବୋଲି ପଲେ ହାତୀ ଆସି ଗଜା ଶାଳଗଛ ଉପାଡ଼ି ତାକୁ ବାଡ଼ିପରି ବ୍ୟବହାର କରି ପିଟିପିଟି ସେ ବଙ୍ଗଳାକୁ ଭାଙ୍ଗି ପକେଇଲେ । ଗୋଡ଼ରେ ମନ୍ଥି ଚକଟି କୁଦି ଦେଲେ ତାକୁ ଭୂଇଁରେ ସମାନ କରି । ବାରମ୍ବାର ହାତୀ ଫସଲ ଖାଇଲେ, ବାଘ ମଣିଷ ଖାଇଲେ ଯେ ଚାରିପାଞ୍ଚବର୍ଷ ହେବ ଭାଙ୍ଗି ଉଠିଗଲାଣି ସେ ଗାଁ । ବର୍ତ୍ତମାନ ଫଲଫଲିଆ ନଈ କରେକରେ ପଡ଼ି ରହିଛି ସେ ଗାଁ ଓ ଗାଁର ଚାଷଜମି । ×× ଠିକ୍ ନଈ ଆରକରେ କୁର୍ତ୍ତି ବାଲିଗାଁ । ସେ ଗାଁ ବି ବାଘହାତୀ ଭୟରେ ୩ବର୍ଷ ହେଲା ଭାଙ୍ଗିଲାଣି । ହନୁମନ୍ତପୁର ବୁଢୁବେଲି ମଝିରେ ଅଛି ପତନାଗୁନି ଗାଁ । ଆଗେ ଥିଲେ ତିରିଶି ଘର କନ୍ଧ । ହାତୀ ବାଘ ଭୟରେ ଯେଣେତେଣେ ପଳେଇ ରହିଲେଣି ମାତ୍ର ୫ଘର । ଏତେ ଦୂର କାହିଁକି, ଡାଙ୍ଗସୁରୁଡ଼ା ତ ଚଲାବାଟରେ – ରେଳଷ୍ଟେସନ୍‌ଠୁ ମୋଟେ ବାରମାଇଲ ବାଟ । ଡାଙ୍ଗ ସୁରୁଡ଼ା ପାଖରେ ଏକଦା ଥିଲା ଗୋଟି ଗୁଡ଼ାଗାଁ । ପଛଆଡ଼େ ନଈ, ଦୁଇକରେ ପାହାଡ଼ ଥାଇ ସୁନ୍ଦର ଉପତ୍ୟକା, ଅତି ଉର୍ବରଭୂମି । ବାଘ ଭୟରେ ଭାଙ୍ଗିଗଲା ସେ ଗାଁ, ଖାଲି ହାତିଆ ଘାସ ଓ କୁର୍‌ହେଇ ଗଛର ବଣ ହୋଇଛି । (ଶିବଭାଇ, ପୃ.୪୩-୪୪)

"ବଣବାଟରେ ଗଲାବେଳେ ପଡ଼େ ବେଣ୍ଟପରି ଗାଁ । ସେଠି ଦିନେ ଚୁଲି ଜଳୁଥିଲା, ପିଲା ନାଚୁଥିଲେ, ଆଜି ସବୁ ଶୂନ୍‌ଶାନ୍ । ହେଇ ସେଠି ନନ୍ଦାଚୁଆଗାଁ, ତୋଟାଟା ରହିଛି । ଗୋଟାଏ ଦିଟା ଘର ବି ରହିଛି, ଆଖପାଖ କ୍ଷେତ ଉପରକୁ ଜଙ୍ଗଲ ମାଡ଼ି ଆସୁଛି । ମଣିଷ ନାହାନ୍ତି । ବର୍ଷ ବର୍ଷକେ ଗୋଟାଏ ଗୋଟାଏ ଗାଁରୁ ଦଶପନ୍ଦର ଚାଲି ଯାଆନ୍ତି ବାଘ ପେଟକୁ । ଶେଷରେ ଗାଁ ଭାଙ୍ଗେ ।"

"ବାଘର ନାଁ ଅନୁସାରେ କେତେ ଗାଁର ନାଁ ଦିଆ ହୋଇଛି । କେଉଁଟା ବାଘ ଲମତୀ, ଏଠି ଲମ୍‌ତିଲମ୍‌ତି(ମେଞ୍ଚାମେଞ୍ଚ) ବାଘ, ଦଶପନ୍ଦରଟା 'ବାଗ୍ରି' ଗାଁ, କେଉଁଟା ବଘେଇ ପଦର, କେଉଁଟା ବାଘରାଗୁଡ଼ା, ଭୟର ନାଁ 'ଶଙ୍କା', 'ବଡ଼ଶଙ୍କା',

'ଚିଲିଶଙ୍କା' ଏଇ ବର୍ଷାଦିନ ଆରମ୍ଭରୁ ଯେ ବାଘର ଶିକାର ଆରମ୍ଭ ହେଲା ଠିକ୍ ଶୀତଦିନ ଶେଷ ପର୍ଯ୍ୟନ୍ତ ଅର୍ଥାତ୍ ଚୈତ୍ର ପର୍ଯ୍ୟନ୍ତ । ସେ ପର୍ଯ୍ୟନ୍ତ ଜୀବନର ଥାଇତା ନାହିଁ । ବଣବାଟରେ ଛାତି ଦକଦକ ।" (ପରଜା, ପୃ.୨୮୭)

"ସେମାନେ ଚାଲିଗଲେ ଗୋଟାଏ ତୋଫାନ୍ ପରି, ଆଉ ଏବେ ଶୂନ୍‌ଶାନ୍ । ଏଠି ଆଉ ଛାତି ଭିତରୁ ଧୂଆଁ ଉଠିବ ନାହିଁ; ଦାଣ୍ଡରେ ଗୋବର ଅଳିଆ କୁଢ଼ ହେବନାହିଁ । ଘର ଦୁଆରେ ଧୂଳି କରିବେ ନାହିଁ । ସଞ୍ଜ ବୁଢ଼େ ପାଖବଣରୁ ରାସ୍ତାଏ ରାସ୍ତାଏ ଗୋରୁମଣିଷଙ୍କ ଧାର ଲାଗିବ ନାହିଁ । ଜହ୍ନରାତିରେ ହୁଲସ୍ଥୁଲ୍ ହୋଇ ନାଚ ଲାଗିବ ନାହିଁ । ×× ଆଉ କୁଦ ଉପରେ ଖଜୁରୀଗଛର ଦାଦିବୁଢ଼ା, ଯାହାକୁ ମଣିଷ ଗଢ଼ିଥିଲା, ଯାହାକୁ ମଣିଷ ଛାଡ଼ି ଦେଇଗଲେ; ତା'ର ପିଣ୍ଡ ବି ଏ ପରିତ୍ୟକ୍ତ ଧ୍ୱଂସ ଭିତରେ ଗୋଟାଏ ଶବ । ବଘେଇ ପାଇଁ ଗାଁ ଉଜୁଡ଼ି ଗଲାପରେ ଯେଉଁ ୨/୪ଜଣ ତଥାପି ସାହସ କରି ରହିଯାଆନ୍ତି, ସେମାନେ ଆଉ ସମସ୍ତଙ୍କ ଜମି ଚାଷ କରନ୍ତି । ଯଦି ସମସ୍ତେ ଚାଲି ଯାଆନ୍ତି, ତେବେ ଜମିସବୁ ଚାଷ ନ ହୋଇ ୪/୫ ବର୍ଷ ପଡ଼ି ରହିବା ପରେ ପାଖ ଗାଁର ଲୋକେ ତାକୁ ଚାଷ କରିବା ପାଇଁ ଆଗେଇ ଆସି ସେଠି କୁଡ଼ିଆ ବନାନ୍ତି । ଏ ବଣମୁଲକରେ ଯିଏ ଚାଷକରେ ଜମି ତା'ର । ଅନ୍ୟକିଛି ସ୍ୱତ୍ୱ ନଥାଏ । ପରବର୍ତ୍ତୀ ସମୟରେ ଜମି ନିଅଣ୍ଟରେ ପୂର୍ବଲୋକଙ୍କ ବଂଶଧରମାନେ ଫେରିଆସିଲେ ନୂଆ କନ୍ଦଳ ସୃଷ୍ଟିହୁଏ । (ଦାଦିବୁଢ଼ା, ପୃ.୯୮)

**୧୨.ଭୌଗୋଳିକ ଅର୍ଥନୀତି:**

ଯେଉଁ ସ୍ଥାନ ଯେତେ ଦୁର୍ଗମ, ସେଠାରେ ଶୋଷଣର ହାର ସେତେ ଅଧିକ । ମାର୍କ୍ସ ଏ ସମ୍ପର୍କରେ ସେ ସମୟରେ ଚିର ମରୁଡ଼ିଗ୍ରସ୍ତ ଚୀନ୍‌ର ଉଦାହରଣ ଦେଇ ଦେଖାଇଥିଲେ କିପରି ସବୁଠାରୁ ଅନୁନ୍ନତ ପଦ୍ଧତିରେ ଚାଷ ହେଉଥିବା ପାର୍ବତ୍ୟ ଇଲାକାରେ ଶୋଷଣର ହାର ସର୍ବାଧିକ । ଭୂଗୋଳ ସହ ଅର୍ଥନୀତିର ଏଇ ସମ୍ପର୍କ ବିଷୟରେ ଗୋପୀବାବୁ ମଧ୍ୟ କିଛି ସୂଚନା ଦେଇଛନ୍ତି ।

"ଏହି ମାଳଅଞ୍ଚଳରେ, ବିଜୟନଗର, ରାୟପୁର ଲାଇନର ମୁନିଗୁଡ଼ା ରେଳଷ୍ଟେସନ୍‌ରୁ ଓହ୍ଲେଇ ପୂର୍ବକୁ ଚାଲିଗଲେ ବଂଶଧାରା ନଈକୁ ତିନିଜାଗାରେ ପାରିହୋଇ ଆଉ କେତେ ନଈନାଳ ଗଲେ ତିରିଶ ମାଇଲ୍‌ରେ ପଡ଼େ ବ୍ରହ୍ମପୁର । ସେ ପାଖେ ପାରଳାଖେମୁଣ୍ଡି ବାଟେ ଆସିଲେ ଗୁଣୁପୁରରେ ଓହ୍ଲେଇ ଦୁଇଜାଗାରେ ବଂଶଧାରା ନଈ ପାରିହୋଇ ଉତ୍ତରକୁ ୨୪ମାଇଲ୍ ଗଲେ, ଗୁଡ଼ାରି, ପୁଣି ଉତ୍ତରପୂର୍ବ ହୋଇ

୩୦ ମାଇଲ୍ ଚାଲିଲେ ବ୍ରହ୍ମପୁର । ସେଠୁ ତିରିଶମାଇଲ୍ ଭିତରେ ଡାକ୍ତରଖାନା ନାହିଁ । ଡାକଘର ନାହିଁ । ଖାଲି ବାଘ, ହାତୀ, ବଣପାହାଡ଼, ତାହାରି ମଝିରେ ବଂଶଧାରା ନଦୀର ଅତି ଉର୍ବର ଉପତ୍ୟକା । ପାହାଡ଼ ଘେରରେ ଖାଲି ମଝିରେ ଚାଷ ଜମି ଓ ଗାଁ । ଶିବଭାଇ, ପୃ.୪୨-୫୧)

"ଧୂର୍ତ୍ତ ଗୁଣୁପୁର, ସାଲକମ୍ପା, ଡମ୍ବରସରା, ବ୍ରାହ୍ମଣୀ, ଗୁଡ଼ାରି, ବିଷମ କଟକ, ମୁନିଗୁଡ଼ା, ସିଂହପୁର, ନିଷ୍ଠୁର ପାଷାଣ ହୃଦୟ ପଦ୍ମପୁର, ନାଇରା ଆଉ ବାଘାର ପୁହାଣ୍ଡି(ଅର୍ଥାତ୍ ସୁନା ଶଗଡ଼), ଗୋଧେଲ ସ୍ୱାମୀ ଶୁଣ୍ଢି, ଆଉ ପାଟ ବିଷୋଇ, ମେଧର ଶୁଣ୍ଢି, ରସୁଲ କୋମଟି, ଆଉ ଦେଓର ସେଟି କୁମୁଟି, ଆଉ ସୁନାମୁଦିଆ ପେଟା ସେନାପତି ଶୁଣ୍ଢି । ଆଉ ଚତୁର୍ଭୁଜ ପାତ୍ର, ଆଉ ହରିସିଂ ପାଣିଗ୍ରାହୀ, ଆଉ କାରିଣୀ ପାଢ଼ୀ, ଆଉ ମହନି ପାତ୍ର ଆଉ କାମେଶ୍ୱର ରାଓ । ଅସଂଖ୍ୟ ତାଙ୍କର ନାମ ଯଦିଚ ରୂପ ଏକ । (ଶିବଭାଇ, ପୃ.୪୨-୫୦)

"ଯେତେବେଳେ ମେଘ ରାଉରାଉ ଡାକେ, ନଈନାଳ ଫୁଲିଉଠେ, ତିନିଚାରିଗାରେ ବଂଶଧାରା ପାଇଁ କୁଟ୍ରାଗୁଡ଼ାରୁ ଡାଙ୍ଗ ସୁରୁଡ଼ା ନ ଆସୁଣ୍ଡୁ; ବଢ଼ି ହେଲେ ଚହୁଁଚହୁଁ ପାଣି ଦି'ପୁରୁଷ, ସୁଅ ଯେ ନାଗମୁଣ୍ଡ କଟିଯିବ, ଯିବାଆସିବା ବନ୍ଦ । କୁଟ୍ରାଗୁଡ଼ା ପହଞ୍ଚିଲେ ସିନା ବଡ଼ରାସ୍ତା ଧରିହେବ । ସେଠୁ ମୁନିଗୁଡ଼ା ରେଲଷ୍ଟେସନ୍ ଚାରିମାଇଲ୍ ବାଟ । ଟିକିଏ ପାଣି କମିଲେ ବାଉଁଶ ଧରିଧରି ନଈପାରି । ଜଣେ ପୁଳାଏ ବାଉଁଶ ଧରି ଭାସୁଥିବ, ଆଉଜଣେ ପୁଳାଏ ବାଉଁଶ ଉପରେ ଭରାଦେଇ ପହଁରି ପହଁରି ତାକୁ ହାବୁକାଏ ଲେଖାଏଁ ମାରିମାରି ଆଗକୁ ଠେଲୁଥିବ - ଏ ନଈପାରିର ଉପାୟ ଏହିପରି । ତେଣୁ ନଈ ନା ଥିବ 'ବାଉଁଶଧରା', ପରେ କିଏ ପଣ୍ଡିତବାବୁ ତାକୁ କରିଦେଇଛି ବଂଶଧାରା - ତା'ପରେ ଯେତେ ବିଶେଷଣ ଯୋଡ଼ା ଯାଇପାରେ - ବଂଶ ଉଦ୍ଧାରଣ, ସପ୍ତପୁରୁଷ ଉଦ୍ଧାର ଇତ୍ୟାଦି । ନଈ ପାରି ହେଉହେଉ, ବାଉଁଶରୁ ଖସିଗଲେ ସଙ୍ଗେସଙ୍ଗେ ଆତ୍ମା ଉଦ୍ଧାର ହୋଇଯିବ । ପ୍ରତିବର୍ଷ ଉଧୁରନ୍ତି ବି କେତେ ।

"ତା'ପରେ ଡାଙ୍ଗସୁରୁଡ଼ାରୁ ହନୁମନ୍ତପୁର ଯାଉଯାଉ ହନୁମନ୍ତପୁର କୋଣେ ଥାଇ ବିଖ୍ୟାତ ଚାଉଳଧୁଆ ନଈ । ବଂଶଧାରାର ଏକ ବଡ଼ଶାଖା, ବହୁତ ପାଣି ବହୁତ ସୁଅ । ଘନ ଜଙ୍ଗଲ ଭିତରେ ଚାଲିଛି । ଦୁଇପାଖ ଉଞ୍ଚଉଞ୍ଚ ଅତଡ଼ା । ସୀତାଦେବୀ ଏଠି ଚାଉଳ ଧୋଇଥିଲେ କି ନା ଜଣାନାହିଁ, କିନ୍ତୁ ନଈକୂଳରେ ଗଛମୂଳେ ଚୁଲି କଳାଲଗା ପଥର ପଡ଼ିଛି । ବାଟୋଇଙ୍କର ଏ ଗୋଟାଏ ରନ୍ଧାବସା । ଆଉ ଏହି

ଗଡ଼ା, ବାଘର ଗଡ଼ା, ହାତୀର ଗଡ଼ା, ସେମାନଙ୍କର ପାଣି ପିଇବା ଜାଗା । ଯେତେବେଳେ ଦେଖିଲେ ଜଘେ ପାଣି । ବର୍ଷା ଅସରାଏ ହେଲେ ସେତେ କି ସୁସୁ ହୋଇ ଅସୁର ମାଡ଼ିଆସେ ଏ ନଈରେ । ଆଉ ଏ ନଈରେ ଭୟ - ଲୋକେ କହନ୍ତି ଏଥିରେ କେବେକେବେ ଆସେ ଷାଠିଏହାତ ଲମ୍ୱା କୋଇଲିସୂତା ପରି 'ଷାଠି'ସାପ, ଗୋଡ଼ରେ ଗୁରେଇ ହୋଇଯାଏ, ରକ୍ତ ଶୋଷି ଖାଏ । କହନ୍ତି ହାତୀକୁ ବି ବାନ୍ଧି ଅଟକାଇ ଦିଏ 'ଷାଠି' ସାପ । ଦୁଇପାଖ ଭୀଷଣ ଅରଣ୍ୟ, ନାନାପ୍ରକାର ଜନ୍ତୁଙ୍କର ଖଣି । ଶାଳଗଛ ପାଖକୁ ପାଖ ଲଗାଲଗି । କେଉଁଠି ବୋବାଉଛି ଭୃଙ୍ଗରାଜ ଚଢ଼େଇ । ସବୁ ପଶୁପକ୍ଷୀଙ୍କ ବୋଲିକୁ ଅନୁସରଣ କରେ, ବଡ଼ କଜଳପାତି ପରି ମୁଣ୍ଡରେ ଚୂଳ, ଲମ୍ୱା ଲାଞ୍ଜ । ସେ ଏହି ଅତି ଘନ ଅରଣ୍ୟର ହିଁ ବାସିନ୍ଦା । ମୟୂର, ସାରୀ, ଶ୍ୟାମା, ଶୁଆ ଏମାନେ ତ ପଲପଲ ।

"ଆର ପାଖ ଆହୁରି ଭୀଷଣ ଅରଣ୍ୟ । ଶାଳଗଛଗୁଡ଼ିକ ପାଖକୁ ପାଖ ଉଠିଛି ଛତୁ ପରି, ଉର୍ବର କଳାମାଟିରେ ଉପରକୁ ଉଠିଯାଇଛି ଦେବଦାରୁ ପରି । ଘଞ୍ଚ ହାତୀଆ ଘାସ, ଶଂକୁଳ ଘାସ ପୁରୁଷେ ଦେଢ଼ ପୁରୁଷ ଉଞ୍ଚ, ଫୁଲଛାଞ୍ଚୁଣୀ ଘାସ, ଅରଣ୍ୟର ଯେତେ ବୁଦାଲଟା, ଦିନବେଳେ ବି ଅନ୍ଧାରୁଆ । ଗଛ ସନ୍ଧିସନ୍ଧି ସରୁବାଟ, ଉଞ୍ଚଘାସ ତଳେ କାହିଁ ଛପିରହେ । କିଛିଦୂର ଗଲେ ରାଇବିଜି ଗାଁର ପଡ଼ିଆ ପଦର । ସେଠି ପୁରୁଷେ ଉଞ୍ଚର ଘାସ । ଡାହାଣ କରେକରେ ଅସଂଖ୍ୟ ସାନସାନ ଜଳପ୍ରପାତ ସୃଷ୍ଟିକରି ପାହାଡ଼ ତଳେ ଚାଲିଛି 'ଫଳଫଲିଆ' ନଈ, ବଂଶଧାରାର ଏକ ଶାଖା । ଏ ଜାଗା ବାଘର ଘର, ହାତୀପଲଙ୍କ ରହିବା ଛାଉଣୀ । ତା'ପରେ କୁତ୍ରାନାଳ ବା ମୁଣ୍ଡ ମୁହାଣ, ବାଟକାଟି ତରତରରେ ଅଜାଡ଼ି ହୋଇଛି ଫଳଫଲିଆରେ । ତା'ପରେ ବର୍ଚ୍ଛିଗୁଡ଼ାର ନାଳ, ତା'ପରେ ଗଦାରଗଡ଼ି ନାଳ - ଚାଲିଲା ନଈନାଳ- ପରେ ଚନ୍ଦ୍ରପୁର । ପବିତ୍ର ପଣ୍ଡୁନଦୀ । (ଶିବଭାଇ, ପୃ.୬୦-୬୧)

ଉତ୍ତର ଦକ୍ଷିଣ ହୋଇ ଶୋଇ ରହିଛି ବିଖ୍ୟାତ ନିୟମଗିରି ପର୍ବତମାଳା କାହିଁ ପଚାଶମାଇଲ ଲମ୍ୱା ତିରିଶମାଇଲ ଓସାର, ସେଥିରେ ଅସଂଖ୍ୟ ପର୍ବତଶୃଙ୍ଗ, ଅସଂଖ୍ୟ ମାଳଭୂମି, ଉପତ୍ୟକା । ତା'ର ପୂର୍ବପାଖେ ଲମ୍ୱହୋଇ ଚାଲିଛି ରାୟପୁର ଆଡ଼କୁ ରେଳଲାଇନ୍ । ସେଠି ମୁନିଗୁଡ଼ା ଷ୍ଟେସନ୍ ତା'ର ପଶ୍ଚିମପାଖ କଲ୍ୟାଣସିଂପୁର ଓ ନାଗାବଳୀନଦୀ । ନିୟମଗିରିର ଅସଲ ମଞ୍ଜ କଲ୍ୟାଣସିଂପୁରରୁ ମୁନିଗୁଡ଼ା, ସେ ଦୀର୍ଘବାଟ ୩୬ମାଇଲ, ଏହି ବାଟରେ ନିୟମଗିରିର ଚାରିହଜାର ଫୁଟ୍ ଉଞ୍ଚ

ପାଞ୍ଚହଜାରଫୁଟ୍ ଉଚ୍ଚ ପାହାଡ଼ମାନ, ଡଙ୍ଗ୍ରିଆ କନ୍ଧର ଅସଲପୁର ଏବଂ ସେହି ପର୍ବତଶୃଙ୍ଗ, ସବୁ ଶୃଙ୍ଗଠାରୁ ଉଚ୍ଚ, ଯାହାର ନାଁ ନିୟମଗିରି । (ଶିବଭାଇ - ପୃ.୧୦୯ - ୧୧୩)

ତା'ପରେ ଭୀଷଣ ଅରଣ୍ୟ ଘେରେଇ ହୋଇ କୁଂସୁହୁରୁ ଗାଁ, ମୋଟେ ତିନିଘରର ବସତି, ଗୋଟିଏ ଧାଡ଼ିରେ । ଗାଁ ଚାରିପାଖେ ଦଶହାତ ଓସାରର ଚାଷକ୍ଷେତ, ତେଣିକି ପୁଣି ଜଙ୍ଗଲ । ଜଙ୍ଗଲ ବଢ଼ିବଢ଼ି ଚାଲିଲା । କଂସହୁରୁ ରିଜର୍ଭବଣ ନାଁ ଡାକ । ବଣେବଣେ ଗଲେ ପଡ଼େ ପାରିଲି ଗାଁ । ଗାଁ ଭାଙ୍ଗିଯାଇଛି, କେବଳ ଜନ୍ତୁ ଭୟରେ ଚଢ଼ାଣି ବାଟରେ ଉପରକୁ ଝରଣା ମୁହଁରେ ବତାଫଳ ବସାଇ ଦେଇ ଝରଝର ପାଣିକଳ କରାହୋଇଛି । କେଉଁଠି ଅବା ଝରଣା ବାଟରେ ପଥର କୁଢ଼େଇ ଦେଇ ଝରଣାଠୁ ବାଟିଆକାଟି କ୍ଷେତକୁ ନିଆ ହୋଇଛି । ଘଞ୍ଚଅରଣ୍ୟ ଭିତରେ ଗୋଟାକୁ ଗୋଟା ପାହାଡ଼ଚଢ଼ା । (ଶିବଭାଇ, ପୃ.୧୧୦-୧୧୧)

ଭୌଗୋଳିକ ଅର୍ଥନୀତିର ଏଇ ଅଧ୍ୟାୟରେ ଲକ୍ଷଣୀୟ ବିଷୟ ହେଉଚି ଅଗମ୍ୟ ଇଲାକାମାନଙ୍କରେ ସାହୁକାରମାନଙ୍କର ଏକଚାଟିଆ କାରବାରର ସୁଯୋଗ । ସେଠି ତା'ର ପ୍ରତିଦ୍ୱନ୍ଦ୍ୱୀ କେହି ନଥାନ୍ତି । ସେ ଅଂଚଳର ପ୍ରତିକୂଳ ପରିବେଶ ବିଷୟ କହିବୋଲି ରାସ୍ତାଘାଟ ନିର୍ମାଣକୁ ସେମାନେ ରୋକୁ ଥାଆନ୍ତି । ଏହାହିଁ ସେମାନଙ୍କ ଫାଇଦା । ତେବେ ସବୁଠୁ ଗୁରୁତ୍ୱପୂର୍ଣ୍ଣ ହେଉଚି ବେଦାନ୍ତ ଭଳି ବହୁ ଦେଶୀୟ କମ୍ପାନୀର ନିୟମଗିରି ଲିଜ୍ ଉଦ୍ୟମ ଓ ସେଠାକାର ଡଂଗ୍ରିଆ କନ୍ଧମାନେ ଶତକଡ଼ା ଶହେଭାଗ ମତ ଦ୍ୱାରା ଏହାକୁ ବିରୋଧ କରିବା । ପୁଣି ଏହି ବିରୋଧକୁ ଭ୍ରୂକ୍ଷେପ ନ କରି ଓଡ଼ିଶା ସରକାର ପୁଣିଥରେ ଗ୍ରାମସଭାର ମତ ପାଇଁ ଘୋଷଣା କରିବା ।

**୧୩. ଶ୍ରେଣୀ ଚେତନା, ଶ୍ରେଣୀ ଘୃଣା ଓ ଶ୍ରେଣୀ ସଂଘର୍ଷ:**

ଏଇ ଅଧ୍ୟାୟ କିଛିଟି ଅପ୍ରାସଙ୍ଗିକ ମନେ ହୋଇପାରେ । କାରଣ ଗୋପୀବାବୁ ଶ୍ରେଣୀ ସଂଘର୍ଷ ଜିନିଷଟି ଠିକ୍‌ଭାବେ କେଉଁଠି ଦେଖାଇ ନାହାନ୍ତି । କିନ୍ତୁ ସାହୁକାର ଓ ଗୋତି, ଥିଲା ଓ ନଥିଲା ଶ୍ରେଣୀର ସହାବସ୍ଥାନ ଫଳରେ, ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି, ତା'ର ପ୍ରତିଫଳନ ଗୋପୀବାବୁଙ୍କ ଲେଖାର ବେଶ୍‌କିଛି ଜାଗାରେ ଦେଖିବାକୁ ମିଳେ । କେଉଁଠି ଆମେ ଦେଖୁ ଶ୍ରେଣୀ ଚେତନାର ବିଜୁଳି ଝଲକ ତ ଆଉ କେଉଁଠି ଅବରୁଦ୍ଧଶ୍ରେଣୀ ଘୃଣାର ବିସ୍ଫୋରଣ । ଆଉ କେଉଁଠି ଦେଖୁ ଶ୍ରେଣୀ ସଂଘର୍ଷର ଶୈଶବ ରୂପ ।

କେଉଁଠି ଶୋଷକ ସମ୍ପର୍କରେ ଶୋଷିତର ଚେତନା ସଂଗୁପ୍ତ ତ କେଉଁଠି ବାସ୍ତବାୟିତ । ଏବକୁ ପରିବର୍ତ୍ତନ କିଛି ହୋଇଛି, କିଛିକିଛି ସଂଗଠନ ହୋଇଛି ଓ ଶ୍ରେଣୀସଂଘର୍ଷ ବି ଦେଖାଦେଇଛି । କିଛି କିଛି ଜାଗାରେ ତ ଘମାଘୋଟ ଲଢ଼େଇ ମଧ୍ୟ ଚାଲିଛି । କିନ୍ତୁ ତାହା ବିଧିବଦ୍ଧ ରୂପ ପାଇନାହିଁ । ତେଣୁ ଏହା ଆଦୌ ଅପ୍ରାସଙ୍ଗିକ ନୁହେଁ । ସେଇ ଶ୍ରେଣୀ ସଂଘର୍ଷକୁ ଏବେଏବେ କିଛି ରାଜନୈତିକ ବିପ୍ଳବୀ, ରାଜନୈତିକ ପାର୍ଟି ରାଷ୍ଟ୍ର ବିରୁଦ୍ଧରେ ସଂଘର୍ଷର ଆଖ୍ୟା ଦେଇ ନିୟମିତ 'ଜନଯୁଦ୍ଧ' ଜାରି ରଖିଛନ୍ତି ଏବଂ ତାକୁ ପ୍ରତିହିତ କରିବା ପାଇଁ ରାଷ୍ଟ୍ର ତରଫରୁ ଆରମ୍ଭ ହୋଇଛି ଅପରେସନ୍ ଗ୍ରୀନ୍‌ହଣ୍ଟ । ନିୟମିତ କମ୍ବିଂ ଓ ଏନ୍‌କାଉଣ୍ଟର୍ - ଯେଉଁଥିରେ ବଳି ପଡୁଛନ୍ତି ଓ କ୍ଷତିଗ୍ରସ୍ତ ହେଉଛନ୍ତି ଅଗଣିତ ନିରୀହ ଆଦିବାସୀ ।

ଗୋପୀବାବୁ ଲେଖୁଛନ୍ତି :

"ଏକାଠି ହେଲେ ଆଗେ ତାଙ୍କର କାରସାଦି, ସଭାପଙ୍ଗତ, ଯୁଦ୍ଧ ଆଉ ପୋଡୁଚଷ, ମଣିଷ ସାଲୁବାଲୁ ବାଲିଜନ୍ଦା ପରି । ସହର ବସେ, ପର୍ବତ ଫାଟେ, ନଈ ବନ୍ଧା ହୁଏ, ସବୁ ମଣିଷ ଦଳର ହାତର କରାମତି । ଘଟନାକୁ ତିଆରି କରନ୍ତି ଦଳ ଅଥବା ଗଣ, ଯାହାହେଉ ତାଙ୍କର ନାଁ, ଏକ ନୁହେଁ ବହୁ । ଏଇ ବାଲିଜନ୍ଦାପଲଙ୍କର ଗତି ଆଉ ବିରତିରେ ଇତିହାସର ଯୁଗ । ପାଣି ବୋହିଗଲା, ଭାସିଗଲେ ପଲପଲ ହୋଇ । ନିଆଁଗଦା ହେଲା, ମଲେ ଥୋଡ଼ାଏ ଛଟପଟ ହୋଇ । ଜାଗା ଖାଲି ହେଲା । ପୁଣି ଲାଗିଗଲେ ମେଞ୍ଚାଏ; ବଣ ସଫା ହେଲା, ଚହଟି ଗଲା ଧୋବ ଧଉଳିଆ କୋଠା, ପଥର ଉପରେ ପଥର ହୋଇ ଉଠିଉଠିକା ଚାଲିଲା ଆକାଶକୁ ମନ୍ଦିର । ଆପଣାର ହାତ ତିଆରି ଗନ୍ଧମାର୍ଦନ ତଳେ ଆଉ ଆମ ପାଖରେ ପଡ଼ି ରହିଥାଏ ଏମାନଙ୍କର ଖଣ୍ଡଖଣ୍ଡ ହାଡ଼, କେହି ପଚାରେ ନାହିଁ । ଯାଙ୍କରି ଭିତରୁ ହାତହତିଆର ଧରି ଘୋଡ଼ାଚଢ଼ି ବସେ ଜଣେ । ସେ କମେଇ ନଥିଲା, ଖାଲି ଖାଇଥିଲା । ସେ ଦେଇନଥିଲା ଖାଲି ନେଇଥିଲା, ସେ ପରଙ୍କ ପାଇଁ ନ୍ୟାୟ ବିଚାର ଶୃଙ୍ଖଳା ଗଢ଼ି ସେଥିରେ ତାଙ୍କୁ ବାନ୍ଧିଥିଲା, ଆପେ ବାନ୍ଧି ହୋଇନଥିଲା । ତାହାରି ନାଁରେ ସମସ୍ତଙ୍କର ଗାଁ । ନାଲିଆଖି ଦେଖାଇ ଲୁଟିପିଟି ଛାତି ଫୁଲେଇ ଗଦି ଅଥବା ଗାଦି ଉପରେ ବସି ସେ ଚିତ୍କାର କରେ - "ବୀର ଭୋଗ୍ୟା ବସୁନ୍ଧରା, ମୁଁ ବୀର, ମୋତେ ପୂଜାକର ।"

ଜଣେମାତ୍ର ସେ, ସେହିପରି ଗୋଟିଏ ଦରଖଣ୍ଡିଆ ସିଧା ଗୋଡ଼ିଆ ସାନଜନ୍ତୁ । ମେଞ୍ଚାମେଞ୍ଚା ମଣିଷ ପଲଙ୍କର ନିଶ୍ୱାସର ପବନରେ ସେ ଉଡ଼ିଯାଇ ପାରେ, ଖରାଦିନର ଝାଳ ଓ ଶୀତଦିନର ପରିସ୍ରା ପାଣିରେ ତା'ର ଜଳ ସମାଧି ହୋଇପାରେ, ସାଲୁସାଲୁ

ଲୋକଙ୍କ ଗୋଇଠି ତଳେ ଚକଟି ହୋଇ ଗୁଣ୍ଡାହୋଇ ସେ ମାଟିରେ ମିଶିପାରେ ଆଖି ପିଛୁଳାକେ । କିନ୍ତୁ ତା'ର କିଛି ହୁଏନାହିଁ, ସେ ଘୋଡ଼ା ଚଢ଼େ ଓ ଅଡ଼ାଏ । (ଅମୃତର ସନ୍ତାନ, ପୃ.୧୧୮-୯)

"ତାଙ୍କର ପୋଷା ଦଲାଲ, ବେଳେବେଳେ ପୋଷାକୁକୁର ବାୟା ହେଲାପରି ହୁଏ ତାଙ୍କ ଆତଙ୍କ, ଯେପରିକି ଗୁଣ୍ଡୁପୁରର ଗୁଣ୍ଡା, ଏକହାତ - ବିହୀନ କେମ୍ପାୟା ବା କାମେଶ୍ୱର ରାଓ, ଯେ ସବୁ ବେପାରୀଙ୍କ ପାପକର୍ମ ଜାଣେ, ଡରେଇ ଡରେଇ ପଇସା ଅସୁଲ କରେ । ନିଜେ ଚିହ୍ନା ନ ପଡ଼ି ବାଉରି, ରେଲି, ଘାସି ପେଶି ଦେଇ ବେଜିତ୍ କରାଏ । ମାତ୍ର ମରାଏ ନାହିଁ । ମୋଟା ବେପାରୀ ରାତିରେ ନିଜର ସେହି ଏକହାତ - ଖଣ୍ଡିଆ ଜୀର୍ଣ୍ଣଶୀର୍ଣ୍ଣ ସାନକଳା ମଣିଷର ମୂର୍ତ୍ତିକୁ ସ୍ୱପ୍ନ ଦେଖେ, ଆଉ ଭୟରେ ବିଳିବିଳେଇ ଉଠେ । କାରଣ ସେ ଯେତେ ମଦ ପିଉ ଯେତେଯାହା ହେଉ, ସେ ଗରିବ ନୁଖୁରା ମୁଣ୍ଡିଆ ପଟନେଇ ବେପାରୀ ବିରୁଦ୍ଧରେ ଅଭିଯାନ ଚଳାଏ । ତା'ର ପ୍ରଖର ବୁଦ୍ଧି । ସେ କଳାବଜାରି ଫାଉମରା ଭଦ୍ରଲୋକମାନଙ୍କର ସବୁ ଦୁର୍ବଳତା ଏପରି ଭଲଭାବେ ଜାଣେ ଯେ ଯେତେବେଳେ ପାରେ ସେତେବେଳେ ଆଙ୍ଗୁଠି ବଢ଼ାଇ ତାକୁ ଚିହ୍ନେଇ ଦେଇପାରେ, କାରଣ ସେମାନେ ହିଁ ତାକୁ ପୂର୍ବେ ବିଶ୍ୱସ୍ତକରି ପୋଷିରଖି ବିପକ୍ଷ ଦଳଙ୍କ ବିରୁଦ୍ଧରେ ପେଶୁଥିଲେ । (ଶିବଭାଇ, ପୃ.୪୨-୫୦)

"ପାହାଡ଼ି ମଣିଷ ତର୍କ ବୁଝେନାହିଁ । ପିଠିରେ ବସିଲେ ବୁଝେ ମାଡ଼ହେଲା, ମାଡ଼ ହେଲେ ଭାବେ ବିପଦ ପଡ଼ିଲା, କିଏ ମାରୁଛି, କାହିଁକି, ବୁଝିବାକୁ ତା'ର ଶକ୍ତିନାହିଁ । ××× ଯେପରି ଆସେ ଅନହୁତି ବର୍ଷା, ଅନହୁତି ଶୀତ, ବାଘ ଆଉ ମୃତ୍ୟୁ । ବିପଦ ଆସିଛି, ତଣ୍ଟିକି ଧରୁଛି, ଘେନିଯିବ ଏଇ ଅନ୍ଧାରେ ଅନ୍ଧାରେ କେଉଁଆଡ଼କୁ ବୋଲି । ହାତଗୋଡ଼ ପାଇବ ନାହିଁ । ତୁଣ୍ଡ ଫିଟିବ ନାହିଁ, ଭଲମନ୍ଦ ବାରି ହେବନାହିଁ । ଆଖି ଯୋଡ଼ିକରେ ଜୁଳୁଜୁଳୁ କରି ଖାଲି ଚାହିଁ ରହିଥିବ । ଆଉ ଟାଣି ହୋଇଯିବ କେଉଁ ଦୂରକୁ ବୋଲି । ବିପଦ ଆସିଲେ, ତାକୁ ଯିବାକୁ ହିଁ ହେବ ।"

(ପରଜା, ପୃ.୨୮-୨୯)

"ଦୁନିଆର ସବୁ ଗୋତିଙ୍କ ପରି ସେ ମଧ୍ୟ ସଞ୍ଜପହରେ ଏଠି ବରଗଛ ମୂଳେ ବୈଠକ ଜମାଏଁ । ବଡ଼ ନିଆଁ ଜଳେ । ତା' ଚାରିପାଖରେ ଗୋତିପଲ ଆଉ ଏ ଗୁଡ଼ାର ଲୋକ ଏକାଠି ହୋଇ ଧୁଙ୍ଗିଆ ଟାଣନ୍ତି । ଆଉ ସେଠି ଚର୍ଚ୍ଚା ଚାଲେ, ଖୁବ୍

ବଡ଼ବଡ଼ କଥା ପଡ଼େ, ଯାହାର ତତ୍ତ୍ୱ କେବଳ ଗୋତି ହିଁ ବୁଝନ୍ତି । କଳେ ଧୂଆଁରେ ସାହୁକାର ବିରୁଦ୍ଧରେ ଆପଣାର ସବୁ ରୁଦ୍ଧିରଖା ଅଭିଯୋଗ ଅଜାଡ଼ି ଦେଇ ଗୋତି ଛାତିର ବୋଝ ଟିକିଏ ଉଶ୍ୱାସ କରିନିଏ ।" (ପରଜା, ପୃ.-୧୦୭)

"ଆରେ ଗୋତି ତ ହେଇଛେଁ, କ'ଣ ଆଉ ଅଛି ଡରି ମରିବାକୁ ? କ'ଣ ହରକତଟା କରି ପକେଇବ ସେ ? (ପରଜା, ପୃ.୨୯୪)

ଆମର ଏତେ କଷ୍ଟଦୁଃଖ, କୋଉଦିନ ଖାଦି ଖେଟୁଚି କୋଉଦିନ ନାହିଁ, ଶଳା ସାହୁକାର ମଜା ମାରୁଛି, ଏବେ ପୁଣି ଆମ ବିଲ ଉପରେ କମଳାତୋଟା ଲଗେଇ ଦେଲାଣି । ଏତେ ସାହସ ତା'ର । ତୁ ମନେ ରଖିଥା ଟିକ୍ରା, ଦିନେ ନା ଦିନେ ତା'ର ଏ ଗର୍ବ ଚୂନା ହେବ । ଖାଁତର ଗ୍ୟାଙ୍ଗ, ଜମିଟା ମାରିନେବ ବୋଲି ବସଚି ମନେମନେ । (ପରଜା, ପୃ.୩୩୬)

"ଭାଗ୍ୟ ! କପାଳ ! ଧରମ୍ ।"

"ଓହୋ ଯୋଉ ଧରମ୍ । ସାହୁକାର ଭୂମି ଚୋରିକରି ନେବାଟା ଏକା ଅସଲ ଧରମ୍ । ନାହିଁ ବାବା, ତୁମ ଧରମ୍ ଫରମ୍ ତୁମେ ରଖିଥାଅ, ଆମେ ରଇତପିଲା, ଚାଷ କଲେ ଆମେ ଖାଇ ଜୀଇଁବୁ । ସେ ସବୁ ଆମର ଲୋଡ଼ା ନାହିଁ । ଦାବା ମଲା ସିନା, ଭୂମି ତ ମରିନାହିଁ କି ଆମେ ମରିନାହୁଁ ।" (ପରଜା, ପୃ.୪୩୭)

"ଆମର ଭୂମି, ସତ କି ମିଛ ?"

"ଟଙ୍କା ଦେଲେ ଭୂମି ଦେଇଦେବ ବୋଲି ସାହୁକାର ସାଙ୍ଗରେ ଆମର କଥା ହୋଇଥିଲା, ସତ କି ମିଛ ? କହିବା ମତେ ଟଙ୍କାନଉ । ନ ହେଲେ ତା'ର ଖୁସି, ମାତ୍ର ବେକ କଟିଗଲେ ଯାଉ ସିନା, ଭୂମି ମୁଁ ଛାଡ଼ିବି ନାହିଁ ।" (ପରଜା, ପୃ.୪୩୭)

ଧର୍ମ ଦୁଆର ଘାଟୀର ବର୍ଣ୍ଣନାରେ ଶ୍ରେଣୀସଂଘର୍ଷର ଏକ ସୁନ୍ଦର ଚିତ୍ରରୂପ ଆଙ୍କିଛନ୍ତି ଗୋପୀବାବୁ । ଯେପରିକି ସୂଚାଇ ଦେଇଛନ୍ତି ଯେ ଏହି ହେଉଚି ଭବିଷ୍ୟତର କୋରାପୁଟ । ସଂଘର୍ଷରତ ପାହାଡ଼ମାନଙ୍କର କୋରାପୁଟ୍ ।

"କୋରାପୁଟ୍‌ରୁ ଲକ୍ଷ୍ମୀପୁର ଯିବା ରାସ୍ତାରେ ଲକ୍ଷ୍ମୀପୁର ମୋଟେ ଦେଢ଼କୋଶ ଥାଇ ଯେଉଁ ଭୟଙ୍କର ଧର୍ମଦୁଆର ଘାଟୀ ପଡ଼େ, ଏପାଖୁ ଚାଳିଶି, ସେପାଖୁ ପଚାଶ ପାହାଡ଼ ଠେଲାଠେଲି ଧକ୍କାଧକ୍କି ହୋଇ ମୁହାଁମୁହିଁ ଠିଆହୋଇ ଥାଆନ୍ତି, ସେହି ଧର୍ମଦୁଆର ଘାଟୀଠୁଁ କୋଶେ ଦୂରରେ ପଡ଼େ ଗୋଟିଏ ଛୋଟ ଗାଁ ।" (ପରଜା, ପୃ.୧)

"କେବେ ଏଇ କନ୍ଧମାନେ ସାହୁକାର ଦୋକାନରୁ ମଦ ଖାଇଖାଇ ଜମିଗୁଡ଼ାକ ସବୁ ବିକି ଦେଇଥିଲେ । ତା'ପରେ କେଉଁ ଏକ ବାୟା ସାହାବ ଆସି କେତେ ଆଇନ୍ ପୋଥି କାଢ଼ି କନ୍ଧମାନଙ୍କୁ ମେଡୁଆର(ଅମାନିଆ) ବୁଦ୍ଧି ଶିଖେଇ ଦେଲା, କହିଗଲା, ସରକାର ଅନୁମତି ବିନା ଏ ଯେଉଁ ଜମି ବିକ୍ରି ଘଟିଛି ତାହା ରଦ୍ ହୋଇଗଲା । କନ୍ଧମାନେ ଆନନ୍ଦରେ ହେଣ୍ଡିମାରି ବିକିଥିବା ଜମି ଉପରେ ପଶିଗଲେ । ଗାଁରେ ଗୋଟିଏ ହଡ଼ାବଳଦ ମାରି ଭୋଜିକରି ଖାଇ ବାଇଦ ବାଜଣାକରି ଜମିସବୁ ଏକାଥରକେ ସେମାନେ ମାଡ଼ି ବସିଲେ ।

ଏହିପରି କେତେ ସାହୁକାରଙ୍କ ଅକ୍ତିଆରରୁ କନ୍ଧମାନଙ୍କ ଜମି ଚାଲିଗଲା । ଚମ୍ପିଆ ଗୋପୀ ଶୁଣ୍ଢି, ଡୁମରି ପଦରିଆ, ସୋନାସି ଶୁଣ୍ଢି, ପଟ୍‌ଣିଆ ସୁରି ନାରାୟଣା, ସମସ୍ତିଙ୍କୁ ଦଖଲଚ୍ୟୁତ କରି ମେସ୍‌ରେଟ୍ ପାଇକରତନ ମାଝି ଦୀନବନ୍ଧୁ ମାଳି ଆସି ଏକେଏକେ ଜମିସବୁ ଫିଟାଇ ଦେଇଗଲେ ।

କନ୍ଧମାନେ ଏ କଥାକୁ ଟିକିଏ ଅଧର୍ମ ବୋଲି ବୁଝିଲେ ନାହିଁ । ପ୍ରକାଶ୍ୟରେ କହି ବୁଲିଲେ, "ଶୁଣ୍ଢିମାନେ ତାଁତର (କୂଟ କପଟ) କରିଥିଲେ, ମହୁଲି ମଦ ଟୋପାଏ ଟୋପାଏ ଶୁଙ୍ଘେଇ ଦେଇ କେତେପ୍ରକାର ସୁଧ କଳନ୍ତର ଭିଡ଼ି ଦାଦିଆନି କାଳର ଅସଲ ଅସଲ ଭୂମିସବୁ ମାଡ଼ି ବସିଥିଲେ, ଏବେ ଧରମ ସାହେବ ଧରମ କରିଦେଇଗଲା ।" କିନ୍ତୁ ମହୁଲି ମଦ ଟୋପାକ ହେଲେ ସୁଦ୍ଧା, କୋଉଠି ମିଳେ ତା' ? କେତେ ମହୁଲି ସିଝା ହୋଇଥିଲା ? କେତେ କାଠ ଜଳିଥିଲା ? ପୁଣି ଦୋକାନରେ ପାନୁଟଙ୍କା ? କିନ୍ତୁ ବାପୁଡ଼ା କନ୍ଧରେ ପଥୁରିଆ ମୁଣ୍ଡରେ ହିସାବପତ୍ର ପଶେନାହିଁ, ସେ ଖୁସି ହୋଇ ହେଣ୍ଡିମାରେ, କହେ, "ସାହୁକାର, ଆଉ ରକ୍ଷା ହ' ନାହିଁ, ଆଜିଠୁ ଆମେ ଭାଇଭାଇ ।"

କିନ୍ତୁ ସାହୁକାରମାନେ ଭୁଲିପାରନ୍ତି ନାହିଁ କି ରାମଚନ୍ଦ୍ର ବିଶୋୟୀ ଭୁଲି ନାହିଁ । (ପରଜା, ପୃ.୧୯୫)

"ଗୋତି ଗୋଜା ଲେଖି ଦେଉଛି, ଅଣିକିଆ ଷ୍ଟାମ୍ପ ମୁଣ୍ଡ ଉପରେ ବଟୁଚିହ୍ନ ଚାପା ଦେଇଛି, ସେ ଖାଲି ସାହୁକାରର ଆଜ୍ଞାବହ । ବିଚାର କରିବାର ଅଧିକାର ତାଠୁ ଛଡ଼ାଇ ନିଆ ହୋଇଛି । ତେଣୁ ସାହୁକାର ଯାହାଯାହା ଆଜ୍ଞା କରିବ, ନିଜର ଗୋରୁ ଚରାଇ ନେବାକୁ ବା ପରର ଗୋରୁ ଚୋରାଇ ଆଣିବାକୁ, ସାହୁକାରର ଗୋଡ଼

ଘଷିବାକୁ ବା କନ୍ଧର ମୁଣ୍ଡ ଫଟେଇବାକୁ, କାନ୍ଥ ଚଢ଼ିବାକୁ ବା ଡକାଏତି କରିବାକୁ, ସବୁ ହୁକୁମ୍ ତାମିଲ୍ କରିବାକୁ ସେ ବାଧ୍ୟ । ପୁଲିସ୍ ପାଖେ ସିଟିଏମ୍ ଡମ୍ବଲୋକ ପରି ସେ ପୋଷାମାଙ୍କଡ଼ ।

ଜଣକେ ଗୋଟିଏ ଲେଖାଏଁ ହଳଧରି ଓ ଠେଙ୍ଗା ଟାଙ୍ଗିଆ କାନ୍ଧରେ ପକାଇ ଗୋତିପଲ ଜମି ଉପରେ ପହଞ୍ଚିଗଲେ । କନ୍ଧମାନେ ଜମି ଚଷି ସାରିଥିଲେ, ବୁଣି ସାରିଥିଲେ । ତାହାରି ଉପରେ ଆହୁରି ଥରେ ହଳ ପକେଇ ଦେଇ ଗୋତିମାନେ ଧାନ ବୁଣିଗଲେ । କନ୍ଧମାନେ ଗାଳି ଦେଇଦେଇ ଦୂରରେ ଥାଇ ପଛକୁ ହଟିଲେ । ଗୋତି ଗାଳି ଲେଉଟାଇ ଦେଲେ ଓ ଟାଙ୍ଗିଆ, ଠେଙ୍ଗା ଉଞ୍ଚେଇ କନ୍ଧମାନଙ୍କୁ ମାଡ଼ଦେବା ଅଙ୍ଗଭଙ୍ଗୀ କଲେ ।

ଏହିପରି ସେଦିନର କାର୍ଯ୍ୟ ସମାଧାନ ହେଲା, ହଳଦୀ ଶିଲ୍ ଗୁଡ଼ାର ଅସଲ ଚକ ଉପରେ ସାହୁକାରର ଝଣ୍ଡା ପୋତା ହେଲା । (ପରଜା, ପୃ.୧୯୮-୧୯୯)

"ମୁକ୍ତିର ବାଟ ବେଶିନାହିଁ, ଅଳ୍ପ ଯେଉଁ କେତୋଟି, ସେଗୁଡ଼ାକ ବଡ଼ ସଡ଼କ ପରି ଚଉଡ଼ା ଆଉ ଲମ୍ବା । ସିଟିଏମ୍ ଡମ ଲୋକଙ୍କ ସାଙ୍ଗେ ସଲା ହୋଇ ଚୋରି କରିବା, କାନ୍ଥ କଣାକରି ଘରେ ପଶିବା, ମାରିହାଣି କାନରୁ, ବେକରୁ ଅଳଙ୍କାର ଛଡ଼େଇ ନେବା । କିନ୍ତୁ ବଡ଼ ଅବୁନିଆଦି ବାଟଟା, ମନ ଦବିଗଲା, କଥା ବନ୍ଦହେଲା ।

ଦ୍ୱିତୀୟ ସଡ଼କ, ସିଧା ଆସାମ ଚା'ବଗିଚା । ଶହଶହ ଲୋକ ଯାଆନ୍ତି । ଚା'ବଗିଚା କୁଲି ଡିପୋ ପାଖେ ସେ ଯେ ଗହଳ କେତେ ଆନନ୍ଦ ×× ଏଇ ଅଚିହ୍ନା ଦେଶର ଡାକ କେବେ କେମିତି କାହାକୁ ଉଚ୍ଚାଟ କରି ପାହାଡ଼ ଖୋଲ ଭିତରୁ ଟାଣି ଘେନିଯାଏ ×× ତା'ପରେ ମଦ ରନ୍ଧା । (ତୃତୀୟ ବାଟ) (ପରଜା, ପୃ.୩୨)

ଦଳଦଳ ଲୋକ, ହାତବନ୍ଧା, ଆଗରେ ପଛରେ ନାଲିଆଖି ଆଉ ଡେଙ୍ଗା ସିଧା ସେଇ ଗୋଟାଏ ଫାଟକ ଆଡ଼କୁ, ଯେଉଁ ଫାଟକ ଆଡ଼କୁ ଅନେଇ ରହିବାକୁ ହୁଏ । ଲୁଲ୍ଲା ଗାଁ ପାଖ ସିନ୍ଦୂର ପାହାଡ଼ରେ ବାଘଗୁମ୍ଫା, ଭାଲୁ ଗୁମ୍ଫା ଭିତରକୁ ଅନେଇ ଠିଆହେଲା ପରି । ଦଳଦଳ ଲୋକ, ହାତବନ୍ଧା, ସିଧା ସେଇ ଗୁମ୍ଫା ମୁହଁ ଆଡ଼କୁ । ପଦାର ଖବର ସେ ଭିତରକୁ ପଶେ କି ? ଧୂଙ୍ଗିଆ ସେଠି ମିଳେ କି ? ଆଉ ରନ୍ଧା । (ପରଜା, ପୃ.୩୩୫)

କେବେ କେମିତି ସାହୁକାର ଏଇ ଆଦିବାସୀମାନଙ୍କ ଆଗରେ ଦମ୍ଭୋକ୍ତି କରେ -

"ହଁ ବିଲି ! ଆଉ ଗୋଟାଏ ବିଲି ଅଛି ପରା ? ତାକୁ ବି ଆଣି ମୋତେ ଦେଇଯାଅ । ଜମି ନେଲି, ଗୋଟିଏ ଭଉଣୀକୁ ନେଲି । ଆହୁରି ଭଉଣୀକି ନେବି, ଆଉ ଯେତେଯେତେ ବିଭାହେବ, ସମସ୍ତିଙ୍କି ନେବି, ଦାବା ଦରବାର ଲଗେଇ ଦେଇ କୋର୍ଟରୁ କୋର୍ଟ, ରାଜ୍ୟଯାକ ବୁଲେଇବି, ଗୋଡି ଖଟେଇ ଖଟେଇ ଜୀବନଯାକ ନାକକୁ ତଳେ ଘୋଷାରୁଥିବି, ତେବେ ଯାଇ ମୋ ନାଁ ରାମଚନ୍ଦ୍ର ସାହୁକାର ।"

ହାତ ଉଞ୍ଚେଇ ସେ ଚିହିଁକି ଗଲା । କହିଲା - "ଗ୍ୟାଙ୍ଗମାନେ, ଲାଜ ମାଡୁନାହିଁ, ଆସିଲେ ମାଇକିନିଆଙ୍କ ପରି କାନ୍ଦିବାକୁ ମୋ ପାଖରେ ? ଯା, ଯା !!"

ପରଜାଙ୍କ ମୁଣ୍ଡ ଭିତରେ କେଉଁଠି କ'ଣ ରଟ୍‌ରଟ୍ ହୋଇ ଛିଣ୍ଡି ଯାଇଥିଲା । ଆଖିକୁ କିଛି ଦିଶୁ ନଥିଲା । ଦେହ ଥରୁଥିଲା । ବଣର ଜନ୍ତୁ ପରି ଗର୍ଜନ ଛାଡ଼ି ମାଣ୍ଡିଆ ଜାନି ଆଗକୁ ଚମକି ଗଲା ।

"ଅଧର୍ମ କରି ଭୂମି ନେଲୁ ସିନା ସାହୁକାର, ଭୋଗ କରିପାରିବୁ ନାହିଁ, ଭୋଗ କରିପାରିବୁ ନାହିଁ ।"

ଆଖି ପିଛୁଡାକେ ଟାଙ୍ଗିଆ ଉଞ୍ଚେଇ ପାହାର ପକେଇଲା, ବାପ, ପୁଅ ତିନିହେଁ ମିଶିଗଲେ ।

ହଣାହେଲା ଗଛପରି ଦୁଲ୍‌କରି ସାହୁକାର ତଳେ ପଡ଼ିଗଲା, ମାଣ୍ଡିଆ ଜାନି ପାହାରକୁ ପାହାର ଦେଇ କହି ଲାଗିଥାଏ - "ଭୋଗ୍ କରିପାରିବୁ ନାହିଁ, ଭୋଗ୍ କରିପାରିବୁ ନାହିଁ ।" (ପରଜା, ପୃ.୪୪-୪୫)

ଅନ୍ୟଏକ ଉପନ୍ୟାସରେ ଅନ୍ୟାୟ ବିରୋଧୀ ଲଢ଼େଇ ପ୍ରସଙ୍ଗରେ

ଦିଉଡୁ କହିଲା - "ନ୍ୟାୟ କଥା ନ କହି ଖାଲି ଡରଭୟ, ପାଗ ଯୋଗର କଥା କହୁଥିବା ତୁମେ ବୁଢ଼ାଲୋକ । ଜଣକୁ ମାହଳିଆଟାରେ ସାହୁକାର ହରବର କରୁଛି, ସେ ତୁମ ପାଖେ(ପଞ୍ଚାତିରେ) ଫେରାଦ୍ ହୋଇଛି, ବଡ଼ଲୋକ ସାଙ୍ଗେ ବିବାଦ ଲାଗିଲେ ତୁମ ଚମ ଆଞ୍ଜୁଡ଼ି ହୋଇଯିବ ବୋଲି ତୁମେ ଡରେଇ ଦେଇ ଫନ୍ଦିକଥା କହୁଛ ? ×× ବଡ଼ଲୋକ ପିଟୁଥିବ, ତୁମେ ଗୋଇଠାମାଡ଼ ଖାଇ କହୁଥିବ - "ଚିତମ୍ ଚିତମ୍ ।" ଯେ ଆଜ୍ଞା ଯେ ଆଜ୍ଞା ? (ଅ.ସ.ପୃ.-୧୨୬)

ଶେଷରେ ସିଦ୍ଧାନ୍ତ ହେଉଛି -

"ତା'ହେଲେ ସେଇଆ ହେବ ଜାନି, ସାହୁକାର ଆମର ଶତ୍ରୁ, ପୁଷିଆ ଯୋଗ ଆମର ଦରକାର । ଆମେ କମେଇବୁ, ସେ ଖାଇବ, ଆମେ ଭୋକରେ ମରିବୁଁ, ସେ ଦଉଲତ୍ ସୁଜେଇବ, ତିନି ଫୋଲିଆରେ ସେ ହେବ ସାହୁକାର । ନିର୍ଦ୍ଦୋଷରେ ଆମେ ଗୋତି, ତା'ର କରଜ ବାପଅଜା ଚଉଦପୁରୁଷରେ ଶୁଝିବ ନାହିଁ । ଆମର ଗୋରୁଟିଏ ଜନମ ହେଲେ ତା'ର ମନେପଡ଼ିବ କଳନ୍ତର କଥା, ତା'ର ଛେଳିକୁ ବାଘ ଖାଇବ, ଆମେ ଦେବୁ ଭରଣା, ଆମର ଶତ୍ରୁ, ଆମର ଶତ୍ରୁ । ଦିଅ ପୁଷିଆ ଯୋଗ, ଟୁଣୁ ହାୟ ମୁଁ(ହାଣିବୁ)"

ଟୋକାମାନେ ଝଙ୍କାର ଦେଇ ଗର୍ଜିଉଠି କହିଲେ- "ଟୁଣୁ ହାୟ ମୁଁ, ଟୁଣୁ ହାୟ ମୁଁ ।" (ଅ.ସ.ପୃ.୧୨୭)



# ଶାବର ସଂସ୍କୃତିର ଦାର୍ଶନିକ ଐତିହ୍ୟ

ପ୍ରାକ୍‌କଥନୀ : ଯେକୌଣସି ଗୋଷ୍ଠୀ ବା ଜନଜାତିର ଜୀବନଦର୍ଶନର ଭିତ୍ତିଭୂମି ହେଉଛି ତା'ର ଅର୍ଥନୀତି ଓ ସଂସ୍କୃତି । ଶହଶହ ନୁହେଁ, ହଜାର ହଜାର ବର୍ଷ ଧରି ଏଭଳି ସଂସ୍କୃତି ଓ ଦର୍ଶନର ନିର୍ମାଣ ଚାଲିଥାଏ । ସଂସ୍କୃତି ଓ ଦର୍ଶନ ପରସ୍ପର ଏତେ ଓତଃପ୍ରୋତଃ ଭାବେ ଜଡ଼ିତ ଥାଆନ୍ତି ଯେ ବହୁ ସମୟରେ ଏମାନଙ୍କୁ ଅଲଗା କରି ଦେଖିବା ବା ପରୀକ୍ଷା କରିବା କଷ୍ଟସାଧ ମନେହୁଏ । ସେହିପରି ଯଦିଓ ଗୋଷ୍ଠୀର ଅର୍ଥନୀତି ଏହାର ଭିତ୍ତିଭୂମି ଯୋଗାଇ ଦେଇଥାଏ, ତଥାପି ତା'ର ସାଂସ୍କୃତିକ ଜୀବନ ଓ ଜୀବନଦର୍ଶନ ରହସ୍ୟମୟ ଭାବେ ସ୍ୱାତନ୍ତ୍ର୍ୟର ଛାପ ବହନ କରିଥାଏ । ପରମ୍ପରା, ସାମାଜିକ ସଂପର୍କ, ନୈତିକ ମୂଲ୍ୟବୋଧ, ବିଶ୍ୱଦୃଷ୍ଟିଭଙ୍ଗୀ, ବିଶ୍ୱାସ ଓ ଅନ୍ଧବିଶ୍ୱାସ, ଜ୍ଞାନଗାରିମା ଓ ଅଜ୍ଞତା, ଧର୍ମ ଓ ଧାର୍ମିକ ଅବବୋଧ, ବାହାର ସଭ୍ୟତା ସହିତ ଘଟୁଥିବା ଅନବରତ ଅଥଚ ପ୍ରାୟତଃ ଆଗୋଚର ସଂଘର୍ଷ ତଥା ଆନ୍ତଃପ୍ରକ୍ରିୟା, ଦେଣନେଣ ବା ଆଦାନପ୍ରଦାନ ସବୁକିଛି ଗଢ଼ି ତୋଳନ୍ତି ଗୋଟିଏ ନିର୍ଦ୍ଦିଷ୍ଟ ଜନଜାତିର ବା ଜନଗୋଷ୍ଠୀର ଏବଂ ମିଳିତ ଭାବେ ଗୋଟିଏ ବ୍ୟାପକ ଭୌଗୋଳିକ ଅଞ୍ଚଳରେ ବାସ କରୁଥିବା ଗୁଡ଼ିଏ ଜନଗୋଷ୍ଠୀର ସାଂସ୍କୃତିକ ଓ ଦାର୍ଶନିକ ଆଭିମୁଖ୍ୟ ।

ଏହି ପରିପ୍ରେକ୍ଷୀରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଶାବର ସଂସ୍କୃତିର ଦାର୍ଶନିକ ଆଭିମୁଖ୍ୟ ବା ଜୀବନ ଦର୍ଶନ ବିଷୟ ବିଚାର କରାଯାଇପାରେ । ଆଜିଯାଏ ବହୁ ପଣ୍ଡିତ ସଂସ୍କୃତିକୁ ସଂଜ୍ଞାବଦ୍ଧ କରିବାର ଚେଷ୍ଟାକରି ମଧ୍ୟ ବିଫଳ ହୋଇଛନ୍ତି । କାରଣ ସଂସ୍କୃତିର ଏକ ରହସ୍ୟମୟ ଦିଗ ସମାଜ ବିଜ୍ଞାନରେ ବିଶ୍ଳେଷଣାଧୀନ ହୋଇପାରେ ନାହିଁ । ଯେଉଁ ରହସ୍ୟମୟ କାରଣରୁ ଶହଶହ ବର୍ଷଧରି ଗଣହତ୍ୟା, ବିସ୍ଥାପନ, ବିତାଡ଼ନ ଓ ଉତ୍ପୀଡ଼ନର ସାମ୍ନାକରି ଲୋହିତ ଭାରତୀୟ ବା 'ଆପେଚ' ସଂସ୍କୃତି ଆଜି ପର୍ଯ୍ୟନ୍ତ ନିଜର ସ୍ଥିତି ଓ ଅସ୍ମିତା ବଜାୟ ରଖିପାରିଛି, ଶହଶହ ବର୍ଷର ନିର୍ଯାତନା ଓ ଦାସ ବ୍ୟବସାୟକୁ ସାମ୍ନାକରି ମଧ୍ୟ ଯେଉଁଥିପାଇଁ ଆଫ୍ରିକାର ନିଗ୍ରୋମାନେ ନିଜର କଳା-ଐତିହ୍ୟ ବଜାୟ ରଖି ପାରିଛନ୍ତି; ଯେଉଁ କାରଣରୁ ପୂର୍ବଘାଟର 'ମିଜୋ',

'କୁକି', 'ଗାରୋ', 'ନାଗା' ଇତ୍ୟାଦି ଜନଜାତି ଶହଶହ ପ୍ରାକୃତିକ ବିପର୍ଯ୍ୟୟ ଓ ବାହାର ସଭ୍ୟତା ଶହ ସଂଘର୍ଷ ସତ୍ତ୍ୱେ ନିଜର ସ୍ୱତନ୍ତ୍ର ପରିଚୟ ବଜାୟ ରଖିଛନ୍ତି, ଯେଉଁ କାରଣରୁ ଭିଟାହରା ସାନ୍ତାଳ ବା ମୁଣ୍ଡା ଜନଜାତିର ନୃତ୍ୟଗୀତ କଲିକତା ବା ମୁମ୍ବାଇ ସହରର ଶ୍ରମିକ ଶିବିରରୁ ରାତି ଅଧରେ ବି ଶୁଣିବାକୁ ମିଳୁଚି, ତାହା ଆଜିଯାଏ ସଭ୍ୟତାର ବାହକ ଓ ବାବଦୂକ ବୋଲାଉଥିବା ନୃତତ୍ତ୍ୱବିଦ୍‌ମାନଙ୍କର ଜ୍ଞାନର ପରିଧି ଭିତରକୁ ଆସିପାରି ନାହିଁ । ଆମେରିକା ଆବିଷ୍କାର ପରେ ଗୋଟିଏ ପରେ ଗୋଟିଏ ଗଣହତ୍ୟା ଓ ଗଣ ଆତ୍ମହତ୍ୟା ଘଟାଇଥିବା କଲମ୍ବସ୍ ୟୁରୋପ ଓ ଆମେରିକାର ଐତିହାସିକମାନଙ୍କ ପାଇଁ ହୋଇ ଉଠିଲେ ମହାପୁରୁଷ, ଅଥଚ ଖଣିଖାଦାନ୍ ପାଇଁ ଜମି ଦାବିକରି ଚିଠି ଲେଖିଥିବା ଆମେରିକାର ଜନୈକ ରାଷ୍ଟ୍ରପତିଙ୍କୁ ଜଣେ ଅଜ୍ଞାତ ଆପେଚ୍ ନାୟକ ପ୍ରସ୍ତାବିତ କ୍ଷତିପୂରଣ ପ୍ରତ୍ୟାଖାନ କରି ଯେଉଁ ଉତ୍ତର ଦେଇଥିଲେ ସେଥିରେ ପ୍ରତିଫଳିତ ହୋଇଥିବା ଜୀବନଦର୍ଶନ ପାଇଁ ତାଙ୍କୁ କେହି ସମ୍ମାନିତ କରିବା ଦୂରେଥାଉ ବରଂ ତାଙ୍କୁ ଥଟ୍ଟା କରାଯାଇଥିଲା, "ଲୋକଟା କେଡ଼େ ବୋକା ।"

କାରଣ ଉତ୍ତରରେ ସେ ଲେଖିଥିଲେ, "ଆମେ ଯଦି ପବନର ସହଜପଣ ଓ ପାଣିର ଚକ୍‌ଚକ୍ ପଣ ଉପରେ ହାକିମି କରି ନ ପାରୁ, ତାକୁ ବିକିବା ବା କିଣିବାର ଅର୍ଥ ନାହିଁ, ଏଇ ପୃଥିବୀର ପ୍ରତିଟି ଅଂଶ ମୋ ଲୋକଙ୍କ ପାଇଁ ପବିତ୍ର । ତାଙ୍କ ଅଭିଜ୍ଞତା ଓ ସ୍ମୃତିରେ ପ୍ରତିଟି ଛୁଞ୍ଚିମୁନିଆ ଉଜ୍ଜ୍ୱଳ ପାଇନ୍ ପତ୍ର, ପ୍ରତିଟି ବାଲୁକାମୟ ବେଳାଭୂମି, ଅନ୍ଧାରୁଆ ବନଭୂମିର ଘନ କୁହୁଡ଼ି, ଖୋଲା ପଡ଼ିଆର ପ୍ରତିଟି ପତଙ୍ଗର ଗୁଣୁଗୁଣୁ ଓ ଝିଁ ଝିଁକାର ଅତି ପବିତ୍ର । ବୃକ୍ଷ ଚୂଳ ଛୁଇଁ ବହିଯାଉଥିବା ପବନରେ ଭରି ରହିଛି ଲୋହିତମାନଙ୍କର ସ୍ମୃତି । ପ୍ରତିଟି ଗଛରେ ଯେଉଁ ରସ ପ୍ରବାହ, ତାହା ଆମ ଜୀବନ ପ୍ରବାହ ସହ ମିଶି ଯାଇଛି । ଆମେ ପୃଥିବୀର ଅଂଶ ଓ ପୃଥିବୀ ଆମର ଅଂଶ । ସୁଗନ୍ଧିଭରା ଫୁଲମାନେ ଆମର ଭଉଣୀ । ହରିଣ, ବାଇସନ୍ ଓ ବିରାଟକାୟ ଇଗଲମାନେ ଆମର ଭାଇ । ପଥୁରିଳ ପର୍ବତ ଚୂଡ଼ା, ଚାରଣଭୂମିର ଅମୃତରସ ଓ ମଣିଷ ଦେହର ଉଷ୍ମତା – ଆମେ ସବୁତ ଗୋଟିଏ ପରିବାରର । ଆମର ମରିବା ଲୋକମାନେ କେବେ ହେଲେ ଏଇ ମାଟିକୁ ଭୁଲନ୍ତି ନାହିଁ – ସେମାନେ ଏଇ ମାଟିରେ ମିଶି ରହନ୍ତି । ×× ଏଇଯେ ଝରଣା ଓ ନଦୀମାନଙ୍କର ରୌଦ୍ର ଝଲସା ଚକ୍‌ଚକ୍ ପାଣି ବହିଯାଉଛି, ତାହା ସାଧାରଣ ପାଣି ନୁହେଁ, ଆମ ଆନିଦାଦିଙ୍କ ରକ୍ତର ଧାର । ×× ଆମେ ଭଲଭାବେ ଜାଣୁ, ତୁମେ ଗୋରାମାନେ ଆମକୁ କି ଆମର ଚାଲିଚଳନକୁ

କିଛିହେଲେ ବୁଝିନାହାଁ କି ବୁଝିବ ନାହିଁ । ତୁମପାଇଁ ଜମିର ଗୋଟିଏ ଅଂଶ ଅନ୍ୟଏକ ଅଂଶଠାରୁ ପୃଥକ୍ ନୁହେଁ । କାରଣ ତୁମେମାନେ ବିଦେଶୀ । ରାତିବେଳେ ଜମି ଭିତରକୁ ଚୋର ପରି ପଶିଆସି ନିଜର ଲୋଡ଼ା ଦରବ ସବୁ ମାଟିରୁ ଖୋଳିନେବା ହେଉଛି ତୁମର କାମ । ଏ ଧରଣୀ ତୁମର ମା' ନୁହେଁ, ଶତ୍ରୁ । ତୁମେ ଏହାକୁ ଜୟକର ଓ ଛେଳି ମେଣ୍ଢାପରି ବିକାକିଣା କର । ତୁମର କ୍ଷୁଧା ଦିନେ ଆମର ସମଗ୍ର ବସୁଧାକୁ ଗିଳିଦେବ ଏବଂ ଛାଡିଯିବ ଏକ ନିଷ୍ଫଳା ମରୁଭୂମି ।"

ପ୍ରତ୍ୟେକ ଜନଗୋଷ୍ଠୀର ଆପଣାର ସ୍ୱତନ୍ତ୍ର ଭାବଧାରା ଥାଏ । ଥାଏ ସ୍ୱତନ୍ତ୍ର କବିତା । ଏ ଦୁଇଟି ଗଢ଼ି ତୋଳନ୍ତି ସେହି ଜନଜାତିର ଆତ୍ମା ଏବଂ ଏହାହିଁ ହେଉଛି ସଂସ୍କୃତିର ରହସ୍ୟମୟ ଦିଗ ଏବଂ ସେଇ ସଂସ୍କୃତି, ବିଶେଷକରି ଆଦି ମାନବର ସଂସ୍କୃତିର ରହସ୍ୟମୟ ଦିଗ ଏବଂ ସେଇ ସଂସ୍କୃତି, ବିଶେଷକରି ଆଦିମାନବର ସଂସ୍କୃତି ଜନ୍ମଦିଏ ଏକ ନିଆରା ଜୀବନଦର୍ଶନ । ତା'ର ଅର୍ଥନୀତିକ ଭିତ୍ତିଭୂମି ତୃଣଭୂମି କୈନ୍ଦ୍ରିକ ହୋଇପାରେ ବା ହୋଇପାରେ ମରୁଭୂମି କୈନ୍ଦ୍ରିକ ବା ସିଧାସଳଖ କୃଷି କୈନ୍ଦ୍ରିକ । କିନ୍ତୁ ରହସ୍ୟମୟତା ହେଉଛି ଯେକୌଣସି ଲୋକସଂସ୍କୃତିର ଏକ ନିଶ୍ଚିତ ବିଭାବ । ସେ ଅର୍ଥନୀତି ଯେତେ ପଶ୍ଚାତ୍‌ପଦ, ତା'ର ସଂସ୍କୃତି ସେତିକି ଅବିଶ୍ଳେଷଣୀୟ । ସେତିକି ରହସ୍ୟମୟ ।

**ଶାବର ଓ ବୈଦିକ ଦୃଷ୍ଟିଭଙ୍ଗୀ : ପ୍ରକୃତି ସର୍ବଶକ୍ତିମାନ୍**

ଆମେ ଯେଉଁ ଶାବର ସଂସ୍କୃତି ବିଷୟରେ ଆଲୋଚନା କରୁଛୁ ତାହା ମୁଖ୍ୟତଃ ଆରଣ୍ୟକ ବା ଆଟବୀକ ଅର୍ଥନୀତିକୈନ୍ଦ୍ରିକ । ଯେଉଁ ପଟ୍ଟଭୂମିରେ ଆର୍ଯ୍ୟମାନଙ୍କର ବେଦ ଓ ଉପନିଷଦ୍ ରଚିତ ହୋଇଥିଲା, ତାହା ମଧ୍ୟ ଥିଲା ଆଟବୀକ । ତେଣୁ ସଂସ୍କୃତିଗତ ଭାବେ ଯେପରି ଆମେ ଦୁଇଟିର ମନ୍ତ୍ର, ତନ୍ତ୍ର, ଗୋଷ୍ଠୀନୃତ୍ୟ ଓ ବାଦ୍ୟ ଇତ୍ୟାଦିରେ ଏକ ସାଧାରଣ ଲକ୍ଷଣ ଦେଖୁ, ସେହିପରି ଦାର୍ଶନିକ ଦୃଷ୍ଟିଭଙ୍ଗୀରେ ମଧ୍ୟ ବେଶ୍ କିଛି ସାଧାରଣ ବିଭାବ ଲକ୍ଷ୍ୟ କରୁ । ସେଥିରେ ଧରଣୀମାତା ବା ପୃଥିବୀମାତାର ସ୍ତୁତି, ଉଷା, ନିଶା, ସୂର୍ଯ୍ୟ, ଚନ୍ଦ୍ର, ନଦୀ, ବୃଷ୍ଟି, ବୃକ୍ଷ, ପାଣି, ପବନ, ଅଗ୍ନି ଇତ୍ୟାଦି ବିଭିନ୍ନ ପ୍ରାକୃତିକ ଶକ୍ତିର ସ୍ତୁତି, ବାଘ, ସିଂହ, ସର୍ପ, ମୟୂର, ଗାଭୀ, ବୃଷଭ ଆଦି ହିଂସ୍ର କିମ୍ବା ଉପକାରୀ ପଶୁପକ୍ଷୀଙ୍କର ସ୍ତୁତି ସ୍ଥାନ ପାଇଥାଏ । କାରଣ ଏଇମାନେ ହେଉଛନ୍ତି ସେମାନଙ୍କ ଦେବତା । ମୁଖ୍ୟତଃ ସେଥିରେ ଏଇ ଦର୍ଶନ ସ୍ଥାନ ପାଇଥାଏ ଯେ, ମଣିଷ ଏ ପୃଥିବୀର ଅଧିକାରୀ ନୁହେଁ । ବରଂ ପୃଥିବୀ ଏଇ ମଣିଷ ଓ ସୁନ୍ଦର ସୃଷ୍ଟିର

ଅଧିକାରୀ । ରକ୍ତ ଯେପରି ଏକ ପରିବାରକୁ ଏକାଠି କରେ, ଏ ପୃଥିବୀ ସେମିତି ତା'ର ପ୍ରତ୍ୟେକ ସନ୍ତାନକୁ ସଂଯୋଗ ସୂତ୍ରରେ ଗୁନ୍ଥିଥାଏ । ପୃଥିବୀ ଉପରେ ଯେଉଁ ବିପଦ ପଡ଼େ, ତା'ର ପ୍ରତ୍ୟେକ ସନ୍ତାନ ତାହା ଭୋଗ କରନ୍ତି । ଜୀବନର ଯେ ଅଦୃଷ୍ଟ ରହସ୍ୟମୟ ବୁଢ଼ିଆଣୀ ଜାଲ, ତାହା ମଣିଷ ତିଆରି କରେନି । ସେ ଖାଲି ତହିଁରେ ସାମାନ୍ୟ ଖିଅ ମାତ୍ର ।

ତେଣୁ ମନେକର ଗୋଟିଏ ଦଳ ଆଦିବାସୀଙ୍କୁ କିଛି ଶିକାର ମିଳିଗଲା । ସେତେବେଳେ ମୁଁ ବାରିହା ବା ହରିଣ ବା ବଣମଇଁଷି ମାରିଛି ବୋଲି ସେ ଗର୍ବ କରେନି । ବରଂ କହେ ଏ ବାରିହା ବା ହରିଣ ମୋତେ ତା'ର ମାଂସ ଦେଲା । (ଯେପରି ଆମେ କହୁ ଗାଈ ଆମକୁ କ୍ଷୀର ଦିଏ ।) ବାଘଟିଏ ଶିକାର କଲେ, ବଣଦେବୀ ବା ଦେବତା ଏ ବାଘକୁ ମାରିଲେ । ଜମିରେ ଭଲ ଫସଲ ହେଲେ ଧରତନୀ ଦେବୀ ଏ ଫସଲ ଦେଲେ । ପ୍ରକୃତିଉପାସକ ଆର୍ଯ୍ୟମାନେ ମଧ୍ୟ ସେତେବେଳେ ଗାଉଥିଲେ, ଗାଭୀମାନେ ଦୁଗ୍ଧବତୀ ହୁଅନ୍ତୁ, ବନସ୍ପତି ଫୁଲଫଳରେ ଭରିଉଠୁ, ମଧୁ ବୃଷ୍ଟି ହେଉ, ମଣିଷ ଶତାୟୁ ହେଉ ଇତ୍ୟାଦି । ଆଦିମାନବର ଦୃଷ୍ଟିରେ ପ୍ରତ୍ୟେକ ରୋଗ ବ୍ୟାଧି ମଧ୍ୟ ପ୍ରକୃତିର ଭିନ୍ନଭିନ୍ନ ଶକ୍ତିକୁ ନିୟନ୍ତ୍ରଣ କରୁଥିବା କେହି ନା କେହି ଦେବୀ ବା ଦେବତାର କୋପ ବା ଅସନ୍ତୋଷ । ସେମାନେ ଭୈରବ-ଭୈରବୀ ହୋଇପାରନ୍ତି ବା ଅଙ୍ଗ୍‌ଲାଜୀ ମାତା । ସେମାନେ ଡଙ୍ଗରମାଉଲୀ ହୋଇପାରନ୍ତି ବା ବୁଢ଼ୀ ଟାକ୍‌ରାଣୀ ବା ଗାଁ ଦେବତା ବା ହୁଣ୍ଡୀ ହୋଇପାରନ୍ତି । ମଣିଷ କିଛି ଅପକାର୍ଯ୍ୟ କଲେ ଏହି ବ୍ୟକ୍ତିଗତ ବା ସାମୂହିକ ବିପଦ ପଡ଼ିପାରେ । ସେ ଅପକାର୍ଯ୍ୟ କ'ଣ ହୋଇପାରେ ତା'ର ମଧ୍ୟ ଏକ ବିଶ୍ୱାସ ଆଦିବାସୀମାନଙ୍କ ଭିତରେ ରହିଛି । ତାହା ମୁଖ୍ୟତଃ ସ୍ୱାଭାବିକ ଜୀବନଧାରା ବା ପ୍ରାକୃତିକ ନିୟମର ଉଲ୍ଲଂଘନ ବା ତା' ଉପରେ ଆକ୍ରମଣ, ସାମାଜିକ ନିୟମର ଲଙ୍ଘନ, ଚଳନ୍ତି ଧର୍ମବିଶ୍ୱାସ ଉପରେ ଆଘାତ ଇତ୍ୟାଦି । ଯଦିଓ ଏଇ ବିଶ୍ୱାସ ଭିତରୁ ବେଶ୍ କିଛିଟା ସହ ଅନ୍ଧବିଶ୍ୱାସ ମଧ୍ୟ ଜଡ଼ିତ ହୋଇ ରହିଛି, କିନ୍ତୁ ସବୁର ବେଢ଼ଣ ହେଉଛି ଧର୍ମୀୟ ବା ପ୍ରାକୃତିକ ଏବଂ ସାମାଜିକ - ମାନବିକ ନୀତିନିୟମର ଉଲ୍ଲଙ୍ଘନ । କୁଇକନ୍ଧ ସମାଜରେ ପୂର୍ବ ପ୍ରଚଳିତ 'କେରଡ଼ିପଦା' ନିଶାପ(ଯେଉଁଥିରେ ନିର୍ବନ୍ଧ ସରିଥିବା ଝିଅଟିଏ ଯଦି ଅନ୍ୟ ସହ ଉଦୁଲିଆ ଚାଲିଯାଏ ତେବେ ତାକୁ ଓ ତା'ର ପ୍ରେମିକକୁ ଧରିଆଣି ଗ୍ରାମ ଜାକିରୀ ପାଖରେ ଜୀଅନ୍ତା ବଳି ଦିଆଯାଏ ।), ବଣ୍ଡା ସମାଜରେ ପ୍ରଚଳିତ ସଲପ୍ ନିଶାପ(ଯେଉଁଥିରେ ଜଣଙ୍କର

ସଲପ୍‌ଗଛ ଉପରେ ଅନ୍ୟଜଣେ ଆକ୍ରମଣ କଲେ ତାକୁ ତୀର ବିନ୍ଧି ହତ୍ୟା କରାଯାଏ), ସେହି ବଣ୍ଡା ସମାଜର ପ୍ରତିଶୋଧ ନିଶାପ ଅର୍ଥାତ୍ କୌଣସି ବ୍ୟକ୍ତି ଉପରେ ଅଣବଣ୍ଡା ସଂପ୍ରଦାୟର କେହି ଆକ୍ରମଣ କରିଥିଲେ, ସେହି ବ୍ୟକ୍ତିର ଗ୍ରାମ ଉପରେ ବଣ୍ଡାମାନଙ୍କର ସାମୂହିକ ଆକ୍ରମଣ ଓ ଲୁଟ୍, କୋୟା ତଥା ଅନ୍ୟାନ୍ୟ କେତେକ ଗୋଷ୍ଠୀରେ ଯେକୌଣସି ପାଙ୍ଗ୍‌ନିଆ ନିଜର ପାଙ୍ଗନ୍ ଦ୍ୱାରା ଅନ୍ୟ ବ୍ୟକ୍ତିର କ୍ଷତି ବା ମୃତ୍ୟୁ ଘଟାଇଥିବା ପ୍ରମାଣ ହେଲେ (ଅନ୍ୟ କୌଣସି ଦିଶାରି ଦ୍ୱାରା) ତା' ଉପରେ ସମଗ୍ର ଗୋଷ୍ଠୀର ବିଚାର, ପୁଣି ସଗରତା ବିଚାର (ଯେଉଁଥିରେ ଅର୍ଥଦଣ୍ଡ ଓ ଶାରୀରିକ ଦଣ୍ଡର ବିଧାନ ରହିଥାଏ) ଇତ୍ୟାଦି ଏଭଳି ବିଶ୍ୱାସ ତଥା ପାରମ୍ପରିକ କ୍ରିୟାନୁଷ୍ଠାନର ନମୁନା ।

ଅନ୍ୟ ଏକ ଉଦାହରଣ ହେଉଛି ଜଙ୍ଗଲ ଓ ଗଛପ୍ରତି ଆଦିବାସୀର ଦୃଷ୍ଟିଭଙ୍ଗୀ । ବୃକ୍ଷ ହେଉଛି ଆଦିବାସୀର ଦେବତା । ପ୍ରତି ଗାଁରେ କିଛି ନା କିଛି ରୂପରେ ଏହା ପୂଜା ପାଏ । ଶ୍ରୀମନ୍ଦିରର ଦାରୁ ଦେବତା ସଂସ୍କୃତିର ପ୍ରତୀକ ମୂଳତଃ ଶାବର । ଗୋପୀବାବୁଙ୍କ ଦାଦୀବୁଢ଼ା ମଧ୍ୟ ଏକ ଶୁଖିଲା ଖଜୁରଗଛ । କିନ୍ତୁ ଏ କଥା ମଧ୍ୟ ସତ୍ୟ ଯେ ଶୁଖିଲାଗଛ ଅଭାବରେ ଆଦିବାସୀ ବାଧହୋଇ ଦାରୁ ପାଇଁ, ଘର ତିଆରି ପାଇଁ ବା ବଜାରର ଅଙ୍ଗାର ଓ ଜାଳେଣିକାଠର ଚାହିଦା ମେଣ୍ଟାଇବା ପାଇଁ କିଛି କିଛି କଞ୍ଚାଗଛ କାଟିଥାଏ । କିନ୍ତୁ ସେହି ଆଦିବାସୀ ସୌଖୀନ ଗୃହୋପକରଣ ବ୍ୟବସାୟୀ ତଥା କାଠ ମାଫିଆମାନଙ୍କର ଚାହିଦା ପାଇଁ ଜଙ୍ଗଲ ଧ୍ୱଂସକୁ ବିରୋଧ କରିଥାଏ । ମାଲ୍‌କାନ୍‌ଗିରିର ପଦ୍ମଗିରି - ତୁଳେଂଗୁଡ଼ା ତଥା ପଦ୍ରାପାଲି ଅଞ୍ଚଳରେ, ବାଲିମେଳା ରିଜର୍ଭ ଫରେଷ୍ଟ ଅଞ୍ଚଳରେ, କତାପାଲି ଅଞ୍ଚଳରେ ତଥା ତେନ୍ତୁଳିଗୁଡ଼ା ଅଞ୍ଚଳରେ ୧୯୯୬ରୁ ୨୦୦୧ ମସିହା ମଧ୍ୟରେ ଅନୁଷ୍ଠିତ ବଡ଼ବଡ଼ ପାଞ୍ଚୋଟି କାଠମାଫିଆ ବିରୋଧୀ ଆଦିବାସୀ ଆନ୍ଦୋଳନ ଏହି ବିରୋଧକୁ ପ୍ରମାଣ କରେ । ଆଉ ମଧ୍ୟ କୁରୁମପାଲି ରିଜର୍ଭ ଜଙ୍ଗଲରେ ପ୍ରାୟ ଶହେଗଛର ମୂଳରୁ ଛାଲି ଛଡ଼ାଇ ଦେଇଥିବା କାଠ ମାଫିଆମାନଙ୍କ ଦଲାଲ ସାଜିଥିବା ଜଣେ ବ୍ୟକ୍ତିକୁ ଦୁଶାନାଡ଼-କୁରୁମପାଲିବାସୀ ମିଳିତ ନିଶାପରେ ବସି ୧୯୯୯ରେ ଗାଁ ଖେଦା କରାଇଥିଲେ । କାରଣ ସେ ଥିଲା ଆଦିବାସୀ । ଉମରକୋଟ ସବ୍‌ଡିଭିଜନ୍‌ର ରାଇଘର ଅଞ୍ଚଳରେ ଏହି ଜଙ୍ଗଲ ପ୍ରସଙ୍ଗକୁ କେନ୍ଦ୍ରକରି ଭତ୍ରା ଓ କନ୍ଧ ଗୋଷ୍ଠୀଙ୍କ ମଧ୍ୟରେ ଚାଲିଥିବା ଲଗାତାର ସଂଘର୍ଷ କଥା ମଧ୍ୟ ସମସ୍ତଙ୍କୁ ଜଣା । ବଙ୍ଗାଳୀ ଚାଷୀଙ୍କ ପ୍ରରୋଚନାରେ ମକାଚାଷ ପାଇଁ ବ୍ୟାପକ ଜଙ୍ଗଲକୁ କନ୍ଧମାନେ ନଷ୍ଟ କରିଦେବା ବିରୋଧରେ ଭତ୍ରା ଓ ଗଣ୍ଡମାନଙ୍କ ପ୍ରବଳ ପ୍ରତିବାଦ ହିଁ

ଏହାର ମୂଳ କାରଣ । ଏଭଳି କିଛି ଆଦିବାସୀ ଆନ୍ଦୋଳନ ସଂପ୍ରତି ପ୍ରତିପାଦିତ ତଥା ପ୍ରମାଣିତ କରିଛି ଯେ ଆଦିବାସୀମାନଙ୍କର ଧର୍ମ ହେଉଛି 'ସାର୍‌ନା' । ଅଥଚ ଏଇ ସାରନା ଶବ୍ଦଟି ଏକ ଅର୍ବାଚୀନ ଶବ୍ଦ । ଯାହାର ଅର୍ଥ ହେଉଛି 'ପ୍ରକୃତି' । ଏହି ଦୃଷ୍ଟିରୁ ଶବରମାନଙ୍କର ଧର୍ମକୁ ମଧ୍ୟ ପ୍ରକୃତି ଧର୍ମ ବୋଲି କୁହାଯାଇପାରିବ । ତେବେ ଏହା ଅଘୋଷିତ ।

## ସାମୂହିକତା ବାଦ :

ବର୍ତ୍ତମାନ ଶାବର ଦର୍ଶନର ଆଉ କେତେକ ବଳିଷ୍ଠ ବିଭାଗ ବିଷୟ ଦେଖାଯାଉ । ପ୍ରଥମଟି ହେଉଛି ସମୂହ ଭାବନା ବା ସାମୂହିକତା ବୋଧ । ଆଦିବାସୀ ସମାଜରେ ଜଣେ ବ୍ୟକ୍ତିର ମୂଲ୍ୟ ନଗଣ୍ୟ । ସେଠି ସମୂହ ହେଉଚି ସବୁକିଛି । କିନ୍ତୁ ଅନ୍ୟପକ୍ଷରେ ଯଦି ଜଣେ ବ୍ୟକ୍ତି ଉପରେ କିଛି ବିପଦ ପଡ଼େ, ତାହାକୁ ମଧ୍ୟ ସମୂହର ବିପଦ ବୋଲି ଗଣାଯାଏ । ସମୂହ ସେଠି ପ୍ରତିବାଦ କରେ; ପ୍ରତିକାର କରେ । ଘଟଣାଟି ଯଦି ମୃତ୍ୟୁ ହୋଇଥାଏ, ତେବେ ଗାଁଯାକର ସଭିଏଁ ମିଶି ଶବଦାହ ପାଇଁ ଦାରୁ ଆଣିବା, ବନ୍ଧୁ ବାନ୍ଧବଙ୍କୁ ବାତିନି ଦେବାପାଇଁ ଦୂରଦୂରାନ୍ତ ଗାଁକୁ ଖେପିଯିବା, ପୁଲିସ୍ କେଶ୍ ହେଉଥିଲେ ଗାଁ ନାୟକଙ୍କୁ ଧରି ତା'ର ସମାଧାନ କରିବା, ଶବଦାହ ତଥା ଅନ୍ୟାନ୍ୟ ସମସ୍ତ ଅନ୍ତ୍ୟେଷ୍ଟିକ୍ରିୟା, ଶୁଦ୍ଧି କ୍ରିୟା ତଥା ଶୋକପାଳନରେ ସହଯୋଗ କରିବା ଇତ୍ୟାଦି ଏପରି ସ୍ୱାଭାବିକ ଭାବରେ ହୋଇଥାଏ ଯେ, ସତେ ଯେପରି ଗାଁଟାଯାକର ସମସ୍ତେ ହେଉଛନ୍ତି ଗୋଟିଏ ପରିବାରର । ରୋଗ କାଇଲାରେ ସଢୁଥିବା ଲୋକଙ୍କୁ ଦିସାରି ବା ଡାକ୍ତରଖାନାକୁ ନେବାରେ ମଧ୍ୟ ସେଇ ଏକା ସହଯୋଗ । ପୁଣି ଘଟଣାଟି ଯଦି ସୁଖଦ ହୋଇଥାଏ, ଯେପରିକି ବିଭାଘର, କନ୍ୟା ବର୍ତ୍ତମାନ, ଶିଶୁଜନ୍ମ ଇତ୍ୟାଦି ତେବେ ସାରା ଗାଁରେ ଆନନ୍ଦର ଲହରୀ ଖେଳିଯାଏ । ସମସ୍ତେ ନିଜ କାମ ଭଳିଆ ରୋଷେଇବାସଠାରୁ ଭୋଜିର ସମସ୍ତ ସାମଗ୍ରୀ ନିଜଘରୁ ଯୋଗାଇ ଦେବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସ୍ୱେଚ୍ଛାରେ କରିଥାନ୍ତି । ବିଭାଘର ହୋଇଥିଲେ ରାଇବାଡ଼ିଆ ସହ ସମସ୍ତେ କନ୍ୟା ଛାଡ଼ିବାକୁ ବା କନ୍ୟା ଆଣିବାକୁ ଯାଇଥାନ୍ତି । ନାଚଗୀତରେ ତ ଗାଁର ପିଲାଠୁଁ ବୁଢ଼ାଯାଏ ସମସ୍ତେ ଉଚ୍ଛନ୍ନ ହୋଇ ଭାଗ ନେଇଥାନ୍ତି । ସେଇଭଳି ଆଉ ଯେତେ ଯେତେ ପର୍ବପର୍ବାଣି । ଏସବୁ କ୍ଷେତ୍ରରେ ସାରା ଗାଁଟା ଗୋଟିଏ ପରିବାର ଭଳି କାର୍ଯ୍ୟ କରିଥାନ୍ତି । ଏପରିକି ଦୂରଦୂରାନ୍ତରେ ରହୁଥିବା କୁଳକୁଟୁମ୍ବ, ବନ୍ଧୁବାନ୍ଧବ, ମିତ ସଂଗାତମାନେ ମଧ୍ୟ ଭୋଜି ଦରବ ଓ ଛେଳିକୁକୁଡ଼ା, ନାଟପାର୍ଟି ନେଇ ହାଜିର ହୋଇଥାନ୍ତି ।

ପୁଣି କେବେ କେବେ ବିପଦ ଆସିଥାଏ ବାହାରିଆ ଶତ୍ରୁଠାରୁ । ସେଥିରେ ମଧ୍ୟ ଏଇ ସାମୂହିକତାର ଦର୍ଶନ ହିଁ ମୁଖ୍ୟ ସଂଚାଳିକା ଶକ୍ତି ହୋଇଥାଏ । ବଣଜଙ୍ଗଲ ଉପରେ ଆକ୍ରମଣ କ୍ଷେତ୍ରରେ ୧୮୪୦ରୁ ୧୯୪୭ ପର୍ଯ୍ୟନ୍ତ ଯେତେ ଯେତେ ଫିତୁରୀ ବା ବିଦ୍ରୋହ ହୋଇଛି, ତା' ପଛରେ ଏଇ ଦର୍ଶନ ହିଁ କାର୍ଯ୍ୟ କରିଛି । ପାରଂପରିକ ନୀତିର ଉଲ୍ଲଂଘନ ରୂପେ ଆଦିବାସୀ ସମାଜ ଏହାକୁ ଦେଖିଛି । ତାମାଦୋରା - ବାଙ୍ଗୁରୁ ଦେଇଙ୍କ ୧୮୪୦ ବ୍ରିଟିଶ୍ ବିରୋଧରେ ବିଦ୍ରୋହ, ଦ୍ୱିତୀୟ ତାମାଦୋରାଙ୍କର ୧୮୮୦-୯୦ର ବିଦ୍ରୋହ, ପାପଡାହାଣ୍ଡି ତଥା କଳାହାଣ୍ଡିର କନ୍ଧମେଳି, ଆଲୁରୀ ସୀତାରାମେୟା ରାଜୁଙ୍କର ୧୯୨୨ର ସନ୍ନ୍ୟାସୀ ବିଦ୍ରୋହ, ରାୟଗଡ଼ାର ଗୁମ୍ମା ଗାଇବା ମେଳି ଓ ପଟାସିଙ୍ଗି ସଉରା ବିଦ୍ରୋହ ଏବଂ ଲକ୍ଷ୍ମଣ ନାୟକଙ୍କ ମାତିଲିଥାନା ଘେରାଉ ଆଦି ଘଟଣାରେ ବ୍ରିଟିଶ୍ ଜୁଲମ୍‌କୁ ସାମୂହିକଭାବେ ଆଦିବାସୀ ସମାଜ ବିରୋଧ କରିଥିଲା । ଏଇସବୁ ବିଦ୍ରୋହ ବା ଫିତୁରୀକୁ ବ୍ରିଟିଶ୍ ସରକାର ଦୃଢ଼ ହସ୍ତରେ ଦମନ କରିଥିଲେ ମଧ୍ୟ ବାରମ୍ବାର ଏହା ତେଜି ଉଠିଥିଲା ।

ସ୍ୱାଧୀନତା ପର ସମୟରେ ମଧ୍ୟ ଜମି ଓ ଜଙ୍ଗଲ ଉପରେ ସରକାରୀ ଓ ବେସରକାରୀ ଆକ୍ରମଣ ଓ ଦଖଲକୁ ଆଦିବାସୀମାନେ ସହଜରେ ଗ୍ରହଣକରି ପାରି ନାହାନ୍ତି । ତେବେ ବୃହତ୍ ନଦୀବନ୍ଧ ଯୋଜନାରେ ୧୯୫୧ରୁ ୧୯୯୦ ମଧ୍ୟରେ ଜମି ହରାଇଥିବା ଲକ୍ଷଲକ୍ଷ ଆଦିବାସୀ ପ୍ରଥମାବସ୍ଥାରେ ବିକାଶର ସ୍ୱପ୍ନରେ ଓ ସରକାରୀ ପ୍ରତିଶ୍ରୁତିରେ ବିଶ୍ୱାସକରି ନିଜର ଜମିଜମା ଛାଡ଼ି ଦେଇଥିଲେ । କିନ୍ତୁ ସରକାର ନିଜ ପ୍ରତିଶ୍ରୁତି ମୁତାବକ ଥଇଥାନ ବ୍ୟବସ୍ଥା ନ କରିବାର ଦେଖି ଇନ୍ଦ୍ରାବତୀ ବନ୍ଧ ନିର୍ମାଣ ସମୟରେ ପ୍ରଥମକରି ବୁଡ଼ି ଅଞ୍ଚଳରେ ଜନଆନ୍ଦୋଳନ ତେଜି ଉଠିଥିଲା । ପରେ ପରେ ମାଲକାନାଗିରି ଓ ରାୟଗଡ଼ା ଅଞ୍ଚଳରେ କମ୍ପାନୀର ଜମିଦଖଲ ବିରୋଧରେ ଏହି ସାମୂହିକ ଆନ୍ଦୋଳନ ତେଜି ଉଠିଛି ଓ କେତେକ ସ୍ଥଳରେ ଆଜିସୁଦ୍ଧା ଜାରି ରହିଛି ।

**ସମଦର୍ଶନ :**

ସାମୂହିକତାବାଦୀ ଦୃଷ୍ଟିଭଙ୍ଗୀରୁ ଉତ୍ପନ୍ନ ଅନ୍ୟଏକ ବିଭାବ ହେଉଛି ସମଦର୍ଶନ । ଅର୍ଥାତ୍ ସମସ୍ତଙ୍କୁ ସମାନ ଭାବେ ଦେଖିବା ଓ ସମଅଧିକାର ଦେବା । ଆରଣ୍ୟକ ଆର୍ଯ୍ୟର ବୈଦିକ ମନ୍ତ୍ର ମଧ୍ୟ ଥିଲା - "ସମାନଃ ମନ୍ତ୍ରଃ ସମିତି ସମାନୀ । "ଏ ଅଞ୍ଚଳରେ ଜମିବାଡ଼ି କେବେ ବିକ୍ରି ହେଉ ନଥିଲା । ଯେ ଯେଉଁ ଜମି ଚଷକଲା, ସେ ଜମି ତା'ର

ହେଉଥିଲା । ନୂଆ କେହି ଲୋକ ଗାଁକୁ ଆସିଲେ, ତା'ର ଚଳାଚଳ ପାଇଁ ଗାଁ ନାୟକ ତାକୁ ଖଣ୍ଡେ ଜମି ଦେଖାଇ ଦେଉଥିଲେ । ସେଥିରେ ତା'ର ପରିବାର ଦେହ ମିହନ୍ତ କରି ଯାହା ଉପୁଜାଉଥିଲେ, ସେଥିରେ ସେମାନେ ପ୍ରତିପୋଷଣ ହେଉଥିଲେ । ପରେ ରେଭିନିଉ ଆଇନ୍‌ର ପ୍ରବର୍ତ୍ତନ ହେଲା ଓ ଜମି କିଣାବିକା ପ୍ରଥା ଚାଲୁ ହୋଇଗଲା । ଏଇ ବିଶେଷ ପରିସ୍ଥିତିକୁ ଓ ସରକାରଙ୍କ ଜଟିଳ ଆଇନ୍‌କାନୁନ୍‌କୁ ଆଦିବାସୀମାନେ ବୁଝିପାରିଲେନି । ସୁତରାଂ ଗ୍ରହଣ କରିପାରିଲେନି । ଏହା ଥିଲା ତାଙ୍କର ବିଶ୍ୱାସ, ଭାବନା ଓ ପରମ୍ପରା ସହ ଏକ ଦ୍ୱନ୍ଦ୍ୱ । ଫଳରେ ଆଦିବାସୀ ଦଖଲରେ ଥିବା ବହୁଜମି ହୁଏତ ଅଣଆଦିବାସୀମାନଙ୍କ ହାତକୁ ଚାଲିଗଲା ବା ଜଙ୍ଗଲ / ଅନାବାଦୀ ଜମି ହୋଇ ରେକର୍ଡ଼ରେ ରହିଗଲା । ସେଥିପାଇଁ ଏବେ ମଧ୍ୟ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଶତକଡ଼ା ୭୦ରୁ ୭୫ଭାଗ ଜମିର ପଟ୍ଟା ହୋଇପାରିନାହିଁ ।

ସମଦର୍ଶନର ଅନ୍ୟଏକ ଦିଗ ଦେଉଛି ସମବଣ୍ଟନ - ଯେକୌଣସି ଭଲ ଜିନିଷକୁ ନିଜ ନିଜ ଭିତରେ ବାଣ୍ଟିନେବା ବା ବାଣ୍ଟି ଖାଇବା । ମଦ ସଲପ ହେଉ କି ଭଲ ଫଳ ହେଉ ବା ହେଉ ଶିକାର ହୋଇଥିବା ଜନ୍ତୁର ମାଂସ । ଏଥିପାଇଁ ସଂପତ୍ତି ଉପରେ ବ୍ୟକ୍ତିଗତ ଅଧିକାରକୁ ସହଜରେ ଆଦିବାସୀ ସମାଜ ଆଜିଯାକେ ଗ୍ରହଣ କରିପାରିନି । ଏଇଥିରୁ ପୁଣି ଦେଖାଦିଏ ମୁଦ୍ରା ଅର୍ଥନୀତି ପ୍ରତି ବିତୃଷ୍ଣା । ଅଦଳବଦଳ ଅର୍ଥନୀତି ସହ ଅଭ୍ୟସ୍ତ ଆଦିବାସୀକୁ ସହଜରେ ଟଙ୍କାପଇସାର ହିସାବ ପଇଟେ ନାହିଁ । ଏହି କାରଣରୁ ସେ ହାଟ ବଜାରରେ ବିଭିନ୍ନ ପ୍ରକାର ଶୋଷଣର ଶିକାର ହୁଏ । ତା' ଜିନିଷପତ୍ର ଶସ୍ତାରେ ବିକ୍ରି ହୁଏ ଓ ସାହୁକାରର ଜିନିଷ ବହୁ ଦରରେ ସେ କିଣିଥାଏ । ପୁଣି ବହୁ ଉଚ୍ଚ ହାରରେ ଟଙ୍କାପଇସା ବା ଧାନଚାଉଳ ଋଣ ବା କରଜ ଆଣିଥିଲେ ମଧ୍ୟ ତା'ର ପ୍ରତିବାଦ ନ କରି ଆଦିବାସୀ ସୁଧ ଶୁଝିଶୁଝି ସର୍ବସ୍ୱାନ୍ତ ହୁଏ ।

ଶାବର ଦର୍ଶନର ଅନ୍ୟଏକ ବଳିଷ୍ଠ ବିଭାବ ହେଉଚି ସରଳ ବିଶ୍ୱାସ, ଯାହାକି ପ୍ରକୃତପକ୍ଷେ ମଣିଷ ପ୍ରତି ବିଶ୍ୱାସ । ସେ ମଣିଷ ଯିଏ ବି ହେଉ - ଶୋଷକ ସାହୁକାର ହେଉ, କୂଟନୀତିରେ ଧୁରନ୍ଧର ଅଧିକାରୀ ହେଉ, ପୁଲିସ୍ ବା ଫରେଷ୍ଟ ଜମାନ ହେଉ ବା ହେଉ ସାଧାରଣ ରଇତ । ସମସ୍ତଙ୍କ କଥା ପ୍ରତି ତା'ର ଅଗାଧ ବିଶ୍ୱାସ । ଶତ୍ରୁମିତ୍ରର ବାଛବିଚାର ନାହିଁ । ତେଣୁ ପରେ ଯେତେବେଳେ ସେହି ଲୋକଟି କଥା ହୁଡ଼େ, ତା' ଉପରକୁ ଲମ୍ଫମାରେ, ସେ ଅବାକ୍ ହୋଇଯାଏ । ଭାବିପାରେନି ଯେ ଏଭଳି ଅଧର୍ମ କାମ ହୋଇପାରେ । ତା' ବିଶ୍ୱାସ ଓ ଭାବନାର ବେଢ଼ଣ ଭିତରେ ଏଭଳି କାର୍ଯ୍ୟର

କୂଳ କିନାରା ମିଳେନାହିଁ । ଅଥଚ ସେ ତା' କଥାରେ ଠିକ୍ ଥାଏ । ନ ହେଲେ ଯେ ସେ ଧର୍ମ ହୁଡ଼ିବ । କିନ୍ତୁ ତା'ର ଏଇ ସରଳ ବିଶ୍ୱାସରୁ ଫାଇଦା ଉଠାଇ ସାହୁକାରମାନେ ଜାଲ ବିଛାନ୍ତି, ଓଜନରେ ଠକନ୍ତି, "ଦେଲୁ ପୁଟିଏ ନେଲୁ ପୁଟିଏ"ର ବିଚିତ୍ର ଅଂକ କଷନ୍ତି ଏବଂ ଶୂନ୍ୟରୁ ବ୍ୟବସାୟ ଆରମ୍ଭକରି ଲକ୍ଷପତି ବନି ଯାଆନ୍ତି । ଏହାର ଅନ୍ୟଏକ ଦିଗ ହେଉଛି ସତ୍ୟ ପ୍ରତି ତା'ର ପ୍ରଚଣ୍ଡ ଆଗ୍ରହ ଓ ମିଥ୍ୟା ତଥା କପଟାଚାର ପ୍ରତି ସମାନ ଅନୀହା । ମିଥ୍ୟା ବା କପଟାଚାର, ଯାହାକି ଅଧୁନା ସଭ୍ୟତାର ଅଙ୍ଗବିଶେଷ ବୋଲି କୁହାଯାଇପାରେ, ତାହାହିଁ ସଭ୍ୟତାର ଅନ୍ୟନାମ । ସେଥିପ୍ରତି ସାମାନ୍ୟତମ ଆଗ୍ରହ ନ ଦେଖାଇବା ଫଳରେ ଠକି ହେବା ଓ ଶୋଷିତ ହେବା ହିଁ ହୋଇଛି ତା'ର ଭବିତବ୍ୟ । କିନ୍ତୁ ସେଥିପାଇଁ ସେ ଗର୍ବିତ । କାରଣ ମିଥ୍ୟାଚାରୀ ଜୀବନ ବିତାଇବାଠାରୁ ମୃତ୍ୟୁକୁ ସେ ଅଧିକ ଶ୍ରେୟସ୍କର ମଣେ । ତେବେ "ଶଠେ ଶଠମ୍ ସମାଚରେତ୍" ନୀତିର ପ୍ରତିବାଦ କରେନାହିଁ । ଏଭଳି ଅନେକ କାହାଣୀ ଆଦିବାସୀ ଲୋକକଥାରେ ରହିଛି, ଯେପରିକି 'ମଙ୍ଗର କଥା', 'ବାରିହା କଥାନୀ' ଯେଉଁଥିରେ ଅଧିକ ବଳଶାଳୀ ଓ ପ୍ରତିପକ୍ଷକୁ ବୁଦ୍ଧିବଳରେ ଠକାଇ ଦିଆଯାଇଚି । ବାସ୍ତବ କ୍ଷେତ୍ରରେ ମଧ୍ୟ ଏଭଳି କିଛି କିଛି ଦୃଷ୍ଟାନ୍ତ ଦେଖିବାକୁ ମିଳେ । ତେବେ ଏହା ବିଶ୍ୱଜନୀନ ବା ସଧାରଣ ନୁହେଁ ।

**ବିଶ୍ୱଜନୀନତା ବାଦ :**

ବିଶ୍ୱଜୀବନ ପ୍ରତି ଅନୁରକ୍ତି ଭିତରୁ ଆସେ ଆଉ ଏକ ଦୃଷ୍ଟିଭଙ୍ଗୀ – ଯାହାକୁ କୁହାଯାଇପାରେ ବିଶ୍ୱଜନୀନତା ବାଦ । ସମଗ୍ର ବିଶ୍ୱ – ତା'ର ପ୍ରକୃତି, ନଦୀ, ଝରଣା ଅରଣ୍ୟ, ଡଙ୍ଗର, ପର୍ବତ, ଗଛବୃଛ, ଆକାଶ, ପବନ, ଚନ୍ଦ୍ର, ସୂର୍ଯ୍ୟ, ତାରା, ଜୀବଜନ୍ତୁ ଓ ସର୍ବୋପରି ଏଇ ମଣିଷସମାଜ ସବୁ ସହିତ ଏକପ୍ରକାରର ଏକାତ୍ମତାବୋଧ । ସେଥିପାଇଁ ଦିଶାରି ଯେତେବେଳେ ରାତି ଅଧରେ ଦୀପଟିଏ ଧରି ଡଙ୍ଗର ଉପରକୁ ଯାଇ ଏକାଏକା କୌଣସି ନକ୍ଷତ୍ରର ଗତିବିଧି ଲକ୍ଷ୍ୟକରି ଯୋଗ ନିର୍ଣ୍ଣୟ କରେ ବା ସରଳବିଶ୍ୱାସରେ ମାଉଲି ପୂଜାକରି ଅକତ ବସାଏ ଓ ମନ୍ତ୍ରପାଠ କରେ ବା ଚେରମୂଳି ଔଷଧ ପ୍ରୟୋଗ କରି କୌଣସି ରୋଗର ନିଦାନ କରେ, ସେଥିରେ ଅନ୍ୟର ମଙ୍ଗଳ ପାଇଁ ତା'ର ଆତ୍ମୋତ୍ସର୍ଗ ଭାବ ସ୍ପଷ୍ଟ ବାରି ହୋଇଯାଏ । ଜଣେ ନିଷ୍ପାପର ଦିଶାରିର ମନ୍ତ୍ରରେ ଯେଉଁ ଆବେଗ ଭରି ରହିଥାଏ, ଯେଉଁ ମଙ୍ଗଳକାମନାର ଉଦ୍ଦୀପନା ଭରି ରହିଥାଏ, ସେଇଥିରେ ହିଁ ଉଚ୍ଚାଟିତ ଗୋଷ୍ଠୀର ବିଶେଷ ସମ୍ମାନ ସେ ପ୍ରାପ୍ତ ହୋଇଥାଏ ।

ଏ ପ୍ରସଙ୍ଗରେ ଗୋପୀ ମହାନ୍ତିଙ୍କର 'ଅମୃତ ସନ୍ତାନ' ଦ୍ରଷ୍ଟବ୍ୟ । ସେଥିରେ ତାରାମାନଙ୍କର ଯୋଗ ଲକ୍ଷ୍ୟ କରିବା ପାଇଁ ଦିଶାରିର କି କୃଚ୍ଛ ସାଧନା । ଗୁରୁମାୟୀର କି ଆତ୍ମତ୍ୟାଗ ! ଶାବର ସଂସ୍କୃତିର ଏହି ବିଶ୍ୱଜନୀନତାବୋଧ ସଂପର୍କରେ ବହୁ ବିଶ୍ଳେଷଣ କରିଛନ୍ତି ଗୋପୀବାବୁ । ମନେହେବ ସତେକି ତାହା ବେଦାନ୍ତ ଦର୍ଶନ ।

ବହୁଦିନ ତଳେ ୰ମାୟାଧର ମାନସିଂହଙ୍କ ସହ ଗୋପୀବାବୁଙ୍କ ଉପନ୍ୟାସରେ ଆଦିବାସୀର ଦର୍ଶନ ଉପରେ ମୋର ଆଲୋଚନା ହୋଇଥିଲା । ୧୯୬୯ ମସିହାର କଥା । ସେ ଯୁକ୍ତିକଲେ, କେଉଁ ଡଙ୍ଗର ପର୍ବତରେ ରହୁଥିବା କନ୍ଧ ସମାଜର ଦର୍ଶନ କିପରି ବା ଉଚ୍ଚାଙ୍ଗ ବେଦାନ୍ତ ଦର୍ଶନ ସହ ସମାନ ହୋଇପାରିବ ? ଗୋପୀବାବୁ ବୈଦିକ ଦର୍ଶନକୁ ନେଇ ଶାବର ଜୀବନରେ ରୋପି ଦେଇଛନ୍ତି । ମୁଁ ତା'ର ଘୋର ବିରୋଧ କରି କହିଥିଲି ବେଦ ରଚନା ସମୟରେ ଆର୍ଯ୍ୟମାନେ ଯେଉଁ ଆରଣ୍ୟକ ଜୀବନ ଓ ଗୋପାଳନ ବୃତ୍ତି କରୁଥିଲେ, ଆଦିବାସୀମାନେ ଆଜିବି ସେଇ ପରିବେଶ ଓ ଅର୍ଥନୀତି ଭିତରେ ଅଛନ୍ତି । ତେବେ ଜୀବନ ଦର୍ଶନ ସେଇ ଏକା ନ ହେବ କିପରି ? ତେଣୁ ଗୋପୀବାବୁଙ୍କର ଏଭଳି ବିଶ୍ଳେଷଣ ଓ ବିଚାର କେବେହେଲେ ଭୁଲ୍ ହୋଇ ନପାରେ ।

ବାସ୍ତବରେ ଏଇ ବିଶ୍ୱଜନୀନ ଦୃଷ୍ଟିଭଙ୍ଗୀ ହିଁ ଆଜି ବି ଅନ୍ୟ ମଣିଷମାନଙ୍କ ଠାରୁ ଆଦିବାସୀମାନଙ୍କୁ ସ୍ୱତନ୍ତ୍ର କରିଥାଏ । ସେମାନେ ବସ୍ତୁବାଦୀ ସତ, କିନ୍ତୁ ଅର୍ଥପ୍ରେମୀ ନୁହଁନ୍ତି । ସେମାନେ ଧର୍ମରେ ବିଶ୍ୱାସ କରନ୍ତି ସତ, କିନ୍ତୁ ଧର୍ମ ପାଇଁ ସଂପ୍ରଦାୟବାଦୀ ପାଲଟି ଅନ୍ୟର ବିନାଶ ଚାହାନ୍ତି ନାହିଁ । ସେମାନେ ସ୍ୱାଧୀନତା ପ୍ରେମୀ ସତ, କିନ୍ତୁ ତାହା ଅନ୍ୟର ପରାଧୀନତା ଉପରେ ପ୍ରତିଷ୍ଠିତ ହେଉ ବା ତିଷ୍ଠି ରହୁ, ଏକଥା ସେମାନେ ଚାହାନ୍ତି ନାହିଁ । ସେମାନଙ୍କ ସମାଜ ଓ ପରିବାରରେ ପୁରୁଷକୁ ମୁଖ୍ୟ ମାନି ନିଆଯାଏ ସତ୍ୟ, କିନ୍ତୁ ନାରୀ ସ୍ୱାଧୀନତା ସେଠି ଏକ ସ୍ୱାଭାବିକ କଥା । ପ୍ରେମପ୍ରଣୟ ବା ଯୌବନୋଚିତ ଉଦ୍ଦାମତାରେ କାହା ସହ ଯୌନ ସଂପର୍କ ରଖିଦେଲେ ନାରୀର କାୟା ଅଶୁଦ୍ଧ ହୋଇଯାଏନା କି ସମାଜରେ ସେ ନିନ୍ଦିତ ହୁଏନା । ସେମାନେ ଅସ୍ତ୍ର ଧରିବାରେ କୁଣ୍ଠାବୋଧ କରନ୍ତି ନାହିଁ ସତ, କିନ୍ତୁ ତା' କେବଳ ଆତ୍ମରକ୍ଷା ବା ଗୋଷ୍ଠୀର ସୁରକ୍ଷା ପାଇଁ, ଅନ୍ୟର ବିନାଶ ପାଇଁ ନୁହେଁ । ଆଇନ୍‌ଷ୍ଟାଇନ୍‌ଙ୍କ 'ରିଲେଟିଭିଟି ତତ୍ତ୍ୱ' ଯେପରି କହେ ଯେ ସାରା ବିଶ୍ୱର ପ୍ରତିଟି ବସ୍ତୁ ଅନ୍ୟବସ୍ତୁ ସହ ସଂପୃକ୍ତ, ସେଇଭଳି ଏକ ଦୃଢ଼ବିଶ୍ୱାସ ହେଉଚି ଶାବର ଦର୍ଶନର ଭିତ୍ତି । ପରିବେଶ ଓ ପରିବେଷ୍ଟନୀ ଖାଲି ମଣିଷ ପାଇଁ ନୁହେଁ, ସମଗ୍ର ପ୍ରାଣୀଜଗତ ଓ ବୃକ୍ଷଜଗତ୍ ପାଇଁ ଜରୁରୀ ଏବଂ ଜଣଙ୍କ ପାଇଁ

ଅନ୍ୟଜଣେ ଜରୁରୀ – ଏଇ ଅବବୋଧ ଆଦିବାସୀ ସମାଜର ମୁଖ୍ୟ ଜୀବନଦର୍ଶନ । କନ୍ଧକବି ଭୀମଭୋଇ ଏଇ ଦର୍ଶନକୁ ବିଭିନ୍ନ ଭାବେ ନିଜର କବିତାମାନଙ୍କରେ ପ୍ରତିଫଳିତ କରାଇଛନ୍ତି । ଅନ୍ୟାର୍ଥେ କହିବାକୁ ଗଲେ ସେ ହିଁ ବୋଧେ ଏକମାତ୍ର ଆଦିବାସୀ ଦାର୍ଶନିକ, ଯେ ନିଜର ଉଚ୍ଚାଙ୍ଗ ବିଚାର ଓ ଦୃଷ୍ଟିଭଙ୍ଗୀକୁ ଲିପିବଦ୍ଧ କରିବାର ଚେଷ୍ଟା ଓ ସାହାସ କରିଛନ୍ତି । ଅନ୍ୟପାଇଁ ଆତ୍ମୋତ୍ସର୍ଗ ଭାବନାରୁ ସେ ଲେଖିଛନ୍ତି –

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।"

କିମ୍ବା "ଧର୍ମ ପଛେ ନିନ୍ଦା ପାଉ ଧରଣୀ ମଣ୍ଡଳ ରହୁ । ଶୂନ୍ୟ ଧରଣୀ ଆକାଶ, ଆକାଶ ଭାସି ନ ଯାଉ ।" ପୁଣି ମଣିଷକୁ ଭଲ ନ ପାଇ କାଠପଥରର ଦେବତା ପଛରେ ଧାଇଁବା ବା ଅର୍ଥର ଉପାସନାକୁ ବିଦ୍ରୁପ କରି ସେ ଲେଖିଛନ୍ତି –

"ମନୁଷ୍ୟ ହୋଇ ନିର୍ଜୀବ ସଙ୍ଗେ ଭାବ ଦେଖଟି କେଡ଼େ ଅଜ୍ଞାନ,
ଶୂନ୍ୟରୁ ଯେହୁଁ ପିଣ୍ଡପ୍ରାଣ ଗଢ଼ିଲା ନାହିଁ ତାକୁ ଅନୁମାନ ।"

ସେ ଥିଲେ ସୂର୍ଯ୍ୟପୂଜାର ପ୍ରବକ୍ତା । କାରଣ ସୂର୍ଯ୍ୟ ହେଉଛନ୍ତି ପ୍ରକୃତି ତଥା ଜଗତର ସକଳ ଶକ୍ତିର ଉତ୍ସ । ଗଣ୍ଡମାନଙ୍କର ଦୁରାପେନ୍ ଦେବତା ମଧ୍ୟ ହେଉଛନ୍ତି ଏଇ ସୂର୍ଯ୍ୟଦେବତା । ତେବେ ସେ ପ୍ରସଙ୍ଗ ଏତିକିରେ ରହୁ ।

ଜୀବନବାଦ :

ଏଇ ଜୀବନ ଦର୍ଶନ ପଛରେ ରହିଛି ଜୀବନ ପ୍ରତି ପ୍ରଚଣ୍ଡ ଶ୍ରଦ୍ଧା । ଯାହାକୁ କୁହାଯାଇପାରେ ଜୀବନବାଦ । ମୃତବ୍ୟକ୍ତିମାନଙ୍କୁ ଆଦିବାସୀ ଶ୍ରଦ୍ଧାକରେ, ଡୁମା ବୋଲି କହି ପୂଜାକରେ । ସେ ବିଶ୍ୱାସ କରେ ଯେ ଆନିଦାବିଙ୍କର ଏହି ଡୁମାମାନେ ଗୋଷ୍ଠୀର ଜୀବନଧାରାକୁ ଅବ୍ୟାହତ ରଖିବା ପାଇଁ କାର୍ଯ୍ୟ କରନ୍ତି । ସମସ୍ତଙ୍କର ମଙ୍ଗଳ ପାଇଁ ମୃତମାନେ ଆଦିବାସୀମାନଙ୍କ ପାଇଁ ନିତ୍ୟ ବର୍ତ୍ତମାନ । ଅନ୍ୟପକ୍ଷରେ ସେ ବିଶ୍ୱାସକରେ, ଜୀବନ ହେଉଛି ସବୁଠୁ ମୂଲ୍ୟବାନ୍ – ସମସ୍ତଙ୍କର ଜୀବନ । ଜୀବନ ଥିବା ଯାଏ ଆନନ୍ଦ ସବୁଠି ଭରପୂର । ଫୁଲରେ, ପତ୍ରରେ, ଝରଣାରେ, ନଦୀରେ, ନାଚଗୀତରେ, ସାଙ୍ଗସାଥିମେଳରେ, ପ୍ରେମରେ ବିବାହରେ, ପିଲାଜନ୍ମରେ, ହାଟବଜାରରେ – ସବୁଠି ଆନନ୍ଦ ଖୋଜା ଯାଇପାରେ । ଏପରିକି ତୁଚ୍ଛାତିତୁଚ୍ଛ ଖାଦ୍ୟକୁ ମଧ୍ୟ ଭୋଜି ନ୍ୟାୟରେ ଉପଭୋଗ କରାଯାଇପାରେ । ଫୁଟେ ମାଂସ, ଟିକେ ମାଛ, ମାଣ୍ଡିଆପେଜ, ଚାଉଳଭାତ ଓ ସାଲପ ଦି ହାଣ୍ଡି ଏତିକି ହେଲେ ସେ ବିରାଟ ଭୋଜିର

ପରମ ଆନନ୍ଦ ପାଏ । ପୁଣି ଖାଲି ଖାଦ୍ୟରେ ନୁହେଁ, ଶ୍ରମରେ ମଧ୍ୟ ଆନନ୍ଦ । ସେଇଥିପାଇଁ କାଉଡ଼ି ବହିବା ବେଳେ, ହଳ କଷିବା ବେଳେ, ଧାନ ରୋଇବା ବେଳେ ବା ଜନ୍ତୁ ଘଉଡ଼େଇବା ବେଳେ ପ୍ରତି ପଦପାତରେ ଗୀତ ସଙ୍ଗୀତ । ଏପରିକି ମୃତ୍ୟୁରେ ମଧ୍ୟ ନାଚଗୀତ ମଧ୍ୟରେ ମୃତବ୍ୟକ୍ତିକୁ ବିଦାୟ ଜଣାଇ ଆଦିବାସୀ ତା'ର ପୁରୁଣା ଜୀବନ ଯାତ୍ରାକୁ ଫେରିଆସେ ।

ସେଇଥିପାଇଁ ଆଦିବାସୀମାନଙ୍କ ଭିତରେ ଆତ୍ମହତ୍ୟା; ଭିକ୍ଷାବୃତ୍ତି, ବେଶ୍ୟାବୃତ୍ତି – ଏସବୁ କିଛି ଦେଖାଯାଏ ନାହିଁ । ଯଦିବା କାଁ ଭାଁ କେଉଁଠି କେହି ଏହା କରେ, ସେ ହୁଏ ଗୋଷ୍ଠୀର ଘୃଣାର ପାତ୍ର । ସୋମନେ ବଞ୍ଚି ଥାଉ ଥାଉ ଗୋଷ୍ଠୀ ପାଇଁ ମୃତ ବୋଲି ଧରାଯାଆନ୍ତି । ମରିଗଲେ ଡୁମାର ସ୍ଥାନ ପାଆନ୍ତି ନାହିଁ । ଚର୍ଯ୍ୟାଗୀତିକାରେ ଏଇ ଜୀବନବାଦ ଓ ଆନନ୍ଦବୋଧ ସକାଶେ ବୋଧେ ଶାବର ଦର୍ଶନକୁ 'ସହଜସୁନ୍ଦର' ଭାବେ ବ୍ୟାଖ୍ୟା କରିବାର ଚେଷ୍ଟା କରାଯାଇଛି । ଯାହାକୁ ଦର୍ଶନଶାସ୍ତ୍ରରେ କୁହାଯାଇଛି ସ୍ୱଭାବବାଦ । ସହଜରେ ମଣିଷ ହୃଦୟରୁ ଯେଉଁ ଭାବନା ସ୍ୱାଭାବିକ ଭାବେ ଉପଲବ୍ଧ ହୁଏ, ତାହାରି କାର୍ଯ୍ୟକାରିତାରେ ହିଁ ମଣିଷ ଆନନ୍ଦ ପାଏ । ତାକୁ ଯେଉଁ ଅଭିସନ୍ଧି ଦ୍ୱାରା କ୍ଲିଷ୍ଟ ଓ ଜଟିଳ କରିଦିଆଯାଏ, ତାହା ମଣିଷକୁ ଦୁଃଖ ଓ ଯାତନା ଦିଏ ।

ଶେଷକଥା : ଶାବରଦର୍ଶନର ବିଧିବଦ୍ଧ ଅଧ୍ୟୟନ ମୋ ଜାଣିବାରେ ଆଜିଯାଏଁ କରାଯାଇ ନାହିଁ । ଏହି ଅନାଲୋଚିତ ଦିଗକୁ ଆଲୋକିତ କରିବା ପାଇଁ ମୋର ଏଇ ସାମାନ୍ୟ ପ୍ରଚେଷ୍ଟାକୁ ପରବର୍ତ୍ତୀ କାଳରେ ଗବେଷକମାନେ ପରିବର୍ଦ୍ଧିତ ଓ ପରିମାର୍ଜିତ କରିପାରିବେ ବୋଲି ଆଶା ରଖୁଛି । ତେବେ ସବୁଠୁ ବଡ଼କଥା ହେଉଛି ସଭ୍ୟତାର ବହୁ ଆକ୍ରମଣର ମୁହଁରେ ପଡ଼ି ମଧ୍ୟ ଯେଉଁ ସଂସ୍କୃତି ନିଜକୁ ଜାହିର କରିପାରିଛି, ତିଷ୍ଠି ରହିପାରିଛି ଓ ଜୀବନସଂଗ୍ରାମ ଜାରି ରଖିଛି, ତା'ର ଦାର୍ଶନିକ ବିଭାବ ଓ ମୂଲ୍ୟବୋଧ ଯଦି ଆମକୁ କିଛି ପ୍ରେରଣା ଦେଇ ସମଗ୍ର ମାନବ ସମାଜକୁ ଧ୍ୱଂସମୁଖରୁ ରକ୍ଷାକରେ ଏବଂ ଯଦି ଏହାଦ୍ୱାରା କୂଟନୀତି ବିଶାରଦ ତଥା ବାବୁ ସାହୁକାର ଗୋଷ୍ଠୀ ଏଭଳି ଜନଗୋଷ୍ଠୀମାନଙ୍କୁ ଧ୍ୱଂସମୁଖକୁ ଠେଲି ଦେବାରୁ ନିବୃତ୍ତ ରହନ୍ତି, ତେବେ ଏ ଲେଖକର ଶ୍ରମ ସାର୍ଥକ ହେବ ।

*(ଦ୍ରଷ୍ଟବ୍ୟ : ଆକ୍ରମଣ ମୁହଁରେ ଆଦିବାସୀ ଅର୍ଥନୀତି ଓ ଲୋକ ସଂସ୍କୃତି)*



# ଆଦିବାସୀ ସଭ୍ୟତାର ମୂଲ୍ୟବୋଧ

ଆଦିବାସୀର ଦାର୍ଶନିକ ଐତିହ୍ୟ ସହ ଯୋଡ଼ି ହୋଇ ରହିଛି ତା'ର ସଭ୍ୟତାର ମୂଲ୍ୟବୋଧ । ଏହି ମୂଲ୍ୟବୋଧ କ୍ଷେତ୍ରରେ କିଛିକିଛି ପରିବର୍ତ୍ତନ ଘଟିଛି ଓ ଘଟୁଛି, କିନ୍ତୁ ମୌଳିକ ଭାବେ ସେଥିରେ ବିଶେଷ କିଛି ଫରକ୍ ଆସିନାହିଁ । ସଂକ୍ଷେପରେ କହିଲେ ଏହି ମୂଲ୍ୟବୋଧର ମୂଳଭିତ୍ତି ହେଉଛି ବସ୍ତୁବାଦ ବା materialism । ଭାରତୀୟ ଦର୍ଶନରେ ଲୋକାୟତ ଦର୍ଶନ ବା ବାର୍ହସ୍ପତ୍ୟ ଦର୍ଶନ କହିଲେ ଆମେ ଯାହା ବୁଝୁ, ଏହା ସେଭଳି ଗଭୀରତର ବ୍ୟାଖ୍ୟାନ ବିଶିଷ୍ଟ ଅର୍ଥାତ୍ ଏକ ସମ୍ପୂର୍ଣ୍ଣ ଦାର୍ଶନିକ ସ୍କୁଲ ହୋଇ ପାରିନି ସତ, କିନ୍ତୁ ସେମାନଙ୍କ ପାରମ୍ପରିକ ମୂଲ୍ୟବୋଧରେ ଯେଉଁସବୁ ବିଶ୍ୱାସ, ଚଳଣି, ଲୋକକଥା, ବ୍ୟାଖ୍ୟାନ ଏବଂ ନୈତିକତା ବିରାଜମାନ, ତାହା ସ୍ପଷ୍ଟ ଭାବେ ଦର୍ଶାଇଦିଏ ଯେ ସେମାନେ ପ୍ରକୃତି ବା ବସ୍ତୁ ଜଗତକୁ ସକଳ ସୃଷ୍ଟିର ଉତ୍ସ ଭାବେ ବିଚାର କରନ୍ତି । ସେମାନଙ୍କ ବିଶ୍ୱ ଦୃଷ୍ଟିଭଙ୍ଗୀରେ ଆଧିଭୌତିକ ଉପାଦାନର ଉତ୍ପାତ ନଥାଏ । ସେମାନେ ଆତ୍ମା, ପରମାତ୍ମା, ପୁନର୍ଜନ୍ମ, ପରଲୋକ, ସ୍ୱର୍ଗ ବା ନର୍କ ଇତ୍ୟାଦିରେ ବିଶ୍ୱାସ କରନ୍ତି ନାହିଁ । ତେବେ ଏକ ବିସ୍ତୃତ ଅର୍ଥରେ ଧର୍ମ ଶବ୍ଦଟିକୁ ସେମାନେ ବ୍ୟବହାର କରନ୍ତି । ତା'ର ବସ୍ତୁଗତ ଅର୍ଥ ହେଉଛି ସୂର୍ଯ୍ୟ ।

କିନ୍ତୁ ଅନେକ ଗବେଷକ ସେମାନଙ୍କ ସାମଗ୍ରିକ ଚଳଣି ଓ ବିଶ୍ୱାସର ଉପଯୁକ୍ତ ବ୍ୟାଖ୍ୟା ବା ହିସାବ ନିକାଶ କରି ନପାରି ସେମାନଙ୍କୁ ଆଧ୍ୟାତ୍ମବାଦୀ ଓ 'ଧର୍ମ' ବିଶ୍ୱାସୀ ବୋଲି ଦର୍ଶାଇଥାନ୍ତି । ବାସ୍ତବରେ ସେମାନଙ୍କ ସମାଜରେ ପ୍ରଚଳିତ ଦିଶାରି, ଗୁରୁମାୟୀ, ପାଙ୍ଗଣିଆ, ଡୁମ୍ବା, ୱାଡ୍ରେ, ଦେବୀ, ଆତ୍ମା ଓ ଦେବତା ଆଦି ବ୍ୟବସ୍ଥା ଓ ଅବଧାରଣାଦ୍ୱାରା ଅଡୁଆ ପରିସ୍ଥିତିର ସମ୍ମୁଖୀନ ହୋଇ ସେହି ଗବେଷକମାନେ ସେମାନଙ୍କ ଭିତରେ ଏକ କିମ୍ଭୂତକିମାକାର ଆର୍ଯ୍ୟ ସୁଲଭ ଧର୍ମ ବ୍ୟବସ୍ଥା ପ୍ରଚଳିତ ବୋଲି ପ୍ରତିପାଦିତ କରିଥାନ୍ତି । ଆଉ ଏହା କିଛି ସୁବିଧାବାଦୀ ରାଜନେତାଙ୍କ ମୌଳବାଦୀ ରାଜନୀତିକୁ ସୁହାଉଥିବା ଦୃଷ୍ଟିରୁ ସେମାନେ ଏହାର ସୁଯୋଗ ନେଇ ସେମାନଙ୍କୁ 'ହିନ୍ଦୁ' ରୂପେ

ଅଭିହିତ କରି ତଥା ଜନଗଣନା ଦସ୍ତାବିଜ୍‌ରେ ଉଲ୍ଲେଖଥିବା 'ଧର୍ମ' କଲମ୍‌ରେ ସେମାନଙ୍କୁ ହିନ୍ଦୁ ବୋଲି ଷ୍ଟାମ୍ପ ମାରି ରାଜନୈତିକ ଫାଇଦା ଉଠାଇଥାନ୍ତି । ସେ ସମ୍ପର୍କରେ ଏକ ସ୍ୱଚ୍ଛତା ଆସିବା ମଧ୍ୟ ଏକାନ୍ତ ଜରୁରୀ । ସୁତରାଂ କୁହାଯାଇପାରେ ଯେ ତାହା ମଧ୍ୟ ଏ ପ୍ରବନ୍ଧର ଅନ୍ୟ ଏକ ଉଦ୍ଦେଶ୍ୟ । ପରସ୍ପର ସହ ହେତୁଗତ ଭାବେ ଜଡ଼ିତ ବା ସଂଯୁକ୍ତ ଦୃଷ୍ଟି ଭଙ୍ଗୀର ଏକତ୍ର ବ୍ୟାଖ୍ୟା ଦ୍ୱାରା ଏହା ସମ୍ଭବ ହୋଇ ପାରିବ ।

ଆଦିବାସୀ ମୂଲ୍ୟବୋଧକୁ ମୁଖ୍ୟତଃ ଚାରିଭାଗରେ ବିଭାଜନ କରାଯାଇପାରେ । (୧) ବସ୍ତୁତାନ୍ତ୍ରିକ ମୂଲ୍ୟବୋଧ (୨) ସାମାଜିକ ମୂଲ୍ୟବୋଧ (୩) ଆଧ୍ୟାତ୍ମିକ ବା ଧାର୍ମିକ ମୂଲ୍ୟବୋଧ (୪) ସାଂସ୍କୃତିକ ମୂଲ୍ୟବୋଧ ।

**(୧) ବସ୍ତୁତାନ୍ତ୍ରିକ ମୂଲ୍ୟବୋଧ :** ବସ୍ତୁବାଦୀ ଦର୍ଶନରେ ବିଶ୍ୱାସୀ ଆଦିବାସୀ ଗୋଷ୍ଠୀପାଇଁ ବସ୍ତୁ ବା ପ୍ରକୃତି ହେଉଛି ସକଳ ସୃଷ୍ଟିର ଜନନୀ । ସେ ଆତ୍ମା ବା ପରମାତ୍ମାବାଦରେ ବିଶ୍ୱାସ କରେ ନାହିଁ । ସେହି ସୂତ୍ରରେ ସେ ପୁନର୍ଜନ୍ମବାଦ ବା ତଥା କଥିତ ନିର୍ବାଣତତ୍ତ୍ୱରେ ବିଶ୍ୱାସ କରେ ନାହିଁ । ତେଣୁ ତା'ର ଶବ୍ଦ କୋଷରେ ଆତ୍ମା, ପରମାତ୍ମା, ପୁନର୍ଜନ୍ମ, ଚେତନା, ସ୍ୱର୍ଗ, ନର୍କ, ବିବର୍ତ୍ତନ, ଉତ୍ତରଣ ଇତ୍ୟାଦି ଶବ୍ଦର ଘୋର ଅଭାବ । ଏସବୁ ଧାରଣା ତା ପାଇଁ ଯେପରି ଜଟିଳ, ଧୂମିଳ ଓ ଅମୂର୍ତ୍ତ, ସେହିପରି ଅନାବଶ୍ୟକ ଓ ଆଲୋଡ଼ା । ସେ ଯାହା ବିଶ୍ୱାସ କରେ ତାହା କୌଣସି ନା କୌଣସି ବସ୍ତୁ ବା ବସ୍ତୁ ଜଗତ୍ ସହ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଜଡ଼ିତ । ଆଦିବାସୀ ମୁଖ୍ୟତଃ ଶିକାରୀ, ଶ୍ରମଜୀବୀ ଓ ଚାଷୀ । ଅର୍ଥାତ୍ ତାର ମୁଖ୍ୟ ଜୀବିକା ହେଉଛି ଜଙ୍ଗଲ ଭିତରେ ପଶି ଶିକାର କରିବା (ଯଦିଓ ଏ ଭିତରେ ଜଙ୍ଗଲ କମିଛି ଓ ଶିକାର-ଜୀବଜନ୍ତୁମାନେ ଲୁପ୍ତପ୍ରାୟ), ପଦାର୍ଥ ଓ ଜାଳେଣି ସଂଗ୍ରହ କରିବା, ଚାଷ କରିବା (ଯାହା ହେଉଛି ମୁଖ୍ୟତଃ ପୋଡୁଚାଷ ଓ ଡଙ୍ଗର ଚାଷ), ଅନ୍ୟର ବେଡ଼ାରେ ଗୋତି ବା ମୁଲିଆ ମଜୁରିଆ ରୂପେ ଖଟିବା ଏବଂ ଅନ୍ୟାନ୍ୟ କଠିନ ଶ୍ରମ କରିବା ଯେପରିକି ପଥରକୁ ହାତୁଡ଼ିରେ ପିଟି ଚିପ୍‌ସ୍ ବନାଇବା, ଜଙ୍ଗଲ ଠିକାଦାର ପାଖେ ଥାଇ ଗଛ କାଟିବା ଓ କାଠ ଚିରିବା ଏବଂ ରାସ୍ତା ନିର୍ମାଣ କାର୍ଯ୍ୟରେ ମାଟି ଖୋଳିବା ବହିବା ଓ ପଥର ଭାଙ୍ଗି ବହିବା ଇତ୍ୟାଦି । ବ୍ରିଟିଶ୍ ଅମଳରୁ କୁଲି ରୂପେ ଆଦିବାସୀର ଖ୍ୟାତି ଥିବାରୁ ଆସାମ ଚା ବଗିଚାମାନଙ୍କୁ କୁଲି ରୂପେ ଶହ ଶହ ସଂଖ୍ୟାର ଆଦିବାସୀଙ୍କୁ ଆଇନ୍‌ଗତ ଭାବେ ତାଲିକାଭୁକ୍ତ କରି ଚାଲାଣ କରାଯାଉଥିଲା ଏବଂ ଏହି କାର୍ଯ୍ୟ ତୁଲାଉଥିଲେ ଖୋଦ ଜିଲ୍ଲାପାଳ ବା ତାଙ୍କର ପ୍ରତିନିଧିମାନେ । ଏଭଳି ଆସାମ ଯାଇଥିବା

ଆଦିବାସୀମାନେ ପ୍ରାୟତଃ ସେଠାକାର ବାସିନ୍ଦା ହୋଇ ରହି ଯାଇଛନ୍ତି ବା ସେଠାରେ ମରିହଜି ଯାଇଛନ୍ତି । ସେମାନଙ୍କୁ କୁହାଯାଉଥିଲା ଆସାମ୍ବିକାରିଆ ।

ତେଣୁ ଶ୍ରମ ପ୍ରତି ଶ୍ରଦ୍ଧା ହେଉଛି ଆଦିବାସୀ ଜନଜୀବନର ଏକ ମୌଳିକ ବିଭାବ । ଯେଉଁସବୁ ବସ୍ତୁଙ୍କୁ ନେଇ ଉତ୍ପାଦନ ଅଭିମୁଖୀ ସେହି ଶ୍ରମ ସଂସାଧିତ ହୁଏ ସେ ସବୁର ଆନ୍ତଃ ସଂପର୍କ ତା'ପାଇଁ ଗୁରୁତ୍ୱପୂର୍ଣ୍ଣ । ଦିନଥିଲା ସମସ୍ତ ଉତ୍ପାଦନ-ସାଧନ ଉପରେ ତା'ର କର୍ତ୍ତୃତ୍ୱ ଥିଲା । କିନ୍ତୁ ପ୍ରଥମେ ବ୍ରିଟିଶ୍ ଭାରତ ଓ ପରେ ଭାରତୀୟ ରାଷ୍ଟ୍ରର କୁଟିଳ ଆଇନ୍‌ର ଜଟିଳ ଜାଲ ଭିତରେ ଉତ୍ପାଦନର ଅନେକ ସାଧନ ଉପରୁ ତା'ର କର୍ତ୍ତୃତ୍ୱ ହଟି ହଟି ଯିବାରେ ଲାଗିଛି । କିନ୍ତୁ ଉତ୍ପାଦନଗତ ସଂପର୍କକୁ କେନ୍ଦ୍ରକରି ବିବାହ କିମ୍ବା ଏହି ସବୁ ସାଧନ ଉପରେ ମାଲିକାନାଗତ ବିବାହ ଆଦିବାସୀ ସମାଜରେ ମୁଖ୍ୟ ଦ୍ୱନ୍ଦ୍ୱ ହୋଇ ଦେଖା ଦେଇଛି । ଜଙ୍ଗଲ, ଜମି, ଜଳ, ଖଣି, ପଥର, ବୃକ୍ଷ, ଲଘୁ ବନଜାତଦ୍ରବ୍ୟ ଇତ୍ୟାଦି ଉପରେ ମାଲିକାନାକୁ ନେଇ ଆଦିବାସୀ ସମାଜରେ ଦେଖା ଦେଇଥିବା ଦ୍ୱନ୍ଦ୍ୱ ତୀବ୍ରରୁ ତୀବ୍ରତର ହେବାରେ ଲାଗିଛି । କାରଣ ଜମି ଓ ଜଙ୍ଗଲକୁ, ନଦୀ ଓ ଝୋଲାଙ୍କୁ ସେ ନିଜର ମାଆ ବୋଲି ଭାବେ । ଜୀବଜନ୍ତୁମାନଙ୍କୁ ସେ ଭାବେ ନିଜର ଭାଇ ଓ ଭଉଣୀ । ଆକାଶର ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର ଓ ଗ୍ରହମାନଙ୍କୁ ସେ ଭାବେ ନିଜର ପଥପ୍ରଦର୍ଶକ । ସେଇ ଦୃଷ୍ଟିରୁ ସେମାନେ ଦେବତା ବା ଦେବତାଙ୍କ ପ୍ରତିନିଧି ।

ଠିକ୍ ସେହି କାରଣରୁ ବିସ୍ଥାପନକୁ ସେ କେବେ ହେଲେ ସ୍ୱାଗତ କରି ପାରେନି । କାରଣ ବିସ୍ଥାପନ ଖାଲି ଯେ ତାକୁ ଓ ତାର'ର ଶ୍ରମ ସାଧନ ବା ଉତ୍ପାଦନର ସାଧନମାନଙ୍କଠାରୁ ବିତାଡ଼ିତ କରେ ତା' ନୁହେଁ, ସେଥି ସହ ସେ ସ୍ପଷ୍ଟ ଦେଖିପାରେ ତା ସଂସ୍କୃତିର ସମାଧୀକରଣ । ଜଳ ଘେର ଭିତରେ କେଉଁଠି ତା' ଗାଁ ଟାପୁ ପାଲଟିଯାଏ ତ ଆଉ କେଉଁଠି ଜଳଗର୍ଭରେ ବିଲୁପ୍ତ ହୋଇଯାଏ । ଆଉ ବା କେଉଁଠି ଖଣି ଗର୍ଭରେ ହଜିଯାଏ ବା କାର୍ଖାନାର ଦୈତ୍ୟକାୟ ସ୍ଥାପତ୍ୟର ଚିମ୍ନୀ ଦେଇ ଧୂଆଁ ପାଲଟି ଆକାଶରେ ମିଶିଯାଏ । ପୂର୍ବର ଶ୍ରମ ସଂଭାବନା ଲୋପ ପାଇବା ସଂଗେ ସଂଗେ ଯେଉଁ ନୂଆ ଶ୍ରମ ସମ୍ଭାବନା ବା ପ୍ରତିଶ୍ରୁତିଙ୍କୁ ସେ ଭେଟେ, ସେମାନେ ନିର୍ମମ ଓ ଅମାନବିକ । ଶ୍ରମ ବଜାରର ରସଦ ବା ପଣ୍ୟ ରୂପେ ସେ ବିକ୍ରି ହୁଏ । ଏପରିକି ଏହି ଘଟଣାକୁ ସେ ଜମି ବିଚ୍ଛେଦୀକରଣ ପ୍ରକ୍ରିୟାର ଶେଷ ପରିଣତି – "ନିଜ ଜମିରେ ନିଜେ ଗୋତି ରହିବା"ଠାରୁ ମଧ ଅଧିକ ହୀନ ଓ ଘୃଣ୍ୟ ବୋଲି ଗ୍ରହଣ କରେ । ତେଣୁ ସେ କେଉଁଠି ଜମି

ବିଚ୍ଛେଦୀକରଣ ବିରୋଧରେ ଲଢ଼ି ନିଜ ଆଜିଦାଦିଙ୍କ ଜମିର ମାଲିକ ବନିବା ପାଇଁ "ନାରାୟଣ ପାଟଣା"ମାନଙ୍କୁ ଛିଡ଼ା କରାଏ ତ ଆଉ କେଉଁଠି ବିସ୍ଥାପନ ବିରୋଧରେ ଛିଡ଼ା କରାଏ 'କଳିଙ୍ଗନଗର' । ବରଂ ସେଥିପାଇଁ ଗୁଳି ଖାଇ ମରିବାକୁ ପଡୁ ବା ଅପମାନଜନକ ଭାବେ ହରାଇବାକୁ ପଡୁ ପାପୁଲି ଓ ଗୁପ୍ତାଙ୍ଗ । ବାସ୍ତବରେ ଏ ସବୁ ହେଉଛି ତା'ପାଇଁ ଗୋଟିଏ ପ୍ରକାର ଶ୍ରମ ମୁକ୍ତିର ଆନ୍ଦୋଳନ । ନିଜ ଖୁସିରେ ସୃଜନଶୀଳ ଭାବେ ଶ୍ରମର ଉପଯୋଗ ପାଇଁ ଆନ୍ଦୋଳନ ।

ତା'ର ଅନ୍ୟ ଏକ ଦିଗ ହେଉଛି ଶ୍ରମ ବିମୁଖତା ପ୍ରତି ଘୃଣା । ଯେଉଁ ଅଣଆଦିବାସୀ ଗୋଷ୍ଠୀ ଶ୍ରମ ନ କରି, କୁଟା ଖଣ୍ଡକୁ ଦି ଖଣ୍ଡ ନ କରି, କେବଳ ଅନ୍ୟମାନଙ୍କୁ ଖଟାଇ ଚାଲନ୍ତି, ଭୋଗ କରି ଚାଲନ୍ତି, ସେହି ଗଡ଼ିଆଁ ଲୋକଙ୍କ ପ୍ରତି ଘୃଣା । ପ୍ରତି ଆଦିବାସୀର ପାରିବାରିକ ଜୀବନ ତଥା ସାମାଜିକ ଜୀବନରେ ଏହାର ପ୍ରତିଫଳନ ଘଟିଥାଏ । ଜଣେ କଠିନ ଶ୍ରମକାରୀ ବା କୁଶଳୀ ଶ୍ରମିକର ମୂଲ୍ୟ ଆଦିବାସୀ ସମାଜରେ ସବୁଠାରୁ ଉଚ୍ଚରେ । ନିଜର ଶ୍ରମ ପାରଦର୍ଶୀତାର ପ୍ରମାଣ ନ ଦେଲେ ଜଣେ ଧାଂଡ଼ାକୁ ଭଲ ଧାଂଡ଼ୀଟିଏ ମିଳେନି କି ଜଣେ ଧାଂଡ଼ୀକୁ ଭଲ ଧାଂଡ଼ାଟିଏ ମିଳେନି । ମନୋନୀତ ଧାଂଡ଼ୀକୁ ପାଇବା ପାଇଁ ଶ୍ୱଶୁର ଘରେ ସେଇ ଧାଂଡ଼ାକୁ ୨ରୁ ୫ ବର୍ଷ ଗୋତିଖଟି ତା' ଶ୍ରମ କୁଶଳତାର ପ୍ରମାଣ ଦେବାକୁ ପଡ଼େ । ଜଣେ ଆଦିବାସୀ ଶିଶୁ ଶୈଶବରେ ଖେଳଣା ରୂପେ ସେଇସବୁ ଦ୍ରବ୍ୟଙ୍କୁ ବ୍ୟବହାର କରେ ଯାହାଙ୍କୁ ଶ୍ରମ ଉପକରଣ ରୂପେ ପରବର୍ତ୍ତୀ ସମୟରେ ସେ ବ୍ୟବହାର କରିବ । ଯେପରି କି ଟାଙ୍ଗିଆ, ବାଡ଼୍ଣୀ(ଝାଡୁ), କାଟ୍ରା(ଛୁରୀ), ଶାବଳ ଇତ୍ୟାଦି । ସେହିପରି ମହୁଲ ବେଟାନୀ (ଗୋଟେଇବା) (ସିନ୍ଧିକୀଡ଼ା ଖୋଜା, ସିନ୍ଧିବୁଟା ବା ବୁଦା ଭିତରେ ଥିବା ସୁଆଦିଆ ପୋକକୁ ବୁଦା କାଟି ବାହାର କରିବା) ଓ ବାଲାଇ ମାତାନୀ (ଗୋଟିଏ ଝିଅକୁ ମାତା କରି ହଜି ଯାଇଥିବା ଜିନିଷ ଖୋଜି ଆଣିବାକୁ କହିବା) ଇତ୍ୟାଦି ଖେଳରେ ମଗ୍ନ ରହି ପିଲାମାନେ ବଡ଼ ହେଲେ କିପରି ଉତ୍ପାଦନଧର୍ମୀ ଶ୍ରମ କରି ପାରିବେ ସେ ଶିକ୍ଷା ଲାଭ କରନ୍ତି ।

ସେହିପରି ଦୈନନ୍ଦିନ ଶ୍ରମ । ସେ ଶ୍ରମିକର ଶ୍ରମ ହେଉ କି ବେଢ଼ାରେ ଚାଷୀର ଶ୍ରମ ହେଉ, ରୋଷେଇ ଘରେ ନାରୀର ଶ୍ରମ ହେଉକି ନାଚ ଗୀତ ସମୟରେ ବାୟକ ବା ବାଦକର ଶ୍ରମ ହେଉ, ସେହି ସବୁ ଶ୍ରମରେ ବ୍ୟବହୃତ ଉପକରଣ ଉପରେ ଶ୍ରମକାରୀର ଅଧିକାର ସାମାଜିକ ଓ ପାରିବାରିକ ସ୍ତରରେ ସ୍ୱୀକୃତ ହୋଇଥାଏ ।

ଏହାର ପ୍ରମାଣ ସ୍ୱରୂପ ସେହି ବ୍ୟକ୍ତି ଯେତେବେଳେ ମୃତ୍ୟୁବରଣ କରେ, ତା'ର ସେହି ପ୍ରିୟବସ୍ତୁକୁ ତା' କୋକେଇ ସହ ନେଇ 'ବେଜରଣା' ବା ଦ୍ରବ୍ୟ-ଶ୍ମଶାନରେ ଛାଡ଼ି ଦିଆଯାଏ । ଏ ସମସ୍ତ ଦ୍ରବ୍ୟ ଭିତରେ ପୁରୁଷ ସମ୍ପତ୍ତି ରୂପେ ବିବେଚିତ ହୁଅନ୍ତି ଡୁଙ୍ଗ୍‌ଡୁଙ୍ଗା ଯାହାକି ଆଧୁନିକ ତତବାଦ୍ୟର ଜନକ, ଅଥଚ ଅତି ସରଳ ଭାବେ ଲାଉରେ ଚର୍ମ ଛାଉଣି କରି ଗୋଟିଏ ମାତ୍ର ତାର ଖଂଜି ତିଆରି ହୋଇଥାଏ, ଅନ୍‌କା ବା ଲାଉତୁମ୍ବା (ଯେଉଁଥିରେ ଜଳ ବା ସଲପ ବା ମଦ ନେଇ ଦୂର ସ୍ଥାନକୁ ଯାତ୍ରା କରାଯାଏ), ତୀର ଧନୁ, ବର୍ଚ୍ଛା, ଟାଙ୍ଗିଆ, ଲଙ୍ଗଳ ଇତ୍ୟାଦି । ସେହିପରି ସ୍ତ୍ରୀଧର୍ମ ରୂପେ ବିବେଚିତ ହୁଏ ଡୁମ୍ବନୀ ବା ଡୁମ୍ବଣୀ (ଯେଉଁଥିରେ ଖାଦ୍ୟ ପାନୀୟ ବଢ଼ାଯାଇଥାଏ), ପରିବା କଟା କାଟ୍‌ରା(ଛୁରୀ), ବାଉଁଶନଳୀ (ଯେଉଁଥିରେ ପଇସା ସଂଚୟ କରାଯାଏ) ଏବଂ କୁଲା ଝଲୁଣୀ ଇତ୍ୟାଦି । ଆଦିବାସୀ ବିଶ୍ୱାସରେ ଏ ସବୁର ମଧ୍ୟ ଜୀବନ ଥାଏ । ବ୍ୟକ୍ତିର ମୃତ୍ୟୁ ସହ ଏମାନଙ୍କର ମଧ୍ୟ ମୃତ୍ୟୁ ହୁଏ । ସେଥିପାଇଁ ସେମାନେ ଦ୍ରବ୍ୟ-ଶ୍ମଶାନ ବା ବେଜର୍‌ନାକୁ ଯାଆନ୍ତି । ମୃତବ୍ୟକ୍ତି ମଶନ୍ ବା ଶ୍ମଶାନକୁ ଯାଏ । ମୃତବ୍ୟକ୍ତିକୁ ସେଠାରେ ଦାହ କରାଯାଏ ବା ପୋତାଯାଏ । କିନ୍ତୁ ଦ୍ରବ୍ୟମାନଙ୍କୁ କୌଣସି ଗଛ ଡାଳରେ ଟଙ୍ଗାଇ ଦିଆଯାଏ । କାରଣ ମୃତ୍ୟୁପରେ ଡୁମା ସେହି ଗଛଡାଳରେ ଆଶ୍ରୟ ନେଇଥାଏ ଓ ଗୋଷ୍ଠୀ ବା ପରିବାରର ଶୁଭ ମନାସି ଥାଏ ବୋଲି ଆଦିବାସୀର ବିଶ୍ୱାସ ।

ମୁଁ ପ୍ରଥମରୁ କହିଛି ଯେ ଜଣେ ଆଦିବାସୀ ଇହଲୋକ, ପରଲୋକ ବା ଆତ୍ମା, ପରମାତ୍ମା ଇତ୍ୟାଦି ତତ୍ତ୍ୱରେ ବିଶ୍ୱାସ କରେ ନାହିଁ । କିନ୍ତୁ ଡୁମାରେ ବିଶ୍ୱାସ କରେ । ଏଇ ଡୁମାକୁ ସେ ଅନେକଟା ଇହଲୋକରୁ ବିଦାୟ ନେଇଥିବା ସୁତରାଂ ଅନୁପସ୍ଥିତ ଥିବା ନିଜର ଭାଇ ବନ୍ଧୁ କୁଟୁମ୍ବଙ୍କର ଅବର୍ତ୍ତମାନ ଏକ ସତ୍ତା ରୂପେ ଗ୍ରହଣ କରେ । ତେଣୁ ନିଶ୍ଚିତ ଭାବେ ଏହା ଅତିଭୌତିକ । କିନ୍ତୁ ଏହାର ହେତୁବାଦୀ ବ୍ୟାଖ୍ୟା ସେ କରେ ନାହିଁ । ବାସ୍ତବରେ ମୃତବ୍ୟକ୍ତିଙ୍କୁ ଯେ ସେ କେବେ ହେଲେ ଅବଜ୍ଞା କରୁନାହିଁ ଏହା ତା'ର ପ୍ରମାଣ । ସେ ବିଶ୍ୱାସ କରେ ଯେ, କୌଣସି ଭୋଜି ଭାତରେ, ଭଲ ଦ୍ରବ୍ୟ ଉତ୍ପାଦନ ପରେ, ଫଳ ପାଚିଲା ପରେ, ସଲପ ପାରିବା ପରେ ସେଥିରୁ ଡୁମାକୁ ଭାଗ ନ ଦେଲେ ପରିବାର ଉପରେ ଅମଙ୍ଗଳ ପଡ଼ିବ ହିଁ ପଡ଼ିବ । ଅନ୍ୟପକ୍ଷରେ ସେ ନିଜ ପୂର୍ବ ପୁରୁଷଙ୍କୁ ଭୁଲିନାହିଁ । ଏବେ ବି ଶ୍ରଦ୍ଧା କରୁଛି, ଏହା ତା'ର ପ୍ରମାଣ । ଏହିଭଳି ଡୁମାମାନେ ଆଦିବାସୀମାନଙ୍କ ସାମାଜିକ ଜୀବନର ଏକ

ଅଙ୍ଗ । ଏହାକୁ ଏକ ସରଳ ଅଣତାତ୍ତ୍ୱିକ ପରିକଳ୍ପନା ବା ସାଂସ୍କୃତିକ ଉପାଦାନ ରୂପେ ଅଭିହିତ କରାଯାଇପାରେ । କିନ୍ତୁ କଦାପି ପୁନର୍ଜନ୍ମ ତତ୍ତ୍ୱ ବା ଆତ୍ମା-ପରମାତ୍ମା ବା ଚେତନା- ଅଧିଚେତନା-ଅତି ମାନସତତ୍ତ୍ୱ ଇତ୍ୟାଦି ତତ୍ତ୍ୱବାଦ ସହ ସଂଯୋଜିତ କରାଯାଇପାରେନା ।

(୨) ସାମାଜିକ ମୂଲ୍ୟବୋଧ : ଏଇ ବସ୍ତୁତାନ୍ତ୍ରିକ ଦୃଷ୍ଟିଭଙ୍ଗୀ ହିଁ ରୂପ ଦେଉଛି ବିଭିନ୍ନ ପ୍ରଶ୍ନ ବା ପ୍ରସଙ୍ଗ ଉପରେ ଆଦିବାସୀର ସାମାଜିକ ମୂଲ୍ୟବୋଧକୁ । ତା' ସହିତ ମିଶିଛି ମଣିଷ ପ୍ରତି ତାର ଅସୀମ ଶ୍ରଦ୍ଧା । ଏହାକୁ (ଏହି ମାନବୀୟ ଶ୍ରଦ୍ଧାକୁ) ଠିକ୍ ଅର୍ଥରେ ମାନବବାଦ କୁହାଯାଇ ପାରିବ ନାହିଁ । କାରଣ 'ମାନବବାଦ' ତତ୍ତ୍ୱ ସେଇଭଳି ଏକ ସମାଜ ପାଇଁ ଆବଶ୍ୟକ ଥାଏ ଯେଉଁଠି ପୁଂଜିବାଦୀ ଶୋଷଣ ଚରମ ଅବସ୍ଥାରେ ପହଞ୍ଚିଥାଏ । ଧନୀ ଓ ଦରିଦ୍ରଙ୍କ ମଧ୍ୟରେ ଆକାଶ ପାତାଳ ଫରକ ଦେଖା ଦେଇଥାଏ । ତେଣୁ ଧନୀ ଶୋଷକ ବର୍ଗ ନିଜର ଶୋଷଣ ଲବ୍ଧ ଧନରୁ କିଛି ଦାନ ଦେଇ ସେଥିରେ ଦରିଦ୍ରର ସେବା କରି କିଛିଟା ପାପ ମୋଚନ କରନ୍ତି । ଏଥିପାଇଁ ମାନବବାଦର ଢକ୍କା ପିଟିବା ବା ଧ୍ୱଜା ଉଡ଼ାଇବା ଦରକାର ପଡ଼େ । କିନ୍ତୁ ଆଦିବାସୀର ଗୋଷ୍ଠୀ ତଥା ସାମାଜିକ ଜୀବନରେ ବିଷମତାର ସୀମା ଥାଏ, ସାମନ୍ତବାଦର ବିକାଶ ପାଇଁ ବାଧା ଥାଏ ଓ ପୁଂଜିବାଦର ପ୍ରବର୍ତ୍ତନ ପାଇଁ ଭିତ୍ତି ନଥାଏ । ଆଟବୀକ ସଂସ୍କୃତିରେ ଜଣେ ମଣିଷ କହିଲେ ଆଦିବାସୀ ଯାହା ବୁଝେ, ତା' ହେଉଛି ପ୍ରଥମତଃ ସେ ନିଜେ ଓ ତା'ର ପରିବାର ଓ ଗାଁ ଲୋକ ତଥା ପାଖ ପଡ଼ିଶା ଗାଁର ଲୋକ, ୨ୟରେ ତା'ର ବନ୍ଧୁବାନ୍ଧବ ବା ଗତିଆ ଏବଂ ଦୂର ଜାଗାରେ ଗାଁ ବସାଇ ଥିବା ତା'ର କୁଟୁମ୍ବ ବା ବଂଶ । ୩ୟରେ ଯେକୌଣସି ଦୂରାଗତ ବା ବହିରାଗତ ଅତିଥି ଅଭ୍ୟାଗତ । ୪ର୍ଥରେ ମୃତ୍ୟୁବରଣ କରିଥିବା ସମସ୍ତ ଡୁମା । (ମୃତ ଜୀବଜନ୍ତୁଙ୍କ ପ୍ରତି ଏହା ପ୍ରଯୁଜ୍ୟ ହୋଇ ନ ଥାଏ) । ୫ମରେ ଆଗାମୀ ପୀଢ଼ି ବା ଭବିଷ୍ୟତର ବଂଶଧରମାନେ । ଏ ସମସ୍ତଙ୍କର ଶୁଭ ମନାସିବା ହେଉଛି ଆଦିବାସୀର ସାମାଜିକ ମୂଲ୍ୟବୋଧର ଏକ ବଡ଼ ଦିଗ । ପୁଣି ଆଦିବାସୀ ବିଶ୍ୱାସ କରେ ଯେ ଜମି ଓ ଜଙ୍ଗଲ ଆମର ମାଆ । ତେଣୁ ଯିଏ ଯେତେ ଚଷିଲା ସେତିକି ଜମି ତା'ର । ଜମି ଉପରେ ବ୍ୟକ୍ତିଗତ ମାଲିକାନା ବା ପଟା ପ୍ରଚଳନ ଅଣଆଦିବାସୀ ସମାଜର ପ୍ରଥା ।

ଆମ ସମାଜରେ ନିଜର ଓ ନିଜ ପରିବାର ପାଇଁ ଜୀଇଁବା ବା ମରିବା ଏକ ସାଧାରଣ କଥା । କିନ୍ତୁ ବହିରାଗତ ବା ଅନାଗତମାନଙ୍କ ପାଇଁ ସମ୍ମାନ ବା ଶ୍ରଦ୍ଧା

ପ୍ରକାଶ କରିବା ନିଶ୍ଚିତ ଭାବେ ଅସାଧାରଣ । ଡୁମା ବା ଅନାଗତ ଅର୍ଥାତ୍ ଭାବୀ ବଂଶଧରମାନଙ୍କ ପ୍ରତି ଶ୍ରଦ୍ଧା ତା'ଠାରୁ ବେଶୀ ଅସାଧାରଣ । ନିଜ ଗୋଷ୍ଠୀର କେହି ଯଦି ବାହାରୁ ଆସି ଗୋଟିଏ ଗାଁରେ ଆଶ୍ରୟ ଲୋଡ଼େ ତେବେ ସେ ଗାଁର ନାୟକ ତାକୁ କେଉଁଠି ହେଲେ କିଛି ଜମି ଗାଁ ମୁତାମରୁ ଦିଏ, ଯେଉଁଠି ସେ ଚାଷ କରେ । ପ୍ରଥମ ବର୍ଷର ଫସଲ ଉପୁଜାଇବା ପର୍ଯ୍ୟନ୍ତ ଗାଁର ସମସ୍ତେ ତା'ର ଭରଣ ପୋଷଣ ମଧ୍ୟ କରନ୍ତି । ଘର ବାନ୍ଧି ଦିଅନ୍ତି । ଏପରିକି ବିଭା ହୋଇ ନଥିଲେ ସେପାଇଁ ମଧ୍ୟ ସୁଯୋଗ ଦିଅନ୍ତି । ଆଉ ସେମାନେ ଯଦି ଅଣ ଆଦିବାସୀ ଗୋଷ୍ଠୀର ଏବଂ ନିଜେ ଶ୍ରମ ପ୍ରତି ବିମୁଖ, ତେବେ ତାକୁ ଦୋକାନ ବାଡ଼ି ବାନ୍ଧିବା ପାଇଁ ବା କୃଷିଜାତ, ବନଜାତ ବା ଅନ୍ୟ ଯେକୌଣସି ଦ୍ରବ୍ୟର ବ୍ୟବସାୟ କରିବା ପାଇଁ ସୁଯୋଗ ଦିଆଯାଏ । ଅବଶ୍ୟ ଏହାର ସୁଯୋଗ ନେଇ ପରେ ସେମାନେ ଶୁଣ୍ଢୀ ସାହୁକାର ପାଲଟିଯାଇ ଆଦିବାସୀମାନଙ୍କୁ ଆପଣା ଜମିରୁ ବିତାଡ଼ିତ କରନ୍ତି ବା ସେଇ ଅଧିକୃତ ଜମିରେ ଗୋତି ଖଟାଂନ୍ତି । ସେମାନଙ୍କ ଝିଅବୋହୂଙ୍କୁ ରକ୍ଷିତା ରଖନ୍ତି । ତେବେ ଆଦିବାସୀ ସମାଜର ଏହି ଚଳଣି ପଛରେ ଥିବା ମୂଲ୍ୟବୋଧଟି ହେଉଛି ମଣିଷ ପ୍ରତି ଶ୍ରଦ୍ଧା । ସେ ମଣିଷଟି ଶୋଷକ କି ନୁହେଁ ତା' ପ୍ରତି ସେତେ ଗଭୀର ଦୃଷ୍ଟିଭଙ୍ଗୀ ଅତୀତରେ ନଥିଲା ଓ ବର୍ତ୍ତମାନ ମଧ୍ୟ ପର୍ଯ୍ୟାପ୍ତ ପରିମାଣରେ ନାହିଁ ।

ସେହିଭଳି ଯେକୌଣସି ପର୍ବପର୍ବାଣୀରେ ବା ବିଭା-ପିଲାଜନ୍ମ ଆଦି ଶୁଭକାର୍ଯ୍ୟରେ ଡୁମାମାନେ ଲୋଡ଼ା ପଡ଼ନ୍ତି । କାରଣ ଆଦିବାସୀର ବିଶ୍ୱାସ ଯେ, ପୂର୍ବ ପୁରୁଷଙ୍କ ଡୁମାମାନେ ସବୁବେଳେ ସେମାନଙ୍କ ଉପରେ ଲକ୍ଷ୍ୟ ରଖିଛନ୍ତି – ସେମାନେ ନିଜ ପରମ୍ପରାକୁ ଠିକ୍ ଭାବେ ରକ୍ଷଣା ବେକ୍ଷଣା କରୁଛନ୍ତି କି ନାହିଁ । ଯଦି କରୁନାହାନ୍ତି, ତେବେ ସେମାନେ ରିଷା ହୁଅନ୍ତି । ତା'ର ପ୍ରତିଫଳନ ଘଟେ ମରୁଡ଼ି, ଅନାବୃଷ୍ଟି, ଗୋମଡ଼କ, ଝାଡ଼ାବାନ୍ତି ବା ବଘେଇ ଓ ମେଲେରିଆ ଇତ୍ୟାଦି ଜରିଆରେ । ଡୁମାମାନଙ୍କର ଏଇ ଆଶୀର୍ବାଦ ବା ଅଭିଶାପ ସମଗ୍ର ଆଦିବାସୀ ଗୋଷ୍ଠୀର ଶାରୀରିକ ତଥା ମାନସିକ ସ୍ୱାସ୍ଥ୍ୟକୁ ପ୍ରଭାବିତ କରେ । ସାଂପ୍ରତିକ ବିସ୍ଥାପନ ବିରୋଧୀ ଆନ୍ଦୋଳନ ପଛରେ ଏଇ ସବୁ ବିଶ୍ୱାସ ପ୍ରଚଣ୍ଡ ଭାବେ ଆଦିବାସୀମାନଙ୍କୁ ପ୍ରଭାବିତ କରୁଛି । କାରଣ ବିନା ପ୍ରତିବାଦରେ ଜନ୍ମସ୍ଥାନ, ନଦୀ, ଝରଣା, ଘରଦ୍ୱାର, ଶ୍ମଶାନ ଓ ବେଜରଣା, ଗୁଡ଼ିଘର ଓ ଦେବୀପୀଠ ଛାଡ଼ି ଚାଲିଯିବା ଲାଗି ଡୁମାମାନେ କେବେ ହେଲେ ଅନୁମତି ଦିଅନ୍ତି ନାହିଁ । ସେଇ ଜାଙ୍ଗଲିକ ଭିତ୍ତିଭୂମି ହେଉଛି ସେମାନଙ୍କ ସଂସ୍କୃତିର କେନ୍ଦ୍ର ଏବଂ ପୂର୍ବ ପୁରୁଷଙ୍କ ବିଚରଣ ସ୍ଥଳୀ ।

ଆଗାମୀ ବା ଉତ୍ତର ପୁରୁଷ ପ୍ରତି ମଧ୍ୟ ସେମାନଙ୍କ ସକାରାତ୍ମକ ଦୃଷ୍ଟିଭଙ୍ଗୀର ପ୍ରତିଫଳନ ବହୁ ପାରମ୍ପରିକ ଚଳଣିରେ ଦେଖିବାକୁ ମିଳିଥାଏ । ପ୍ରଥମତଃ ବୟଃ ପ୍ରାପ୍ତି ପରେ ପିଲାମାନେ ଯେତେବେଳେ ନିଜର ସାଥୀ ଖୋଜିନେଇ ବିଭା ହୋଇଯାଆନ୍ତି, ସେତେବେଳେ ବାପା ମା' ସେମାନଙ୍କ ପାଇଁ ନୂଆ ଘରଟିଏ ନିର୍ମାଣ କରିଦିଅନ୍ତି । ସେଥିରେ ସେମାନେ ନିଜସ୍ୱ ଜୀବନ ବଂଚିବାର ସୁଯୋଗ ପାଆନ୍ତି । ଚାଷବାସ ଏକାଠି କରାଯାଇ ଉତ୍ପାଦନକୁ ଅଂଶ ଅନୁଯାୟୀ ଭାଗ କରାଯାଏ, ସେହିପରି ପିଲାନାମରେ ସଲପ ଲଗାଇବା ବା ଅନ୍ୟ କିଛି ଫଳଗଛ ରୋପଣ କରିବାର ବିଧି ବା ପ୍ରଥା ମଧ୍ୟ ଦେଖାଯାଏ । ନିଜେ ନିଜର ସାଥୀ ଖୋଜି ନେବା ପାଇଁ ଆବଶ୍ୟକ ସ୍ୱାଧୀନତା ସକାଶେ ଧାଂଡ଼ୀ ଘର ବା ବସାର ପ୍ରଚଳନ ପ୍ରାୟ ସବୁ ଗୋଷ୍ଠୀରେ ବିଭିନ୍ନ ନାମରେ ଚାଲି ଆସିଛି । ସେଠି ବରିଷ୍ଠମାନଙ୍କ ତତ୍ତ୍ୱାବଧାନରେ ନାଚଗୀତ ଚାଲେ । ଏପରିକି ବାହାର ଗାଁର ଧାଂଡ଼ାମାନଙ୍କୁ ମଧ୍ୟ ରାତି ରହିବାର ସୁଯୋଗ ଦିଆଯାଏ ।

ପ୍ରେମ ପ୍ରସଙ୍ଗରେ ଆଦିବାସୀର ବିଶ୍ୱାସ ଦେହ ଓ ମନକେନ୍ଦ୍ରିକ । ପ୍ଲାଟୋନିକ୍ ଲଭ୍ ବା ସ୍ୱର୍ଗୀୟ ପ୍ରେମ ସଂପର୍କୀୟ ଧାରଣାର କାଣିଚାଏ ମଧ୍ୟ ଏଠାରେ ଦେଖିବାକୁ ମିଳେ ନାହିଁ । ଦୁଇଜଣ ସୁସ୍ଥ ସବଳ ସମଭୂମିରେ ଥିବା ନାରୀ ପୁରୁଷ ବା ଯୁବକ ଯୁବତୀଙ୍କ ପାରସ୍ପରିକ ଆକର୍ଷଣ ପଛରେ ଧନ ବା ସଂପଦର କିଛି ଭୂମିକା ନ ଥାଏ । ତା'ର ସୌନ୍ଦର୍ଯ୍ୟ, ଗୀତ ଗାଇବା ବା ଡୁଙ୍ଗ୍‌ଡୁଙ୍ଗା ବଜାଇବା ବା ଢେମ୍‌ସା ନାଚିବାର ଗୁଣ ବା ପ୍ରତିଭା, ଚାଲିଚଳଣ, କଥାବାର୍ତ୍ତା, ଶ୍ରମ କରିବାର ସାମର୍ଥ୍ୟ ତଥା ଦକ୍ଷତା ପାରସ୍ପରିକ ଆକର୍ଷଣର ପରିମାପକ ହୋଇଥାଏ ।

ଥରେ ଜୀବନସାଥୀ ରୂପେ ବରଣ କରିନେବା ପରେ ବିବାହ ନାମକ ଅନୁଷ୍ଠାନ ହେଉ କି ନ ହେଉ, ସେମାନେ ସହବାସ କରିବା, ସାଥୀରେ ରହିବା ଏପରିକି ପିଲାପିଲିର ମା ବାପା ହେବାରେ ସମାଜର ଆପତ୍ତି ନ ଥାଏ । ଆଧୁନିକ ସମାଜର 'ଷ୍ଟେ ଟୁଗେଦାର' ସହ ଏହାକୁ ତୁଳନା କରାଯାଇପାରେ । ତେବେ କେବେ ନା କେବେ ହାତରେ ପଇସା ହେଲେ ଗାଁ ଲୋକଙ୍କୁ ବିଭା ଭୋଜିଟିଏ ଦେବାକୁ ହୁଏ । ସେଥିପାଇଁ ବ୍ୟକ୍ତିଗତ, ପାରିବାରିକ, ଆର୍ଥିକ ଓ ମାନସିକ ଅବସ୍ଥା ପ୍ରତି ଦୃଷ୍ଟି ଦେଇ ବିଭିନ୍ନ ପ୍ରକାରର ବିବାହ ପ୍ରଚଳନ ରହିଛି । ସେହିପରି ବିବାହ ବିଚ୍ଛେଦ, ବିଧବା ବିବାହ ବା ସଗର୍ତ୍ତା ବିବାହ (ଡିଭୋର୍ସି ବିଭା) ଏବଂ ଏକାଧିକ ବିବାହ ସମାଜ ସ୍ୱୀକୃତ । ତେଣୁ ପ୍ରେମ ବା ବିବାହ ବ୍ୟାପାରକୁ ନେଇ ଯୁବଗୋଷ୍ଠୀ ବିଦ୍ରୋହୀ ହେବାର

ବା ମାନସିକ ନିର୍ଯାତିତ ହୋବର ଘଟଣା ପ୍ରାୟତଃ ଦେଖାଯାଏ ନାହିଁ । ତେଣୁ ଆତ୍ମହତ୍ୟା, ଧର୍ଷଣ ଓ ବେଶ୍ୟାବୃତ୍ତି ଇତ୍ୟାଦି ପାଇଁ ସାମାଜିକ ଭିତ୍ତି କିଛି ନଥାଏ ।

ଗୋଷ୍ଠୀ ଓ ବ୍ୟକ୍ତିର ସମ୍ପର୍କକୁ ନେଇ ଆଦିବାସୀ ମୂଲ୍ୟବୋଧରେ ଗୋଷ୍ଠୀର ରାୟ ହିଁ ପ୍ରାଥମିକତା ପାଇଥାଏ । ଦୀର୍ଘକାଳ ଧରି ଶିକାର ଓ ଖାଦ୍ୟ ସଂଗ୍ରହ ପାଇଁ ଜଙ୍ଗଲ ଉପରେ ନିର୍ଭର କରୁଥିବାରୁ ଏବଂ ବିପଦ ସଂକୁଳ ଜଙ୍ଗଲ ମଧ୍ୟରେ ଯେକୌଣସି ଉଦ୍ଦେଶ୍ୟରେ ଆତଜାତ କରିବାପାଇଁ ଗୋଷ୍ଠୀଗତ ଅଭିଯାନର ଆବଶ୍ୟକତା ଥିବାରୁ ଗୋଷ୍ଠୀ ହିଁ ଆଦିବାସୀ ଜୀବନରେ ଏତେ ଗୁରୁତ୍ୱ ପାଇଥାଏ । ଆପଦ ବିପଦ, କୃଷିକାର୍ଯ୍ୟ, ପର୍ବ ପର୍ବାଣୀ, ଢେମ୍‌ସା ନାଚ, ଭୋଜି ଭାତ ସବୁଥିରେ ଗୋଷ୍ଠୀଗତ ଅଂଶ ଗ୍ରହଣ ଜରୁରୀ ହୋଇଉଠେ । ଜଣଙ୍କ ଝିଅ ବିଭାରେ ଅନ୍ୟ ଗାଁରୁ ଭାଇ ବନ୍ଧୁ କୁଟୁମ୍ବମାନେ କଦଳୀ କାନ୍ଧି, ପରିବା ଭାର, ଚାଉଳ, ଛେଳି, କୁକୁଡ଼ା ଇତ୍ୟାଦି ନେଇ ହାଜର ହୋଇ ଯାଆନ୍ତି । ଗାଁ ପିଲାମାନେ କାଠ, ଖଲିପତ୍ର ପାଇଁ ଜଙ୍ଗଲକୁ ଖେଦି ଯାଆନ୍ତି ଓ ଅବଲୀଳା କ୍ରମେ ରୋଷେଇବାସର ଦାୟିତ୍ୱ ନିଅନ୍ତି । ଗୋଷ୍ଠୀର ପ୍ରାଥମିକତା ଏଭଳି ଏକ ସାମୂହିକ ସଂସ୍କୃତିକୁ ଜନ୍ମ ଦେଇଥାଏ । ଚାଷବାସ ସମୟରେ ଲୋକଶକ୍ତିର ଅଭାବ ଥିଲେ ଏକ ପ୍ରକାର ଅଘୋଷିତ ସମବାୟ ବ୍ୟବସ୍ଥା ଜରିଆରେ ବିଧବା, ବୃଦ୍ଧ, ବୃଦ୍ଧା ବା ବାପଛେଉଣ୍ଡ ଘରମାନଙ୍କର ଚାଷକାର୍ଯ୍ୟ ଉଠିଯାଏ । ଗୀତ, ନାଚ ଓ ବାଦ୍ୟସବୁ ଏମିତି ଢଙ୍ଗରେ ପ୍ରଚଳିତ ଯେ ହାତକୁ ହାତ ନ ମିଳିଲେ ଢ଼େମ୍‌ସା ନାଚର ଶିକୁଳି ତିଆରି ହୋଇପାରେନି । ଚକ୍ରାକାର, ସର୍ପାକାର, ଅର୍ଦ୍ଧ ବୃତ୍ତାକାର ନାଚ, କିନ୍ଦରୀ ଗୀତ ଓ ଡୁଙ୍ଗଡୁଙ୍ଗା ବାଦ୍ୟରେ ଲହର କିମ୍ବା ମାଦକତା ଆସିପାରେନି । ତେଣୁ ସମୂହ ପାଖରେ ବ୍ୟକ୍ତିଟିଏ ସ୍ୱାଭାବିକ ଭାବେ ଆତ୍ମ ସପର୍ମଣ କରିଦିଏ । ସେଇଥିରେ ବ୍ୟକ୍ତିର ବିଜୟ ବୋଲି ବିବେଚନା କରାଯାଏ ।

ତେବେ ବ୍ୟକ୍ତିଗତ ପ୍ରତିଭାର ପ୍ରତିପାଦନ ପାଇଁ ମଧ୍ୟ ଗୋଷ୍ଠୀ ଅନେକ ସୁଯୋଗ ଦିଏ । ଗୀତ୍ କୁଡ଼ିଆ ବା କୁଡ଼ିଆନୀ ଅନେକ ସ୍ଥଳରେ ନିଜର ଦକ୍ଷତା ଦେଖାଇ ଗାଁ ବା ନିଜ ପଞ୍ଚାୟତର ଊର୍ଦ୍ଧ୍ୱକୁ ଉଠିପାରନ୍ତି । ସେହିପରି ଜଣେ ବାଦକ, ନାଟଗୁରୁ ବା ଦିଶାରି / ଗୁରୁମାୟୀ ନିଜର ପ୍ରତିଭା ବଳରେ ବ୍ୟାପକ ଅଂଚଳରେ ଖ୍ୟାତି ଅର୍ଜନ କରିପାରନ୍ତି । ତେବେ ନ୍ୟାୟ ଅନ୍ୟାୟ ବିଚାର ବା ନିଶାପ ବେଳେ ଗ୍ରାମ୍ୟ ଗୋଷ୍ଠୀ ଓ ତହୁଁ ବଡ଼ ତହୁଁ ବଡ଼ ଆଂଚଳିକ ଓ ଜାତିଗତ ଗୋଷ୍ଠୀର ରାୟ ସବୁବେଳେ କାଏମ ରହେ । ଏ ସବୁ ଆର୍ଯ୍ୟ ଜଗତ୍‌ର କଂଗାରୁ କୋର୍ଟ ବା ଖାପ୍

ପଂଚାୟତ ଭଳି ନକାରାତ୍ମକ ନୁହେଁ । ପ୍ରାୟତଃ ସକାରାତ୍ମକ ଏବଂ ରାଷ୍ଟ୍ର ପ୍ରାୟୋଜିତ ନ୍ୟାୟ ବ୍ୟବସ୍ଥାଠାରୁ ଅଧିକ ବାସ୍ତବ ଓ ମାନବବାଦୀ ।

'ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ଆର୍ଥିକସଂକଟରୁ ରକ୍ଷା ପାଇବା ପାଇଁ ଆଦିବାସୀମାନେ ଦାଦନ ଯିବାବେଳେ ମଧ୍ୟ ଏଇ ଗୋଷ୍ଠୀ ବ୍ୟବସ୍ଥାରୁ କିଛିଟା ଉପକୃତ ହେଉଛନ୍ତି । ସେମାନେ ବ୍ୟକ୍ତିଗତ ଭାବେ ଦାଦନ ନ ଯାଇ ୧୦ରୁ ଆରମ୍ଭ କରି ୫୦ ଭିତରେ ଗୋଷ୍ଠୀଟିଏ ଗଠନ କରି ଦାଦନ ଯାଉଛନ୍ତି । ସେଇମାନେ ହିଁ ବିଦେଶରେ କାହାରି ଉପରେ ଅତ୍ୟାଚାର ହେଲେ ଗାଁ ବା ପରିବାରକୁ ଜଣାଇ ଦେଉଚନ୍ତି ଓ ଯେତେଦୂର ସମ୍ଭବ କାର୍ଯ୍ୟସ୍ଥଳୀରେ ଅନ୍ୟାୟ ଓ ଅତ୍ୟାଚାରର ବିରୋଧ କରି ପାରୁଛନ୍ତି ଓ ଅନାଦାୟ ମଜୁରୀ ଆଦାୟ କରିବା ଦିଗରେ ଗୋଷ୍ଠୀଗତ ଚାପ ପ୍ରୟୋଗ କରି ପାରୁଛନ୍ତି । ମୃତବ୍ୟକ୍ତିର ଶବ ପରିବହନ ମଧ୍ୟ ସେମାନଙ୍କୁ କରିବାକୁ ପଡୁଛି । ସେହିପରି ଅପରେସନ ସବୁଜ ଶୀକାର କ୍ରମରେ ସ୍ୱୟଂ ରାଷ୍ଟ୍ର ଯେତେବେଳେ ନିରୀହ ଆଦିବାସୀଙ୍କୁ ଏନ୍‌କାଉଣ୍ଟର ନାମରେ ହତ୍ୟା କରୁଛନ୍ତି, ଗୋଷ୍ଠୀ ତା'ର ସାମୂହିକ ପ୍ରତିବାଦ କରୁଛି । କେହିକେହି ଅବିବେକୀ ଅସାମାଜିକ ଉପାଦାନ 'ମାଓବାଦୀ' ନାମରେ କାହାରି ଉପରେ ଜୁଲୁମ୍ କଲେ ତା'ର ପ୍ରତିବାଦ ମଧ୍ୟ କରି ପାରୁଛନ୍ତି । ବର୍ତ୍ତମାନର ବିସ୍ଥାପନ ବିରୋଧୀ ଲୋକ ଆନ୍ଦୋଳନ (ଯଥା – କଳିଙ୍ଗ ନଗର ଓ ନୟମଗିରି) କ୍ଷେତ୍ରରେ ମଧ୍ୟ ଏହି ସମୂହର (ଗ୍ରାମସଭା ରୂପରେ) ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଗଠନ ମୂଳକ ଭାବେ ପେସା, ଜଙ୍ଗଲ ଅଧିକାର ଆଇନ୍ (ଏଫ୍ ଆର୍.ଏ) ତଥା ଜମି ବିଚ୍ଛେଦୀକରଣ ବିରୋଧୀ ସଂଶୋଧନ ଆଇନ୍ ପ୍ରୟୋଗ କ୍ଷେତ୍ରରେ ମଧ୍ୟ ଆଦିବାସୀମାନଙ୍କ ସାମୂହିକ ଗୋଷ୍ଠୀଗତ ଉଦ୍ୟମ ଓ ଅଭିକ୍ରମ ପ୍ରଶଂସନୀୟ ।

**(୩) ଆଧ୍ୟାତ୍ମିକ ବା ଧାର୍ମିକ ମୂଲ୍ୟବୋଧ :** ମୁଁ ପୂର୍ବରୁ ସ୍ପଷ୍ଟ କରିଛି ଯେ ଆମେ 'ଆଧ୍ୟାତ୍ମିକତା' କହିଲେ ଯାହା ବୁଝୁ ସେ ଅର୍ଥରେ ଏହି ଶବ୍ଦଟି ଏଠାରେ ପ୍ରୟୋଗ କରାଯାଇ ପାରିବ ନାହିଁ । ଏପରିକି ଏହି ଶବ୍ଦଟି ଦେଶିଆ ଅଭିଧାନରେ ମଧ୍ୟ ନାହିଁ । କିନ୍ତୁ ଆଦିବାସୀମାନେ କିଛି ଆଧିଭୌତିକ ସତ୍ତାରେ ବିଶ୍ୱାସ କରନ୍ତି ନାହିଁ । ପ୍ରକୃତିର ବିଭିନ୍ନ ସତ୍ତାରେ ଦେବତ୍ୱ ଆରୋପ କରନ୍ତି ଏବଂ ଗ୍ରହ ନକ୍ଷତ୍ର ଯୋଗ ଓ ସେ ଅନୁଯାୟୀ ତିଥିବାରର ପ୍ରୟୋଗ ବିଧିରେ ବିଶ୍ୱାସ କରନ୍ତି । ସୂର୍ଯ୍ୟ ହେଉଛନ୍ତି ସେମାନଙ୍କ ଧର୍ମଦେବତା । ସେ ଅନୁଯାୟୀ ସେମାନଙ୍କ ନିଜସ୍ୱ ପୂଜାବିଧି ଓ ଆନୁଷ୍ଠାନିକ ପଦପଦବୀ ମଧ୍ୟ ରହିଛି ।

ସେମାନେ କୌଣସି ରୁଢ଼ିବଦ୍ଧ ଧର୍ମର ଧାରକ ନୁହଁନ୍ତି । କିନ୍ତୁ ମଣିଷର ମଙ୍ଗଳ ବା ଅମଙ୍ଗଳ ଘଟାଉଥିବା ଶକ୍ତିମାନଙ୍କର ସ୍ଥିତି ସଂପର୍କରେ ବିଶ୍ୱାସୀ । ମୃତ ବ୍ୟକ୍ତିମାନେ ଡୁମା ହୋଇ ବିରାଜମାନ ହେଉଥିବା କଥା ଯେ ସେମାନେ ବିଶ୍ୱାସ କରନ୍ତି, ଏ କଥା ପୂର୍ବରୁ ଉଲ୍ଲେଖ କରାଯାଇଛି । କିନ୍ତୁ ସେମାନେ ଅନିଷ୍ଟକାରୀ ନୁହଁନ୍ତି । ସବୁ ବୃକ୍ଷକୁ ସେମାନେ ଦେବତାରୂପେ ଦେଖୁଥିଲେ ମଧ୍ୟ ସର୍‌ଗୀ (ଶାଳ) ବା ମହୁଲ ଗଛକୁ ସବୁଠାରୁ ପବିତ୍ର ଭାବେ ବିବେଚନା କରନ୍ତି । ସେହିପରି କଷି ଗଛର ଗଣ୍ଡି – (ପ୍ରାୟ ୩ଫୁଟ ଉଚ୍ଚ)କୁ ବିଭିନ୍ନ ଗାଁର ‘ହୁଣ୍ଡି’ ରୂପେ ପୂଜା କରାଯାଏ । ତେଣୁ ବେଣ୍ଟ୍ ପରବ ବେଳେ ଏହି ତିନି ଗଛମୂଳେ ‘ବୀରୁ’ ଅନୁଷ୍ଠିତ ହୋଇଥାଏ । ସେଥିରେ ତୀ୍‌ରଧନୁ ଓ ବିହନ ପୁଡ଼ିଆ ଟଙ୍ଗାଯାଏ । ସେହିଭଳି ବାଉଁଶ ବା ଲାଠିକୁ ଦେବତା ରୂପେ ବିଋର କରି ଦଶରା ପର୍ବ ବେଳେ ବା ମାଲକାନଗିରିର ବଡ଼ପରବ ବେଳେ ଏହି ଲାଠି ଦେହରେ କନା ବାନ୍ଧି କାନ୍ଧରେ ବା ବିମାନରେ ବୋହି ସେମାନେ ପୂଜାସ୍ଥଳୀରେ ପହଞ୍ଚି ପୂଜା ବା ବୀରୁ କରିଥାନ୍ତି । ସେଥିପାଇଁ ପୋଡୁଋଷ କରିବା ଲାଗି ମଧ୍ୟ ବଡ଼ଗଛ କାଟିବା ଲାଗି ଗୋଷ୍ଠୀ କାହାକୁ ଅନୁମତି ଦିଏ ନାହିଁ । ଏହା ବ୍ୟତୀତ ସେମାନେ ବିଭିନ୍ନ ରୋଗ ବୈରାଗର ଦେବୀ, ମାଉଲୀ, ଡାଲଖାଇ / ମାଉଲୀ, ଡାଲଖାଇ / ମାତା, ଆମ୍ମା, ଦେଓ ବା ଦେବତାମାନଙ୍କୁ ଆବାହନ ଓ ପୂଜା କରିଥାନ୍ତି । ସେମାନେ ଅମୂର୍ତ୍ତ ହୋଇପାରନ୍ତି ବା ହୋଇପାରନ୍ତି ମୂର୍ତ୍ତିଧାରୀ କାଠ ବା ପଥର । ଏପରିକି ଶୁଖିଲାଗଛ (ବେଣୀ ମାଧବ ପାଢ଼ୀଙ୍କ ‘ଦାରୁ ଦେବତା’ ଓ ଗୋପୀ ମହାନ୍ତିଙ୍କ ‘ଦାଦିବୁଢ଼ା’), ଅସ୍ତ୍ରଶସ୍ତ୍ର(ବଣ୍ଡାମାନଙ୍କ ପାଟଖଣ୍ଡା ଓ ବେଣ୍ଟ ପରବ ସମୟରେ ଧନୁତୀର) ପଶୁପକ୍ଷୀ ଓ ସାହେବ ବା ଅଂରେଜୀ । ସେଥିପାଇଁ ତାଙ୍କର ଦେବୀମାନଙ୍କ ଭିତରୁ ଜଣେ କ୍ଷମତାଶାଳୀ ଦେବୀ ହେଉଛନ୍ତି ‘ଅଂଲେଜୀମାତା’ । କାରଣ ସେମାନେ ଶକ୍ତିଶାଳୀ ବା କ୍ଷମତାଶାଳୀ । ଏହି ପୂଜାପାଇଁ ଯେଉଁସବୁ ଆନୁଷ୍ଠାନିକ ପଦପଦବୀ ରହିଚି, ସେ ସବୁ ହେଉଚି ଜାନି, ପୂଜାରି ପୂଜାର୍ଣ୍ଣୀ, ଦିଶାରି, ଗୁରୁମାୟୀ ଓ ୱାଡ଼େ । ଏହା ବ୍ୟତୀତ ଅଛନ୍ତି ନାୟକ ଓ ବାରିକ । ସେମାନେ ଗାଁ ସ୍ତରୀୟ ବିଧିବିଧାନର ଦାୟିତ୍ୱ ନିଅନ୍ତି । ଆଉ ଗୁଣିଆ ଓ ପାଙ୍ଗ୍‌ଣିଆମାନେ ମଧ୍ୟ କଳାତନ୍ତ୍ରର ପୂଜା କରନ୍ତି । ସମାଜରେ ପୂଜାରି ଓ ଦିଶାରିମାନେ ଯେତିକି ମାନ୍ୟ ପାଆନ୍ତି, ଏମାନେ ପାଆନ୍ତି ସେତିକି ଘୃଣା, ଭୟ ଓ ସମ୍ଭ୍ରମ । ପୂଜା ଅନୁଷ୍ଠାନକୁ କୁହାଯାଏ ବୀରୁ । ଭିଜା ଅରୁଆ ଋଉଳ, (ବା ଅକତ), ଚରୁ କିମ୍ବା ଅନ୍ନ, ନୂଆ କୁଣ୍ଡିରେ ପାଣି, ଧଳା ଓ ନାଲିଫୁଲ ଓ

ପକ୍ଷୀ ବା ପଶୁର ବଳି ରକ୍ତ ପ୍ରାୟ ସବୁ ପୂଜାରେ ଲୋଡ଼ାହୁଏ । ବିଭିନ୍ନ ପର୍ବପର୍ବାଣୀରେ ରୋଗ ବୈରାଗର ଚିକିତ୍ସା ଉଦ୍ଦେଶ୍ୟରେ ଜନ୍ମ, ମୃତ୍ୟୁ ଓ ବିବାହ ଅନୁଷ୍ଠାନରେ ଏବଂ ଗ୍ରାମ୍ୟ ହୁଣ୍ଡି ଦେବତା ପାଖରେ ନିୟମିତ ବୀରୁ କରିବାର ବିଧି ରହିଛି । ପୁଣି ଏଥିପାଇଁ ବିଭିନ୍ନ ଦେଶିଆ ଭାଷାରେ ସ୍ୱତନ୍ତ୍ର ମନ୍ତ୍ର ରହିଛି । ଏସବୁ ମନ୍ତ୍ର ସଂସ୍କୃତଭଳି ଅନୁନାସିକ ଓ ତା'ର ଉଚ୍ଚାରଣ ବେଶ୍ ଦୀର୍ଘ । ବିସର୍ଗ ଓ ଅନୁସ୍ୱାର ଯୁକ୍ତ ହୋଇ ତାହା ସଂସ୍କୃତ, ଲାଟିନ୍ ଓ ଜର୍ମାନ୍ ଭାଷାର ମନ୍ତ୍ରୋଚ୍ଚାରଣ ଭଳି ବେଶ୍ ମହିମ୍ନ, ପ୍ରଭାବଶାଳୀ ଓ ଆମେଜଯୁକ୍ତ । ବିଶେଷକରି ରୋଗ ଚିକିତ୍ସା ସମୟରେ ପୂଜାରି ଦିଶାରିମାନେ ଗାଉଥିବା ମନ୍ତ୍ର ରୋଗୀ ଉପରେ ତା'ର ଆତ୍ମୀୟମାନଙ୍କ ଉପରେ ଯେଉଁ ମୋହିନୀ ପ୍ରଭାବ ପକାଏ ସେଥିରେ ଅଧାରୋଗ ଭଲ ହୋଇ ଯାଉଥିବା ଅନୁମାନ କରାଯାଏ । (ଏ ସମ୍ପର୍କରେ ତୁଳନାତ୍ମକ ଦୃଷ୍ଟାନ୍ତ ଥାଇ ମୋର ଏକ ପ୍ରବନ୍ଧ - "ଆଦିବାସୀ କବିତା ଓ କବିତା" ଦ୍ରଷ୍ଟବ୍ୟ)

ଦିଶାରିର ମୁଖ୍ୟ କାର୍ଯ୍ୟ ହେଉଛି ବିଭିନ୍ନ ପର୍ବପର୍ବାଣୀ ଓ ସାମାଜିକ ଅନୁଷ୍ଠାନ ପାଇଁ ତିଥି ନିର୍ଣ୍ଣୟ କରିବା । ସେଥିଲାଗି ନକ୍ଷତ୍ର ମଣ୍ଡଳୀର ଅନୁଧ୍ୟାନ କରିବା ଜରୁରୀ ହୁଏ । ବଂଶାନୁକ୍ରମିକ ଭାବେ ବିଭିନ୍ନ ଦିଶାରି ପରିବାର ଏହି ଦାୟିତ୍ୱ ତୁଲାଇଥାନ୍ତି ଏବଂ ନିଜ ଗାଁକୁ ଛାଡ଼ି ଅନ୍ୟାନ୍ୟ ଗାଁ ଓ ଗୋଷ୍ଠୀ ପାଇଁ ମଧ୍ୟ ତିଥି ନିର୍ଣ୍ଣୟ କରିଥାନ୍ତି । ବିଶେଷ କରି ବଣ୍ଡା ଘାଟରେ ଥିବା ବଣ୍ଡା ଗାଁମାନଙ୍କର ଦିଶାରି ହେଉଛନ୍ତି ମାଛକୁଣ୍ଡ ଅଞ୍ଚଳର ଲୋକେଇ ପରିବାର । ମାଛକୁଣ୍ଡ ବନ୍ଧ ଯୋଜନାର ବୁଡ଼ି ଅଞ୍ଚଳରେ ମୂଳ ଲୋକେଇଗୁଡ଼ା ବୁଡ଼ିଯାଇଥିଲେ ମଧ୍ୟ ସେମାନଙ୍କ ବଂଶଧରମାନେ ଗୋବିନ୍ଦ ପାଲିଘାଟର ଲୋକେଇଗୁଡ଼ା ଓ ଚିତ୍ରକୋଣ୍ଡାର ଥଇଥାନ ଗାଁ ଆର୍ ଏସ୍‌ସି ୧୯ରେ ରହୁଛନ୍ତି । ଏଇ ସବୁ ଗାଁମାନଙ୍କୁ ବଣ୍ଡାନାୟକମାନଙ୍କର ନିୟମିତ ଯିବା ଆସିବା ଲାଗି ରହିଥାଏ । ଏମାନଙ୍କୁ ଲଗ୍ନ କାରିଆ, ଯୋଗ କାରିଆ ବା ପାଂଜି କରିଆ ବୋଲି ମଧ୍ୟ କୁହାଯାଏ ।

ଆଦିବାସୀର ମୁଖ୍ୟ ଦେବତା ଭୈରବ ଅଲୌକିକ ଶକ୍ତି ଯୁକ୍ତ ଜଣେ ମଣିଷ ମାତ୍ର । କେହି କେହି ତାଙ୍କୁ ବୁଢ଼ା 'ଭୈରବ' ବୋଲି କହିଥାନ୍ତି । ସେ ବିଭା ହୋଇଥିବା ମାଓଲି ମାତାଙ୍କ ଅନ୍ୟନାମ ଦନ୍ତେଶ୍ୱରୀ । ସେ ହେଉଛନ୍ତି ଭଦ୍ରାଂଚଲମ୍ ରାଜାଙ୍କ କନ୍ୟା ଓ ନିଜ ବାଗ୍‌ଦତ୍ତ କୋବା ରାଜକୁମାରଙ୍କ ହତ୍ୟାର ପ୍ରତିଶୋଧ ନେବାପାଇଁ ରାଜ୍ୟ ଛାଡ଼ିଥିଲେ ଓ ଭୈରବଙ୍କ ସାହାଯ୍ୟରେ ସେଇ ବର୍ମା ରାକ୍ଷସକୁ ପରାସ୍ତ କରିଥିଲେ । ପରବର୍ତ୍ତୀ ସମୟରେ ଆର୍ଯ୍ୟ ରାଜାମାନେ ଏ ଦୁଇଜଣଙ୍କୁ ନିଜର ଇଷ୍ଟ

ଦେବତା ବା ଦେବୀରୂପେ ଗ୍ରହଣ କରିନେଇ ଆଦିବାସୀ ଧର୍ମ ବିଶ୍ୱାସକୁ ଆର୍ଯ୍ୟ ତ୍ରିଦେବ ତତ୍ତ୍ୱର ସମତୁଲ କରିବାର ଚେଷ୍ଟା କରିଛନ୍ତି । କିନ୍ତୁ ଭୈରବ ଓ ମାଓଲି ହେଉଚନ୍ତି କୃଷିର ଦେବତା ଓ ଦେବୀ ବା ମାତା ।

(୪) **ସାଂସ୍କୃତିକ ମୂଲ୍ୟବୋଧ :** ବାସ୍ତବରେ ପୂର୍ବ ନୁକ୍ତାଗୁଡ଼ିକରେ ଯେଉଁ ସବୁ ବିଷୟ ଆଲୋଚିତ ହେଲା, ଏକ ପ୍ରଶସ୍ତ ଦୃଷ୍ଟିରୁ ସେସବୁ ମଧ୍ୟ ସାଂସ୍କୃତିକ ମୂଲ୍ୟବୋଧର ଅନ୍ତର୍ଗତ । ତେବେ ଯେହେତୁ ଆଦିବାସୀର ଦର୍ଶନ ହେଉଛି ପ୍ରକୃତିବାଦ, ସେଥିରୁ ସ୍ୱାଭାବିକ ଭାବେ ଜନ୍ମ ନେଇଥାଏ ଜୀବନବାଦ । ସାଂସ୍କୃତିକ ମୂଲ୍ୟବୋଧର ପ୍ରଥମ ସର୍ତ୍ତ ହେଉଛି ପ୍ରଚଣ୍ଡ ଜୀବନବାଦୀତା । ନିଃସଙ୍ଗତାବୋଧ ବା ମୃତ୍ୟୁଚେତନା ଏଠୁ ନିର୍ବାସିତ । ଦୁଃଖ ଦୁର୍ବିପାକ, ଶୋଷଣ ନିର୍ଯାତନା ଅଛି । କିନ୍ତୁ ତାହା ଗୋଷ୍ଠୀଗତ ଜୀବନର ଦୁର୍ଦ୍ଦଶା ବା ଦୁର୍ଭୋଗର ଅଂଶ । ତେଣୁ ଗ୍ରାମର ସମସ୍ତେ ବସି ଏହାର ପ୍ରତିକାର ଚିନ୍ତା ଓ ବିଚାର ବିମର୍ଷ କରନ୍ତି । ଫଳରେ ମରୁଡ଼ି, ଶସ୍ୟ ବା ପାଚିର ଅଭାବୀ ବିକ୍ରି, ଅନାବୃଷ୍ଟି, ଅତିବୃଷ୍ଟି, ବାଲିଚର ସତ୍ତ୍ୱେ କୌଣସି ଚାଷୀ ଆତ୍ମହତ୍ୟା କରନ୍ତି ନାହିଁ । ସମଦୃଷ୍ଟି ଓ ସମଭୂମିର ବସ୍ତୁଗତ ସାମାଜିକ ସ୍ଥିତି ସେମାନଙ୍କୁ ନ୍ୟାୟ ଅନ୍ୟାୟ ବିଚାର କରିବାର ଏକ ସହଜ ଦୃଷ୍ଟିଭଙ୍ଗୀ ଦେଇଥାଏ, ଯାହା ଗୋଟିଏ ସୂତ୍ରରେ ସଭିଙ୍କୁ ବାନ୍ଧି ରଖିଥାଏ । ଅନ୍ୟାୟର ପ୍ରତିକାର ପାଇଁ ସେ ପୁଷିଆ ଯୋଗ ଖୋଜି ବସେ । ଜାନିକୁ କହେ, "ଦିଅ ପୁଷିଆ ଯୋଗ, ଟୁଣୁ ହାୟ ମୁଁ ।" (ଅମୃତର ସନ୍ତାନ ପୃ ୧ ୨ ୭) ବାସ୍ତବରେ ଶୋଷକ ଶ୍ରେଣୀ ବିରୋଧରେ ଏହା ହେଉଛି ସଶସ୍ତ୍ର ସଂଗ୍ରାମର ହୁଙ୍କାର । ଆତ୍ମହତ୍ୟା ନ କରି ସେ ଶ୍ରେଣୀ ସଂଗ୍ରାମରେ ଲମ୍ଫ ଦେବାପାଇଁ ଦମ୍ଭ ଓ ସାହସ ରଖେ । ଗୋଷ୍ଠୀଗତ ଐକ୍ୟର ଏହା ହେଉଛି ଅବଦାନ ।

ଗୋଟିଏ ସଂସ୍କୃତିର ମୂଳ ଆତ୍ମା ହେଉଛି ସେହି ଗୋଷ୍ଠୀର ଜୀବନ ଦର୍ଶନ ତାକୁ ଦେଇଥିବା ଦୃଷ୍ଟିଭଙ୍ଗୀ, ଯାହା ନିର୍ମାଣ କରିଥାଏ ବିଭିନ୍ନ ସାମାଜିକ ଚଳଣି ଓ ମୂଲ୍ୟବୋଧ, ବିଶ୍ୱାସ ଓ ଅନ୍ଧବିଶ୍ୱାସ, ଶ୍ରଦ୍ଧା ଓ ଘୃଣା, ନିଷ୍ଠା ଓ ସାହସ, ଶ୍ରମ ଓ କାରିଗରୀ, ଆବେଗ ଓ ଉଚ୍ଛ୍ୱାସ, କଳା ପ୍ରାଣତା ଓ ସୌନ୍ଦର୍ଯ୍ୟବୋଧ । ଏସବୁ ମିଶି ତିଆରି କରିଥାନ୍ତି ତା'ର ସାଂସ୍କୃତିକ ମୂଲ୍ୟବୋଧ । ଗୋଟିଏ ସୂତ୍ରରେ ଗୁନ୍ଥା ମାଳା ଭଳି । ଏସବୁକୁ ପରସ୍ପରଠାରୁ ବିଚ୍ଛିନ୍ନ କରିବା କଷ୍ଟସାଧ୍ୟ । ତେବେ ସେଇ ସୂତ୍ରଟି ହେଉଚି ଜୀବନ ବାଦ । ଏଇ ଜୀବନବାଦୀ ଦର୍ଶନ ସବୁ ଦୁର୍ଭୋଗ ପ୍ରତି ପିଠି ଘୂରେଇ ଦେଇ ଆଦିବାସୀକୁ ଉର୍ଣ୍ଣନାଭ ଭଳି ନିଜ ନାଭିରୁ ନିତ୍ୟ ନୂତନ ଆନନ୍ଦକୁ ଜନ୍ମଦେଇ

ଜୀବନଯାପନର କଳା ଶିଖାଏ । ଏଥିରେ ତାକୁ ସହଯୋଗର ହତାବଢ଼ାଇ ଥାଏ ତା'ର ଢେମ୍‌ସା ଓ ଢାପ, ନାଟ ଓ ଗୀତ, ସଲପ ଓ ମହୁଲୀ । ସୁତରାଂ ଆନନ୍ଦ ଠାରୁ କେହି ତାକୁ ନିର୍ବାସିତ କରିପାରେନି । ଜଗତୀକରଣ ଓ ଉଦାରୀକରଣ ଗ୍ରସ୍ତ ଭାରତବର୍ଷର ଶାସକ ଶୋଷକଶ୍ରେଣୀ ବସ୍ତୁଗତ ସ୍ତରରେ ନ ହେଲେ ମଧ୍ୟ ମନସ୍ତାତ୍ତ୍ୱିକ ସ୍ତରରେ ନିଶ୍ଚିତ ପରାଜୟ ବରଣ କରେ ।

ଶିକ୍ଷାର ଅଭାବ ସକାଶେ ବାସ୍ତବ ଅର୍ଥରେ ଆଦିବାସୀକୁ ବୈଜ୍ଞାନିକ ଚେତନାର ଅଧିକାରୀ ବା ହେତୁବାଦୀ କୁହାଯାଇ ପାରିବ ନାହିଁ । କିନ୍ତୁ ସେ ବୁଝିପାରିବା ଭଳି ଏକ କାର୍ଯ୍ୟକାରଣ ସମ୍ପର୍କର ସେ ବିଶ୍ୱାସୀ । ଏହାର ଭିତ୍ତି ତା'ର ଏଯାବତ୍ ଲବ୍ଧ ଜ୍ଞାନ ଓ ଚେତନା । ପାରମ୍ପରିକ ଜ୍ଞାନ ଓ ଚେତନା ସହ ଫେଣ୍ଟାଫେଣ୍ଟି ହୋଇ ଆପଣାର ଅଭିଜ୍ଞତା ଓ ବହିରାଗତ ସଂସ୍କୃତି ସହ ଆନ୍ତଃ ପ୍ରକ୍ରିୟାରୁ ଲବ୍ଧ ଧାରଣାକୁ ନେଇ ସେ କାର୍ଯ୍ୟକାରଣ ସଂପର୍କରେ ଏକ ନିଆରା ସିଡ଼ି ତିଆରି କରେ । ସେହି ଅନୁସାରେ ସମସ୍ତ ଜଟିଳ ସାମାଜିକ ଅର୍ଥନୈତିକ ରାଜନୈତିକ ଓ ପରିବେଶଗତ ପ୍ରଶ୍ନର ଉତ୍ତର ଖୋଜିବସେ । ଗୋଟିଏ କୋଣରୁ ଦେଖିଲେ ତା'ର ବିଶ୍ୱ ଦୃଷ୍ଟିଭଙ୍ଗୀ ସବୁଜ ଆନ୍ଦୋଳନର ଦୃଷ୍ଟିଭଙ୍ଗୀ ସହ ସାମ୍ୟ ରଖେ । ସେ ଯୁକ୍ତିକରେ ଯେ ସୃଷ୍ଟିର ଆରମ୍ଭ ଓ ଶେଷ ସେଇ ପ୍ରକୃତି । ସୂର୍ଯ୍ୟ ବା ଧର୍ମ ଦେବତାଠାରୁ ଧରତନୀ, ଗଛବୃଛଠୁ ମଣିଷ, କୀଟପତଙ୍ଗଠୁ ମହାଶୂନ୍ୟ ପ୍ରକୃତିର ସକଳ ବସ୍ତୁ ହେଉଛନ୍ତି ଜଣେ ଜଣେ ଦେବତା । ପ୍ରତି ଦୁଃଖ ଓ ସୁଖର ମଧ୍ୟ ଜଣେଜଣେ ମାଲିକ ଅଛନ୍ତି । ଦୁଃଖର ମାଲିକ ଜଣେ ମାତା, ସୁଖର ମାଲିକ ଜଣେ ଦେଓ ବା ଦେବତା । ଦୁଃଖ ବିମୋଚନ ପାଇଁ ମାତା ପାଖରେ ଗୁରୁମାୟୀର ଆକୁତି ହେଉ ବା ଦେବତା ପାଖେ ଜାନି ବା ପୂଜାରିର ପ୍ରଶଂସାର ମନ୍ତ୍ରପାଠ ହେଉ, ମା' ବା ବାପା ପାଖେ ଶିଶୁର ଆକୁଳ ଆବେଦନ ଭଳି ସେଥିରେ ପ୍ରକାଶ ପାଉଥାଏ ଆଦିମ ମଣିଷର ସରଳ ବିଚାର ।

ଲାଂଜିଆ ସୌରାଙ୍କ ଦୃଷ୍ଟିରେ ପ୍ରକୃତି ଯେ ଖାଲି ଆମର ମାଆ, ସେତିକି ନୁହେଁ, ପ୍ରତ୍ୟେକ ନାରୀ ବା ସମୁଦାୟ ମାତୃଜାତି ଏହି ପ୍ରକୃତିର ପ୍ରତିନିଧି । ସୁତରାଂ ଆମର ମାଆ ଭଳି । ନିଜ ସ୍ତ୍ରୀ ସମେତ ସମସ୍ତ ସ୍ତ୍ରୀ ହେଉଛନ୍ତି ସେହି ମାତୃପ୍ରତିମ ପ୍ରକୃତିର ଅଂଶ । ତେଣୁ ତା' କୋଳରେ ଆମେ ସର୍ବାଧିକ ନିରାପଦ । "ଆମେ ଜନ୍ମ ନେଉ ଧରିତ୍ରୀ ମାତା କୋଳରେ, ଲାଳିତ ହେଉ ନିଜ ମାଆର କୋଢ଼ରେ, ଯୌବନରେ ଆଶ୍ରା ନେଉ ନିଜ ସ୍ତ୍ରୀର କୋଳରେ, ପୁଣି ବାର୍ଦ୍ଧକ୍ୟରେ ଫେରିଯାଉଁ ସେଇ ଧରିତ୍ରୀ

ମାଆର କୋଳକୁ ।" (ଗୋପୀ ମହାନ୍ତିଙ୍କ 'ଟଡ଼ପା') ସେଇଥିପାଇଁ ବଣ୍ଡା ଜନଜାତିର ସ୍ତ୍ରୀମାନେ ସବୁବେଳେ ଆପଣା ସ୍ୱାମୀଠାରୁ ବୟସରେ ବଡ଼ । ସେମାନଙ୍କ ଦୃଷ୍ଟିରେ ନାରୀ ମାତ୍ରେଇ ମାତୃଜାତି । ଧରିତ୍ରୀ ପେନୁ ବା ଧରତନୀ ମାଆର ପ୍ରତିରୂପ ।

ସୁତରାଂ ଆଦିବାସୀ ସଂସ୍କୃତିରେ ନାରୀ ପୁରୁଷ ଯୌନସମ୍ପର୍କ ବ୍ୟାପାରରେ ଯେଉଁ ମୂଲ୍ୟବୋଧ ପ୍ରତିଷ୍ଠିତ, ତା' ହେଉଛି ନାରୀର ପ୍ରାଥମିକତା । କୋଣ୍ଡାଦୋରା ଜାତିର ଜଣେ ମୁରବୀ ସ୍ଥାନୀୟ ବ୍ୟକ୍ତି ହେଉଛନ୍ତି ବାଲରାଜୁ ଗେମେଲ । ସେ ମଧ୍ୟ ମାଲକାନ୍‌ଗିରି ଜିଲ୍ଲା ଆଦିବାସୀସଂଘର ସଭାପତି । ସେ କହନ୍ତି ଜଣେ ପୁରୁଷ ଯଦି ବିବାହ ବାହାରେ କୌଣସି ନାରୀ ସହ ଯୌନ ସଂପର୍କ ରଖେ, ତେବେ ତାକୁ ଦ୍ୱିତୀୟା ବା ସାନ୍‌ଲୀ ରୂପେ ଗ୍ରହଣ କରିବାକୁ ପଡ଼ିବ ଏବଂ ଏଥିପାଇଁ ପ୍ରଥମା ପତ୍ନୀର ଅନୁମତି ନେବାକୁ ହେବ । ସ୍ତ୍ରୀର ବିନାନୁମତିରେ ତା' ସହ ଯୌନସଂପର୍କ ରଖାଯାଏ ନାହିଁ । ରଖାଗଲେ ତାକୁ କୁହାଯାଏ ନାରୀ ପ୍ରତି ଦୁର୍ବ୍ୟବହାର । ଏଭଳି ଅପବ୍ୟବହାର କରୁଥିବା ବଂଶକୁ କଳଙ୍କିତ ବଂଶ ବୋଲି ମନେ କରାଯାଏ । ସେ ଘରେ କେହି ଝିଅ ଦିଅନ୍ତି ନାହିଁ କି ନିଅନ୍ତି ନାହିଁ ।

ନାରୀ ସ୍ୱାଧୀନତାର ଅନ୍ୟଏକ ପରିପ୍ରକାଶ ହେଉଛି ଝୋଲା ପ୍ରଥା ଓ ପଇସା ମୁଣ୍ଡି ବିବାହ । ପଇସାମୁଣ୍ଡି ଏଭଳି ଏକ ବିବାହ ପ୍ରଥା ଯେଉଁଥିରେ ଯେ କୌଣସି ମନୋମତ ପୁରୁଷ ଘରେ ସ୍ତ୍ରୀଟିଏ ଯାଇ ରହିପାରେ ଓ ନିଜ ଇଚ୍ଛା ପ୍ରକାଶ କରିପାରେ । ତାକୁ କେହି ସେ ଘରୁ ଯିବାକୁ କହନ୍ତି ନାହିଁ । ନିଜ କାମ ଜରିଆରେ ଶାଶୁ, ଶଶୁର ସପତ୍ନୀ ଓ ପୁରୁଷଟିର ମନ ନେଇପାରିଲେ ସେ । ସେ ଘରର ବୋହୂ ହୋଇ ରହିଯାଏ । ଝୋଲା ପ୍ରଥା ହେଉଚି ନାରୀ ପାଇଁ ପୁରୁଷ ଦେଉଥିବା ପ୍ରତୀକାତ୍ମକ ଅର୍ଥ ବା ଓଲଟ ଯୌତୁକ । ଏଇ ବ୍ୟବସ୍ଥା ଅନୁସାରେ ମନୋନୀତ ଝିଅ ପାଇଁ ଝିଅର ବାପାଙ୍କୁ ଜନ୍ମରୁ ବିବାହ ଯାବତ୍ ତା' ଲାଗି ହୋଇଥିବା ଖର୍ଚ୍ଚର ଏକ ଅଂଶ ପୁରୁଷ ପକ୍ଷକୁ ଦେବାକୁ ହୁଏ । ପୁଣି ବିବାହ ପରେ ଯେ କୌଣସି କାରଣରୁ ପୁରୁଷ ଯଦି ଝିଅର ନାପସନ୍ଦ ହେଲା, ତେବେ ସେ ତାକୁ ଛାଡ଼ିଦେଇ ପଂଚାୟତ ନିଷ୍ପତ୍ତି ଅନୁଯାୟୀ ଅନ୍ୟତ୍ର ବିଭା ହୋଇଯାଇପାରେ । ଅବଶ୍ୟ ଏ କ୍ଷେତ୍ରରେ ଝୋଲା ଟଙ୍କାର ଦୁଇଗୁଣ ଅର୍ଥ ଜୋରିମନା ସ୍ୱରୂପ ତାକୁ ଅର୍ଥାତ୍ ପୁଅ ପକ୍ଷକୁ ଫେରାଇ ଦେବାକୁ ପଡ଼େ । ତେବେ ଶାଶୁଘରୁ ଚାଲି ଆସିଥିବା ଝିଅଟି ଅନ୍ୟତ୍ର ବିଭା ନ ହେଲାଯାଏ ଜୋରିମାନା ଦେବାକୁ ପଡ଼ି ନଥାଏ । ଏ ସଂପର୍କରେ ବରଘରର କୌଣସି ପ୍ରକାର ନିର୍ଯାତନା ତାକୁ ସାମ୍ନା କରିବାକୁ ପଡ଼ି ନଥାଏ ।

ନାରୀ ସ୍ୱାଧୀନତାର ଅନ୍ୟଏକ ଦିଗ ହେଉଚି ବହିରାଗତ କ୍ଷମତାଶୀଳ ଜମାନ ବା ସରକାରୀ ଅଧିକାରୀମାନଙ୍କ ଦ୍ୱାରା ଲାଞ୍ଛିତା ବା ଯୌନ ଶୋଷିତା ନାରୀର ସାମାଜିକ ସ୍ଥିତି । ସାଧାରଣତଃ ବଡ଼ବଡ଼ ପ୍ରକଳ୍ପରେ ନିଯୁକ୍ତ ହୋଇ କୁଲି ରୂପେ କାମ କରୁଥିବା ନାରୀମାନେ ଇଂଜିନିଅର ଓ ଛୋଟବଡ଼ ଅଧିକାରୀଙ୍କ ଯୌନ ଶୋଷଣର ଶୀକାର ହୋଇଥାନ୍ତି । ଏହି ଶୋଷଣର ଏକ ନାମ ମଧ୍ୟ ତିଆରି ହୋଇଯାଇଥିଲା - "ରାତି ଡିଉଟି" । ସ୍ଥାନୀୟ ଆଦିବାସୀ ଗୋଷ୍ଠୀର ସଂପୂର୍ଣ୍ଣ ଜ୍ଞାତସାରରେ ଜବରଦସ୍ତ ଏଇ ଶୋଷଣ ଚାଲିଥିଲା । ଏଭଳି ଶତକଡ଼ା ୯୯ଭାଗ ମହିଳା ପ୍ରକଳ୍ପ ଶେଷ ହେବାପରେ ପରିତ୍ୟକ୍ତା ହୋଇ ପଡ଼ି ରହିଲେ । ନିଃସହାୟ ହୋଇ ଗୋଷ୍ଠୀ କେବଳ ଦ୍ରଷ୍ଟା ହୋଇ ରହିଯାଇଥିବାରୁ ଓ ଏହାର ପ୍ରତିକାର ପାଇଁ କିଛି ବିଧାନ ଦେଇ ପାରି ନଥିବାରୁ ଏଭଳି ସଂପର୍କରୁ ଜାତ ସନ୍ତାନମାନଙ୍କୁ ମଧ୍ୟ ଗ୍ରହଣ କରିନେଲା । ଆଦିବାସୀ ମାଆଟି ମଧ୍ୟ ଦୁଃଖେ କଷ୍ଟେ ନିଜର ପରିବାର ପ୍ରତିପୋଷଣ ସିନା କଲା, ସମାଜର ନିନ୍ଦା ପାଇଲା ନାହିଁ । ସନ୍ତାନକୁ ତ୍ୟାଗ କଲାନାହିଁ, କି ନିଜେ ଆତ୍ମହତ୍ୟା କଲାନାହିଁ । ସେତେବେଳେ ଆଜିଭଳି ସମୟ ନଥିବାରୁ ପ୍ରତିବାଦ / ପ୍ରତିରୋଧ ମଧ୍ୟ ହୋଇପାରିଲା ନାହିଁ । ଏହି କୁମାରୀ ମାତା ଓ ଗନ୍ଧର୍ବ ସନ୍ତାନମାନଙ୍କ କଲୋନି ବା ସାହି ସମସ୍ତ ପ୍ରକଳ୍ପ ଏରିଆରେ ଦେଖିବାକୁ ମିଳେ । (ଯଥା - ମାଛକୁଣ୍ଡ, ଚିତ୍ରକୋଣ୍ଡା, କୋଲାବ) ବୁଡ଼ିଅଞ୍ଚଳ ଆନ୍ଦୋଳନର ପ୍ରଭାବରେ କେବଳ ଇନ୍ଦ୍ରାବତୀରେ ଏହାର ବ୍ୟାପକ ପୁନରାବୃତ୍ତି ହୋଇନାହିଁ ।

ସଂସ୍କୃତିର ଏକ ଅବିଚ୍ଛିନ୍ନ ଓ ଅପରିହାର୍ଯ୍ୟ ଅଙ୍ଗ ହେଉଚି ଭାଷା । ସଉରା, କନ୍ଧ ଓ ସାନ୍ତାଳୀ ଭଳି କିଛି ଭାଷାର ଲିପି ରହିଛି । ଯଥା : ମାତ୍ତାର୍‌ବନ୍, କୁଇ ଓ ଆଲ୍‌ଚିକି । କିନ୍ତୁ ଯେଉଁସବୁ ଭାଷା ଏଯାବତ୍ ଲିପିବିହୀନ ସେସବୁ ବିସ୍ଥାପନଗତ ସଂଘାତ ଅର୍ଥାତ୍ ଆପଣା ଭାଷାଗୋଷ୍ଠୀଠୁ ବିଚ୍ଛିନ୍ନ ହେବାଫଳରେ ଏବଂ ଅନ୍ୟ ଭାଷାଭାଷୀଗୋଷ୍ଠୀଙ୍କ ସହ ସହାବସ୍ଥାନ ଫଳରେ କ୍ରମଶଃ ଦୁର୍ବଳ ହେବାରେ ଲାଗିଛି । ଡିଡୋୟୀ, ତଳବଣ୍ଡା, ଶିକ୍ଷିତ କୋୟା ଓ ପରଜା, ଭୋତରା ଓ ଭୂମେୟାମାନଙ୍କ ଭିତରେ ନିଜ ଭାଷା ପ୍ରତି ଆଦର ବା ଟାଣ କମିବାରେ ଲାଗିଛି । ସେ ଜାଗା ଦଖଲ କରୁଛନ୍ତି ଦେଶିଆ ଓ ଓଡ଼ିଆ । ଆଉ ମଧ୍ୟ ସବୁ ଭାଷାରେ ବହିରାଗତ ରିଫ୍ୟୁଜିମାନଙ୍କ ବଙ୍ଗଳାଭାଷା ଓ ଛତିଶଗଡୀ ତଥା ତେଲୁଗୁଭାଷାର ପ୍ରଭାବ ଦେଖିବାକୁ ମିଳୁଛି । ତେଣୁ ଲିପି ନଥିବା ଭାଷା କେତେଦୂର ତିଷ୍ଠି ରହିବ ତାହା ଆଜି ପ୍ରଶ୍ନବାଚୀ ହୋଇ ଦେଖାଦେଇଛି ।

ସାଂସ୍କୃତିକ ମୂଲ୍ୟବୋଧର ଅନ୍ୟଏକ ବିଭାବ ହେଉଛି ଖାଦ୍ୟ ପ୍ରତି ଶ୍ରଦ୍ଧା ବା ଖାଦ୍ୟାଭ୍ୟାସ । ମାଣ୍ଡିଆ ଜାଉ ଥିଲା ଆଦିବାସୀର ଜୀବନ । ତା' ସାଙ୍ଗକୁ ମକା, ସୁଆଁ, କାଙ୍ଗୁ, ମହୁଲଗୁଣ୍ଡ । ଅଳସୀ, ରାଶି ଓ ଟୋଲା ତେଲ ଥିଲା ଖାଦ୍ୟ ଉପଯୋଗୀ ତେଲ । ଦେହରେ ସେ ଲଗାଉଥିଲା ଜଡ଼ା କିମ୍ବା କରଂଜ ତେଲ । କିନ୍ତୁ ଧୀରେ ଧୀରେ ମଦ ଶିଳ୍ପ ମହୁଲକୁ ଦଖଲ କରିନେବା ଫଳରେ ଆଦିବାସୀର ଖାଦ୍ୟ ତାଲିକାରୁ ତାହା କଟିଗଲା । ବିସ୍କୁଟ୍ ଶିଳ୍ପ ଦଖଲ କରିନେଲା ମାଣ୍ଡିଆ । ବିପିଏଲ୍ ଚାଉଳ ସଂପୂର୍ଣ୍ଣ ଭାବେ ଆଦିବାସୀର ଖାଦ୍ୟାଭ୍ୟାସକୁ ବଦଳାଇ ଦେଲା, ଯାହାଫଳରେ ପର୍ବପର୍ବାଣୀ ପୂଜା ଉତ୍ସବ ଇତ୍ୟାଦିର ବିଧିବିଧାନ ମଧ୍ୟ ବଦଳିଗଲା । ସେ ଉତ୍ପନ୍ନ କରୁଥିବା ପ୍ରାୟ ୪୦ପ୍ରକାର କ୍ଷୁଦ୍ର ଦାନା ଶସ୍ୟ ଉତ୍ପାଦନ ପ୍ରାୟ ୭୫% ବ୍ୟାହତ ହୋଇଛି ।

ଏସବୁ ଚୋଟ ସହି ତା'ର ସଂସ୍କୃତିର ମୌଳିକତା କେତେଦୂର ବ୍ୟାହତ ହୋଇଛି ତାହା ଅଧ୍ୟୟନ କରିବାର ସମୟ ଆସିଛି । କାରଣ ଏସବୁ ବିଭିନ୍ନ ବାହାରିଆ ପ୍ରଭାବ ସକାଶେ ତା'ର ଗୋଷ୍ଠୀ ଜୀବନର ଟାଣପଣ ମଧ୍ୟ କମୁଛି । ଏସବୁକୁ ନେଇ ମୂଲ୍ୟବୋଧର ଏକ ନୂଆ ଶିକୁଳି ତିଆରି ହେବାରେ ଲାଗିଛି । ଆଜିର ଯୁବସମାଜକର୍ମୀ ଆଦିବାସୀଗୋଷ୍ଠୀର ଆଗୁଆ ସଚେତନ ଉପାଦାନ ଓ ଗବେଷକମାନେ ଏହାକୁ ଠିକ୍ ଭାବେ ବିଶ୍ଳେଷଣ କରିବା ଓ ଉପସଂହାରରେ ପହଂଚିବା ଅତ୍ୟନ୍ତ ଜରୁରି ।



# ସଂଘର୍ଷରେ ଆଦିବାସୀ ଅର୍ଥନୀତି ଓ ଲୋକସଂସ୍କୃତି

ମଧ୍ୟପ୍ରଦେଶର ବସ୍ତର ଅଞ୍ଚଳ, ଓଡ଼ିଶାର ଅବିଭକ୍ତ କୋରାପୁଟ ଓ ଗଜପତି, ଆନ୍ଧ୍ରପ୍ରଦେଶର ପୂର୍ବଗୋଦାବରୀ ଏବଂ ମହାରାଷ୍ଟ୍ରର ଗଡ଼ଚିରୋଲିକୁ ନେଇ ବିସ୍ତୀର୍ଣ୍ଣ ଦଣ୍ଡକାରଣ୍ୟ ଅଞ୍ଚଳ । ଏହି ବିରାଟ ଅରଣ୍ୟ ଅଂଚଳକୁ ବ୍ରିଟିଶ୍ ଅମଳରେ ଏଜେନ୍‌ସୀ ଅଞ୍ଚଳ ବୋଲି କୁହାଯାଉଥିଲା । ଏଠାରେ ମୁଖ୍ୟତଃ ପ୍ରାୟ ୩୦ ପ୍ରକାର ଆଦିବାସୀ ଓ ଗଣତିରେ ୬୧ ଜନଜାତି ବସବାସ କରନ୍ତି । ଏମାନଙ୍କର ସଂଖ୍ୟା ଦୁଇକୋଟିରୁ ଅଧିକ ହେବ । ଏମାନଙ୍କ ମଧ୍ୟରେ କନ୍ଧ, ଡଙ୍ଗ୍ରିଆ କନ୍ଧ, ଗଣ୍ଡ, ବଣ୍ଡା, ପରଜା, କୋୟା, ଡିଡୋୟୀ, ସଉରା, କଟିଆ, ମାଟିଆ, ଦୁରୁଆ, ଧାରୁଆ, ହାଲବୀ, ଭତରା, ଗଣ୍ଡିଆ, କୋଣ୍ଡାଡୋରା ଓ କଣ୍ଡାରେଡ଼ି ମାନେ ଅଧିକ ଆଦିମ । ଏହିସବୁ ଆଦିବାସୀ ଶିକାର, ଫଳମୂଳ ସଂଗ୍ରହ ଓ ବନ୍ୟଜାତ ଦ୍ରବ୍ୟସଂଗ୍ରହ ପର୍ଯ୍ୟାୟରୁ ଉନ୍ନୀତ ହୋଇ ସ୍ଥାୟୀ କୃଷିକର୍ମ ଆରମ୍ଭ କରିଥିଲେ ହେଁ ବିଂଶ ଶତାବ୍ଦୀର ଶେଷ ୫ ଦଶକ ଓ ଏକବିଂଶ ଶତାବ୍ଦୀର ପ୍ରଥମ ଦୁଇଦଶକ ହେଲା କୃଷି ଅର୍ଥନୀତି ହିଁ ଏମାନଙ୍କର ଜୀବିକାର ମୁଖ୍ୟ ଆଧାର ପାଲଟିଛି । ଅବଶ୍ୟ ଠିକାଦାର ଓ ଅସାଧୁ ଜଙ୍ଗଲ କର୍ମଚାରୀମାନଙ୍କର ମିଳିତ ଆକ୍ରମଣରେ ଜଙ୍ଗଲ ଅବକ୍ଷୟ ସଂଗେ ସଂଗେ ପୁରାତନ ଶିକାର ଓ ଖାଦ୍ୟସଂଗ୍ରହ ଅର୍ଥନୀତି ଧୀରେ ଧୀରେ ଏକ ଅବହେଳିତ ଗୌଣସ୍ଥାନକୁ ଚାଲିଯାଇଛି ଓ ତା'ର ସ୍ଥାନ ଅଧିକାର କରିଛି ସାମନ୍ତବାଦୀ କୃଷି ଅର୍ଥନୀତି । ପୁଣି ଜଙ୍ଗଲଜମିର ଅବାଧ ଦଖଲ ପାଇଁ ନିୟମିତ ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ରର ଧକ୍କା ଫଳରେ ଅର୍ଥାତ୍ ୯ମ ଦଶକରେ ପ୍ରବର୍ତ୍ତିତ ଜଗତୀକରଣର ଆକ୍ରମଣ ଫଳରେ ଆଦିବାସୀର ଦଖଲରେ ଥିବା ସମସ୍ତ ଜଙ୍ଗଲ ଜମି ଲୁଟ୍ ହେବାକୁ ବସିଛି । ଫଳରେ ତା'ର ଭାତହାଣ୍ଡିରେ ଧୂଳି ଫୋପଡ଼ା ଚାଲିଛି । ତଥାପି କନ୍ଧ, ପରଜା, କୋୟା, ସଉରା, ଭତୋଡ଼ା, ଭୂମିଆ, ଗଉଡ଼ ଓ ରଣାମାନେ ଜମି ଚାଷରେ ଅବିଭକ୍ତ କୋରାପୁଟ୍ ଜିଲ୍ଲାରେ ଅଗ୍ରଣୀ ଅଛନ୍ତି ।

ଗତ ପ୍ରାୟ ଦେଢ଼ ଶତାବ୍ଦୀ ଧରି ଘାଟୀ ଡିଆଁମାନଙ୍କର କ୍ରମାଗତ ପ୍ରବେଶ ଓ ବେପାର, ମଦ ବିକ୍ରି ଏବଂ ସାହୁକାରୀ ଋଣଚକ୍ରର ପ୍ରବର୍ତ୍ତନ ଫଳରେ କ୍ରମଶଃ ସେମାନଙ୍କ ହାତରୁ ସମସ୍ତ ଅଉଲ ନମ୍ବର ଜମି ସାହୁକାରମାନଙ୍କ ହାତକୁ ଚାଲିଯିବାକୁ ଲାଗିଲା । ବିଶେଷକରି ଗତ ଶତାବ୍ଦୀର ଶେଷଭାଗ ଓ ଏ ଶତାବ୍ଦୀର ପ୍ରଥମ ପାଦରେ ଏହି ଜମି ହସ୍ତାନ୍ତର ଏତେ ପ୍ରବଳ ବେଗରେ ଘଟିବାକୁ ଲାଗିଲା ଯେ, ତତ୍କାଳୀନ ବ୍ରିଟିଶ୍ ସରକାର ବ୍ୟସ୍ତ ଓ ବାଧ ହୋଇ ଏଜେନ୍‌ସୀ ଏରିଆରେ ଆଦିବାସୀମାନଙ୍କ ଜମି ହସ୍ତାନ୍ତରୀକରଣ ନିରୋଧ ପାଇଁ ୧୯୧୭ରେ ଏକ ଆଇନ୍ ପ୍ରଣୟନ କଲେ । ପୁଣିଥରେ ଆଇନ୍ ସଂଶୋଧିତ, ପ୍ରଣୀତ ଓ ବଳବତ୍ତର ହେଲା ୧୯୫୬ରେ । ତା' ପଛରେ ତେଲେଙ୍ଗାନା କୃଷକ ଆନ୍ଦୋଳନ ତଥା ବିଶ୍ୱନାଥ ପଟ୍ଟନାୟକଙ୍କ କୁଜେନ୍ଦ୍ରି ଭୂ-ଆନ୍ଦୋଳନ ପ୍ରଭାବ ମୁଖ୍ୟତଃ କାର୍ଯ୍ୟ କରିଥିଲା । ଶ୍ରୀକାକୁଲମ୍ ଓ ନକ୍ସାଲ୍‌ବାରୀ କୃଷକ ଆନ୍ଦୋଳନ ଓ ପରବର୍ତ୍ତୀ ବିସ୍ଥାପନ ବିରୋଧ ଆନ୍ଦୋଳନ ପ୍ରଭାବରେ ପୁଣିଥରେ ସେ ଆଇନ୍ ସପ୍ତମ ଓ ନବମ ଦଶକରେ ଏବଂ ୨୦୦୪ରେ ଆଉଥରେ ସଂଶୋଧିତ ହୋଇଚି ।

ବ୍ରିଟିଶ୍ ଅମଳରେ ଜଙ୍ଗଲ ଲୁଟ୍‌କୁ ପରିଚାଳନା କରିବା ପାଇଁ ପ୍ରଣୀତ ହୋଇଥିଲା ୧୮୬୪ ଜଙ୍ଗଲ ଆଇନ୍ ଓ ଗଢ଼ା ହୋଇଥିଲା ଜଙ୍ଗଲ ବିଭାଗ । ବ୍ରିଟିଶ୍ ଶାସକମାନେ କଲମ ଗାରକେ ଆଦିବାସୀର ପୁରୁଷ ପୁରୁଷ ବ୍ୟାପୀ ରହିଆସିଥିବା ଅଧିକାରକୁ ଛଡ଼େଇ ନେଇ ରେଳଲାଇନ୍ ନିର୍ମାଣ ପାଇଁ ଓ ବିଦେଶ ବଜାରରେ ବେପାରପାଇଁ ମନଇଚ୍ଛା ଜମି ଛଡ଼େଇ ନେଇ ଓ ଜଙ୍ଗଲ ଧ୍ୱଂସକରି ଟିମ୍ବର ସଂଗ୍ରହ କରିଥିଲେ । ସେଇ ପନ୍ଥା ଚାଲିଲା ୧୯୪୭ ପରର ସ୍ୱାଧୀନଭାରତରେ । କୂପ୍ (Coup), ଲିଜ୍ (lease) କରତ କଳ ଓ କାଠ ଠିକାଦାରମାନଙ୍କ ଜରିଆରେ ଏହି ଜଙ୍ଗଲ ଧ୍ୱଂସ ପୂରା ଦମ୍‌ରେ ଆଗେଇ ଚାଲିଲା । ଅଥଚ ବିଭିନ୍ନ ବିକାଶ ଯୋଜନା ନାମରେ ଆଦିବାସୀମାନେ ସେମାନଙ୍କ ଗାଁଗଣ୍ଡାରୁ ବଣପଶୁ ଭଳି ତଡ଼ା ହେଲେ । ଜ୍ଞାନପୀଠ ପୁରସ୍କାର ବିଜୟିନୀ ମହେଶ୍ୱତା ଦେବୀଙ୍କ ଭାଷାରେ, "ଯେତେବେଳେ ବି ଯେଉଁଠି ଗୋଟିଏ ବୃହତ୍ ନଦୀବନ୍ଧ ବା ବିଜୁଳି ଉତ୍ପାଦନ ଯୋଜନା କାର୍ଯ୍ୟକାରୀ ହୁଏ, ସେତେବେଳେ ଆଦିବାସୀର ଜମି ହିଁ ବଳିପଡ଼େ । ସେମାନଙ୍କୁ କିନ୍ତୁ ଜମି ବଦଳରେ ଜମି ମିଳେନି । ସାମାନ୍ୟ କ୍ଷତିପୂରଣ ମାଧ୍ୟମରେ ସେମାନଙ୍କୁ ସନ୍ତୁଷ୍ଟ କରାଯାଏ । ଅଥଚ ଆଦିବାସୀମାନେ କେବେ ବି ଜମି ବା ଜଙ୍ଗଲ ବା ଜଳକୁ ନଷ୍ଟକରି ନାହାନ୍ତି । 'ସ୍ୱାଧୀନ ଭାରତ'ରେ କେତେକେତେ ଆଇନ୍ ହୋଇଛି ଓ

କାଳଗର୍ଭରେ ଚଳି ଯାଇଛି । କିନ୍ତୁ ଯେତେବେଳେ କିଛି ନୂଆ ପ୍ରକଳ୍ପ କରାଯାଇଛି ତା'ର ଅର୍ଥ ହୋଇଛି ଆଦିବାସୀ ଜମି ଲୁଟ୍ ହେବା । ତେଣୁ ଆଦିବାସୀର ବଞ୍ଚିବାର ପରିସୀମା ଏବେ ସଙ୍କୁଚିତ ।" (ଏକ ସାକ୍ଷାତ୍‌କାରରୁ ସଂଗୃହୀତ)

**ଆକ୍ରମଣର ପୃଷ୍ଠଭୂମି :**

ଗୋଟିଏ ଲୋକସଂସ୍କୃତି ଯେତେ ସୁସଭ୍ୟ ଓ ବିକଶିତ ହେଉଥାଏ - ବିଜ୍ଞାନର ଯେତେ ନିକଟତର ହେଉଥାଏ, ତା'ର କାବ୍ୟ ବିଭାବ ସେତେ ହ୍ରାସ ପାଏ । ସେଥିରେ ସାମୂହିକତାର ଉପାଦାନ ହ୍ରାସ ପାଇ ବ୍ୟକ୍ତିବାଦୀତା ଓ ବ୍ୟକ୍ତିଗତ ସାଧନାର ଉପାଦାନ ବୃଦ୍ଧିପାଏ । ଏପରିକି କେତେକ ସମାଲୋଚକଙ୍କ ଭାଷାରେ ଉନ୍ନତ ସଭ୍ୟତାମାନେ ଧୀରେ ଧୀରେ କବିତା ବା କଳାର ମୃତ୍ୟୁ ଘଟାଇ ଚାଲିଥାନ୍ତି । ଫରାସୀ ଚିତ୍ରକର ମନ୍ଦ୍ରିୟାଁ ଯୁକ୍ତି ବଳରେ ଦର୍ଶାଇ ଥିଲେ ଯେ, "ହୁଏତ ଏପରି ଦିନ ଆସିପାରେ ଯେତେବେଳେ 'କଳା'ର କିଛି ଭୂମିକା ରହିବ ନାହିଁ ।" ତେଣୁ ତାହା ଧୀରେ ଧୀରେ ଅପ୍ରାସଙ୍ଗିକ ହୋଇଉଠିବ । ଏହାର ସ୍ଥାନ ନେବ ବାସ୍ତବତା । ତାଙ୍କର ଯୁକ୍ତି ହେଉଛି ମଣିଷ ଓ ତା' ଚାରି ପାର୍ଶ୍ୱର ଜଗତ ଭିତରେ ଥିବା ଅସଂଗତି, ବୈଷମ୍ୟ ଓ ଅନୈକ୍ୟକୁ ଦୂରକରି ଏକ ଅପୂର୍ବ ଆତ୍ମିକ ଐକ୍ୟ ପ୍ରତିଷ୍ଠା ହେଉଛି କଳାର ଲକ୍ଷ୍ୟ । ଏହି ଲକ୍ଷ୍ୟକୁ ଯେତେବେଳେ 'ବାସ୍ତବତା' ପୂରଣ କରିଦେବ ସେତେବେଳେ କଳାର କୌଣସି ଆବେଦନ ରହିବ ନାହିଁ । ଏହି ବାସ୍ତବତାର ଅର୍ଥକୁ ଭାରତୀୟ ନନ୍ଦନତତ୍ତ୍ୱ ଅନୁଯାୟୀ କୁହାଯାଇ ପାରେ 'ସତ୍ୟ ଶିବ ସୁନ୍ଦର' - ଅର୍ଥାତ୍ ସମସ୍ତଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ବିଜ୍ଞାନର ବ୍ୟବହାର ଏବଂ ସେହି କ୍ରମରେ ଏକ ସୁନ୍ଦର ସୃଷ୍ଟିର ନିର୍ମାଣ । ସେଥିରେ ନ ଥିବ କିଛି ଅସଂହତି କି ଅନୈକ୍ୟ । ସୁତରାଂ କଳାର କିଛି ସାମାଜିକ ଆବଶ୍ୟକତା ନଥିବ ।

କିନ୍ତୁ କଳା ଯେ ମଣିଷ ଓ ତା' ଚାରିପାଖରେ ଜଗତ ଭିତରେ ଥିବା ଅନୈକ୍ୟକୁ ଦୂରକରି ଏକ ଆତ୍ମିକ ଐକ୍ୟ ପ୍ରତିଷ୍ଠା କରେ ଏଥିରେ ସନ୍ଦେହ ନାହିଁ । ବିକଶିତ ସଭ୍ୟତାର ବାସ୍ତବତା ଏହି ଅନୈକ୍ୟକୁ ଯେ କେବଳ କୃତ୍ରିମ ଭାବେ ଦୂରକରେ ଏବଂ ବାସ୍ତବରେ ଦୂରକରେ ନାହିଁ ଏହା ମଧ୍ୟ ସତ୍ୟ । ଏଇଠି ଆସେ ସାମ୍ରାଜ୍ୟବାଦର ସର୍ବଗ୍ରାସୀ ଭୂମିକା ପ୍ରସଙ୍ଗ । ସାମ୍ରାଜ୍ୟବାଦ ହେଉଛି ପୁଞ୍ଜିବାଦର ସର୍ବୋଚ୍ଚ ରୂପ । ଏହି ପୁଞ୍ଜିବାଦ ଆଧୁନିକ ବିଜ୍ଞାନ ଓ କାରିଗରୀ କୌଶଳର ସମସ୍ତ ନୂଆ ଉଦ୍ଭାବନକୁ

ନିଜର ସେବାରେ ଖଟାଏ । ଜନଗଣଙ୍କ ଦୁଃଖ ବା ଦାରିଦ୍ର୍ୟ ଦୂର କରିବାପାଇଁ ବିଜ୍ଞାନ ଯେଉଁସବୁ ସମ୍ଭାବନାର ଜଗତ୍ ଖୋଲି ଧରେ ତା' ଚାରିପଟେ ପାଚେରୀ ତୋଳି ପୁଞ୍ଜିବାଦ ସେଥିରେ ତାଲା ପକାଇଦିଏ । ସେ ହିଁ ଦୁନିଆରେ "ମୁଦ୍ରା" ବା "ଅର୍ଥ" ପାଲଟେ ପ୍ରଭୁ ବା ନୂଆ ଭଗବାନ । ମଣିଷ ପଛକୁ ପଡ଼ିଯାଏ । ସୁନାର ତରାଜୁରେ ମଣିଷକୁ ଓ ମଣିଷପଣିଆକୁ ତଉଲ କରାଯାଏ । ବଛାବଛା ଦିଗ୍‌ଗଜ ପୁଞ୍ଜିପତିମାନଙ୍କୁ ସେବା ଯୋଗାଇ ଦିଏ ବିଜ୍ଞାନ । ପୁଣି ସାରା ପୃଥିବୀରେ ନିଜର ସାମ୍ରାଜ୍ୟ ବିସ୍ତାର କରିବାପାଇଁ ନୂଆ ନୂଆ ଅସ୍ତ୍ରର ଉଦ୍ଭାବନ ପଛରେ ଓ ଯୁଦ୍ଧର ଆୟୋଜନରେ ବିଜ୍ଞାନର ଉପଯୋଗ କରାଯାଏ । ବିକଶିତ ସଭ୍ୟତାର ଲୋକମାନେ ଏତେ ଅଧିକ ଓ ଏତେ ସୂକ୍ଷ୍ମ ଭାବେ ପୁଞ୍ଜିବାଦ ଦ୍ୱାରା ଶୋଷିତ ହୁଅନ୍ତି ଯେ, ସେମାନଙ୍କ ଦେହ, ମନ, ଚିନ୍ତନ ଓ ଜୀବନଯାପନ, ସବୁକିଛି ମାଲିକମାନଙ୍କ ନିୟନ୍ତ୍ରଣରେ ରହେ । ଫଳରେ କଳା ପାଇଁ ସେମାନଙ୍କୁ ନିଜସ୍ୱ ସମୟ ମିଳେ ଖୁବ୍ କମ୍ । ବିଶ୍ୱ ସାମ୍ରାଜ୍ୟ ଯେଉଁ ମୂଲ୍ୟବୋଧ ପ୍ରତିଷ୍ଠା କରିଦିଏ, ସେଇ ମୂଲ୍ୟବୋଧ ଅନୁସାରେ ନିଜକୁ ତଥା ନିଜ ପରିବାରର ଆଗାମୀ ବଂଶଧରମାନଙ୍କୁ ଗଢୁ ଗଢୁ ସବୁ ସମୟ ଶେଷ ହୋଇଯାଏ । ସୃଜନଶୀଳ ଆତ୍ମାଟିଏ ପାଇଁ ସେଠି ସମୟ ନଥାଏ । ତା'ର ହାହାକାର କାହାରି କାନରେ ପଡ଼େନାହିଁ । ଯାନ୍ତ୍ରିକତାର ମାୟାରେ ଶୋଷିତ ମଣିଷ ନିଜର ଆତ୍ମାକୁ ସୁଦ୍ଧା ବିକ୍ରି କରିବସେ । ଏହି ଭାବେ "କଳା" ମୃତ୍ୟୁ ଆଡ଼କୁ, ବିଲୟ ଆଡ଼କୁ ଆଗେଇ ଚାଲେ । "ଡକ୍ଟର ଫଷ୍ଟସ୍"ମାନେ "ମେଫିଷ୍ଟୋଫିଲିସ୍" ପାଖରେ ଦାସ ହୋଇ ରହନ୍ତି ।

କିନ୍ତୁ ତଥାପି କଳାର ମୃତ୍ୟୁ ହୁଏନାହିଁ । ତାହା ବଂଚିରହେ ବ୍ୟକ୍ତିଗତ ଅଭିବ୍ୟକ୍ତି ରୂପେ ଏତିକିବେଳେ ତା'ର ସାମୂହିକ ଭୂମିକା ସଂକୁଚିତ ହୋଇଯାଇ ବ୍ୟବସାୟିକତାର ରୂପ ନିଏ । ବ୍ୟକ୍ତିଗତ ସାଧନା, ଆବେଗ, ଅନୁଭୂତି ଓ ଅଭିପ୍ରକାଶକୁ ଆଶ୍ରୟ କରି କଳା ବଂଚି ରହେ । ବିକଶିତ ହୁଏ । ତା'ର ଶ୍ରୋତୃମଣ୍ଡଳୀ ମଧ୍ୟ ଅନୁରୂପ ଭାବେ ସଂକୁଚିତ ହୁଅନ୍ତି । କେବେ କେବେ ଦେଶ, କାଳ, ପାତ୍ରର ଊର୍ଦ୍ଧ୍ୱକୁ ଯାଇ ତାହା ସାରା ବିଶ୍ୱର ଶ୍ରୋତୃମଣ୍ଡଳୀ ଖୋଜିବାର ସ୍ପର୍ଦ୍ଧା ମଧ୍ୟ ରଖିପାରେ ଏବଂ ରୋଲିଙ୍ଗ, ଅମିଶ ପଟେଲ ଓ ଚେତନ ଭଗତ୍‌ମାନଙ୍କ ଭଳି ଲେଖକ-ପୁଞ୍ଜିପତି ମଧ୍ୟ ସୃଷ୍ଟି ହୋଇପାରନ୍ତି । କିନ୍ତୁ ତା' ଆଉ "ଲୋକକଳା" ପର୍ଯ୍ୟାୟରେ ରିହପାରେନି । ସେହି କବିତା ବା ସେହି କଳା ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଲୋକଗୋଷ୍ଠିର ଉତ୍ପାଦନ ପ୍ରକ୍ରିୟାକୁ ସାହାଯ୍ୟ କଲାଭଳିଆ କିଛି ଭୂମିକା ଆଉ ନିଭାଇପାରେ ନାହିଁ । ଲୋକୋତ୍ତୀର୍ଣ୍ଣ ଓ କାଳୋତ୍ତୀର୍ଣ୍ଣ

ହୋଇ ତାହା "କ୍ଲାସିକ୍" ପର୍ଯ୍ୟାୟକୁ ଚାଲିଯାଏ । ଉତ୍ତୀର୍ଣ୍ଣ ହୋଇ ନ ପାରିଲେ କାଳଗର୍ଭରେ ବିଲୀନ ହୋଇଯାଏ ।

କିନ୍ତୁ ସଭ୍ୟତାର ଅଗ୍ରଗତି ହୋଇ ନଥିବା ଅଞ୍ଚଳର କଥା ନିଆରା । ସେଠାକାର ଆଦିବାସୀ ଜନଗୋଷ୍ଠୀ ଓ ଜଙ୍ଗଲ ଉପରେ କିଛି ପରିମାଣରେ ନିର୍ଭର କରୁଥିବା ଅର୍ଥନୀତିରେ "ସଂସ୍କୃତି", "ପରମ୍ପରା" ତଥାପି ତା'ର ସୃଜନଶୀଳ ଲୋକସେବା ଭୂମିକାରେ ଦେଖାଦିଏ । କାରଣ ସେଠାରେ ସେଥିପାଇଁ ସାମାଜିକ ସାଂସ୍କୃତିକ ଓ ଅର୍ଥନୈତିକ ଭିତ୍ତି ବିଦ୍ୟମାନ ରହିଥାଏ । ଅବଶ୍ୟ ବିଶ୍ୱଯୁଦ୍ଧ ପର ଉପନିବେଶବାଦର ତଥାକଥିତ ଅବସାନ ପରେ ପରେ ସାମ୍ରାଜ୍ୟବାଦର ନୂଆ ଅର୍ଥନୈତିକ ଓ ସାଂସ୍କୃତିକ ଆକ୍ରମଣ ନୂଆ ଢଙ୍ଗରେ ଆରମ୍ଭ ହୋଇଥିଲା । "ପୁରୁଣା ଉପନିବେଶର ଅସଭ୍ୟ ଲୋକଙ୍କୁ ସୁସଭ୍ୟ କରିବା" ନାମରେ "ସଭ୍ୟତା" ଓ "ଗଣତନ୍ତ୍ର" ରପ୍ତାନି କରିବା ନାମରେ । ଆଉ ଏହି କାର୍ଯ୍ୟରେ ସଦ୍ୟ ମୁକ୍ତିପ୍ରାପ୍ତ ଦେଶମାନଙ୍କର ସାମ୍ରାଜ୍ୟବାଦ ପ୍ରେମୀ ନେତାମାନେ ଖୁବ୍ ମାତିଗଲେ । ଯୋଗାଇ ଦେଲେ ଅକୁଣ୍ଠ ସହଯୋଗ । ଗୋଟିଏ ତଥାକଥିତ ପଛୁଆ ଦେଶର ନିଜସ୍ୱ ସ୍ୱୟଂ ସମ୍ପୂର୍ଣ୍ଣ ଅର୍ଥନୀତି ଓ ସଂସ୍କୃତିକୁ ଭାଙ୍ଗିରୁଜି ନ ଦେଲେ ନବ୍ୟ ଔପନିବେଶିକ ଶାସନ ଅବାଧ ଭାବେ ଚାଲିବ କିପରି ? ଏ ଥିଲା ପୁରୁଣା ଉପନିବେଶବାଦର ନୂଆ କୌଶଳ । ପଛୁଆ ଦେଶର ଲୋକମାନଙ୍କୁ ଜାତିସତ୍ତା ଓ ଜନଗୋଷ୍ଠୀମାନଙ୍କୁ ଭିତରୁ ଭିତରୁ ଶେଷ କରିଦିଅ । ନୂଆ ଔପନିବେଶିକ ଆଦର୍ଶ ସେମାନଙ୍କ ଆଗରେ ରଖ । ନୂଆ ସଂସ୍କୃତିର ମନ୍ତ୍ର ସେମାନଙ୍କୁ ଘୋଷାଅ । ଦେଖିବ, ପୁଣିଥରେ ସାମ୍ରାଜ୍ୟବାଦର ଶାସନ ଆରମ୍ଭ ହୋଇଯାଇଛି । ନୂଆ ରୂପ ନୂଆ ଢଙ୍ଗରେ ।

କିନ୍ତୁ ଏହି ଆକ୍ରମଣ ଆମ ଦେଶର ମୁଖ୍ୟ ସାମାଜିକ ଜୀବନଧାରାରେ ଥିବା ସଭ୍ୟତା ଓ ସଂସ୍କୃତିକୁ ଯେତିକି ପ୍ରଭାବିତ ଓ କଳୁଷିତ କରିଛି; ସେତିକି କରିପାରିନି ଅନେକ ଆଦିବାସୀ ଅଞ୍ଚଳର(ଯେପରି ଏହି ଦଣ୍ଡକାରଣ୍ୟ ଅଞ୍ଚଳରେ) ଜନଜୀବନକୁ । ଅବଶ୍ୟ ଯେଉଁ ଉପାୟରେ ପୃଥିବୀପୃଷ୍ଠରୁ ଗୋଟିଏ ପରେ ଗୋଟିଏ ଭାଷା ଓ ସଂସ୍କୃତି ଲୋପ ପାଇଥାଏ, ସେ ପ୍ରକ୍ରିୟା ବିଶ୍ୱଯୁଦ୍ଧ ପର ପୃଥିବୀରେ ଦ୍ରୁତଗତିରେ ଆରମ୍ଭ ହୋଇଯାଇଛି । ଇଭାନ୍ ଇଲିଚ୍ (Deschooling Socityର ଲେଖକ)ଙ୍କ ଭାଷାରେ "ଶିଳ୍ପ ସମୃଦ୍ଧ ପାଶ୍ଚାତ୍ୟ ଦେଶମାନଙ୍କ ବଜାର ଅର୍ଥନୀତିର ବଳୟ ଭିତରକୁ ଆସି ନଥିବା ଅର୍ଦ୍ଧ ବିକଶିତ ଦେଶମାନଙ୍କୁ ବିକଶିତ କରିବାର ଆଇଡ଼ିଆ ଦେଖାଦେଇଛି

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଏବଂ ଉପନିବେଶବାଦର ଅବସାନରେ । ଏହି ବିକାଶ ବିଭିନ୍ନ ସଭ୍ୟତାର ଯେତିକି କ୍ଷତି ଘଟାଇଛି ତା'ର ହିସାବ ନ ରଖି ଏବଂ ପ୍ରତିକାର ନ କରି ତା'ର ପ୍ରତିରକ୍ଷା ଲାଗି ସେତିକି ଉଦ୍ୟମ ନ କରି, ସେ ଦେଶର ବୁଦ୍ଧିଜୀବୀମାନେ ଏଇ ବିକାଶଧାରାରେ ସାମିଲ ହେବାର ଅନ୍ଧ ଧାଉଡ଼ରୁ ହିଁ ଅପୂର୍ବ ତୃପ୍ତି ପାଉଛନ୍ତି ।"

ଏହାର ଫଳ ଏଇଆ ହୋଇଛି ଯେ ସାରା ପୃଥିବୀରେ ଇଂରାଜୀଭାଷା ଓ ଆମେରିକାର ସଂସ୍କୃତି ସମସ୍ତଙ୍କ ଆଦର୍ଶ ହୋଇଯାଇଛି । କାରଣ ପୃଥିବୀର ସର୍ବବୃହତ୍ ଶକ୍ତି ଆମେରିକା ଏ ଭାଷା କହୁଛି । ସେହି ସଂସ୍କୃତିର ଉପାସନା କରୁଛି । ସେହିପରି ଭାରତର ମୁଖ୍ୟ ପ୍ରଶାସନିକ ଭାଷା ହୋଇଛି । ପ୍ରଶାସନିକ ଚାଲ୍ ଏହାର ମୂଳକଥା । ଓଡ଼ିଆ କଥା ତଦ୍ରୂପ । ଓଡ଼ିଶାର ମୁଖ୍ୟ ଶାସନ ସ୍ରୋତର ଭାଷା ହେଉଛି ଓଡ଼ିଆ । ଏହି ଭାଷା ଓ ସଂସ୍କୃତି ସହ ତାଳ ଦେବାକୁ ଯାଇ ଓଡ଼ିଶାର ଅନ୍ୟାନ୍ୟ ଆଦିବାସୀ ଅଞ୍ଚଳ ତଥା ଦଣ୍ଡକାରଣ୍ୟ ଅଞ୍ଚଳର ଅନେକ ସମୃଦ୍ଧ ଭାଷା ଅବଲୁପ୍ତି ଆଡ଼କୁ ଆଗେଇ ଚାଲିଛି । ନବମ ଦଶକରେ ବିଜୁ ପଟ୍ଟନାୟକ ମନ୍ତ୍ରୀମଣ୍ଡଳରେ ଚୈତନ୍ୟ ପ୍ରସାଦ ମାଝୀ ଶିକ୍ଷାମନ୍ତ୍ରୀ ଥିବାବେଳେ 'ଅଲ୍‌ଚିକି' ଭାଷାକୁ ପ୍ରାଥମିକ ସ୍ତରରେ ଶିକ୍ଷା ଦେବାପାଇଁ ମୟୂରଭଞ୍ଜ, କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାର ୨୦ଟି ସ୍କୁଲ୍‌କୁ ନିର୍ବାଚନ କରି ସ୍ୱତନ୍ତ୍ର ଶିକ୍ଷକ ନିଯୁକ୍ତି ଦେଇଥିଲେ । କିନ୍ତୁ ପରେ ସେମାନଙ୍କୁ ସିଟି ଟ୍ରେନିଂ ପାଇଁ ପଠାଯାଇ ସାଧାରଣ ଶିକ୍ଷକ ରୂପେ ପରିବର୍ତ୍ତନ କରି ଦିଆଗଲା । ଏହାହିଁ ପ୍ରମାଣ କରେ ଆଦିବାସୀ ଭାଷାର ସୁରକ୍ଷା ପାଇଁ ଆମର ନଷ୍ଟ କେତେ ? ଆଜି ଓଡ଼ିଶାର ୬୨ ଭାଷାରୁ ମାତ୍ର ୨୦/୨୫ଟି ସ୍ୱସ୍ଥିତି ଜାହିର କରିବାକୁ ସଂଗ୍ରାମରତ । ଅନ୍ୟ ସମସ୍ତଙ୍କ ଭାଷାମୃତ ବା ବିଲୁପ୍ତ ।

ଏ ସମ୍ପର୍କରେ ଓଡ଼ିଶାର ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେ଼ମୀର ଗୋଟିଏ କର୍ମଶାଳା ବିଷୟ ଉଲ୍ଲେଖ କରିବି । ଗତ ନଭେମ୍ବର ୨୦୦୧ରେ ଏହା ଅନୁଷ୍ଠିତ ହୋଇଥିଲା । ଏହାର ମୁଖ୍ୟ ବିଷୟବସ୍ତୁ ଥିଲା ଓଡ଼ିଶାର ଆଦିବାସୀ ଲୋକ ପରମ୍ପରା । ସେଠାରେ "ଆଦିବାସୀ ଲୋକସଂସ୍କୃତିରେ ସଂକଟ" ଶୀର୍ଷକ ପ୍ରବନ୍ଧଟେ ଉପସ୍ଥାପିତ କରି କହିଥିଲି ଯେ, ଆଦିବାସୀ ସମାଜର ଶିରାପ୍ରଶିରାରେ ଯେଉଁ ଶୋଷଣ ପର୍ବ ଅନୁଷ୍ଠିତ ହୋଇଚାଲିଛି ସେହି ଅନୁପାତରେ ବିପୁଳ ସଂଘାତ ବା ଶ୍ରେଣୀସଂଘର୍ଷର ଧାରାବାହିକ ପ୍ରକ୍ରିୟା ଦେଖିବାକୁ ମିଳୁନାହିଁ । ଏହି ପରିପ୍ରେକ୍ଷୀରେ, ସବୁଠାରୁ ବିଡ଼ମ୍ବନା

ହେଉଛି, ଯେଉଁ ରାଷ୍ଟ୍ର ବାସ୍ତବ କ୍ଷେତ୍ରରେ ଆଦିବାସୀ ଶୋଷଣର ସହାୟକ ଓ ସେ ହିଁ ଆଦିବାସୀ ଭାଷା ଓ ସଂସ୍କୃତିର ବିଲୁପ୍ତ ପ୍ରକ୍ରିୟାକୁ ଅଟକାଇ ଦେବାକୁ କେତେ ନା କେତେ ଯୋଜନା ଆରମ୍ଭକରି ଦେଇଛି । (ମାତ୍ର କିଛି ଭଲ ପୁସ୍ତକ ପ୍ରକାଶନକୁ ଛାଡ଼ିଦେଲେ ଏହା ବିଶେଷ କିଛି ଉଦ୍ଦୀପନାମୂଳକ କାର୍ଯ୍ୟ କରିପାରିନି ।) ଶୋଷଣକାରୀର ସଂସ୍କୃତି କାଳେ କାଳେ ଶୋଷିତମାନଙ୍କ ସଂସ୍କୃତିକୁ ହଜମ କରିଦେଇ ପାରିଲେ ଯାଇ ତା'ର ଶୋଷଣଲୀଳା ଭଲଭାବେ ଚାଲିପାରେ । ସୁତରାଂ ଏସବୁ ଯୋଜନା କେବଳ ଧୂଆଁବାଣ । ଏହା ଉପସ୍ଥିତ କେତେଜଣ ବର୍ଷିୟାନ୍ ଗାନ୍ଧିବାଦୀଙ୍କୁ ଖୁବ୍ ବିବ୍ରତ କରିଥିଲା । ସର୍ବେଶ୍ୱର ଦାଶ ପ୍ରଶ୍ନ କରିଥିଲେ, "ଏହାକୁ ରୋକିବା ପାଇଁ କ'ଣ କିଛି ହେଲେ ଉପାୟ ନାହିଁ ?" ବିଲୋପ ପାଇବା ପୂର୍ବରୁ ଏସବୁ ସଂସ୍କୃତିର ମୌଳିକ ଉପାଦାନ ସବୁକୁ ଯଥାଶୀଘ୍ର ସଂଗ୍ରହ କରି ରଖିବା ପାଇଁ ସଜେସନ୍ ଦେଇଥିଲେ ଏକାଡେମୀର ତତ୍କାଳୀନ ଡାଇରେକ୍ଟର ମନ୍ମଥ କୁଣ୍ଡୁ । କିନ୍ତୁ ଆଦିବାସୀ ମଙ୍ଗଳବିଭାଗର I.A.S. ଡାଇରେକ୍ଟର କହିଥିଲେ, "ଆମ ଆଦିବାସୀ ଆଶ୍ରମ ସ୍କୁଲ୍ ଶିକ୍ଷକମାନଙ୍କୁ ମୁଁ ସଙ୍ଗେସଙ୍ଗେ ଚିଠି କରିଦେଉଛି – ଯେ ଯେଉଁଠି ଅଛନ୍ତି ସେ ଅଞ୍ଚଳର ସମସ୍ତ ସାଂସ୍କୃତିକ କ୍ରିୟାକଳାପର ବିସ୍ତୃତ ବିବରଣୀ ସେମାନେ ସଂଗ୍ରହ କରିବା ଆରମ୍ଭ କରିଦେବେ । ଆପଣ କ୍ୱେଶ୍ଚନିୟାର ତିଆରି କରନ୍ତୁ । ସେସବୁ ପଠାଇବାର ତିନିମାସ ମଧ୍ୟରେ କାମ ହୋଇଯିବ ।" ଏହା ଭିତରେ କେତେ ବର୍ଷ ବିତିଗଲାଣି ? ଚକ ଯେଉଁଠି ଥିଲା ସେଇଠି । ବରଂ ସର୍ବଶିକ୍ଷା ଅଭିଯାନରେ ସଂଗ୍ରହ କରାଯାଇଥିବା କେତେ ନା କେତେ ଲୋକ କଥା ଓ ଗୀତ ଫାଇଲ୍‌ରେ ଉଇ ଚରିଗଲାଣି ।

**ସଂସ୍କୃତି ସଂହାର : ବାସ୍ତବ ଦୃଶ୍ୟ**

ଏହି ନିକଟରେ କୋରାପୁଟ, ନବରଙ୍ଗପୁର ଓ ମାଲ୍‌କାନ୍‌ଗିରି ଜିଲ୍ଲାର ବିଭିନ୍ନ ସ୍ଥାନରେ ଆଦିବାସୀ ସଂସ୍କୃତି ଉପରେ ଯେଉଁ "ପରବ", "ମଣ୍ଡେଇ" ଓ "ମହୋତ୍ସବ"ମାନ ବ୍ଲକ୍ ସ୍ତରରୁ ଜିଲ୍ଲାସ୍ତର ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଗଲା, ସେଥିରେ ଆଦିବାସୀଙ୍କ ସମ୍ପୃକ୍ତି ୧୦ଭାଗରୁ ମଧ୍ୟ କମ୍ । ଯେଉଁସବୁ ଦେଶିଆ ନାଟ ଅନୁଷ୍ଠିତ ହୋଇଗଲା ସେଥିରୁ ଗୋଟେ ଅଧେକୁ ଛାଡ଼ିଦେଲେ ପ୍ରାୟ ସମସ୍ତ ହେଉଛି ବିକୃତ ଓଡ଼ିଆଭାଷାର ନାଟ । ଲୋକଗୀତ ନାମରେ ନଚାଗଲା ବେଶ୍‌କିଛି ଓଡ଼ିଆ ଓ ହିନ୍ଦୀ ପପ୍‌ନାଚ, ପଞ୍ଜାବର ଭାଙ୍ଗଡ଼ା, ଆସାମର ବହୁ । ଗାନ ହେଲା ପପ୍ ଗୀତ, ଆଧୁନିକ

ଗୀତ ଓ ଭଜନ । ଯେଉଁମାନେ ସବୁ ପୁରସ୍କାର ପାଇଲେ ତା' ଭିତରୁ ପ୍ରାୟ ୯୦% ହେଉଛନ୍ତି ଅଣଆଦିବାସୀ ଭାଷା ଓ ସଂସ୍କୃତିକୁ ଲୋଭନୀୟ ଭାବେ ପରିବେଷଣ କରିଥିବା ବ୍ୟକ୍ତି ବା ଅନୁଷ୍ଠାନ ବିଶେଷ । ଯେଉଁମାନେ ସମସ୍ତେ ଉଭୟ ବ୍ଲକ୍ ଓ ଜିଲ୍ଲାସ୍ତରରେ ବିଚାରକ ଆସନ ଅଳଂକୃତ କରିଥିଲେ ସେମାନେ ମଧ୍ୟ ଆଦିବାସୀ ଭାଷା ଓ ସଂସ୍କୃତି ପ୍ରତି ସାମାନ୍ୟ ଶ୍ରଦ୍ଧା ନ ଥିବା ଗୋଷ୍ଠୀ । ତେଣୁ ଏହା ପ୍ରହସନ ଓ ଆଦିବାସୀମାନଙ୍କ ପ୍ରତି ଉପହାସ ନୁହେଁ କି ? ସବୁଠାରୁ ନିଷ୍ଠୁର ବିଷୟ, ଏକକାଳୀନ ଦେଶୀଆନାଟ ସବୁ ପରିବେଷଣ କରାହେବାର ଦୃଶ୍ୟ ଓ ପରସ୍ପର ଆଡ଼କୁ ମୁହଁ କରିଥିବା ମାଇକ୍‌ମାନଙ୍କର ଗର୍ଜନ । ବ୍ଲକ୍‌ସ୍ତରରେ ପ୍ରାୟତଃ ଗୋଲେଇ କରି ଗୋଟିଏ ଜାଗାରେ ସବୁ ନାଟ ପାଇଁ ଷ୍ଟେଜ୍ କରାଯାଇ ସମସ୍ତଙ୍କୁ ଏକାକାଳୀନ ନିଜର ନାଟର ପରିବେଷଣ କରିବାକୁ ପଡ଼ିଥାଏ । ବିଚାରକ ଦଳ ବୁଲି ବୁଲି ବିଚାର କରନ୍ତି । ଅଭିନେତାମାନେ ତଥାପି ଯେ ଏହି ସବୁ ନାଟରେ ନାଚନ୍ତି ଓ ଆଦିବାସୀ ଦର୍ଶକମାନେ ଏହାକୁ ଦେଖିପାରନ୍ତି, ଏହାହିଁ ଆଦିବାସୀମାନଙ୍କର ସଂସ୍କୃତି - ଶ୍ରଦ୍ଧାଶୀଳତା କଥା ଦର୍ଶାଇ ଦିଏ । କିନ୍ତୁ ତା' ସଙ୍ଗେ ସଙ୍ଗେ ସେମାନଙ୍କ ନାଟ ପ୍ରତି ଅଣଆଦିବାସୀ ବା ଗଡ଼ିଆମାନଙ୍କ ଅଶ୍ରଦ୍ଧା ଓ ଉପହାସକୁ ମଧ୍ୟ ବେଶ୍ ସ୍ପଷ୍ଟ ଭାବେ ତୋଳିଧରେ । ଆନ୍ଧ୍ର ସରକାରଙ୍କ ସରକାରୀ ସାଂସ୍କୃତିକ ଅଭିଯାନକୁ ଲକ୍ଷ୍ୟକରି ଏସବୁ ପ୍ରଥମେ ଆରମ୍ଭ କରିଥିଲେ କୋରାପୁଟ୍‌ର ଜିଲ୍ଲାପାଳ ପ୍ରାୟ ୨୦ବର୍ଷ ତଳେ । ଉଦ୍ଦେଶ୍ୟ ଥିଲା ଆଦିବାସୀ ସଂସ୍କୃତିର ପ୍ରତିନିଧି ସ୍ଥାନୀୟ କିଛି ପ୍ରତିଭାଙ୍କୁ ପୁରସ୍କୃତ କରି ଶାସକଶ୍ରେଣୀ ସପକ୍ଷକୁ ଆଣିବା ଏବଂ ଆଦିବାସୀ ଓ ସାହୁକାର ଭିତରେ ଥିବା ଶ୍ରେଣୀ ଘୃଣାକୁ ଟିକିଏ ସାଉଁଳେଇ ଓ ନରମେଇ ଦେଇ ଶ୍ରେଣୀସଂଘର୍ଷର ଅଗ୍ନିକୁ ନିଭେଇ ଦେବା । କ୍ରମେ କ୍ରମେ ଏହାକୁ ଅନ୍ୟ ଆଦିବାସୀବହୁଳ ଜିଲ୍ଲାମାନେ ଆଦରି ନେଇଛନ୍ତି । ଆର୍ଯ୍ୟ ବା ଅଣଆଦିବାସୀ ସଂସ୍କୃତିର ରପ୍ତାନୀ ଜରିଆରେ ଆଦିବାସୀ ସଂସ୍କୃତିର ନ୍ୟୂନତା ପ୍ରତିପାଦିତ କରାଇବା ଜୋରସୋର୍‌ରେ ଆରମ୍ଭ ହୋଇଯାଇଚି । ଫୁଲଟିଏ ଗଛରୁ ତୋଳା ହେବାପରେ ତାହା ମଉଳି ଯିବ କି ନାହିଁ ? ଠିକ୍ ସେହିପରି ଆଦିବାସୀର ନାଟଗୀତକୁ ତା'ର ଜୀବନଧାରାଠାରୁ ଓ ପାରମ୍ପରିକ ପର୍ବପର୍ବାଣୀଠାରୁ ଦୂରେଇ ନେଲେ ସେସବୁ ତା'ର ପ୍ରାଣସ୍ଫୂର୍ତ୍ତି ହରାଇବସିବା ଅତ୍ୟନ୍ତ ସ୍ୱାଭାବିକ । ଆମମାନଙ୍କ ସାଂସ୍କୃତିକ ଜଗତ୍ ଯେ ସେମାନଙ୍କ ସାଂସ୍କୃତିକ ଜଗତ୍‌ଠାରୁ ମୌଳିକ ଭାବେ ଭିନ୍ନ ଏ କଥାଟି ଆମେ ବଡ଼ ସତର୍କ ଭାବେ ଲୁଚାଇ ଦେବାକୁ ଚେଷ୍ଟାକରୁଛୁ । ସେମାନଙ୍କ କବି ଓ ନାଟଗୁରୁମାନଙ୍କୁ

ସାଲ୍ ଓ ଅନ୍ୟାନ୍ୟ ଉପଢ଼ୌକନ ଦେଇ ଆମ ଆଡ଼କୁ ଆକର୍ଷି ଚାଲିଛୁ । ତା' ନ ହେଲେ ସେମାନେ ପୁଣି 'ସଭ୍ୟ' ହେବେ କେଉଁ ବାଗରେ ?

ଆଦିବାସୀମାନଙ୍କୁ ସଭ୍ୟ କରିବାର ପ୍ରଥମ ଅର୍ଥ ହୋଇଯାଇଛି ସେମାନଙ୍କ ଭାଷା ସଂସ୍କୃତିର ବିଲୋପୀକରଣ ଓ ଶିକ୍ଷିତ ଆଦିବାସୀମାନଙ୍କ ଭିତରେ ଏପରି ଏକ ଧାରଣା ସୃଷ୍ଟି କରିବା ଯେ, ସେମାନଙ୍କର ନିଜ ଭାଷା ହେଉଚି ବର୍ବର ଓ ଅସଭ୍ୟମାନଙ୍କ ଭାଷା । ତେଣୁ ସାହୁକାର ହେବାକୁ ଲକ୍ଷ୍ୟ ରଖି ତା'ର ଚିତଣ୍ଡୁ ଓ ଶୋଷକ ସେଇ ସାହୁକାରର ସଂସ୍କୃତି ଓ ଭାଷାକୁ ଆଦରି ନେବା ଅଧିକ ପ୍ରକୃଷ୍ଟ ବୋଲି ଶିକ୍ଷିତ ଆଦିବାସୀମାନେ ମନେ କଲେଣି ଓ ନିଜକୁ ନିଜ ଜାତିଭାଇକୁ, ନିଜର ଭାଷା ଓ ସଂସ୍କୃତିକୁ ଧୀରେ ଧୀରେ ଘୃଣାକରି ଶିଖିଲେଣି । ସବୁଠାରୁ ଦୁଃଖର କଥା, ଏଥିସହ ସେମାନଙ୍କ ନିଜସ୍ୱ ମୂଲ୍ୟବୋଧମାନେ ମଧ୍ୟ ବଳି ପଡ଼ିଲେଣି । ବିଶେଷକରି ଶିକ୍ଷିତ ନବ୍ୟ ସଭ୍ୟମାନେ ନିଜ ପରମ୍ପରା, ନିଜ ଗୁଡ଼ିଘର, ଢେ଼ମ୍‌ସାନାଟ, ଚଇତି ଓ ପୁଷ ପରବ, ବେଣ୍ଟ ଓ ଫୁଲବେଣ୍ଟ, ଉଦୁଲିଆ, ସଗର୍ତ୍ତା ଓ ପଇସା ମୁଣ୍ଡି ପ୍ରଥା - ସବୁ କିଛିକୁ ଘୃଣାକରି ଶିଖିଲେଣି । ପାରମ୍ପରିକ ପ୍ରଥାକୁ ବିରୋଧକରି କଥା କଥାକେ କୋର୍ଟ, କେଶ୍‌ରେ ଆଶ୍ରୟ ନେଲେଣି । କୟାମାନଙ୍କ କ୍ଷେତ୍ରରେ ତ ଉଦୁଲିଆ ପ୍ରଥାକୁ ଏତେ ଭୟଙ୍କର ବିରୋଧ କରାଯାଉଛି ଯେ ଉଦୁଲିଆ ନେଇଥିବା ପୁଅଘରର ଗୋରୁଗାଈ ସବୁ ଆଡ଼େଇ ଆଣିବା ସଙ୍ଗେସଙ୍ଗେ କନ୍ୟା ଝୋଲା ପଚାଶହଜାର ପର୍ଯ୍ୟନ୍ତ ଦାବି କରାଯାଉଛି । ଫଳରେ ମନୋନୀତ ପୁରୁଷ ସାଥୀଟି ସହ ଯାଇ ନ ପାରି କୟାଝିଅ ବାପାମା'ଙ୍କ ପସନ୍ଦର ଯୁବକକୁ ଅପେକ୍ଷା କରି କରି ବୁଢ଼ୀ ହେଉଛି । ପୁଣି ବିଭା ହୋଇଥିବା ପୁରୁଷକୁ ନାପସନ୍ଦ କରି କୟାଝିଅ ସଗର୍ତ୍ତା ଯିବାକୁ ମନ ବଳାଇଲେ ଉଭୟ ପ୍ରେମିକ ଓ ସେ ଝିଅକୁ ହତ୍ୟା ମଧ୍ୟ କରାଯାଉଛି । ଏଭଳିକି ସାହୁକାରୀ ସମଜାର ନାରୀ ନିର୍ଯାତନା ବିଭିନ୍ନ ରୂପରେ ଆଦିବାସୀ ସମାଜରେ ଦେଖାଦେଲାଣି । କିଛି କିଛି କ୍ଷେତ୍ରରେ ନାରୀର ସ୍ୱତନ୍ତ୍ର ସତ୍ତା ଓ ଚିନ୍ତା ପ୍ରତି ପାରମ୍ପରିକ ସମ୍ମାନ କିଛି ଜାଗାରେ ବଳି ପଡ଼ିଲାଣି । ଉନ୍ନତ ହେବା ନାମରେ ସେମାନେ ସଲପ ଓ ଲନ୍ଦା ଛାଡ଼ିବା ସଙ୍ଗେସଙ୍ଗେ ବିଦେଶୀ ଶବ୍ଦକୁ ଆପଣେଇ ନେଇ ନିଜ ଜାତିର ଝିଅକୁ ବିଭା ନ ହୋଇ ଉଚ୍ଚଜାତିର ଝିଅକୁ ବିଭା ହେବାକୁ ଭଲପାଇଲେଣି । ମାଲ୍‌କାନ୍‌ଗିରିର ବେଶ୍ କିଛି କୟା ଧାଂଡ଼ାଧାଂଡ଼ୀ ଆପଣାର ସ୍ୱତନ୍ତ୍ର ମନ ମୁଗ୍ଧକର ସୁନ୍ଦର ଗୀତ ଓ

ମନ୍ତ୍ରକୁ ଭୁଲି ଶସ୍ତା ସିନେମାଗୀତରେ ବିଭୋର ହେଲେଣି । ବ୍ରାହ୍ମଣବାଦୀ ସଭ୍ୟତା ପ୍ରଭାବରେ ପଇତା ପକାଇ ତିଳକ ଲଗାଇବା ଓ ଗାୟତ୍ରୀ ପଢ଼ିବା ମଧ ଶିଖିଲେଣି । ସେଇମାନେ ହିଁ ହେଲେଣି ଆଦିବାସୀମାନଙ୍କୁ ତଳିତଳାନ୍ତ କରିବାରେ ମୁଖ୍ୟ ଅସ୍ତ୍ର ।

ଏହା ଖାଲି ଦୁଃଖର ବିଷୟ ନୁହେଁ, ଲଜ୍ୟାର ବିଷୟ ମଧ । କିନ୍ତୁ କାହାର ଦୁଃଖ ? କାହାର ଲଜ୍ୟା ? ଆଦିବାସୀର ନା କତିପୟ ଅଣଆଦିବାସୀ(ଗଡ଼ିଆ) ଗବେଷକ / ବୁଦ୍ଧିଜୀବୀଙ୍କର ? ସମାଜସେବୀ, ମାନବବାଦୀ ନା କମ୍ୟୁନିଷ୍ଟ ବିପ୍ଳବୀମାନଙ୍କର ? ପୁଣି ଏହି ବିଲୟ ପ୍ରକ୍ରିୟା କେତେଦୂର ସ୍ୱାଭାବିକ ? ଯଦି ସ୍ୱାଭାବିକ ନୁହେଁ ତେବେ ଏହି ଅସ୍ୱାଭାବିକତା ଅର୍ଥାତ୍ ଶୋଷଣକାରୀ ସଭ୍ୟତାର ଆକ୍ରମଣକୁ କିପରି ପ୍ରତିହତ କରାଯାଇ ପାରିବ, ତା'ର ବିଧିବଦ୍ଧ ଯୋଜନା କରିବାକୁ ପଡ଼ିବ । କେବଳ ଏକ ସଚେତନ ଆଦିବାସୀ ସମାଜ ଏହା କରିପାରିବ । ସଂସ୍କୃତିର ଯେଉଁସବୁ ମଝି ଖମ୍ବ ଦୋହଲି ଯାଉଛି, ସେଠି ବୃହତ୍ତର ସଂସ୍କୃତିର ମୂଲ୍ୟବୋଧର ଭୂମିକା କେତେ ନକାରାତ୍ମକ, କେତେ ଫମ୍ପା ଓ ଘୃଣ୍ୟ ଏବଂ ଏଥିରେ ଔପନିବେଶିକ ଅର୍ଥନୀତିର ଆଗାମୀ କୌଶଳ ଓ ଚାଲାକି କେତେ ପରିମାଣରେ ମହଜୁଦ୍ ରହିଛି, ସେ ସବୁକୁ ପରୀକ୍ଷା କରି ଦେଖିବାକୁ ପଡ଼ିବ । ଏଭଳି ଏକ ରାଜନୈତିକ ଚେତନା ଓ ଅର୍ଥନୈତିକ ବିଶ୍ଳେଷଣର ଝଲକ ଓଡ଼ିଶା, ଛତିଶଗଡ଼, ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗର ଜନଜାତି ଗୋଷ୍ଠୀ ଓ ସଂଗଠନରେ ଦେଖିବାକୁ ମିଳିଲାଣି । ଆଦିବାସୀ ଦରଦୀ କର୍ମୀ ଓ ବୁଦ୍ଧିଜୀବୀମାନେ ହାତକୁ ହାତ ମିଳେଇ ସେମାନଙ୍କୁ ସହଯୋଗ ଯୋଗାଇ ଦେବା ବ୍ୟତୀତ ଆଉ ବା ଅଧିକ କ'ଣ କରିପାରିବେ ?



# ପରିଶିଷ୍ଟ

| ସଂଖ୍ୟା | ଓଡ଼ିଶାର ମୋଟସଂଖ୍ୟା | ଅବିଭକ୍ତ କୋରାପୁଟ ଜିଲ୍ଲାରେ ମୋଟ ସଂଖ୍ୟା |
|---|---|---|
| ଓମାନାତ୍ୟ | ୨୩୩୬୪ | ୨୨୫୬୭ |
| ଓରାଓଁ | ୩୦୮୯୩୧ | ୯୪୯ |
| କନ୍ଧ | ୧୩୯୫୬୪୩ | ୫୫୫୨୩୧ |
| କନ୍ଧଗୌଡ଼ | ୩୧୪୫୪ | ୭୮୧୦ |
| କନ୍ଧ ଡୋରା | ୩୪୧୬୦ | ୨୧୪୧୮ |
| କଲି, ମହ୍ଲାର | ୫୩୬୬ | ୧୬୯ |
| କଓ୍ୱାର | ୭୩୮୦ | ୨୪୫ |
| କିସାନ | ୩୨୧୫୯୨ | ୩୪୩ |
| କୁଟିଆ | ୨୨୫୨୫ | ୫୪୨୪ |
| କୁଲିସ | ୧୧୧୬୪ | ୭୮ |
| କୋରା | ୧୧୩୪୦ | ୩୬୯ |
| କୋରୁଆ | ୧୨୮୦ | ୨୦ |
| କୋଲି | ୫୩୬୬ | ୧୭୩ |
| କୋଲଲୋହର | ୯୬୪୨ | ୮୫୧ |
| କୋହ୍ଲ | ୪୯୯୧୧୦ | ୮୪୨ |
| କୋୟା | ୧୨୨୫୩୫ | ୧୨୧୪୭୯ |
| ଖଡ଼ିଆ | ୧୩୮୧ | ୫୪୨ |
| ଖରଓ୍ୱାର | ୭୩୮୦ | ୫ |
| ଗାଦବା | ୭୨୯୮୨ | ୭୨୨୨୫ |

| | | |
|---|---|---|
| ଗଣ୍ଡ | ୭୮୨୧୦୪ | ୧୩୯୦୩୬ |
| ଗଣ୍ଡିଆ | ୧୩୪୫ | ୮୫୮ |
| ଘରା | ୨୭୫ | ୧୫ |
| ଚେଞ୍ଚୁ | ୨୮ | ୩ |
| ଜୁଆଙ୍ଗ | ୪୧୩୩୯ | ୨୮ |
| ଜାତପୁ | ୧୩୮୦୪ | ୧୩୪୪୦ |
| ଠାରୁଆ | ୪୫୩ | ୫୮ |
| ଡାଲ | ୧୫୪୦୪ | ୩୭ |
| ଡିଡାୟୀ | ୭୩୭୧ | ୭୩୨୨ |
| ଦେଶୁଆ ଭୂମିଜ | ୧୭୭ | ୧୫୨ |
| ଧାରୁଆ | ୯୨୪୭ | ୭୨୦୨ |
| ପରଜା | ୩୧୭୩୦୧ | ୨୯୫୩୭୫ |
| ପାରେଙ୍ଗା | ୧୨୬୪୬ | ୧୨୩୫୭ |
| ପେଣ୍ଟିଆ | ୭୨୭୧ | ୬୮୪୨ |
| ବନଜାରା | ୧୫୮୬୮ | ୨୫୫୭ |
| ବାଇଗା | ୫୩୯ | ୨୦ |
| ବାଗତା | ୬୭୩୩ | ୨୫୨ |
| ବାଥୁଡ଼ି | ୧୯୬୮୪୬ | ୨୪୫ |
| ବଣ୍ଡାପରଜା | ୯୩୭୮ | ୯୩୦୩ |
| ବିଞ୍ଝାଲ | ୧୧୮୧୧୬ | ୧୧୬ |
| ବିଞ୍ଝିଆ | ୯୪୭୯ | ୨୦୫୭ |
| ବିର୍ହୋର | ୭୦୨ | ୪ |
| ଭତଡ଼ା | ୩୭୫୮୪୫ | ୩୩୮୬୭୩ |
| ଭୂମିଆ | ୧୦୩୫୩୭ | ୧୦୨୮୧୪ |

| | | |
|---|---|---|
| ଭୂଞ୍ଜିଆ | ୧୮୫୦୪ | ୨୦୫୭ |
| ଭୂମିଜ | ୨୪୮୧୪୪ | ୨୫୨୬ |
| ଭୂୟାଁ | ୨୭୭୪୨୦ | ୨୫୫୯ |
| ମାଙ୍କିଡ଼ି | ୧୩୦ | ୪ |
| ମାଙ୍କିଡ଼ିଆ | ୧୦୫୦ | - |
| ମାଟିଆ | ୧୭୫୪୯ | ୨୫୪୩ |
| ମାଡ଼ିଆ | ୩୦୧୭ | ୨୪୩ |
| ମାହାଲି | ୧୭୧୩୧ | ୪୦୨ |
| ମିର୍ଦ୍ଧା | ୩୨୨୭୯ | ୧୦୯ |
| ମୁଣ୍ଡା | ୪୮୦୨୫୨ | ୩୪୦୯ |
| ମୁଣ୍ଡାରି | ୨୩୮୩୩ | ୭୨ |
| ରାଜୁଆର | ୨୮୦୩ | ୧୫ |
| ଲୋଧା | ୮୯୦୫ | ୧୬୨ |
| ସଉରା | ୪୭୩୨୩୩ | ୬୩୮୯୯ |
| ସାଉଁତି | ୯୨୭୩୪ | ୧୫୩ |
| ସାନ୍ତାଳ | ୭୭୭୨୦୪ | ୭୧୭୬ |
| ଶବର | ୪,୪୨୫୩୭ | ୩୬୬୬୭ |
| ହଲବା | ୧୦୪୬୨ | ୯୫୨୨ |
| ହୋ | ୪୩୧୧୩ | ୧୫୯ |
| ମୋଟ - | ୭୯୦୮୭୦୩ | ୧୮୮୧୧୮୩ |

ସୌଜନ୍ୟ : COATS, କୋରାପୁଟ ୨୦୦୧ ଜନଗଣନା

ଉପରୋକ୍ତ ସାରଣୀ ଅନୁଯାୟୀ ଓଡ଼ିଶାର ସମୁଦାୟ ଆଦିବାସୀ ଜନସଂଖ୍ୟା ୭୯୦୮୭୦୩ ଏବଂ କେବଳ ଅବିଭକ୍ତ କୋରାପୁଟ୍ ଜିଲ୍ଲାର ମୋଟ ଆଦିବାସୀ ହେଉଛନ୍ତି - ୧୮୮୧୧୮୩ । (ଜନଗଣନା - ୨୦୦୧)

## ଜୀବନ ସଂଗ୍ରାମ ସାରସ୍ୱତ ଟ୍ରଷ୍ଟର ପ୍ରତିବେଦନ

ଭାରତୀୟ ସମାଜର ଏକ ବିଶେଷ ଅଂଶ ହେଉଛନ୍ତି ଆଦିବାସୀ ଜନତା । ବହୁ ଜନଗୋଷ୍ଠୀରେ ବିଭକ୍ତ ହୋଇଥିଲେ ମଧ୍ୟ ଏ ସମସ୍ତେ ଗଠନ କରିଛନ୍ତି ଏକ ଜୀବନ୍ତ ଚିରସ୍ପନ୍ଦନଶୀଳ ଆଦିବାସୀ ସଭ୍ୟତା । ଭାରତର ଜାତିପ୍ରଥା କ୍ଳିଷ୍ଟ ସମାଜ ସେମାନଙ୍କ ଆଗରେ ଭାରି ମ୍ଳାନ । ହଜାର ହଜାର ବର୍ଷଧରି ଏମାନେ ନିଜନିଜ ଗୋଷ୍ଠୀ, ସଂସ୍କୃତି ଓ ଅର୍ଥନୀତିକୁ ଅତୁଟ ରଖିବା ପାଇଁ ସଂଘର୍ଷ ଚଳାଇ ଆସିଛନ୍ତି । ବାହାରୁ ଆସିଥିବା ବିଭିନ୍ନ ଆକ୍ରମଣକାରୀ ଶାସକ - ସେ ମୋଗଲ ହୁଅନ୍ତୁ କି ମରହଟ୍ଟା, ମୁସଲିମ୍ ହୁଅନ୍ତୁ କି ବ୍ରିଟିଶ୍ - କେହିବି ସେମାନଙ୍କ ସଭ୍ୟତାର ଆତ୍ମାକୁ ଚହଲାଇ ପାରିନି । ତେବେ ବିଗତ ଶତାବ୍ଦୀର ନବମ ଦଶକ ପରେ ନବ୍ୟ ଉପନିବେଶୀ ଆକ୍ରମଣ ମୁହଁରେ ତିଷ୍ଠି ରହିବା ପାଇଁ ନିଜ ସଭ୍ୟତା ଓ ସଂସ୍କୃତିକୁ ଅତୁଟ ରଖିବା ଦିଗରେ ତାକୁ ସର୍ବତ୍ର ସଂଘର୍ଷ ଚଳାଇ ରଖିବାକୁ ପଡୁଛି । ସେଇ ସଂଘର୍ଷ, ସଭ୍ୟତା, ଅର୍ଥନୀତି ଓ ସଂସ୍କୃତିର କାହାଣୀ ବିଭିନ୍ନ ପ୍ରବନ୍ଧ ରୂପେ ଏଠାରେ ଉପସ୍ଥାପିତ କରାଯାଇଛି । ଜୀବନସଂଗ୍ରାମ ସାରସ୍ୱତ ଟ୍ରଷ୍ଟ ତରଫରୁ କୋରାପୁଟର ଆଦିବାସୀମାନଙ୍କ ମଧ୍ୟରେ ଦୀର୍ଘ ୪୦ବର୍ଷ ଧରି କାର୍ଯ୍ୟରତ ସମାଜକର୍ମୀ ବିପ୍ଳବୀ ଲେଖକ ବିଜୟ ଉପାଧ୍ୟାୟଙ୍କର ୧୪ଟି ପ୍ରବନ୍ଧର ସମାହାର ରୂପେ ଏହା ପ୍ରସ୍ତୁତ ହୋଇଛି । ଜୀବନସଂଗ୍ରାମ ସାରସ୍ୱତ ଟ୍ରଷ୍ଟର ଏହି ପଞ୍ଚମ ଅବଦାନ ପୂର୍ବ ପୁସ୍ତକମାନଙ୍କ ଭଳି ଓଡ଼ିଶା ତଥା ଭାରତର ପାଠକ, ଗବେଷକ ଓ ସମାଜକର୍ମୀମାନଙ୍କ ମଧ୍ୟରେ ଆଦୃତ ହେବବୋଲି ଆଶା ।

ଇଂ. ହୃଷୀକେଶ ସାହୁ
ଅଧ୍ୟକ୍ଷ, ଜୀବନ ସଂଗ୍ରାମ ସାରସ୍ୱତ ଟ୍ରଷ୍ଟ, ବାଲେଶ୍ୱର

ସ୍ୱର୍ଣ୍ଣଶ୍ରୀ ପ୍ରକାଶନୀ